# କାବ୍ୟଭୂମିରେ ଫକୀରମୋହନ

ଡକ୍ଟର କୃଷ୍ଣଚନ୍ଦ୍ର ପ୍ରଧାନ



# କାବ୍ୟ ଭୂମିରେ ଫକୀରମୋହନ

ଡଃ କୃଷ୍ଣଚନ୍ଦ୍ର ପ୍ରଧାନ
ଏମ୍.ଏ, ଏମ୍.ଫିଲ୍, ପିଏଚ୍.ଡି, ଡି.ଲିଟ୍
ପ୍ରଫେସର
ସ୍ନାତକୋତ୍ତର ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗ
ସମ୍ବଲପୁର ବିଶ୍ୱବିଦ୍ୟାଳୟ
ଜ୍ୟୋତିବିହାର, ବୁର୍ଲା



ସତ୍ୟନାରାୟଣ ବୁକ୍ ଷ୍ଟୋର
ବିନୋଦ ବିହାରୀ, କଟକ-୨

# କାବ୍ୟ ଭୂମିରେ ଫକୀରମୋହନ


ଲେଖକ :
ଡଃ କୃଷ୍ଣଚନ୍ଦ୍ର ପ୍ରଧାନ

ପ୍ରକାଶକ :
ସତ୍ୟନାରାୟଣ ବୁକ୍ ଷ୍ଟୋର
ବିନୋଦ ବିହାରୀ, କଟକ-୨

ଦ୍ୱିତୀୟ ସଂସ୍କରଣ : ୨୦୧୮

ପ୍ରଚ୍ଛଦ :
ବିଜୟ କୁମାର ପ୍ରଧାନ

ଅକ୍ଷର ସଜ୍ଜା :
ମା' ଗ୍ରାଫିକ୍ସ
ବାଦାମବାଡ଼ି, କଟକ

ମୁଦ୍ରଣ :
କାଳିଆ ପ୍ରିଣ୍ଟର୍ସ
ଗଙ୍ଗାମନ୍ଦିର, କଟକ

ମୂଲ୍ୟ :
୨୩୫ ଟଙ୍କା ମାତ୍ର

KABYA BHUMIRE FAKIRMOHAN

Writer :
Dr. Krushna Chandra Pradhan

Publisher :
Satyanarayan Book Store
Binod Bihari, Cuttack-2

Second Edition : 2018

D.T.P. by :
Maa Graphics
Badambadi, Cuttack

Cover designed by :
Bijoy Kumar Pradhan

Printed at :
Kalia Printers
Ganga Mandir, Cuttack

Price:
Rs. 235/- only

# ମୁଖବନ୍ଧ

'କାବ୍ୟ ଭୂମିରେ ଫକୀରମୋହନ' ଫକୀରମୋହନ କାବ୍ୟ କବିତା ସଂପର୍କରେ ଓଡ଼ିଆ ସମାଲୋଚନା ସାହିତ୍ୟ କ୍ଷେତ୍ରରେ ପ୍ରଥମ ବିସ୍ତାରିତ ସମୀକ୍ଷା ଗ୍ରନ୍ଥ। ଫକୀରମୋହନ ପ୍ରଥମେ କବି, ପରେ କଥାକାର। ଅଥଚ ତାଙ୍କ କଥା ସାହିତ୍ୟ ସଂପର୍କରେ ଉଭୟ ପରିମାଣାତ୍ମକ ଓ ଗୁଣାତ୍ମକ ଦୃଷ୍ଟିରୁ ଯେତେ ଆଲୋଚନା ହୋଇଛି, ତାଙ୍କ କବିତା ସମ୍ବନ୍ଧରେ ଏଯାବତ୍ ସେପରି ଆଖିଦୃଶିଆ ଆଲୋଚନା ହୋଇପାରିନାହିଁ। ବ୍ୟକ୍ତି ଫକୀରମୋହନଙ୍କ ପ୍ରକୃତ ପରିଚୟ ରହିଛି ତାଙ୍କ କବିତାରେ। ପୁଣି ଫକୀରମୋହନ ତାଙ୍କ କବିତାରେ ଯେତିକି ବୈଚିତ୍ର୍ୟ ଦେଖାଇଛନ୍ତି ଓ ପରୀକ୍ଷା-ନିରୀକ୍ଷା କରିଛନ୍ତି, ବୋଧହୁଏ କଥା ସାହିତ୍ୟରେ ସେପରି କରିପାରିନାହାନ୍ତି ବୋଲି ମୋର ଦୃଢ଼ବିଶ୍ୱାସ। ଅଥଚ କଥାକାର ଫକୀରମୋହନଙ୍କ ନିକଟରେ କବି ଫକୀରମୋହନ ହଜିଯାଇଛନ୍ତି। ସେହି ଅଦୃଶ୍ୟମାନ ଫକୀରମୋହନଙ୍କୁ ସୁଧୀ ପାଠକ ମାନଙ୍କ ନିକଟରେ ଉପସ୍ଥାପିତ କରିବା ଏହି ଗ୍ରନ୍ଥଟିର ମୁଖ୍ୟ ଉଦ୍ଦେଶ୍ୟ।

ଗ୍ରନ୍ଥଟିର ପରିକଳ୍ପନା, ପ୍ରସ୍ତୁତି ଓ ପୂର୍ଣ୍ଣତା ୧୯୮୯ ମସିହାରୁ। ମାତ୍ର ପାଣ୍ଡୁଲିପି ରୂପେ ଏହା ପ୍ରାୟ ଉଣେଇଶି ବର୍ଷ ପଡ଼ି ରହିଥିଲା। କିଛି ବନ୍ଧୁଙ୍କର ପରାମର୍ଶକ୍ରମେ ଯେତେବେଳେ ଏହାର ପ୍ରକାଶନ ନିମିତ୍ତ ଆଗ୍ରହ ପ୍ରକାଶ କଲି, ପ୍ରକାଶକମାନଙ୍କର ଅନାଗ୍ରହ ମୋତେ ହତୋତ୍ସାହ କରିଥିଲା। କବି ଫକୀରମୋହନଙ୍କୁ ଜାଣେ କିଏ? ତାଙ୍କ ସଂପର୍କୀୟ ଏପରି ଗ୍ରନ୍ଥଟିକୁ ପଢ଼ିବ କିଏ? ଏପରି ଅନେକ ପ୍ରଶ୍ନର କି ସନ୍ତୋଷଜନକ ଉତ୍ତର ମୁଁ ଦେଇଥାନ୍ତି। ଶେଷରେ ସାହିତ୍ୟାନୁରାଗୀ ସତ୍ୟନାରାୟଣ ବୁକ୍ ଷ୍ଟୋରର ସ୍ୱତ୍ତ୍ୱାଧିକାରୀ ସତ୍ୟବାବୁ ଓ ବୁନୁବାବୁ ଗ୍ରନ୍ଥଟିକୁ ପ୍ରକାଶ କରିବାକୁ ସ୍ୱତଃସ୍ଫୂର୍ତ୍ତ ଆଗ୍ରହ ପ୍ରକାଶ କରିବାରୁ ଆଜି ଏହା ପ୍ରକାଶାଲୋକ ଦେଖିବାକୁ ସମର୍ଥ ହୋଇପାରିଛି। ଏହି ଅବକାଶରେ ସେମାନଙ୍କୁ ମୋର ଆନ୍ତରିକ ଧନ୍ୟବାଦ ଜଣାଉଛି। ଫକୀରମୋହନଙ୍କୁ ଭଲ ପାଉଥିବା ପାଠକ, ଆଲୋଚକ ଓ ଗବେଷକମାନଙ୍କୁ ଏହି ଗ୍ରନ୍ଥଟି କିଛି ପରିମାଣରେ ସାହାଯ୍ୟ କରିପାରିଲେ, ପରିଶ୍ରମ ସାର୍ଥକ ହେଲାବୋଲି ଭାବିବି। ଗ୍ରନ୍ଥ ସଂପର୍କରେ ଗଠନାତ୍ମକ ପରାମର୍ଶ ସର୍ବଦା ସ୍ୱାଗତଯୋଗ୍ୟ।

ଲେଖକ

# ସୂଚୀପତ୍ର

●

# ପ୍ରଥମ ପରିଚ୍ଛେଦ

## କବିତାର ସ୍ୱରୂପ ବିଚାର

ପୃଥିବୀରେ ସୃଷ୍ଟ ସମସ୍ତ ଜୀବଙ୍କ ମଧ୍ୟରେ ମାନବ ଶ୍ରେଷ୍ଠ । ଏହାର ଏକମାତ୍ର କାରଣ ସ୍ୱରୂପ କୁହାଯାଇପାରେ – ମାନବ ବ୍ୟତୀତ ଅନ୍ୟ କୌଣସି ଜୀବ 'ବାଣୀ' ବା 'ବାକ୍'ର ଅଧିକାରୀ ନୁହେଁ । ଏହି ବାଣୀରୂପକ ବରର ଅଧିକାରୀ ହେବା ସଙ୍ଗେ ସଙ୍ଗେ ସେ ନିଜକୁ ତଥା ନିଜର ସମାଜକୁ ଯୁଗ ଯୁଗ ଧରି ଗଠନ ଓ ବିକାଶ କାର୍ଯ୍ୟରେ ସହାୟତା କରି ଆସୁଅଛି । ଭାଷାର ସୃଷ୍ଟି ପରେ ପ୍ରଥମେ କବିତା ବିକାଶ ଲାଭ କରିଛି । ଆଦିମାନବର ଜୀବନ ଥିଲା କବିତାପରି ସରଳ, ତରଳ ଓ ସାବଲୀଳ । ବିଶ୍ୱର ପ୍ରତ୍ୟେକ ସ୍ଥାନରେ ଆଦିମାନବ କବିତାର ସତ୍ତା ଉପଲବ୍ଧ କରିଛି । ବାରିଦର ରୁମୁଝୁମୁ ଶବ୍ଦରେ, ନିର୍ଝରିଣୀର କଳକଳ ନାଦରେ, ବିହଙ୍ଗୀର ସୁମଧୁର କୂଜନରେ ଆକାଶର ବିଚିତ୍ର ବର୍ଣ୍ଣବିଭାରେ, ଦିଗନ୍ତ ବିସ୍ତାରିତ ଶସ୍ୟଶ୍ୟାମଳା ସବୁଜ କ୍ଷେତ୍ରରେ, ଜ୍ୟୋତ୍ସ୍ନାର ପୁଲକ ଭରା ସ୍ନିଗ୍ଧ ସ୍ପର୍ଶରେ, ରମଣୀର କିଙ୍କିଣିତ ପଦପାତରେ, ସାଗରର ନୀଳ ତରଙ୍ଗରେ ଓ ସର୍ବୋପରି ତା'ର ଚତୁର୍ଦ୍ଦିଗରେ ପରିବ୍ୟାପ୍ତ ଅପରୂପା ଶୋଭାମୟୀ ବନାନୀରେ ସେ ଅନୁଭବ କରିଛି କବିତାର ସତ୍ତା । ତେଣୁ ତା'ର ଆବେଗମୟୀ ଭାଷା ପରିପ୍ରକାଶର ପ୍ରଥମ ମାଧ୍ୟମ ହୋଇଛି କବିତା ।

କବିତାର ସଂଜ୍ଞା ଓ ସ୍ୱରୂପ ସମ୍ପର୍କରେ ପ୍ରାଚ୍ୟ ଏବଂ ପାଶ୍ଚାତ୍ୟ ପଣ୍ଡିତଗଣ ସ୍ୱ ସ୍ୱ ମତପ୍ରଦାନ କରିଯାଇଛନ୍ତି । କିନ୍ତୁ ଅଗଷ୍ଟାଇନ୍ କବିତାର ସଂଜ୍ଞା ସମ୍ପର୍କରେ ଏକ ନିର୍ଦ୍ଦିଷ୍ଟ ମତ ଦେବାକୁ ଅକ୍ଷମତା ପ୍ରକାଶ କରିଛନ୍ତି । କାରଣ – "କବିତା ହେଉଛି ହୃଦୟର ଅଭିବ୍ୟକ୍ତି, ଅନୁଭବର ବସ୍ତୁ, ଯାହାର ସଂଜ୍ଞା ବୁଦ୍ଧିବଦ୍ୟା ବିନିଯୋଗ କରି ଠିକ୍ ଭାବରେ ବର୍ଣ୍ଣନା କରିବା ସବୁବେଳେ ସହଜ ନୁହେଁ ।"(୧) କବିତାର ସଂଜ୍ଞା ସଂପର୍କୀୟ ଏକାଧିକ ମତ ଦୃଷ୍ଟିଗୋଚର ହେଲେହେଁ କୌଣସି ଗୋଟିଏ ସଂଜ୍ଞା କବିତାର ସାମଗ୍ରିକ ପରିଚୟ ଦେବାରେ ସମର୍ଥ ହୋଇପାରି ନାହିଁ । ବରଂ ଏହି ସଂଜ୍ଞାଗୁଡ଼ିକ କେବଳ ମାତ୍ର କବିତାର ଏକ ଦିଗ ବା ବୈଶିଷ୍ଟ୍ୟ ସମ୍ପର୍କରେ ଆଲୋକପାତ କରିଛି ଯାହା । ତଥାପି ଆଲୋଚନାର ସୌକର୍ଯ୍ୟ ଦୃଷ୍ଟିରୁ ଏଠାରେ କେତେକ ମତ ଉଦ୍ଧାର କରାଯାଇପାରେ ।

**କବିତାର ସଂଜ୍ଞା ଓ ସ୍ୱରୂପ :-**

ପ୍ରାଚୀନ କାଳରେ କବି ଓ ପଣ୍ଡିତମାନେ ସାହିତ୍ୟକୁ କବିତା ଭାବରେ ଗ୍ରହଣ କରି ସେମାନଙ୍କର ମତାମତ ପ୍ରଦାନ କରିଯାଇଛନ୍ତି । ବାକ୍ ସହିତ ଅର୍ଥର ମିଳନରେ କବିତାର ସୃଷ୍ଟି । ଭାଷା ନୁହେଁ, ଭାବହିଁ କବିତାର ପ୍ରାଣ ବୋଲି ପ୍ରଥମେ ମହାକବି କାଳିଦାସ ପ୍ରମାଣ କରିଗଲେ ।[୨] କାବ୍ୟ ପ୍ରକାଶକାର ମମ୍ମଟ ଦୋଷହୀନ ଗୁଣଯକ୍ତ ଅଳଙ୍କାର ସମ୍ପୃକ୍ତ ଏବଂ କୌଣସି କୌଣସି ସ୍ଥଳରେ ଅସ୍ଫୁଟାଳଙ୍କାର ଶବ୍ଦାର୍ଥକୁ କାବ୍ୟ (କବିତା) ଭାବରେ ସ୍ୱୀକାର କରିଛନ୍ତି ।[୩] କାବ୍ୟମୀମାଂସାକାର ରାଜଶେଖର ଶବ୍ଦାର୍ଥକୁ କାବ୍ୟର ଶରୀର ଭାବରେ ରସକୁ ଆତ୍ମା, ଗୁଣ ଶୌର୍ଯ୍ୟାଦି, ଦୋଷ କାଣତ୍ୱ ଖଞ୍ଜତ୍ୱ ପରି, ରୀତି ଅବୟବମାନଙ୍କର ଯଥା ସ୍ଥାନାବସ୍ଥିତ ପରି, ଅଳଂକାର କଟକ (ବଳୟ)କୁ କୁଣ୍ଡଳାଦି ଭାବେ ଗ୍ରହଣ କରିଛନ୍ତି ।[୪] ରାଜା କୁନ୍ତକ ବକ୍ରୋକ୍ତିକୁ କାବ୍ୟର ଶ୍ରେଷ୍ଠ ଗୁଣ ରୂପେ[୫] ବାମନ ରୀତିକୁ କାବ୍ୟାତ୍ମା ରୂପେ[୬] ଗ୍ରହଣ କରିଛନ୍ତି । ଆନନ୍ଦବର୍ଦ୍ଧନ ପ୍ରତୀୟମାନ ଅର୍ଥ (ବିଚିତ୍ର ଶବ୍ଦାର୍ଥ ଯୋଜନା ଓ ରଚନା ଭଙ୍ଗୀରେ ମନୋହର ହୋଇଥିବା ଅର୍ଥାତ୍ ଧ୍ୱନିକୁ) କାବ୍ୟର ଶ୍ରେଷ୍ଠତ୍ୱ ଗୁଣ ବା ଆତ୍ମା ଭାବରେ ସ୍ୱୀକୃତି ପ୍ରଦାନ କରିଛନ୍ତି ।[୭] ଉପରୋକ୍ତ ସମସ୍ତ ମତାମତକୁ ବିଚାର କରି ସାହିତ୍ୟଦର୍ପଣ ରଚୟିତା ବିଶ୍ୱନାଥ କବିରାଜ ରସକୁ କାବ୍ୟରେ ଶ୍ରେଷ୍ଠ ସ୍ଥାନ ଦେବା ସଙ୍ଗେ ସଙ୍ଗେ ତାହାକୁ କାବ୍ୟର ଆତ୍ମାଭାବରେ ସ୍ୱୀକୃତି ଦେଇଛନ୍ତି ।[୮] ଉପରୋକ୍ତ ଉଦ୍ଧୃତଗୁଡ଼ିକ ନିଶ୍ଚିତ ଭାବରେ ଏକ ଦେଶଦର୍ଶୀ ଓ କାବ୍ୟର ଯଥାର୍ଥ ଅର୍ଥ ଅବବୋଧ କରାଇବାରେ ଅସମର୍ଥ । ଆଧୁନିକ ଯୁଗରେ ଆମେ ଯାହାକୁ କବିତା କହୁଛୁ ତାହା ଇଂରାଜୀ 'Poetry'ର ଓଡ଼ିଆ ରୂପାନ୍ତର । ତେଣୁ ଉପରୋକ୍ତ ସଂଜ୍ଞା ଏହି 'Poetry' ବା 'କବିତା'ର ଅର୍ଥ ପ୍ରକାଶ କରିବାକୁ ଅସମର୍ଥ । ସେଥିପାଇଁ କବିତା ସମ୍ପର୍କରେ ପାଶ୍ଚାତ୍ୟ ସମାଲୋଚକ, କବି ବା ଦାର୍ଶନିକ ଅଥବା ଆଧୁନିକ ଭାରତୀୟ ଶିକ୍ଷିତମାନଙ୍କ ମତାମତ ଉଦ୍ଧାର କରିବା ଏଠାରେ ଯୁକ୍ତିଯୁକ୍ତ ମନେହୁଏ ।

ୱାର୍ଡ଼ସୱାର୍ଥ Lyrical balladsର ଦ୍ୱିତୀୟ ସଂସ୍କରଣର ମୁଖବନ୍ଧରେ ଲେଖିଛନ୍ତି ସମସ୍ତ ଜ୍ଞାନ ଓ ଚିନ୍ତାର ଚରମ ପରିପ୍ରକାଶ କବିତାରେ ଘଟିଥାଏ – ଗଭୀର ଆବେଗପୂର୍ଣ୍ଣ ପରିପ୍ରକାଶ ଯାହା ପ୍ରତ୍ୟେକ ବିଜ୍ଞାନର ସମର୍ଥନ ଲାଭ କରିଥାଏ, ତା'ର ମଧ୍ୟ ପ୍ରକାଶକ ଭାବେ କବିତା ଶ୍ରେଷ୍ଠତ୍ୱ ଲାଭ କରିଛି ।[୯] ଚାର୍ଲସ ବୌଁଦେ କବିତାକୁ ସମସ୍ତ ଶାସ୍ତ୍ରର ଏକ ସାର ସଂଗ୍ରହ ଭାବରେ ଗ୍ରହଣ କରିଛନ୍ତି । ତାଙ୍କ ମତାନୁଯାୟୀ ସଙ୍ଗୀତ୍, ଚିତ୍ର, ଅନୁଭବ ତଥା ଚିନ୍ତାଶକ୍ତିର ସମାବେଶ କବିତାରେ ଘଟିଥାଏ । ଏ କ୍ଷେତ୍ରରେ ଅନ୍ୟ

କୌଣସି କଳା, ମଣିଷ ମନର ଶୃଙ୍ଖଳିତ ପ୍ରକାଶଧାରାକୁ କବିତା ସହିତ ତୁଳନା କରାଯାଇ ନପାରେ ××× ସାମଗ୍ରିକ ଭାବରେ ଏକମାତ୍ର କବିତାହିଁ ମାନବିକ ଚିନ୍ତାର ସମସ୍ତ ଦିଗକୁ ଶୃଙ୍ଖଳିତ ଓ ସଂକ୍ଷିପ୍ତ ଭାବରେ ପ୍ରକାଶ କରିବାକୁ କ୍ଷମ ।[୧୦] କବିତା ପ୍ରାକୃତିକ ଭାବରେ ଜୀବନର ସମସ୍ତ ଘଟଣାରାଜିକୁ ତା'ର ଅଲୌକିକ କଳ୍ପନାଲୋକରେ ଆଲୋକିତ କରି, ସହୃଦୟତାର ସହିତ ପ୍ରକାଶ କରିଥାଏ ।[୧୧] କବିତା ଆମର ଏତେ ନିକଟତର ହୋଇପାରିବାର କାରଣ, ଆମ ଜୀବନର ପ୍ରତ୍ୟେକ ଘଟଣାକୁ ତା' ପୁଷ୍ପର ସୌରଭରେ ସୁରଭିତ କରି ପ୍ରକାଶ କରିଥାଏ । ସେଇଥିପାଇଁ କବିତା ଜୀବନ ପୁଷ୍ପର ଏକ ପ୍ରସ୍ଫୁଟିତ ସୌରଭ । ସାଧାରଣ ମଣିଷର ନିତିଦିନିଆ ଜୀବନର ହସକାନ୍ଦ, ଲହୁଲୁହରେ ଏ ପୁଷ୍ପ ରଞ୍ଜିତ, ଚିତ୍ରିତ, ପରିଶୋଭିତ । ସମୟ ପବନରେ ଭାସି ବୁଲୁଥିବା ଏହାର ଭୁରୁଭୁରୁ ଗନ୍ଧରେ ଜୀବନର ସ୍ୱାଦ ଅନୁଭୂତ ହୁଏ । କଳ୍ପନା ବୃକ୍ଷରେ ପ୍ରସ୍ଫୁଟିତ ଏଇ ଅପରୂପ ପୁଷ୍ପର ପ୍ରତିଟି ପାଖୁଡ଼ା ପବନରେ ନାଚି ନାଚି କେବଳ ଜୀବନର ସଙ୍ଗୀତ ଗାଏ । ଏହା ଜୀବନର ପ୍ରତିବିମ୍ବ, ଜୀବନର ପରିପ୍ରକାଶ, ପ୍ରାଣର ଚରମ ଅଭିବ୍ୟକ୍ତି, କଳ୍ପନାର ସମୁଦ୍ରରେ ଅନୁଭୂତିର ତରଙ୍ଗ, ସୃଷ୍ଟିର ସୌନ୍ଦର୍ଯ୍ୟରେ ଏହା ଚିର ଭାସ୍ୱର, ଚିର ଦୀପ୍ତିମୟ[୧୨] ବିଚାର ନୁହେଁ, ବାସ୍ତବତା; ଯୁକ୍ତି ନୁହେଁ ଅନୁଭୂତି ଏହାର ପ୍ରାଣ । ସେଥିପାଇଁ ବିଶିଷ୍ଟ ହିନ୍ଦୀ ସାହିତ୍ୟିକ ପ୍ରମୋଦ ବର୍ମା କୁହନ୍ତି – "ଅନୁଭବର ସାର୍ଥକତା ଓ ପ୍ରାମାଣିକତା କବିତାର ଏକମାତ୍ର କଷଟି ପଥର । କବିତାର ଜନ୍ମ କୌଣସି ନିର୍ଦ୍ଦିଷ୍ଟ ସିଦ୍ଧାନ୍ତର ବିଚାରଗତ ଆଦର୍ଶ ଉପରେ ପ୍ରତିଷ୍ଠିତ ନୁହେଁ; ବରଂ ସରଳ ମନର ବାସ୍ତବ ସର୍ଜନାତ୍ମକ ଅନୁଭୂତିରୁ[୧୩] ଏହାର ସୃଷ୍ଟି । ଯେଉଁ କବିତାରେ ଗଭୀର ଭାବାନୁଭୂତି, ଆନନ୍ଦ, ଶକ୍ତି, କବିତ୍ୱର ଚରମ ଅଭିବ୍ୟକ୍ତି, ଭାବର ଗଭୀରତା ତଥା ଗଠନାତ୍ମକ ଶକ୍ତି ନିହିତ ତାକୁ ଉତ୍ତମ କବିତା ଭାବରେ ଗ୍ରହଣ କରାଯାଇଥାଏ ।[୧୪] ସେଇଥିପାଇଁ ବିଶିଷ୍ଟ କବି ତା' ସମାଜର କଥା କବିତାରେ ପ୍ରକାଶ କରେ, ସାଧାରଣ ଲୋକର କଥା କୁହେ, ସାଧାରଣ ଜୀବନରୁ ଉପାଦାନ ସଂଗ୍ରହ କରେ ଏବଂ ତା' ପରିବର୍ତ୍ତେ ସୁପ୍ତ ସମାଜକୁ ଜାଗ୍ରତ କରେ, ଜୀବନ ପ୍ରଦାନ କରେ ।[୧୫] କବିତାର ଲକ୍ଷ୍ୟ ବା କାର୍ଯ୍ୟ ସମ୍ପର୍କରେ ମତପ୍ରଦାନ କରି ଜଣେ ବିଶିଷ୍ଟ ଇଂରାଜୀ ସମାଲୋଚକ କହିଛନ୍ତି – "The function of Poetry is thus seen to be to compel attention × × × The function of Poetry is to persuade us that its subject is worth attending to and is discovered at the end of a discussion of the kinds of poetry."[୧୬]

ବହୁ ଉପାଦାନର ସମଷ୍ଟିରେ କବିତାର ସୃଷ୍ଟି । ହୃଦୟ ଦେଇ ଏହାକୁ ଅନୁଭବ କରାଯାଇପାରେ, ମନଦେଇ ରସମାଧୁରୀ ଗ୍ରହଣ କରାଯାଏ । "କାରଣ ମାନବିକ

ସଂସ୍କୃତିର ଇତିହାସରେ ଯେତେପ୍ରକାର ମାନସସମ୍ଭୂତ ଶିଳ୍ପ ରହିଛି, କବିତା ସେମାନଙ୍କ ମଧ୍ୟରେ ବୌଦ୍ଧିକତା ଓ ଅନ୍ତରଙ୍ଗତା ଦୃଷ୍ଟିରୁ ସୂକ୍ଷ୍ମତମ ଶ୍ରେଷ୍ଠ ଶିଳ୍ପ । ଭାଷା, ଭାବ, କଳ୍ପନା, ଆବେଗ, ଆନନ୍ଦ, ଯନ୍ତ୍ରଣା, ଚିତ୍ରକଳ୍ପ, ବ୍ୟଞ୍ଜନା, ସଞ୍ଜମ ଓ ଛନ୍ଦୋବିନ୍ୟାସ – ଏହି ଦଶଟି ଉପାଦାନକୁ ନେଇ କବିତାର ସୃଷ୍ଟି ଓ ବିକାଶ । ଏହି ଦଶଗୋଟି ଉପାଦାନର ମିଶ୍ରଣରେ ଉତ୍ପାଦିତ ରସୋତ୍ତୀର୍ଣ୍ଣ ମନନ ଶିଳ୍ପକୁହିଁ କୁହାଯାଏ କବିତା ।[୧୭] ବହିଃଜଗତର ଚିନ୍ତା, ଚେତନା, ଭାବନାରାଶିକୁ ସରଳ ଭାବରେ କବିତାହିଁ ପ୍ରକାଶ କରିଥାଏ । ତେଣୁ କବିତାରେ ବହିଃଜଗତର ଚିନ୍ତାଚେତନା ଓ ଅନ୍ତଃଜଗତର ଭାବ-ଭାବନା ପ୍ରକାଶ ଲାଭକରେ । ଏହି ଭାବନା ପ୍ରକାଶ ସମୟରେ କବି ଦୃଷ୍ଟିରେ ଥାଏ ଜଗତ୍ ଓ ଜୀବନର ଯନ୍ତ୍ରଣା । ଜୀବଜଗତର ସୁନ୍ଦରତମ ପଦାର୍ଥ ପ୍ରତି ତା'ର ଥାଏ ସମ୍ବେଦନଶୀଳ ଦୃଷ୍ଟିଭଙ୍ଗୀ । ସେଥିପାଇଁ କେତେବେଳେ କବିର କବିତାରେ ଶୁଣିବାକୁ ମିଳିଥାଏ ଯନ୍ତ୍ରଣାକ୍ଲିଷ୍ଟ ମାନବର ଆର୍ତ୍ତ ଚିତ୍କାରତ ଅନ୍ୟ କେତେବେଳେ ଶୁଣିବାକୁ ମିଳିଥାଏ ମାନବର ଜୀବନସଙ୍ଗୀତ ତଥା ରୁଚିମୟ ବସ୍ତୁର ସାର୍ଥକ ପରିପ୍ରକାଶ । କବିତା କବିର ଏକାନ୍ତ ବ୍ୟକ୍ତିଗତ ହେଲେ ମଧ୍ୟ ଏଥିରେ ଥାଏ ସାମୂହିକ ଆବେଦନ ତଥା ସମଗ୍ର ବିଶ୍ୱର କଥା । ସେଇଥିପାଇଁ ଆଜିର କବିତା ଜଣର ନ ହୋଇ ହୋଇ ପାରିଛି ଗଣର । ବିଶ୍ୱଚିନ୍ତା ଓ ଚିନ୍ତନର ଅପୂର୍ବ ପରିପ୍ରକାଶ ଘଟିଛି କବିତାରେ । କବି ହୋଇଛି ସମାଜ ଜୀବନର ସାର୍ଥକ ପ୍ରତିନିଧି ଓ ରୂପକାର । କବିତା ହୋଇଛି ସମାଜ ଓ ବ୍ୟକ୍ତି ଜୀବନର ସାର୍ଥକ ପରିପ୍ରକାଶକ । ଏହି ବହିଃପ୍ରକାଶରେ ମାନବ ଦେଖିଛି ତା' ଜୀବନର ପ୍ରତ୍ୟେକ କେନ୍ଦ୍ରବିନ୍ଦୁକୁ । ଜୀବନ ଜିଜ୍ଞାସା ଆଜି କବିତାର ସାରକଥା । "ବେଦନାର ଭୋକ୍ତା ଓ ଦ୍ରଷ୍ଟା ହୋଇ ନ ପାରିଲେ କବିତା ରଚନା ଅସମ୍ଭବ । ବାହ୍ୟଜଗତର ରୂପ, ରସ, ଗନ୍ଧ, ସ୍ପର୍ଶ ଓ ଅନ୍ତର୍ଜଗତ୍ର ଭାବନା, ବେଦନା ଓ କଳ୍ପନାକୁ ଅନୁଭୂତି ରସାଣିତ କରି ଯେ ରୂପଶ୍ରୀ ଦାନ କରିପାରେ ସେ ହିଁ ପ୍ରକୃତ କବି ।[୧୮] କଳ୍ପନା ଓ ଅନୁଭୂତିର ପ୍ରକାଶ ସଙ୍ଗେ ସଙ୍ଗେ ଜୀବନର ବ୍ୟାଖ୍ୟା କବିତାର ମୁଖ୍ୟ ଉଦ୍ଦେଶ୍ୟ ହେବା ଉଚିତ୍ ।[୧୯] କାରଣ ଜୀବନକୁ ଅନ୍ତରଙ୍ଗ ଦୃଷ୍ଟି ଦେଇ ନ ଦେଖିଲେ କବିତା ହୋଇପଡ଼ିବ ସାରହୀନ ମାତ୍ର କେତେଗୁଡ଼ିଏ ପଙ୍କ୍ତିର ସମାହାର । ସମୟର ସ୍ପନ୍ଦନ କବିତାର ମୁଖ୍ୟସ୍ୱର । ଏହା ବ୍ୟତୀତ ଭାଷା, ବର୍ଣ୍ଣ, ରୂପ, ଧର୍ମ ପ୍ରଭୃତି କବିତାର ଉପକରଣ ଓ ସହାୟକ ବସ୍ତୁ । ଶେଲୀଙ୍କ କବିତା ସପକ୍ଷରେ ଅନୁଯାୟୀ –, କବିତା ଏକ ଶୃଙ୍ଖଳିତ କଳା ଓ ଏହାକୁ କଳ୍ପନାର ପ୍ରକାଶକ ଭାବରେ ବ୍ୟାଖ୍ୟା କରାଯାଇପାରେ । ମଣିଷ ଜାତିର ଆରମ୍ଭ ସହିତ କବିତା ପ୍ରାୟ ସହଜାତ ବୋଲି ସେ ମତପ୍ରଦାନ କରନ୍ତି । ପୁଣି କବିଙ୍କୁ ସେ କେବଳ ଭାଷାର ଲେଖକ ଭାବରେ ନୁହେଁ, ତାଙ୍କୁ ସେ ଆଇନ୍ ଓ ବିଧିବିଧାନର ପ୍ରବର୍ତ୍ତକ,

ସଭ୍ୟସମାଜର ପ୍ରତିଷ୍ଠାତା ଓ ଜୀବନଯାପନର ରୁଚିକର କଳାର ଉଦ୍‌ଭାବକ ଭାବରେ ମଧ୍ୟ ସମ୍ମାନ ପ୍ରଦର୍ଶନ କରିଛନ୍ତି । ଏହାଛଡ଼ା ଅଦୃଶ୍ୟ ଜଗତକୁ ଅନୁଭବ କରି ସତ୍ୟ ଓ ସୁନ୍ଦରର ନିକଟକୁ ଘେନି ଆସିବାର କ୍ଷମତା କେବଳ କବିମାନଙ୍କର ଅଛି ବୋଲି ସେ ସ୍ୱୀକାର କରିଛନ୍ତି ।[୨୦] ତେଣୁ କବିତା ରୂପ ମଧ୍ୟରେ ଅରୂପର, ବିନ୍ଦୁ ମଧ୍ୟରେ ସିନ୍ଧୁର ସନ୍ଧାନ ଦେଇଥାଏ । କବି ପ୍ରଥମେ ମାନସ ଜଗତରେ ବିଚରଣ କରି ତା' କବିତାପାଇଁ ଉପାଦାନ ସଂଗ୍ରହ କରିଥାଏ । କିନ୍ତୁ ଯେଉଁ ମୁହୂର୍ତ୍ତରେ କବି ନିଜ ଅନୁଭୂତି ଓ ଉପଲବ୍ଧିକୁ ସୂକ୍ଷ୍ମ ଶିଳ୍ପ ଚେତନା ସାହାଯ୍ୟରେ ଶବ୍ଦ, ଛନ୍ଦ, ରୂପ, ରସରେ ରସାଣିତ କରି କାବ୍ୟ ରୂପ ଦାନ କରେ, ସେତେବେଳେ ସେ ହୁଏ ଜୀବନ ଓ ଜଗତ ରହସ୍ୟର ଉଦ୍‌ଗାତା । × × କବିର ଲେଖନୀରେ ମୂର୍ତ୍ତିମନ୍ତ ହେଲାପରେ ସେ (କବିତା) ରସିକ-ପାଠକର ହୃଦୟରେ ଆସନ ଲାଭ କରେ ।[୨୧]

ସୁନ୍ଦର ଭାବ କବିତାର ଶରୀର ସଦୃଶ, ଚିନ୍ତାଶକ୍ତି କବିତାର କଞ୍ଚାମାଲ, ରୀତି ଜୀବନ ଓ ସର୍ବୋପରି କଳ୍ପନାଲୋକ କବିତାକୁ ଏକ ସୁନ୍ଦର ସୃଷ୍ଟି ରୂପେ ଗଢ଼ି ତୋଳେ । ପରିବେଶ ଓ ସମୟ କବିତାରେ ଚିରନ୍ତନ ପରିବର୍ତ୍ତନ ଆଣିଥାଏ । ସେଇଥିପାଇଁ କବିଙ୍କୁ କୁହାଯାଏ ଯୁଗସ୍ରଷ୍ଟା । ସାମସାମୟିକ ଚିନ୍ତା ଓ ଚେତନାର ଚରମ ପରିପ୍ରକାଶ ଘଟେ କବିତାରେ । ତେଣୁ ଏକ ବିଶିଷ୍ଟ କବିର କବିତା ପାଠ କରିବାର ଅର୍ଥ, ସାମସାମୟିକ ସମାଜର ଭାବାଲୋକକୁ ଅନୁଭବ କରିବା ।[୨୨] ସମସ୍ତ ପ୍ରକାର ଚିନ୍ତାଧାରାକୁ ସମାଜମୁଖୀନତା କରି କବି ତା'ର କବିତାରେ ପ୍ରକାଶ କରିଥାଏ । ସେଇଥିପାଇଁ ସାହିତ୍ୟର ଅନ୍ୟ ବିଭାଗ ଅପେକ୍ଷା କବିତା ବିଭାଗଟି ଗୁରୁତ୍ୱପୂର୍ଣ୍ଣ ମନେହୋଇଥାଏ । ସମାଲୋଚକଙ୍କ ମତରେ "କାବ୍ୟ-କବିତା ଛଡ଼ା ବୋଧହୁଏ ସାହିତ୍ୟର ଅନ୍ୟ କୌଣସି ବିଭାଗରେ ସକଳ ପ୍ରକାର ଚିନ୍ତାଧାରା ଏତେ ସାବଲୀଳ ଭାବରେ ରୂପାନ୍ୱିତ ହୋଇପାରିବ ନାହିଁ । ଆଧାତ୍ମିକ ଚିନ୍ତାଧାରା ଓ ଶୂନ୍ୟ ସଞ୍ଚାର ସ୍ୱପ୍ନପରି ଅରୂପଭାବନା ଉପନ୍ୟାସ, ଗଳ୍ପ, ନାଟକ, ପ୍ରବନ୍ଧାଦିରେ ସ୍ୱାଗତଯୋଗ୍ୟ ନ ହୋଇ ବରଂ ଅନେକ ସମୟରେ ଅବାଞ୍ଛିତ ବିବେଚିତ ହୋଇଥାଏ ଏବଂ ଏଗୁଡ଼ିକରେ ଏହା ଏତେ ସ୍ପଷ୍ଟ ଭାବରେ ଫୁଟିପାରେ ନାହିଁ, ଯେପରି ଫୁଟିପାରେ କବିତାରେ ।[୨୩] କେବଳ ପ୍ରାଣର ଆବେଗ ବା ସ୍ୱତଃସ୍ଫୂର୍ତ୍ତ ଉଚ୍ଛ୍ୱାସ ଘେନି କବି କବିତା ରଚନା କରନ୍ତି ନାହିଁ । ଦେଶ, କାଳ ଓ ପାତ୍ର ସମ୍ବନ୍ଧରେ ବିପୁଳ ଜ୍ଞାନରାଶିର ସେ ଅଧିକାରୀ । ପ୍ରକୃତି ଓ ପ୍ରବୃତ୍ତିଠାରୁ ଭିନ୍ନ ହେବାର ସାଧନା ଓ ଶ୍ରମର ସଂକେତ ତାଙ୍କ କବିତାରେ ପରିପୂର୍ଣ୍ଣ ହୋଇ ରହିଥାଏ । ତାଙ୍କ କବିତା ମାନବ ଜ୍ଞାନର ଶ୍ରେଷ୍ଠ ବିକାଶ ଓ ମାନବ ମନର ସର୍ବଶ୍ରେଷ୍ଠ ଶୃଙ୍ଖଳା ପ୍ରକାଶର ପ୍ରତୀକ ।[୨୪] ସେଇଥିପାଇଁ କବିତା ବା କଳା କୌଣସ

ଯୁକ୍ତି ବା ତର୍କକୁ ଅପେକ୍ଷା ନ କରି ବାସ୍ତବ ସତ୍ୟକୁ ଶୀଘ୍ର ପ୍ରକାଶ କରିଦିଏ । କବିତା ମାଧ୍ୟମରେ ସୌନ୍ଦର୍ଯ୍ୟରୁ ଉଦ୍‌ଭୁତ ପ୍ରେରଣାକୁ କଳାକାର ବା କବି ସତ୍ୟର ପ୍ରଲେପ ଦେଇ ପ୍ରକାଶ କରିଥାଏ ।[୨୫] କବିତା ଏକ କଳା ବା ଖିଆଲୀ ମନର ପ୍ରକାଶ ଏବଂ ଧର୍ମୋନ୍ମାଦ ହୋଇପାରେ । ତଥାପି କଳାଦୃଷ୍ଟିରୁ ଏହାର ନିର୍ଦ୍ଦିଷ୍ଟ ଆଭିମୁଖ୍ୟ ରହିଛି, ନିର୍ଦ୍ଦିଷ୍ଟ ପରିସମାପ୍ତି ରହିଛି ଓ ଏହା କେତେକ ନିୟମର ବଶବର୍ତ୍ତୀ ମଧ୍ୟ । ଏଣୁ ଇଂରାଜୀ ସମାଲୋଚକ ଜେମ୍‌ସ ସୁଥରଲାଣ୍ଡ ଯଥାର୍ଥରେ କୁହନ୍ତି – "In short poetry is either an art or whimsy and fanaticism. It is an art, it follows that it must propose an end to itself and afterwards lay down proper means for the attaining that end. For this is undeniable that there are proper means for the attaining of every end and those proper means in poetry we call the rules."[୨୬] ।

## କବିତାର ଦୃଷ୍ଟି ଓ ଦିଗନ୍ତ

କବି ଦୃଷ୍ଟି ପ୍ରସାରିତ । ଏହାର ବ୍ୟାପ୍ତି ସ୍ୱର୍ଗ, ମର୍ତ୍ତ୍ୟ, ପାତାଳର ପ୍ରତ୍ୟେକ ସୀମାରେଖାକୁ ସ୍ପର୍ଶ କରେ । କୌଣସି ସୀମିତ ପରିବେଶ ଓ ପରିସୀମା ମଧ୍ୟରେ ଏହାକୁ ବାନ୍ଧି ରଖିବା ସହଜସାଧ୍ୟ ନୁହେଁ । କ୍ଷୁଦ୍ର କୀଟପତଙ୍ଗଠାରୁ ଆରମ୍ଭ କରି ମହାମାନବ ପର୍ଯ୍ୟନ୍ତ ପ୍ରତ୍ୟେକ ତା'ର ପରିସର ଅନ୍ତର୍ଭୁକ୍ତ । କବି ଦୃଷ୍ଟି ଜୀବନକୁ ଦେଖେ ଅନ୍ୟଦୃଷ୍ଟିରେ । ତା' ଦୃଷ୍ଟିରେ – "ଜୀବନ ଏକ ଚିତ୍କାର ନୁହେଁ – ଏକ ଆନନ୍ଦ, ନିଷ୍ଫଳ ଆବେଗ ନୁହେଁ – ସଫଳ ଏକ ସଙ୍ଗୀତ – ଏହି ସତ୍ୟକୁ କବିତା ସାହିତ୍ୟର ଏକ କମନୀୟ ବିଭାବ ଭାବେ ପ୍ରତିପାଦନ କରେ ଚେତନ ସମ୍ବେଦନରେ । ସୃଜନ ଧ୍ୟାନରେ କବିତା ସାହିତ୍ୟର ଅନ୍ୟାନ୍ୟ ବିଭାବଠାରୁ ଅଧିକ ପ୍ରବଣଶୀଳ ଓ ମର୍ମଗାମୀ । ତା'ର ଦୃଷ୍ଟି ଦ୍ୟୁତିମୟ[୨୭] । ସମସ୍ତ ଜ୍ଞାନର ଭଣ୍ଡାର କବିତା ରାଜ୍ୟ । ପ୍ରତ୍ୟେକ ଜ୍ଞାନର ଏକ ସମ୍ମିଳିତ ଆନନ୍ଦ ଏଥିରୁ ଉପଲବ୍ଧ କରାଯାଇପାରେ । କବିତାର ପରିସୀମା ମଧ୍ୟରେ ସମସ୍ତ ଶାସ୍ତ୍ର ଯଥା – ଦର୍ଶନ, ଆୟୁର୍ବେଦ, ଗଣିତ, ବ୍ୟାକରଣ ବିଭିନ୍ନ ପ୍ରକାର ହସ୍ତକର୍ମ ବିଦ୍ୟା, କ୍ରୀଡ଼ା, ଆମୋଦ ପ୍ରମୋଦ, ଅଭିଧାନ ପ୍ରଭୃତି ଅନ୍ତର୍ଭୁକ୍ତ । ତେଣୁ ତା'ର ଦୃଷ୍ଟି ବ୍ୟାପକ ଓ ପରିସର ମଧ୍ୟ ବିସ୍ତୃତ । ଯେକୌଣସି ସାମାନ୍ୟ ପଦାର୍ଥ ମଧ୍ୟ କବିତାର ଉତ୍ସ ହେବାକୁ କ୍ଷମ ।[୨୮] ଯେଉଁଠାରେ କବିତା ଭାବର ଅବାଧ ଆଦାନ ପ୍ରଦାନରେ ବାଧା ସୃଷ୍ଟି କରିଥାଏ ବା ଯଥାରୀତି ଭାବପ୍ରକାଶ କରି ନ ପାରେ, ଭାବ ସଞ୍ଚରଣରେ ସ୍ୱତଃସ୍ଫୂର୍ତ୍ତି କିମ୍ବା ଗଭୀର ଭାବାନୁଭୂତି ଯେଉଁଠି ପ୍ରଗାଢ଼ତାହୀନ, ସେ କବିତାକୁ ଆମେ ତ୍ରୁଟିପୂର୍ଣ୍ଣ କବିତା ଆଖ୍ୟା ଦେବା ଉଚିତ ।[୨୯] କାରଣ କବିତାର ଦୃଷ୍ଟି ସେଠାରେ

ସଂକୁଚିତ ହୋଇଯାଏ । ଯେଉଁ ମହାନ ଆଦର୍ଶର ବାହକ ଭାବେ କବିତାକୁ ଜନସାଧାରଣ ସପ୍ରଶଂସ ଦୃଷ୍ଟିରେ ଚାହିଁଥାନ୍ତି, ସେହି ଜନସାଧାରଣଙ୍କର ଆଶା ଆକାଂକ୍ଷାକୁ ପୂରଣ କରିବାରେ ସେ ଅସାମର୍ଥ୍ୟ ପ୍ରକାଶ କରେ । କବିତା ସଚେତନ ଭାବରେ ଯୁଗର ପ୍ରବୃତ୍ତିକୁ ପ୍ରକାଶ କରିବା ଉଚିତ । ଯଦି କବି ସଚେତନ ଭାବରେ ନିଜ ସମୟର ଘଟଣା ପ୍ରକାଶରେ ଅକ୍ଷମତା ପ୍ରକାଶ କରେ, ସେ କବିତା କେବେ କାଳଜୟୀ ହେଇ ନ ପାରେ । ତେଣୁ ଏଫ୍.ଆର୍. ଲେଭିସ କୁହନ୍ତି – "Poetry tends in every age to confine itself by ideas of the essentially poetical which when the conditions which gave rise to them have changed, bar the poet from his most valuable material, the material that is most significant to sensitive and adequate minds in his own day; or else sensitive and adequate minds are barred out of poetry."[୩୦]

ଜୀବନର ସାମଲୋଚନା କବିତା । ଅର୍ଥାତ୍ ଜୀବନର ପ୍ରତ୍ୟେକ ଦିଗକୁ ଏହା ଆଲେକିତ କରି ତା' ସମ୍ପର୍କରେ ମତବ୍ୟକ୍ତ କରିଥାଏ । ଏହା କେବଳ ଅତୀତ ସହିତ ବର୍ତ୍ତମାନର ନୁହେଁ, ଭବିଷ୍ୟତ ପାଇଁ ମଧ୍ୟ ପଥ ନିର୍ଦ୍ଦେଶ କରିଥାଏ । ଜାତୀୟ ମାନସ ଓ ବୌଦ୍ଧିକ ପରମ୍ପରାଦ୍ୱାରା କବି ଅନୁପ୍ରାଣିତ ହୋଇ ଆମର ସାମାଜିକ ଜୀବନକୁ ସରଳ ଓ ଶୃଙ୍ଖଳିତ କରିଥାଏ । ଯଥାର୍ଥରେ ମନୀଷୀ ଅରବିନ୍ଦ କୁହନ୍ତି– "କବିର ସୃଷ୍ଟି ବା କୃତି ଏକମାତ୍ର କବି ଏବଂ ତା'ର ଯୁଗ ଉପରେ ନିର୍ଭରଶୀଳ ନୁହେଁ, ଜାତୀୟମାନସ ଏବଂ ତତ୍ସୃଷ୍ଟ ଆଧ୍ୟାତ୍ମିକ ଏବଂ ବୌଦ୍ଧିକ ପରମ୍ପରା ଓ ପରିବେଶ ଉପରେ ମଧ୍ୟ ଏହା ନିର୍ଭରଶୀଳ ।"[୩୧] କବିତାର ଦୃଷ୍ଟି ଓ ଦିଗନ୍ତ କେବଳ ବର୍ତ୍ତମାନର ପୃଷ୍ଠଭୂମି ଉପରେ ଆଧାରିତ ନୁହେଁ; ବରଂ ଦୂର ଅତୀତର ଭାବରାଶି ଓ ଭବିଷ୍ୟତର ନିର୍ଦ୍ଦେଶନାମା ଉପରେ ବର୍ତ୍ତମାନକୁ ଆଲୋକିତ କରେ ।

କବିର ଦୃଷ୍ଟି ପ୍ରଜ୍ଞାର ଦୃଷ୍ଟି, ବୋଧର ଦୃଷ୍ଟି ଓ ରସର ଦୃଷ୍ଟି । ପ୍ରଜ୍ଞା ଦୃଷ୍ଟି ବଳରେ ସେ ଜଗତର ଗତିଶୀଳ ଘଟଣାସ୍ରୋତକୁ ଲକ୍ଷ୍ୟକରି ସାଧରଣ ଦୃଷ୍ଟିର ଊର୍ଦ୍ଧ୍ୱରେ ଅନ୍ୟ ଏକ ଦୃଷ୍ଟି ବଳରେ କୁତ୍ସିତକୁ ସୁନ୍ଦରରୂପେ ରୂପାୟିତ କରେ । ଧ୍ୱଂସ ମଧ୍ୟରେ ସେ ଦେଖେ ସର୍ଜନର ଧାରା । "ବୋଧଦୃଷ୍ଟିରେ ଗୋଟିଏ ଜାଗତିକ ବସ୍ତୁର ଅତୀତ, ବର୍ତ୍ତମାନ ତଥା ଭବିଷ୍ୟତ ପ୍ରକଟିତ ହୁଏ । ତାହାର ସାରବତ୍ତା, ସ୍ଥାୟିତ୍ୱ, ମୂଲ୍ୟ, ଶେଷ ପରିଣାମ ଏହି ଦୃଷ୍ଟିରେ ଧରାପଡ଼ିଯାଏ । × × ରସ ଦୃଷ୍ଟିରେ ସଂସାର ସ୍ୱପ୍ନିଳ, ଉପଭୋଗମୟ । × × ଏହି ଭଙ୍ଗୀରେ କବିତାର ରାଜ୍ୟ – ସୁନ୍ଦରର ରାଜ୍ୟ, ଭୋଗର ରାଜ୍ୟ । ରସଜ୍ଞ କବି ନାରୀକୁ, ପ୍ରକୃତିକୁ ସୌନ୍ଦର୍ଯ୍ୟ ହେତୁ ପ୍ରଶଂସମାନ ଦୃଷ୍ଟିରେ ଦେଖିଥାଏ ।"[୩୨]

ପ୍ରକୃତି ସହିତ ମାନବର ସମ୍ପର୍କ ଅଭିନ୍ନ । କାରଣ ପ୍ରକୃତିକ୍ରୋଡ଼ରୁ ମାନବର ଜନ୍ମ ଓ ବିକାଶ । 'ସ୍ଥୂଳତଃ ବିଚାର କଲେ କବିତାର ବିଷୟବସ୍ତୁ ହେଉଛି ବ୍ୟକ୍ତି, ସମାଜ ଓ ପ୍ରକୃତି । କବି ତାର ଅପରୂପ କଳ୍ପନାଶକ୍ତି ବା ପ୍ରଜ୍ଞା ସାହାଯ୍ୟରେ କବିତାର ବିଷୟବସ୍ତୁକୁ ଏକ ଅପୂର୍ବ ରୂପ ପ୍ରଦାନ କରିପାରେ । କାବ୍ୟାନୁଭୂତି ଏପରି ଏକ ତୁରୀୟାବସ୍ଥା ଲାଭ କରେ, ଯେତେବେଳେ ପାଠକ ଜଗତ ଓ ଜୀବନରୁ ସମ୍ପୂର୍ଣ୍ଣ ବିସ୍ମୃତ ହୋଇ ଏକ ଆଦର୍ଶମୟ ଜଗତ ଭିତରେ ଭ୍ରମଣ କରିବାକୁ ଲାଗେ ।[୩୩] ତେଣୁ କବିର ସମ୍ପର୍କର ସରହଦ ଖୁବ୍ ବ୍ୟାପକ । କବିତାର ସମ୍ପର୍କ ସେହିପରି ସମାଜ ଜୀବନଠାରୁ ଆରମ୍ଭକରି ରାଜନୀତି ପର୍ଯ୍ୟନ୍ତ ପରିବ୍ୟାପ୍ତ । ଏହାର ପରିସରକୁ ଏକ ନିର୍ଦ୍ଦିଷ୍ଟ ସଂଜ୍ଞା ମଧ୍ୟରେ ଆବଦ୍ଧ କରାଯିବା ସହଜ ନୁହେଁ । ସାଧାରଣ ଭାବରେ ଏହାକୁ ଯେପରି ଚିନ୍ତା କରାଯାଇଥାଏ, ଏହା କିନ୍ତୁ ଅବିକଳ ତାହା ନୁହେଁ ।[୩୪] ସୌନ୍ଦର୍ଯ୍ୟ ଜଗତଠାରୁ ଆରମ୍ଭକରି ଜ୍ଞାନବିଜ୍ଞାନର ପ୍ରତ୍ୟେକ ଦିଗକୁ ଏହା ତନ୍ନତନ୍ନ କରି ବିଶ୍ଳେଷଣ କରେ । ପ୍ରତ୍ୟେକ ବିଷୟର ପରିପୂର୍ଣ୍ଣ ଉପଲବ୍ଧି କେବଳ କବିତାରେ ହିଁ ସମ୍ଭବ । ସମାଲୋଚକଙ୍କ ଭାଷାରେ – "ଜ୍ଞାନ ଓ ବିଜ୍ଞାନର ସକଳ ଦିଗନ୍ତକୁ ଛୁଇଁ ଛୁଇଁ ସମକାଳୀନ ଜୀବନର ଯେଉଁ ସର୍ବାଙ୍ଗୀନ ଚେତନା ବିଶ୍ୱବ୍ୟାପୀ ପରିସ୍ଫୁରମାଣ ରହିଛି, ତାହାରି ପରିପୂର୍ଣ୍ଣ ଉପଲବ୍ଧି ଓ ଅନୁଭବ ଆମ କବିତାରେ ନୂତନ ବିନ୍ୟାସ ପଦ୍ଧତି ମଧ୍ୟରେ ପ୍ରକଟିତ ହୋଇଛି ।"[୩୫]

ସମାଜ ସହିତ ମାନବର ସମ୍ପର୍କ ଅଭିନ୍ନ । କାରଣ ସମାଜ ବିନା ମାନବ ଓ ମାନବ ବିନା ସମାଜର ଅସ୍ତିତ୍ୱ ଅକଳ୍ପନୀୟ । କବିତା ତେଣୁ ସମାଜ ଓ ମାନବ ପ୍ରତି ଉପଯୁକ୍ତ ଧ୍ୟାନ ଦେଇଥାଏ । ବିଜ୍ଞାନର ଅଭୂତପୂର୍ବ ବିକାଶ ଫଳରେ ମାନବର ସଂକୀର୍ଣ୍ଣ ପରିସର କ୍ରମଶଃ ପ୍ରସାରିତ ହୋଇଯାଇଛି । ବିଶ୍ୱର ଚିନ୍ତାଚେତନା ଆଜି କବିତା ରାଜ୍ୟରେ ଆଲୋଡ଼ନ ସୃଷ୍ଟି କରିଛି । କବି ସମ୍ମୁଖରେ ଆଜି ଅନେକ ସମସ୍ୟା । ଏ ସମସ୍ୟାର ଅନ୍ତ ନାହିଁ । ଡଃ. ନରେନ୍ଦ୍ର ନାଥ ମିଶ୍ର ଏହି ସମସ୍ୟାର କଥା ଉଲ୍ଲେଖ କରି କହିଛନ୍ତି – "କବିତା ଭାଷା ମାଧ୍ୟମ କଳା । କଳା ବ୍ୟକ୍ତି ମନର ସୃଷ୍ଟି । ଭାଷା ସମାଜର ସୃଷ୍ଟ । ବହୁର ସମାବେଶରେ ସମାଜ । ବହୁର ବିଚିତ୍ର ସଂହତି, ଏକୀଭୂତ ପ୍ରକାଶ ବିଶ୍ୱ । ବିଶ୍ୱମୁଖୀନତା ନା ଆତ୍ମମୁଖୀନତା – ସମାଜମୁଖୀ ବାସ୍ତବତା ବା ବ୍ୟକ୍ତିମୁଖୀ ସ୍ୱୈରତନ୍ତ୍ରତା । ବିଶ୍ୱମୁଖୀ ଆଶକ୍ତି ନା ଆତ୍ମ ସଚେତନ ନିର୍ଲିପ୍ତତା – ପୁଣି ଏଇ ଉଭୟର ସମନ୍ୱୟ ନା ବିରୋଧ ଅଥବା ଏକ ଆପେକ୍ଷିକ ନିର୍ବାଚନ, ମଧ୍ୟମ ମାର୍ଗର ସନ୍ଧାନ – ଏହା ଆଧୁନିକ ଜୀବନର ସମସ୍ୟା । ଏହା ମଧ୍ୟ କବିଙ୍କ ସମସ୍ୟା, କବିତାର ସମସ୍ୟା ।[୩୬]

କବିତାର କଥା କ'ଣ ହେବା ଉଚିତ ଏ ସମ୍ପର୍କରେ ଅନେକ ଆଲୋଚନା ହୋଇଯାଇଛି । ସଂକ୍ଷେପରେ କହିଲେ ସାଧାରଣ ଜୀବନର ହସ-କାନ୍ଦ, ଲହୁ ଲୁହ ଓ ମାନବ ସମାଜର କଥା ଯିଏ ଅପୂର୍ବ କମନୀୟ କଳାତ୍ମକ ରୂପରେ ପ୍ରକାଶ କରେ, ତାହାହିଁ ସଚ୍ଚା କବିତା । କବିତା ଜଣକର ନୁହେଁ – ଗଣଙ୍କର କଥା କୁହେ । ଅତୀତକୁ ବିକୃତ ନ କରି ବରଂ ତାକୁ ସ୍ୱୀକୃତି ପ୍ରଦାନ ପୂର୍ବକ ଭବିଷ୍ୟତ ଜୀବନ ସ୍ପଷ୍ଟ ହୋଇ ଉଠେ ଓ ସେହି ଭବିଷ୍ୟତର କେନ୍ଦ୍ରବିନ୍ଦୁରେ ଅତୀତ ନବଜନ୍ମ ଗ୍ରହଣ କରେ । ସର୍ଜନଶୀଳତାରୁ ସ୍ରଷ୍ଟାର ସୃଷ୍ଟି ସମ୍ଭବ । ଏହା ଏକ ବିନ୍ଦୁରୁ ବିସ୍ତାରିତ ହୋଇ କ୍ରମଶଃ ବିଶ୍ୱବିନ୍ଦୁରେ ରୂପାୟିତ ହୋଇଯାଏ । "ଠିକ୍ ସେହିପରି କବିତା ସମଗ୍ରଭାବେ ସ୍ରଷ୍ଟା କବିର ଆତ୍ମରୂପ । ତହିଁରେ ଚେତନାର ପ୍ରବାହ, ନିବିଷ୍ଟତାର ଗାମ୍ଭୀର୍ଯ୍ୟ, ପ୍ରକାଶର ନୈପୁଣ୍ୟ, ଦୃଷ୍ଟିର ଦୀପ୍ତି ଘଟଣାର ଅବଧାରଣ ଆବେଗ ଅନୁଯାୟୀ ପଦକ୍ଷେପ, ପ୍ରଦକ୍ଷିଣର ଛନ୍ଦ ଏବଂ ଏ ସମସ୍ତ ଏକାଗ୍ରଭାବେ ଆତ୍ମାବବୋଧ ଉପରେ ନିର୍ଭରଶୀଳ । ଅନ୍ତରଙ୍ଗରେ ବୃତ୍ତିତରଙ୍ଗର ଲୀଳା ଅନୁଯାୟୀ ତା'ର ରଚନାର ବିଶ୍ୱ । ବୀଜସ୍ଥ ବୃକ୍ଷର ପ୍ରକାଶ ଯେପରି ବାହାରର ଆଲୋକ ବର୍ଷା ଓ ମାଟିର ସ୍ପର୍ଶକୁ ଅପେକ୍ଷା କରିଥାଏ, ସେହିପରି କବିତା ତା'ର ସମସ୍ତ ଉପାଦାନ ସମ୍ବଳିତ ହୋଇ ସ୍ପନ୍ଦନକୁ ଅପେକ୍ଷା କରିଥାଏ ।[୩୭] ତେଣୁ ଏହା ଗୋଟିଏ ବିନ୍ଦୁରୁ ସୃଷ୍ଟି ଲାଭ କରିଥିଲେ ମଧ୍ୟ ଜଗତ ଜୀବନର କେନ୍ଦ୍ରବିନ୍ଦୁକୁ ନୂତନ ଦୀପ୍ତିରେ ଆଲୋକିତ କରିଥାଏ ।

## ଆଧୁନିକତା ଓ ନବୀନଜୀବନ ମୂଲ୍ୟବୋଧ

'ଆଧୁନିକତା'ର ସଂଜ୍ଞା ଆପେକ୍ଷିକ । ଏହା ନିତ୍ୟ ଗତିଶୀଳ । ପର୍ସି ଗାର୍ଡ଼ନର ଆଧୁନିକତା (Modernism)କୁ ଖ୍ରୀଷ୍ଟିଆନ ଇତିହାସରେ ବିକାଶ ଓ ପ୍ରେରଣାଦାୟକ ଏହିପରି ଭାବରେ ଅବଲୋକନ କରି ଏକ ଉଚ୍ଚତର ମିଳନ ବୋଲି ସ୍ୱୀକାର କରିଛନ୍ତି ।[୩୮] ଏକ ନୂତନ ମର୍ଯ୍ୟାଦା ଓ ଦୃଷ୍ଟିସଂପାତ କରି ଏହି ଶବ୍ଦଟିକୁ ବିଶ୍ଳେଷଣ ପୂର୍ବକ ଡଃ ରାଜପାଳ କୁହନ୍ତି, "ଆଧୁନିକ ଯୁଗ କୀ ସାପେକ୍ଷତା ଆଧୁନିକ ମୂଲ୍ୟୋଁ ଔର ମର୍ଯ୍ୟାଦାୟୋଁ କୋ ନଈ ଦୃଷ୍ଟି ଦେନେ ମେ ନିହିତ ହୈ । ଓହ ରୂଢ଼ିୟୋଁ ଔର ଗଲତ ପରମ୍ପରାଓ କୋ ତ୍ୟାଗକର ନଈ ସ୍ଥାପନାୟ ପ୍ରତିଷ୍ଠିତ କରତୀ ହୈ । କ୍ୟୋଁକି ବୌଦ୍ଧିକ ଜାଗରୂକତା କେ ଆଧାର ପର ରୂଢ଼ିୟୋଁ କେ ସମକ୍ଷ ବିଦ୍ରୋହୀ କେ ରୂପମେଁ ଉପସ୍ଥିତ ହୋତି ହୈ । ଇସ୍‌ପ୍ରକାର ଆଧୁନିକତା ବାହ୍ୟ ଆରୋପିତ ବସ୍ତୁ ନ ହୋକର ଦେଶ, କାଳ କୀ ଅନୁଭୂତ ଅଭିବ୍ୟକ୍ତି ମେଁ ବ୍ୟକ୍ତ ହୋତି ହୈ । ଆଧୁନିକତା ଦେଶ, କାଳ ସାପେକ୍ଷ ହୋତେ ହୁଏ ଭି ଉସ୍‌କେ ବନ୍ଧନ ମେଁ ନହୀ ବାନ୍ଧୀ ଯା ସକତୀ[୩୯] ।

'ଆଧୁନିକତା' କେବଳ ମାତ୍ର ଦେଶକାଳ ବୋଧକ ନୁହେଁ; ପରନ୍ତୁ ଦେଶ ଓ କାଳର ପୂର୍ବବର୍ତ୍ତୀ ପରଂପରାର ଉତ୍କୃଷ୍ଟତମ ବିଶେଷତାର ସମନ୍ୱିତ ମାନବଚେତନର ବସ୍ତୁ ସ୍ଥିତିକୁ ସ୍ୱୀକାର କରିବାକୁ ଏକ ଆୟାସ ମଧ୍ୟ । ଆଜିର ଅଧିକାଂଶ କବି ଓ ଆଲୋଚକଙ୍କର ଏହା ବିଶ୍ୱାସ ଯେ ଆଧୁନିକତା ଓ ନବଭାବବୋଧହିଁ ସାହିତ୍ୟର ଏକମାତ୍ର ମାନଦଣ୍ଡ । ନୂତନତା ସାହିତ୍ୟର ଶାଶ୍ୱତ ଧର୍ମ । ପ୍ରତ୍ୟେକ ମହତ୍ତ୍ୱପୂର୍ଣ୍ଣ ରଚନାରେ ଏକ ଶାଶ୍ୱତ ଅନୁଭୂତିର ରଙ୍ଗ ଓ ରୂପ ଅନନ୍ୟଭାବରେ ରହିଥାଏ, ଯାହା ସମସ୍ତ ପୂର୍ବବର୍ତ୍ତୀ ରଚନାଠାରୁ ସୃଷ୍ଟିଟିକୁ ଭିନ୍ନଭାବରେ ପ୍ରତିପାଦିତ କରିଥାଏ । ଅନୁଭୂତି ଓ ଦୃଷ୍ଟିର ନବୀନତା, ବ୍ୟକ୍ତି ସତ୍ତା ଓ ଏହାର ଅଭିବ୍ୟକ୍ତି, ରୂପ ଓ ଶିଳ୍ପଗତ ତତ୍ତ୍ୱର ନବୀନତା ଶ୍ରେଷ୍ଠ ସାହିତ୍ୟର ଏକ ବିଶିଷ୍ଟ ଲକ୍ଷଣ । ଯେଉଁ କବିର ଏହି ନୂତନ ଦୃଷ୍ଟିଭଙ୍ଗୀ ନ ଥାଏ, ତା'ର ସୃଷ୍ଟି କେବଳ ପୁନରାବୃତ୍ତି, ଅନୁକରଣ ମଧ୍ୟରେ ପର୍ଯ୍ୟବସିତ ହୋଇଥାଏ । ନବୀନତା ବା ଆଧୁନିକତା ପରମ୍ପରାକୁ ଅସ୍ୱୀକାର କରେ ନାହିଁ, ପୂର୍ବବର୍ତ୍ତୀକୁ ତିରସ୍କାର କିମ୍ବା ଅବମୂଲ୍ୟାୟନ କରେ ନାହିଁ ପରନ୍ତୁ ପରମ୍ପରାକୁ ନୂତନ ଦୃଷ୍ଟିଭଙ୍ଗୀ ନେଇ, ନୂଆରୂପ ନେଇ ଏକ ନୂତନ ବିକାଶ ରୂପରେ ନବୀନ ଚେତନା ଜାଗ୍ରତ କରେ ।

ଗତି ଓ କାର୍ଯ୍ୟରୁ ଆଧୁନିକତାର ଅର୍ଥ ପ୍ରକାଶିତ । ଏହାର ଦୃଷ୍ଟି ପ୍ରସାରିତ ଓ ଉଦ୍ଦେଶ୍ୟ ମଙ୍ଗଳ ସାଧନ । ଆଧୁନିକତା ଯୁଗ ବିଶେଷର ଗୁଣ, ସମସାମୟିକତା ସ୍ଥିତି ବିଶେଷର ଆୟାସ । ଆଧୁନିକତା ଏକ ଐତିହାସିକ ବିଶ୍ଳେଷଣ ଯାହା ଦେଶକାଳର ବୋଧ ସଙ୍ଗେ ସଙ୍ଗେ ସକ୍ରିୟତାକୁ ପୁଷ୍ଟି କରିଥାଏ । ଆଧୁନିକତା କାଳବୋଧ, ଯୁଗବୋଧର ଉଦ୍ୟୋତକ ।[୪୦] ଆଧୁନିକତା ମୂଳତଃ ଗୁଣାତ୍ମକ ବୋଧ ଅଟେ । ନିତାନ୍ତ ସମସାମୟିକତା ବୋଧ, ଯଥାର୍ଥ ପ୍ରତି ଦାୟିତ୍ୱ, ଆତ୍ମଶକ୍ତିର ବିକାଶ ଦାୟିତ୍ୱ, ବ୍ୟକ୍ତିର ପାଂରସ୍ପରିକ ଆତ୍ମନିଷ୍ଠା ପ୍ରତି ଆସ୍ଥା, ବିବେକର ସଙ୍ଗୀତ ଓ ବ୍ୟକ୍ତି ସ୍ୱାତନ୍ତ୍ର୍ୟ ସହିତ ସମ୍ବନ୍ଧକୁ ବିକଶିତ କରିବାର କ୍ରିୟାଶୀଳତାରେ ଆଧୁନିକତା ପରିଲକ୍ଷିତ ହୋଇଥାଏ ।[୪୧]

ଆଧୁନିକତାର ସ୍ୱତନ୍ତ୍ର ପରିଭାଷା ଦେବାବେଳେ ବାସ୍ତବିକତାକୁ ଅବହେଳା କରିବା ଉଚିତ ନୁହେଁ । ପ୍ରତ୍ୟେକ ଯୁଗ ଓ ପରିସ୍ଥିତିରେ ଆଧୁନିକତାର ସ୍ୱର ଅନୁରଣିତ । ତେଣୁ ଆଧୁନିକତା ପ୍ରତ୍ୟେକ ପରିବର୍ତ୍ତନ ସହିତ ବଦଳିଯିବାର ଦେଶକାଳଗତ ବିଚାର ନୁହେଁ । ପରିବର୍ତ୍ତନଶୀଳ ମୂଲ୍ୟ ନୁହେଁ । ଆଧୁନିକତା ଏକ ଶାଶ୍ୱତ ଓ ଚିରନ୍ତନ ତତ୍ତ୍ୱ × × × ଆଧୁନିକତା ଅନୁଭୂତିର ଅଭିଧେୟ ।[୪୨] କିନ୍ତୁ ଖ୍ରୀଷ୍ଟିୟାନ ଧର୍ମଯାଜକମାନେ ଆଧୁନିକତାକୁ ଧର୍ମ ଆନ୍ଦୋଳନ ସହିତ ସାମିଲ କରି କୁହନ୍ତି, "ଆଧୁନିକତା ଚର୍ଚ୍ଚରେ ବିଶିଷ୍ଟ ସନ୍ଦର୍ଭରେ ସଙ୍ଗଠିତ ଆନ୍ଦୋଳନ ଭାବରେ ନୁହେଁ ବରଂ ଧର୍ମର ଏକ approach

ଭାବରେ ସ୍ୱୀକାର କରାଯାଇଛି ।[୪୩] ଉକ୍ତ ଆଲୋଚନାଗୁଡ଼ିକରୁ ଏହା ସ୍ପଷ୍ଟ ପ୍ରତୀୟମାନ ଯେ, ଆଧୁନିକତାର ସଂଜ୍ଞା ବ୍ୟାପକ ଓ ନିର୍ଦ୍ଦିଷ୍ଟ ଦେଶ, କାଳ, ପାତ୍ର ମଧ୍ୟରେ ଏହାକୁ ସୀମାବଦ୍ଧ କରାଯାଇ ନପାରେ । ଏହା ଚିର ନୂତନ ଓ ସକ୍ରିୟ ।

ଭାରତରେ ଊନବିଂଶ ଶତାବ୍ଦୀରେ ଯେଉଁ ନବୀନ ଜୀବନ ମୂଲ୍ୟବୋଧର ସୂତ୍ରପାତ ହୋଇଛି, ତା'ର ପଶ୍ଚାତରେ ରହିଛି ପାଶ୍ଚାତ୍ୟ ଜଗତର ବୈଜ୍ଞାନିକ ଆନ୍ଦୋଳନ, ଶିଳ୍ପ ବିପ୍ଳବ ପରି ଅନେକ ଆନ୍ଦୋଳନ ଓ ସର୍ବୋପରି ଭାରତୀୟ ଚିନ୍ତାନାୟକମାନଙ୍କର ଧାର୍ମିକ ଆନ୍ଦୋନଳ । ଆଧୁନିକ କବିତାର ଜନ୍ମ ଓ ବିକାଶ ସମ୍ପର୍କରେ ଆଲୋଚନା କରିବା ସମୟରେ ଏହା ପାଶ୍ଚାତ୍ୟ ଶିକ୍ଷା ତଥା ବୈଜ୍ଞାନିକ ଆନ୍ଦୋଳନର ଅପେକ୍ଷା ରଖୁଥିବାରୁ ଏଠାରେ ବର୍ତ୍ତମାନ କେବଳ ଊନବିଂଶ ଶତାବ୍ଦୀର ଭାରତୀୟ ତଥା ପାଶ୍ଚାତ୍ୟ ମନୀଷୀଗଣଙ୍କର ଧର୍ମ ଆନ୍ଦୋଳନ ସମ୍ପର୍କରେ ସାମାନ୍ୟ ଆଲୋକପାତ କରାଗଲା ।

## ବ୍ରାହ୍ମସମାଜ ଓ ରାଜା ରାମମୋହନ ରାୟ

ଭାରତୀୟ ନବୋତ୍‌ଥାନର ଅଗ୍ରଣୀ ନେତା ରାଜା ରାମମୋହନ ରାୟ ୧୮୨୮ ଖ୍ରୀ:ରେ ହିନ୍ଦୁଧର୍ମର ଆଚାର ବିଚାର ସହିତ ପାଶ୍ଚାତ୍ୟ ଦର୍ଶନର ସମ୍ମିଶ୍ରଣ କରି 'ବ୍ରାହ୍ମସମାଜ' ସ୍ଥାପନ କଲେ । ଉପନିଷଦର ପ୍ରମାଣାନୁଯାୟୀ ସେ ହିନ୍ଦୁ ଧର୍ମର ବୈଜ୍ଞାନିକତା ପ୍ରତିପାଦନ କଲେ । ଏଦ୍ୱାରା ସେ ସମାଜରେ ନବଜାଗରଣ ଆଣିବାକୁ ଚେଷ୍ଟାକରି ସଫଳକାମ ହୋଇପାରିଲେ । ସେ ପାଶ୍ଚାତ୍ୟ ଆଚାର ବିଚାରର ଅନ୍ଧାନୁସରଣ କରି ତା' ପାଖରେ ଆତ୍ମସମର୍ପଣ କରି ନ ଥିଲେ କିମ୍ବା ପାଶ୍ଚାତ୍ୟ ଦର୍ଶନକୁ ପ୍ରବଳ ବିରୋଧ ମଧ୍ୟ କରି ନ ଥିଲେ । ଏହି ବ୍ରାହ୍ମସମାଜ ମାଧ୍ୟମରେ ଭାରତୀୟ ଓ ପାଶ୍ଚାତ୍ୟ ସଂସ୍କୃତିର ଏକ ଅପୂର୍ବ ସମନ୍ୱୟ ସ୍ଥାପନ କଲେ । ଔପନିଷଦକ ସିଦ୍ଧାନ୍ତାନୁଯାୟୀ ସେ ସମାଜ ସଂସ୍କାର କରିବାକୁ ପ୍ରେରଣା ପାଇଥିଲେ । ସତୀପ୍ରଥାର ତୀବ୍ର ବିରୋଧ ସଙ୍ଗେ ତତ୍କାଳୀନ ସମାଜରେ ପ୍ରଚଳିତ ଓ ପ୍ରତିଷ୍ଠିତ କୁସଂସ୍କାର ବିରୋଧରେ ଜନମତ ପ୍ରତିଷ୍ଠା କରିବାକୁ ସେନାପତିର ଭୂମିକା ନେଇଥିଲେ । ବିଭିନ୍ନ ଭାଷାରେ ତାଙ୍କର ଗଭୀର ପ୍ରବେଶ ଥିବାରୁ ହିନ୍ଦୁ, ବୌଦ୍ଧ, ଖ୍ରୀଷ୍ଟିଆନ ଓ ଇସ୍‌ଲାମ୍ ଧର୍ମର ସମସ୍ତ ଧର୍ମପୁସ୍ତକ ପାଠକରି ତା'ର ସାରତତ୍ତ୍ୱ ନିର୍ଣ୍ଣୟ କରିଥିଲେ ଏବଂ ଧର୍ମ ବିଷୟରେ ତାଙ୍କର ଧାରଣା ବ୍ୟାପକ ଥିଲା । ଏହି ସମାଜର ପ୍ରଥମ ଉଦ୍ଦେଶ୍ୟ ଥିଲା ସମାଜ ସଂସ୍କାର ଓ ଜାତୀୟ ଜାଗରଣ ଉଦ୍ରେକ କରିବା । ଊନବିଂଶ ଶତାବ୍ଦୀରେ ତାଙ୍କର ମତବାଦ ସମାଜରେ ହଇଚଇ ସୃଷ୍ଟି କରିଥିଲେ ମଧ୍ୟ, ସମାଜ ସଂସ୍କାର ଦିଗରେ ସେ ଯେ ଉପଯୁକ୍ତ ପଦକ୍ଷେପ ନେଇଥିଲେ, ଏହା ଅସ୍ୱୀକାର କରାଯାଇ ନ ପାର ।

## ଆର୍ଯ୍ୟସମାଜ ଓ ସ୍ୱାମୀ ଦୟାନନ୍ଦ

ସ୍ୱାମୀ ଦୟାନନ୍ଦ ସରସ୍ୱତୀ ବମ୍ବେଠାରେ ୧୮୭୫ ମସିହାରେ ଏହି ସମାଜ ପ୍ରତିଷ୍ଠା କରନ୍ତି । ଆର୍ଯ୍ୟସମାଜ ବେଦମତ ଉପରେ ପୂର୍ଣ୍ଣ ଆସ୍ଥା ସ୍ଥାପନ କରି ପ୍ରତିଷ୍ଠିତ ହୋଇଥିଲା । ସେ ଭାରତୀୟ ସଂସ୍କୃତିର ବିଶାଳତା ଏବଂ ଶ୍ରେଷ୍ଠତା ଘୋଷଣା କରି ଦେଶର ପ୍ରାଚୀନ ଆଦର୍ଶର ସ୍ଥାପନ ଓ ନବଚେତନା ଜାଗ୍ରତ କରିଥିଲେ । ତାଙ୍କର ଦୃଷ୍ଟିଥିଲା ସୁଦୂରପ୍ରସାରୀ । ସଂସ୍କୃତ ଭାଷାରେ ସର୍ବପ୍ରଥମେ ଆପଣାର ବିଚାର ବ୍ୟକ୍ତ କରିଥିଲେ ମଧ୍ୟ ଏହି ସମାଜର ବରିଷ୍ଠ ସଦସ୍ୟଙ୍କର ଆଗ୍ରହ ଓ ଅନୁରୋଧ ରକ୍ଷାକରି ହିନ୍ଦୀ ମାଧ୍ୟମରେ ତାଙ୍କର ମତ ଓ ବିଚାର ପ୍ରଚାର କରିଥିଲେ । ଆର୍ଯ୍ୟ ସମାଜ ଦେଶକୁ ସ୍ୱାଧୀନ କରିବାକୁ ନବଜାଗରଣ ସୃଷ୍ଟି କରିବା ସଙ୍ଗେ ସଙ୍ଗେ ଜାତୀୟ ଭାବନା ଓ ରାଷ୍ଟ୍ରପ୍ରେମ ପ୍ରଚାର କରିଥିଲା । ଲାଲା ଲାଜପତରାୟ ଏହି ସମାଜର ପ୍ରେରଣାରେ ଦେଶପାଇଁ ଆତ୍ମୋତ୍ସର୍ଗ କରିଥିଲେ । ଭାରତୀୟ ସମାଜ ଅନୁକୂଳ ଶିକ୍ଷାବ୍ୟବସ୍ଥାର ପ୍ରସାର ଓ ସଂସ୍କୃତିର ପୁନରୁଦ୍ଧାର ପାଇଁ ଏ ସମାଜ କାର୍ଯ୍ୟ କରିଥିଲା । ଏହି ସମାଜ ତରଫରୁ ଦେଶର ବିଭିନ୍ନ ସ୍ଥାନରେ ପ୍ରାର୍ଥନା ସଭା ଗଢ଼ି ଉଠି ହିନ୍ଦୁ ସମାଜରେ ନବଜାଗରଣ ସନ୍ଦେଶ ପ୍ରଚାର କରିଥିଲା । 'ସତ୍ୟାର୍ଥପ୍ରକାଶ' ସ୍ୱାମୀଜୀଙ୍କର ଆଚାର ଗ୍ରନ୍ଥ । ଉକ୍ତ ଗ୍ରନ୍ଥରେ ମୂର୍ତ୍ତିପୂଜାର ଖଣ୍ଡନ, ଏକେଶ୍ୱରବାଦର ସ୍ଥାପନା ଓ ଗୁଣକର୍ମାନୁସାରେ ବର୍ଣ୍ଣ ବ୍ୟବସ୍ଥାଦ୍ୱାରା ବନ୍ଧୁତ୍ୱ ସ୍ଥାପନ ବେଦର ଆଧାର ରୂପେ ଗୃହୀତ ବୋଲି ସ୍ୱୀକୃତ ହୋଇଛି । ଏ ସମ୍ପର୍କରେ ଡଃ ଲକ୍ଷ୍ମୀନାରାୟଣ ଗୁପ୍ତ କହନ୍ତି – "ଗ୍ରନ୍ଥରେ ହିନ୍ଦୁମାନଙ୍କ ଦ୍ୱାରା ପ୍ରଚଳିତ ବିଭିନ୍ନବାଦ, ପନ୍ଥା ଓ କୁପ୍ରଥାକୁ ବୈଦିକ ମତାନୁଯାୟୀ ନିର୍ମମଭାବେ ଖଣ୍ଡନ କରାଯାଇଛି । ଏହାଦ୍ୱାରା ଉଦାରଚେତା ବୁଦ୍ଧିମାନ ବ୍ୟକ୍ତି ଆକର୍ଷିତ ହୋଇଛନ୍ତି ଓ ଅନେକ ରୁଷ୍ଟ ହୋଇଛନ୍ତି ମଧ୍ୟ ।[୪୪] ଜାତୀୟ ଜାଗରଣ ଓ ନବଚେତନା ସୃଷ୍ଟି କରିବାରେ ଏ ସମାଜ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଛି ।

## ପ୍ରାର୍ଥନା ସମାଜ ଓ ଡଃ ପାଣ୍ଡୁରଙ୍ଗ

ସମାଜର ସୁଧାର ପାଇଁ ଡଃ ଆତ୍ମାରାମ ୧୮୩୭ ମସିହାରେ ବମ୍ବେଠାରେ ପ୍ରାର୍ଥନା ସମାଜ ସ୍ଥାପନ କରନ୍ତି । ଏ ସମାଜ ମଧ୍ୟ 'ବ୍ରାହ୍ମସମାଜ' ପରି ନିରାକାରବାଦୀ ଓ ଜାତିପ୍ରଥାର ବିରୋଧ କରେ ସତ୍ୟ କିନ୍ତୁ ମୂର୍ତ୍ତିପୂଜା ଓ ପରମ୍ପରାଗତ ହିନ୍ଦୁ ଆଚାରଧର୍ମକୁ ସର୍ବଦା ଅସ୍ୱୀକାର ବା ବିରୋଧ କରୁ ନ ଥିଲା । ଏହି ସମାଜଦ୍ୱାରା ସ୍ଥାପିତ 'ବଳିତୋଦ୍ଧାର ମିସନ' ମାଧ୍ୟମରେ ସେମାନେ ଜାତି ଓ ସମାଜର ଅନେକ ପରିବର୍ତ୍ତନ ସାଧନ କରିଥିଲେ । ଏହାର ନେତୃତ୍ୱ ନେଇଥିଲେ ଗୋବିନ୍ଦ ରାନାଡ଼େ । ଏହି ସମାଜର

ଅନୁଗାମୀମାନେ ଥିଲେ ସାର୍.ଏନ୍.ଜି. ଚନ୍ଦ୍ରାବନକର, ରମାବାଈ, ସାର୍.ଆର୍.ଜି. ଭଣ୍ଡାରକର ଇତ୍ୟାଦି । ସମାଜରେ ଜାଗରଣ ତଥା ସମାନତା ନିମିତ୍ତ ଉଚ୍ଚନୀଚ ଭେଦଭାବର ବିଲୋପ ହେବା ଆବଶ୍ୟକ ବୋଲି ଏମାନେ ହୃଦୟଙ୍ଗମ କରିଥିଲେ । ଜୀବନରେ ସାମାଜିକ ମୂଲ୍ୟର ବିକାଶ ଦୃଷ୍ଟିରୁ ଏ ସମାଜର ବିଶେଷ ମହତ୍ତ୍ୱ ସ୍ୱୀକାର କରାଯାଏ । ସମବାୟ ମାଧ୍ୟମରେ ଜାତୀୟ ଜାଗରଣ ସୃଷ୍ଟି ନିମିତ୍ତ ଏମାନଙ୍କର ପ୍ରୟାସ ସ୍ୱାଗତଯୋଗ୍ୟ ।

## ରାମକୃଷ୍ଣମିଶନ୍ ଓ ସ୍ୱାମୀ ବିବେକାନନ୍ଦ

ସ୍ୱାମୀ ବିବେକାନନ୍ଦ ଖ୍ରୀଷ୍ଟିଆନ ମିଶନ ଦ୍ୱାରା ପ୍ରଭାବିତ ହୋଇ ୧୮୯୭ ମସିହାରେ ରାମକୃଷ୍ଣମିଶନ ସ୍ଥାପନ କରିଥିଲେ । ଯେଉଁ ସମୟରେ ସ୍ୱାମୀ ଦୟାନନ୍ଦ ଉତ୍ତର ଭାରତରେ ଆପଣା କାର୍ଯ୍ୟରେ ନିଯୁକ୍ତ ଥିଲେ, ସେହି ସମୟରେ ରାମକୃଷ୍ଣ ପରମହଂସ ବଙ୍ଗଳାରେ ଆପଣାର ସନ୍ଥ ଜୀବନଦ୍ୱାରା ସମାଜରେ ସଜୀବତା ଆଣିବାକୁ ପ୍ରୟାସ କରିଥିଲେ । ସେ ସମସ୍ତ ଧର୍ମ ଏକ ଏବଂ ସର୍ବଧର୍ମର ସାରତତ୍ତ୍ୱ ଏକ ବୋଲି କହୁଥିଲେ । ନିଜ ହୃଦୟରେ ଯେଉଁ ପରମ ସତ୍ୟର ଦର୍ଶନ କରିଥିଲେ, ତାହା ସର୍ବଧର୍ମର ମୂଳ ବୋଲି ସେ ଅନୁଭବ କରିଥିଲେ । ରାମମୋହନ ରାୟ, ଦୟାନନ୍ଦ ସରସ୍ୱତୀ ଓ ରାମକୃଷ୍ଣ ପରମହଂସ ଏହି ତିନିଜଣଙ୍କର ସାଧନା ଭିନ୍ନ ଥିଲେ ମଧ୍ୟ ଭାରତବର୍ଷର ପୁନରୁତ୍ଥାନ ଥିଲା ସମସ୍ତଙ୍କର ମୁଖ୍ୟ ଉଦ୍ଦେଶ୍ୟ । ସ୍ୱାମୀ ବିବେକାନନ୍ଦ ଗୁରୁଙ୍କର ଆଦର୍ଶବାଣୀକୁ ଦେଶ ବିଦେଶରେ ପ୍ରଚାରକରି ଗୁରୁଭକ୍ତିର ପ୍ରମାଣ ଦେଇଥିଲେ । ସେ ହିନ୍ଦୁଧର୍ମର ବାସ୍ତବ ସ୍ୱରୂପ ବିଦେଶୀମାନଙ୍କ ସମ୍ମୁଖରେ ଉପସ୍ଥାପିତ କରି ମାତୃଭୂମି ଓ ସ୍ୱଧର୍ମର ମହତ୍ତ୍ୱ ପ୍ରତିଷ୍ଠା କରିଥିଲେ । ଦେଶର ଅଧୋଗତି ଲକ୍ଷ୍ୟକରି ସେ ବିବ୍ରତ ହୋଇଥିଲେ । ସେ ଚାହୁଁଥିଲେ ଭାରତର ଶିକ୍ଷିତ ବ୍ୟକ୍ତି ବାହାର ଦେଶକୁ ଯାଇ ପାଶ୍ଚାତ୍ୟ ଜ୍ଞାନବିଜ୍ଞାନ ସଂସ୍ପର୍ଶରେ ଆସି ଭାରତର ସମୂହ ଉନ୍ନତି ପାଇଁ କାର୍ଯ୍ୟ କରିବା ଉଚିତ । ବିବେକାନନ୍ଦ ପ୍ରାଚୀନତା ଓ ନବୀନତା ମଧ୍ୟରେ ସୁନ୍ଦର ସମନ୍ୱୟ ଆଣିପାରିଥିଲେ ଏବଂ ଦେଶବାସୀଙ୍କୁ ଏକ ପତାକାତଳେ ଏକତା ସୂତ୍ରରେ ଆବଦ୍ଧ କରି ସମୂହ ଉନ୍ନତି ସାଧନ ପାଇଁ ଆପ୍ରାଣ ଉଦ୍ୟମ କରିଥିଲେ ।

## ଥିଓସୋଫିକାଲ ସୋସାଇଟି ଓ ଆନିବେଶାନ୍ତ

ଏହି ସୋସାଇଟି ପ୍ରଥମେ ଆମେରିକାରେ ୧୮୫୭ ମସିହାରେ ଋଷି ମହିଳା ମାଡ଼ାମ ବ୍ଲାବତ୍‌ସ୍କୀ ଓ କର୍ଣ୍ଣେଲ ଆଲ୍‌କୋଟେଙ୍କ ଦ୍ୱାରା ସ୍ଥାପିତ ହୋଇଥିଲା । ଭାରତରେ

ଏହାର ପ୍ରଚାର ଏବଂ ପ୍ରସାର ୧୮୯୩ରେ ଆଇରିସ୍ ମହିଳା ଆନିବେଶାନ୍ତେଙ୍କ ଦ୍ୱାରା ହୋଇଥିଲା । ଶ୍ରୀମତୀ ବେଶାନ୍ତେ ଭାରତବାସୀଙ୍କ ସମ୍ମୁଖରେ ଭାରତୀୟ ସଂସ୍କୃତି ଓ ସଭ୍ୟତାର ଆଧୁନିକ ବ୍ୟାଖ୍ୟା କରିବା ସଙ୍ଗେ ସଙ୍ଗେ ଦେଶର ଗୌରବାବହ ଅତୀତ ଓ ଐତିହ୍ୟର ପ୍ରଚାର କଲେ । ସୁପ୍ତ ଭାରତୀୟଙ୍କ ମନରେ ଜାତୀୟଚେତନାର ଜାଗ୍ରତ, ନବଚେତନାର ସଞ୍ଚାର ଓ ଆତ୍ମସମ୍ମାନ ପାଇଁ ପ୍ରେରଣା ଦେଲେ । ବେଶାନ୍ତେ କାଶୀରେ ସେଣ୍ଟ୍ରାଲ ହିନ୍ଦୁ କଲେଜ ସ୍ଥାପନାକରି ହିନ୍ଦୁଧର୍ମ ପ୍ରତି ଥିବା ତାଙ୍କର ଅଗାଧ ସମ୍ମାନ ପ୍ରତିପାଦନ କରିଥିଲେ । ଏ ସମ୍ପର୍କରେ ଡଃ ବିଦ୍ୟାନାଥ କୁହନ୍ତି – "ତାଙ୍କର ବିଶ୍ୱାସ ଥିଲା, ହିନ୍ଦୁମାନଙ୍କର ଜାତି ଅଭିମାନ ନ ଆସିଲେ ସେମାନେ ସ୍ୱତନ୍ତ୍ର ରାଷ୍ଟ୍ର ଗଢ଼ି ପାରିବେ ନାହିଁ । ଭାରତ ଭୂମି ପ୍ରତି ତାଙ୍କର ଗଭୀର ଅନୁରାଗ ଥିଲା ଓ ରାଷ୍ଟ୍ରୀୟ ଆନ୍ଦୋଳନରେ ସେ ସମ୍ପୂର୍ଣ୍ଣ ସହଯୋଗ କରିଥିଲେ ମଧ୍ୟ । ଜନସାଧାରଣଙ୍କ ନିକଟରେ ରାଷ୍ଟ୍ରୀୟ ଭାବର ପ୍ରସାର କରି ଜନଚେତନା ଜାଗ୍ରତ କରିଥିଲେ ।[(୪୫)]

ଏହିପରି ଭାବରେ ବିଚାରାଲୋଚନା କଲେ ଏହା ସ୍ପଷ୍ଟ ହୋଇଥାଏଯେ, ଉପରୋକ୍ତ ମନୀଷୀଗଣ ଭାରତୀୟଙ୍କ ମନରେ ନବଜାଗରଣ ସୃଷ୍ଟି ଓ ଦୃଷ୍ଟିକୁ ପ୍ରସାରିତ କରିବାପାଇଁ ଊନବିଂଶ ଶତାବ୍ଦୀରେ ବିଭିନ୍ନ ପ୍ରକାର ସଂସ୍ଥା ମାଧ୍ୟମରେ ଚେଷ୍ଟା କରିଛନ୍ତି । ଭାରତୀୟଙ୍କ ଦୃଷ୍ଟି କ୍ରମଶଃ ପାଶ୍ଚାତ୍ୟ ଅଭିମୁଖୀ ହେବା ସଙ୍ଗେ ସଙ୍ଗେ ନବଜୀବନ ମୂଲ୍ୟବୋଧ ସେମାନଙ୍କ ମଧ୍ୟରେ ଜାଗ୍ରତ ହୋଇଛି । ପାଶ୍ଚାତ୍ୟ ଦର୍ଶନ ଓ ବିଜ୍ଞାନ ସଂସ୍ପର୍ଶରେ ଆସି କେବଳ ଯେ ଦୃଷ୍ଟିଭଙ୍ଗୀରେ ପରିବର୍ତ୍ତନ ଆସିଛି ତା ନୁହେଁ, ସାହିତ୍ୟ କ୍ଷେତ୍ରରେ ମଧ୍ୟ ପରିବର୍ତ୍ତନ ଆସିଛି । ସର୍ବଭାରତୀୟ ଚେତନାରେ ଉଦ୍ଦୀପ୍ତ ହୋଇ ଓଡ଼ିଶାରେ ମଧ୍ୟ ଜାତୀୟଚେତନା ଓ ସାହିତ୍ୟ କ୍ଷେତ୍ରରେ ନବଆନ୍ଦୋଳନ ଦେଖାଦେଇଛି ।

## ଆଧୁନିକ କବିତାର ଜନ୍ମ ଓ ବିକାଶ

ଇଂରାଜୀ ସାହିତ୍ୟରେ ଆଧୁନିକ ଯୁଗର ସୂତ୍ରପାତ ବାସ୍ତବରେ ରୋମାଣ୍ଟିକ ଆନ୍ଦୋଳନ (୧୮୦୦) ପରେ ପରେ ଆରମ୍ଭ ହୋଇଛି । ଗୀବନ୍‌ଙ୍କର ଅତୀତ ପ୍ରତି ମୋହଥିଲେ ମଧ୍ୟ ସେ ସମ୍ପୂର୍ଣ୍ଣ ଅତୀତାଭିମୁଖୀ ନ ଥିଲେ । ଏହି ସମୟକୁ ପ୍ରାଚୀନ ଗ୍ରୀସ୍ ଓ ରୋମ୍ ସଭ୍ୟତା ଚରମ ସୀମାରେ ଉପନୀତ ହୋଇଥିଲେ ମଧ୍ୟ ନୃସଂଶତା, କ୍ରୂରତା ସମ୍ପୂର୍ଣ୍ଣରୂପେ ଦୂରୀଭୂତ ହୋଇପାରି ନ ଥିଲା । ମାନବ ପ୍ରତି ମୁହୂର୍ତ୍ତରେ ନିଜକୁ ଅସହାୟ ଓ ଅବାଞ୍ଛିତ ମନେକରୁଥିଲା । ମାନବ କ୍ରମଶଃ ନିଜର ଅସ୍ତିତ୍ୱ ପ୍ରତି ସନ୍ଦେହଶୀଳ ହୋଇ ପଡୁଥିଲା । ମଧ୍ୟଯୁଗୀୟ ସାହିତ୍ୟର କ୍ଳିଷ୍ଟତା, ଦୁର୍ବୋଧତା ଓ ଧର୍ମର ଅନ୍ଧବନ୍ଧନକୁ ସେ ଆଉ ସ୍ୱୀକାର କରିବାକୁ ପ୍ରସ୍ତୁତ ନ ଥିଲା । ମାନବର ଚେତନଶୀଳ ମନ ଏକ

ପରିବର୍ତ୍ତନର ସ୍ୱାଦୁ ଚାଖିବାକୁ ଉନ୍ମୁଖ ହୋଇ ପଡ଼ିଥିଲା । ବିଜ୍ଞାନର ଭୂୟୋବିକାଶ, ବିଭିନ୍ନ ପ୍ରକାର ସାମାଜିକ ପରିବେଶ ମାନବର ଚିନ୍ତାରାଜ୍ୟରେ ପରିବର୍ତ୍ତନ ଆଣିଲା । ତେଣୁ ଆଧୁନିକ ସାହିତ୍ୟର ଜନ୍ମ ଓ ବିକାଶ ପାଇଁ ମୁଖ୍ୟତଃ ଯେଉଁ କାରଣଗୁଡ଼ିକ ଦାୟୀ ନିମ୍ନରେ ସେଗୁଡ଼ିକର ଆଲୋଚନା କରାଗଲା ।

'ଆଧୁନିକତା' କହିଲେ ଯାହା ବୁଝାଯାଏ ତାହା ଲେଖକର ଜୀବନପ୍ରତି ଦୃଷ୍ଟିଭଙ୍ଗୀ – ଯେଉଁ ଦୃଷ୍ଟଭଙ୍ଗୀ ଆଧୁନିକ ଜଗତର ବୈଜ୍ଞାନିକ ଓ ଯାନ୍ତ୍ରିକ ସଭ୍ୟତାଦ୍ୱାରା ନିୟନ୍ତ୍ରିତ ହୋଇ ସଂସ୍କୃତିରେ ସଙ୍କଟ ସୃଷ୍ଟିକରି ସୂକ୍ଷ୍ମବୋଧୀ (Sensitive) ମଣିଷଙ୍କୁ ବିଛିନ୍ନତା (alienation) ଓ ନିଃସଙ୍ଗତା (Loneliness)ର ଆବର୍ତ୍ତ ମଧ୍ୟକୁ ଟାଣିନେଇଛି ।"(୪୬) ପ୍ରକୃତ ଆଧୁନିକ କବିତାର ଜନ୍ମ ବିଂଶଶତକରେ ହେଲେ ମଧ୍ୟ ପଶ୍ଚିମ ଇଉରୋପରେ ଅଷ୍ଟାଦଶ ଊନବିଂଶ ଶତାବ୍ଦୀରେ ରୋମାଣ୍ଟିସିଜମ୍‌କୁ କେନ୍ଦ୍ରକରି ଯେଉଁ ବ୍ୟାପକ ଆନ୍ଦୋଳନ ହୋଇଥିଲା, ଆଧୁନିକ କବିତା ସୃଷ୍ଟିର ପୃଷ୍ଠଭୂମିରେ ତା'ର ଯେ ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି, ତାହା ଅସ୍ୱୀକାର କରାଯାଇ ନ ପାରେ । ଏହି ରୋମାଣ୍ଟିକ୍ କାବ୍ୟ ଆନ୍ଦୋଳନର ପୃଷ୍ଠଭୂମିରେ ଥିଲା ଶିଳ୍ପବିପ୍ଳବ, ଆମେରିକାର ସ୍ୱାଧୀନତା ଯୁଦ୍ଧ ଓ ଫରାସୀ ବିପ୍ଳବ; କିନ୍ତୁ ସାମ୍ପ୍ରତିକ ନୂତନ କବିତା ଓ ଅଷ୍ଟାଦଶ ଊନବିଂଶ ଶତାବ୍ଦୀର ରୋମାଣ୍ଟିକ୍ କବିତା ମଧ୍ୟରେ ପ୍ରକୃତିଗତ ବିପୁଳ ବ୍ୟବଧାନ ରହିଛି ।(୪୭)

ପ୍ରଥମ ବିଶ୍ୱଯୁଦ୍ଧର ଭୟଙ୍କରତା ମାନବ ସମାଜକୁ ବିବ୍ରତ କରିଦେଲା । ମାନବର ଜୀବନଯେ ପ୍ରତିମୁହୂର୍ତ୍ତରେ ସଙ୍କଟାପନ୍ନ ଏହା ସେ ଅନୁଭବ କରିବାମାତ୍ରେ ବିମର୍ଷ ହୋଇ ପଡୁଥିଲା । ଏହି ଭୟଙ୍କରର ଯୁଦ୍ଧକୁ ଲକ୍ଷ୍ୟକରି ଏ ପୃଥିବୀ ଏକ ଭୁଷୁଡ଼ି ପଡୁଥିବା ପୃଥିବୀ ଓ ତା' ମଧ୍ୟରେ ମାନବର ଅସ୍ତିତ୍ୱ ଯେ ପ୍ରତି ମୁହୂର୍ତ୍ତରେ ମରଣର ଦ୍ୱାର ଦେଶରେ ଏହା ସେ ସ୍ପଷ୍ଟଭାବରେ ଅନୁମାନ କରିନେଇଥିଲା ।(୪୮) ଏହା ସହିତ ପଦାର୍ଥବିଜ୍ଞାନ, ଜୀବବିଜ୍ଞାନ ଓ ମନୋବିଜ୍ଞାନର ବୈପ୍ଳବିକ ଚିନ୍ତାଧାରାକୁ ମହାଯୁଦ୍ଧ କ୍ଷିପ୍ରତର ଓ ସ୍ପଷ୍ଟତର କଲା । ଆର୍ଥନୀତିକ ଓ ସାଂସ୍କୃତିକ ପରିବେଶରେ ଦ୍ରୁତ ପରିବର୍ତ୍ତନ ଫଳରେ ପ୍ରାଚୀନ ମୂଲ୍ୟବୋଧରେ ଆସିଲା ଘୋର ସଂଶୟ । ରାଜତନ୍ତ୍ର ବିରୁଦ୍ଧରେ ବିପ୍ଳବ, ସାମ୍ରାଜ୍ୟବାଦ ସହିତ ଅସହଯୋଗ ନୂତନ ଶକ୍ତି ଲାଭ କଲା । ଯୁଦ୍ଧଜନିତ କ୍ଷୟକ୍ଷତି, ଦୁଃଖଦୈନ୍ୟ, ରୋଗବ୍ୟାଧି, କାତରତା, ଔଦାସୀନ୍ୟ ଓ ଅନିଶ୍ଚୟତାର ଭାବ ଆଣିଲା । ଭଗବାନଙ୍କ ପାରମ୍ପରିକ କର୍ତ୍ତୃତ୍ୱ ଓ ମହତ୍ତ୍ୱ ପ୍ରତି ବ୍ୟଙ୍ଗ ଦୃଷ୍ଟି ନିକ୍ଷେପ ହେଲା ।(୪୯) ବିଶ୍ୱଯୁଦ୍ଧ ଲକ୍ଷ୍ୟକରି ଟି.ଏସ୍. ଏଲିଅଟଙ୍କ ହୃଦୟ ମଧ୍ୟରେ ଈଶ୍ୱର ଓ ବାସ୍ତବ ପୃଥିବୀ ମଧ୍ୟରେ ଏକ ବିରାଟ ଫାଙ୍କ ସୃଷ୍ଟି ହେଲା । ତାଙ୍କର 'The wasteland'

ଆଧୁନିକ କବିତା ରାଜ୍ୟରେ ଏକ ସ୍ୱତନ୍ତ୍ରତା ନେଇ ପ୍ରକାଶ ଲାଭ କଲା । ବାକ୍ ସଂକ୍ଷେପଣ, ନୈର୍ବ୍ୟକ୍ତିକତା, ଆତ୍ମସଚେତନତା ଓ ସମାଜ ସଚେତନତା ଥିଲା ତାଙ୍କ କବିତାର ବିଶିଷ୍ଟ ବୈଶିଷ୍ଟ୍ୟ ।

ପ୍ରଥମ ବିଶ୍ୱଯୁଦ୍ଧ ଇଉରୋପ ଚିନ୍ତାରାଜ୍ୟରେ କି ପ୍ରକାର ପରିବର୍ତ୍ତନ ଆଣିଥିଲା, ତା'ର ଆଲୋଚନା କରି ଡଃ ନିତ୍ୟାନନ୍ଦ ଶତପଥୀ କୁହନ୍ତି – "ପ୍ରଥମ ପୃଥିବୀ ମହାଯୁଦ୍ଧ (୧୯୧୪-୧୮) ପାଶ୍ଚାତ୍ୟ କାବ୍ୟାନୁଚିନ୍ତାରେ ଏକ ବ୍ୟାପକ ପରିବର୍ତ୍ତନର ସୂତ୍ରପାତ କରିଥିଲା । ଟବର୍ଟବ୍ରୁକ ଯୁଦ୍ଧ କ୍ଷେତ୍ରରେ ଟ୍ରେଞ୍ଚ୍ ମଧ୍ୟରେ ରହି ଅନେକ ଜାତୀୟ ଭାବମୂଳକ କବିତା ରଚନା କଲେ । ୧୯୨୨ରେ ଏହି ଯୁଦ୍ଧ ପରବର୍ତ୍ତୀ ଜୀବନର ଅବକ୍ଷୟ ଓ ସାମାଜିକ ଦୁର୍ଗତି ଉପରେ କବି ଟି.ଏସ୍. ଇଲିଅଟଙ୍କ 'The wasteland' କବିତା ଏକ ଚରମ ନେତିବାଦୀ ଦୃଷ୍ଟିଭଙ୍ଗୀ ଆଣି ଠିଆ ହେଲା । ପୁନଶ୍ଚ ଇଂରେଜୀ କବିତା କ୍ଷେତ୍ରରେ ଏହି ସମୟ ଥିଲା ଏକ ପରୀକ୍ଷାର ମୁହୂର୍ତ୍ତ । କିଞ୍ଚିତ୍ ପୂର୍ବରୁ ଟି.ଇ. ହ୍ୟୁମ୍ ଓ କବି ଏଜରାପାଉଣ୍ଡଙ୍କ ନେତୃତ୍ୱରେ 'ଇମଜେ୍ ମୁଭ୍ମେଣ୍ଟ୍ ଆରମ୍ଭ ହୋଇଯାଇଥିଲା ।"[୫୦] ବାସ୍ତବରେ ଦେଖିବାକୁ ଗଲେ ବୋଦ୍‌ଲେୟାର, ରାମ୍ବୋ, ମାଲାର୍ମେ ଓ ଟି.ଏସ୍. ଏଲିଅଟ୍ ହେଉଛନ୍ତି ଆଧୁନିକ କାବ୍ୟଧାରାର ପ୍ରବର୍ତ୍ତକ ।

ଉକ୍ତ ଶତାବ୍ଦୀରେ ମାର୍କସଙ୍କର ସମାଜବାଦୀ ଚିନ୍ତାଧାରା ମାନବର ଚିନ୍ତାରାଜ୍ୟରେ ଏକ ପରିବର୍ତ୍ତନ ଆଣିଲା । ଏହାର ପରୀକ୍ଷାସ୍ୱରୂପ ୧୯୧୭ ଅକ୍ଟୋବର ରିଭଲ୍ୟୁସନ ପରବର୍ତ୍ତୀ କାଳରେ ପୃଥିବୀର ଅଗଣିତ ଅନାହାରୀ, ଅର୍ଦ୍ଧଭୁକ୍ତ, ଅଭାବୀ, ମେହେନତି ମଣିଷର ମନରେ ଯେଉଁ ପ୍ରତ୍ୟୟ ଆଣିଥିଲା, ତାହାହିଁ ଚିନ୍ତାରାଜ୍ୟରେ ଏକ ନୂତନ ବିପ୍ଳବର ସାର୍ଥକ ଅୟମାରମ୍ଭ ମାତ୍ର ।[୫୧] ମାର୍କସଙ୍କର ଧାରଣା ଥିଲା ସାମାଜିକ ସଚେତନତା ଆସିଲେ ପ୍ରଗତିର ପଥ କେହି ଅବରୁଦ୍ଧ କରିପାରିବେ ନାହିଁ । ଶ୍ରେଣୀହୀନ ସମାଜ ଗଠନ, ଦେଶ ଅର୍ଥର ସୁଷମବଣ୍ଟନ ଓ ଶୋଷକ ଶୋଷିତ ଭେଦଭାବର ସମ୍ପୂର୍ଣ୍ଣ ଦୂରୀକରଣ ଥିଲା ତାଙ୍କ ସ୍ୱପ୍ନର ସମାଜ ଚିତ୍ର ।

ଶିଳ୍ପ ବିପ୍ଳବ ପରେ ସମାଜରେ ଏକ ନୂତନ ଚିନ୍ତାଧାରା ଉଦ୍ରେକ ହେଲା । ଏହି ଶିଳ୍ପ ବିପ୍ଳବ ପରେ ପୁଞ୍ଜିପତିମାନଙ୍କର ଉଦ୍‌ଭବ ସଙ୍ଗେ ସଙ୍ଗେ ପୁଞ୍ଜିବାଦର ସୃଷ୍ଟି ଆରମ୍ଭ ହେଲା । ନିଜ ଉତ୍ପାଦନରେ ଶ୍ରମିକଙ୍କର କୌଣସି ଅଧିକାର ରହିଲା ନାହିଁ । ସେମାନେ କେବଳ ଶ୍ରମ ବିନିମୟରେ ଅର୍ଥ ପାଇଲେ ମାତ୍ର । ପୁଞ୍ଜିପତି ଦିନକୁ ଦିନ ଧନୀ ହେବାକୁ ଲାଗିଲେ ଓ ଦରିଦ୍ର ଦରିଦ୍ରତର ହେଲେ । ସମାଜରେ ତେଣୁ ଦୁଇଟି ଶ୍ରେଣୀର ଉଦ୍‌ଭବ ହେଲା । ଗୋଟିଏ ହେଲେ ପୁଞ୍ଜିପତି ଦଳ ଓ ଅନ୍ୟଟି ହେଲେ ଖଟିଖିଆ ଦଳ । ପରବର୍ତ୍ତୀ ସମୟରେ ରାଷ୍ଟ୍ର ବିପ୍ଳବ ପାଇଁ ଏହା ପଥ ପରିଷ୍କାର କରିଦେଇଥିଲା ।

ଆଧୁନିକ ସାହିତ୍ୟର ବିକାଶରେ ଆଉ ଜଣଙ୍କ ଦାନକୁ ଅସ୍ୱୀକାର କରାଯାଇ ନ ପାରେ । ସେ ଜଣଙ୍କ ହେଲେ ସିଗ୍‌ମଣ୍ଡ ଫ୍ରଏଡ଼୍ । ତାଙ୍କର ମନସ୍ତାତ୍ତ୍ୱିକ ବିଶ୍ଳେଷଣ ଭାବରାଜ୍ୟରେ ଏକ ପରିବର୍ତ୍ତନ ସଂଘଟିତ କଲା । ମଣିଷର ଅବଚେତନ ମନ ଯେ ବେଳେ ବେଳେ ଚେତନସ୍ତରକୁ ଅତିକ୍ରମ କରି ମାନବକୁ ପ୍ରଭାବିତ କରେ, ଏହା ପ୍ରଥମଥର ପାଇଁ ଫ୍ରଏଡ଼୍ ବିଶ୍ଳେଷଣ କରି ଦେଖାଇ ଦେଲେ । ସେ ପ୍ରମାଣ କଲେ ମନୁଷ୍ୟ ଏକ ଦ୍ୱିପଦ ପଶୁ, ଅତି ନୀଚ ସ୍ତରର ଜାନ୍ତବ କାମନାରେ ପୂର୍ଣ୍ଣ । ସେଠି ବିବେକ ବୁଦ୍ଧି ନାହିଁ; ହେତୁବାଦ ନାହିଁ । ସେ ଇନ୍ଦ୍ରିୟ ସୁଖ ଲାଗି ଉନ୍ମତ୍ତ । ଏହି ନେତିବାଚକ ଦର୍ଶନ, ଯୁଗ ଯୁଗ ଅବଲମ୍ବିତ ଧର୍ମ, ପୂଜିତ ଭଗବାନ, ବ୍ୟକ୍ତିର ପବିତ୍ର ଆଦର୍ଶ ବା ମାହାତ୍ମ୍ୟ ପ୍ରତି ସଂଶୟଶୀଳ ହେଲା । ରୂପନେଲା ସଂଶୟବାଦ ବା ଦୁଃଖବାଦରେ । କ୍ରମେ ସାହିତ୍ୟ ଏହି ଭାବଧାରା ଦ୍ୱାରା ସଂକ୍ରମିତ ହେଲା, ମନୁଷ୍ୟର ବାସ୍ତବ ଚରିତ୍ର ଚିତ୍ରଣ ହେଲା ଲେଖକର ସହାୟକ । ପାତ୍ର-ପାତ୍ରୀଙ୍କ ଅନ୍ତରର ଗଭୀରତମ ରହସ୍ୟକାଢ଼ି ନ ଆଣିପାରିଲେ ଲେଖକ ଲେଖା ଅସାର୍ଥକ ବିବେଚିତ ହେଲା ।[୫୨]

ପିକାଶୋଙ୍କ ଚିତ୍ରକଳା ମଧ୍ୟ ଭାବରାଜ୍ୟରେ ଯୁଗାନ୍ତକାରୀ ପରିବର୍ତ୍ତନ ଆଣିଲା । ଗୋଟିଏ ଚିତ୍ର ମାଧ୍ୟମରେ ସମଗ୍ର ବିଶ୍ୱର ଭୟଙ୍କର ରୂପର ବାସ୍ତବ ଚିତ୍ର କରି ମାନବ କିପରି ଯୁଦ୍ଧର ବିଭୀଷିକା ଯୋଗୁଁ ଅସହାୟ ହୋଇ ପଡ଼ୁଛି ତା'ର ପ୍ରମାଣ କରିଦେଲେ । ବିଶ୍ୱରେ ଏହି ଯେଉଁ ପରିବର୍ତ୍ତନ ସଂଘଟିତ ହେଲା, ପାଶ୍ଚାତ୍ୟ ଜ୍ଞାନ-ବିଜ୍ଞାନ ଓ ଶିକ୍ଷା-ଦୀକ୍ଷା ମାଧ୍ୟମରେ ଓଡ଼ିଶାର କବିମାନେ ତାକୁ ଚିତ୍ରଣ କରିବାକୁ ଲାଗିଲେ । କାରଣ ଏହି ବିଶ୍ୱକୁ ଚିନ୍ତାନାୟକମାନେ ଏକ ବୋଲି ଓ ଗୋଟିଏ ଦେଶର ସମସ୍ୟା ସମଗ୍ର ବିଶ୍ୱର ସମସ୍ୟା ବୋଲି ଅନୁଭବ କଲେ । ବିଶ୍ୱଯୁଦ୍ଧର ଭୟଙ୍କର ପରିଣତି କେବଳ ହିରୋସୀମା, ନାଗାସାକୀ କିମ୍ବା ଜାପାନର ନୁହେଁ, ସମଗ୍ର ବିଶ୍ୱପାଇଁ ମଧ୍ୟ ଏକ ଚେତାବନୀ । ସେଥିପାଇଁ ଗୋଟିଏ ଦେଶର ଚିନ୍ତାଚେତନା ଅନ୍ୟଦେଶକୁ ସମ୍ପ୍ରସାରିତ ହେବାକୁ ଲାଗିଲା । ରାଧାନାଥ ଯୁଗର ଅନୁକରଣପ୍ରିୟତା ଓ ନୂତନତା, ସତ୍ୟବାଦୀ ଗୋଷ୍ଠୀର ଜାତୀୟ ଚେତନାମୂଳକ ସୃଷ୍ଟି, ପ୍ରଗତିବାଦୀ ଲେଖକଗୋଷ୍ଠୀଙ୍କ ସମାଜବାଦୀ ଚିନ୍ତାଧାରା, ସଚିରାଉତରାୟ, ଅନନ୍ତ ପଟ୍ଟନାୟକ ତଥା ଗୁରୁପ୍ରସାଦ ମହାନ୍ତିଙ୍କ କବିତାର ବାସ୍ତବବାଦୀ ଦୃଷ୍ଟିଭଙ୍ଗୀ ଏହି କାରଣର ସୁବର୍ଣ୍ଣ ଫଳ । ବିଜ୍ଞାନର ଭୂୟୋବିକାଶ ଫଳରେ "ବିଜ୍ଞାନ ଜୀବନରେ ଆଲୋଡ଼ନ ସୃଷ୍ଟିକଲା, ପୃଥିବୀର ରୂପ ବଦଳାଇ ଦେଲା, ଶିଳ୍ପୀର ଜ୍ଞାନରେ ବ୍ୟାପକତା ପୁଣି ଗଭୀରତା ଆଣିଲା, ଆଉ ତା' ମାଧ୍ୟମରେ ଭରିଦେଲା ନୂତନ ସମ୍ଭାବନା ।"[୫୩] ସାହିତ୍ୟରେ ଯେଉଁ ପରିବର୍ତ୍ତନ ଆସିଛି ସେଥିରେ ବିଜ୍ଞାନର ଏକ

ମୁଖ୍ୟ ଭୂମିକା ରହିଛି । କାଳାନୁଯାୟୀ ବିଚାର କଲେ ପ୍ରଥମ ବିଶ୍ୱଯୁଦ୍ଧ ପୂର୍ବରୁ ଆଧୁନିକ କବିତା (ସାହିତ୍ୟ) ଜନ୍ମଲାଭ କରିଥିଲେ ମଧ୍ୟ ବିଶ୍ୱଯୁଦ୍ଧ ପରେ ଏହା ପ୍ରସାର ଲାଭ କରିଛି । ଅନ୍ୟାର୍ଥରେ କହିଲେ ବିଶ୍ୱଯୁଦ୍ଧ ପୂର୍ବ ଅର୍ଥାତ୍ ଊନବିଂଶ ଶତାବ୍ଦୀର ଶେଷଭାଗରେ ଏହାର ଜନ୍ମ ଓ ବିଶ୍ୱଯୁଦ୍ଧ ପରେ ଅର୍ଥାତ୍ ବିଂଶ ଶତାବ୍ଦୀର ଦ୍ୱିତୀୟ ଦଶକପରେ ଏହା ବିଶେଷଭାବରେ ବିକାଶ ଲାଭ କରିଛି ।

## ରୋମାଣ୍ଟିକ କବିତା : ରୋମାଣ୍ଟିକ୍ ଚେତନାର ସଂକ୍ଷିପ୍ତ ଇତିହାସ

ସାହିତ୍ୟଯୁଗାନୁସାରୀ । ଯୁଗ ପରିବର୍ତ୍ତନ ସଙ୍ଗେ ସଙ୍ଗେ ସାହିତ୍ୟର ବିଭିନ୍ନ ଅଙ୍ଗରେ ମଧ୍ୟ ପରିବର୍ତ୍ତନ ସାଧିତ ହୋଇଥାଏ । ପୁଣି ମାନବର ଦୃଷ୍ଟିଭଙ୍ଗୀରେ ପରିବର୍ତ୍ତନ ଆସିବା ସଙ୍ଗେ ସଙ୍ଗେ ସାହିତ୍ୟରେ ବି ଗୋଟିଏ ଗୋଟିଏ ଆଦର୍ଶର ବିଶେଷ ପ୍ରବଣତା ପରିଲକ୍ଷିତ ହୋଇଥାଏ । ଏହି ଯେଉଁ ନୂତନ ଆଦର୍ଶର ପରିପ୍ରକାଶ ସାହିତ୍ୟରେ ଘଟେ ସମାଲୋଚକମାନେ ତା'ର ବିଭିନ୍ନ ଦିଗକୁ ବିଚାରାଲୋଚନା କରି ତାକୁ ଏକ ସାହିତ୍ୟିକ ମତବାଦ ବା ଆନ୍ଦୋଳନ ନାମରେ ନାମିତ କରିଥାନ୍ତି ଓ ସେହି ନିର୍ଦ୍ଦିଷ୍ଟ ସମୟସୀମା ମଧ୍ୟରେ ଯେଉଁ ସାହିତ୍ୟ ସୃଷ୍ଟି ହୋଇଥାଏ ତାକୁ ସେହି ମତବାଦର ପରିପୋଷକ ଭାବରେ ଗ୍ରହଣ କରି ସାହିତ୍ୟକୁ ସେହି ନାମରେ ନାମିତ କରିଥାନ୍ତି । ମଣିଷ ମାତ୍ରେହିଁ ନୂତନତାର ପୂଜାରୀ । ଏକ ନିର୍ଦ୍ଦିଷ୍ଟ ସାହିତ୍ୟର ସ୍ୱାଦ ଦୀର୍ଘଦିନଧରି ଉପଭୋଗ କରିବାକୁ ସେ ଆଗ୍ରହୀ ନୁହେଁ । ନୂତନତାର ସ୍ୱାଦ ତାକୁ ପାଗଳ କରେ । ପୁଣି ସମାଜର ରାଜନୀତି, ଅର୍ଥନୀତି ଓ ସାମାଜିକ ବୈଷମ୍ୟ ଅନେକ ସମୟରେ ସାହିତ୍ୟର ଗତିପଥକୁ ପରିବର୍ତ୍ତନ କରି ଦେଇଥାଏ । ସେହିପରି ନୂତନ ରୁଚିବୋଧ ଓ ସମାଜ ନୀତିର ପରିବର୍ତ୍ତନ ଯୋଗୁଁ ଇଉରୋପୀୟ ସାହିତ୍ୟରେ ଅଷ୍ଟାଦଶ ଶତାବ୍ଦୀରେ ଏକ ଆନ୍ଦୋଳନର ସୂତ୍ରପାତ ହୋଇଥିଲା ଏବଂ ସେହି ଆନ୍ଦୋଳନ ରୋମାଣ୍ଟିକ ସାହିତ୍ୟ ସୃଷ୍ଟି କରିବାକୁ ପ୍ରେରଣା ଦେଇଥିଲା ।

ଅଷ୍ଟାଦଶ ଶତାବ୍ଦୀ ଇଉରୋପର ଜନମାନସ ପାଇଁ ଥିଲା ଏକ ଗଣ୍ଡଗୋଳିଆ, ହଟଚମଟ ଓ ଦ୍ୱନ୍ଦ୍ୱର ସମୟ ଯାହା ଜନଗଣ ମାନସରେ ଏକ ବୈପ୍ଳବିକ ପରିବର୍ତ୍ତନ ଆନୟନ କରି ଆଧୁନିକ ଯୁଗର ସୂତ୍ରପାତ କରିଥିଲା । ପ୍ରାଚୀନ ଢାଞ୍ଚା ଓ ଆଦର୍ଶ ସବୁ ମାଟିରେ ମିଶିଗଲା । ଅଳ୍ପ କେତେକ ଦଶକରେ ଇଉରୋପର ଆକୃତି, ଚିନ୍ତାଧାରା, ଭାବଭାବନା ଓ ସାହିତ୍ୟରେ ପରିବର୍ତ୍ତନ ଆସିଲା । ଏପରି ପରିବର୍ତ୍ତନ ପଶ୍ଚାତରେ ରହିଛି ଏକ ପାର୍ଶ୍ୱରେ ଫରାସୀ ବିପ୍ଳବ ଓ ଅପର ପକ୍ଷରେ ଶିଳ୍ପ ତଥା ବୈଜ୍ଞାନିକ ଆନ୍ଦୋଳନ । ଅନ୍ୟଦିଗରେ ଇଉରୋପୀୟ ଜନମାନସର ସଚେତନତା, ଶୋଷଣ ତଥା

ପୀଡ଼ନ ବିରୋଧରେ ସଂଗ୍ରାମ ମନୋବୃତ୍ତିରୁ ଏହି ପ୍ରକାର ପରିବର୍ତ୍ତନ ଆସିଛି କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଏକ ସମୟରେ ଇଉରୋପର ଶିକ୍ଷିତ ମାନସ ପୁରୁଣା ଓ ଗତାନୁଗତିକ ପରିବେଶ ଦ୍ୱାରା ଅଣନିଃଶ୍ୱାସୀ ହୋଇ ପଡୁଥିଲେ । ପୁରୁଣାକାଳିଆ ଫେସନକୁ ଜାବୋଡ଼ି ଧରି ରଖିବାର ଆଗ୍ରହ ଆଉ ସେମାନଙ୍କର ନ ଥିଲା । ଏହି ପ୍ରକାର ମନୋଭାବଦ୍ୱାରା ମାତ୍ର କେତୋଟି ଦଶକ ମଧ୍ୟରେ ଭାଷା, ଚିନ୍ତାଧାରା, ସମସ୍ୟା, ଦର୍ଶନ, ସମାଲୋଚନା, ରାଜନୀତି ଓ ସମାଜ ଜୀବନରେ ବିପୁଳ ପରିବର୍ତ୍ତନର ସୂତ୍ରପାତ ହେଲା, ଯାହାଦ୍ୱାରା ପରବର୍ତ୍ତୀ ସମୟରେ ଆଧୁନିକ ବିଶ୍ୱର ଯାଦୁକରୀ ସଂସ୍ପର୍ଶରେ ଆସିବାର ଯୋଗ୍ୟତା ସେମାନେ ହାସଲ କରିପାରିଲେ । ପୁରାତନ ସାହିତ୍ୟର କର୍ଣ୍ଣଧାର ଓ ବଳିଷ୍ଠ ବ୍ୟକ୍ତିତ୍ୱମାନେ ଥିଲେ କର୍ଣ୍ଣିଲେ, ପୋପ୍, ଆଡ଼ିସନ୍ ଓ ଜନସନ୍ ଇତ୍ୟାଦି । ମାତ୍ର ନୂତନତାର ଆବାହକ ଥିଲେ ଲେସିଙ୍ଗ୍, ଗେଟେ, କଲେରିଜ୍, ୱାର୍ଡ଼ସୱାର୍ଥ ଓ ବ୍ଲେକ୍ ପ୍ରଭୃତି ।

ରୁଷୋଙ୍କୁ ରୋମାଣ୍ଟିକ୍ ଆନ୍ଦୋଳନର କର୍ଣ୍ଣଧାର ବୋଲି ମତବ୍ୟକ୍ତ କରାଯାଏ । କିନ୍ତୁ ସୂକ୍ଷ୍ମ ଦୃଷ୍ଟିକୋଣରୁ ବିଚାର କଲେ ଅନୁଭୂତ ହୁଏ, ରୁଷୋ ରୋମାଣ୍ଟିକ୍ ଆନ୍ଦୋଳନ ସମ୍ପର୍କରେ ଯେଉଁ ମତ ପ୍ରଦାନ କରିଛନ୍ତି, ବାସ୍ତବରେ ତାହା ସାହିତ୍ୟ ପାଇଁ ନୁହେଁ, ବରଂ ସମାଜ ପାଇଁ ଅନେକାଂଶରେ ଉଦ୍ଦିଷ୍ଟ । ତାଙ୍କର ଲେଖନୀ କ୍ଲାସିକ୍ ସାହିତ୍ୟ ବିରୁଦ୍ଧରେ ସଂଗ୍ରାମ [illegible], ପରନ୍ତୁ [illegible] ଏକ ଅମୋଘ ଅସ୍ତ୍ର ଥିଲା ଆମର ରକ୍ଷଣଶୀଳ ଶୋଷିତ ସମାଜପାଇଁ । ସେ କଳାକାରମା[illegible] ସ୍ୱାଧୀନତା ପାଇଁ ଦାବୀ କରୁ ନ ଥିଲେ ତାଙ୍କର ଦାବୀ ଥିଲା ସମଗ୍ର ମାନବ ଜାତିର ସ୍ୱାଧୀନ[illegible] ପାଇଁ । ରୁଷୋଙ୍କ 'ପ୍ରକୃତି କୋଳକୁ ପ୍ରତ୍ୟାବର୍ତ୍ତନ' (Return to nature)ଆହ୍ୱାନ କଳା ବା ସା[illegible]ପାଇଁ ଏକ ପ୍ରତ୍ୟକ୍ଷ ଆହ୍ୱାନ ନ ଥିଲେ ମଧ୍ୟ, ପରୋକ୍ଷରେ ଏହା ସାହିତ୍ୟର ରୂପ ପରିବର୍ତ୍ତନ ପାଇଁ ଯଥେଷ୍ଟ ଅନୁପ୍ରାଣିତ କରିଛି । ଏହା ସହିତ ଫରାସୀ ରାଷ୍ଟ୍ରବିପ୍ଳବ ରୋମାଣ୍ଟିକ ଝଡ଼ ପାଇଁ ପଥ ପରିଷ୍କାର କରିଦେଇଥିଲା ।[୫୪]

ଜର୍ମାନ୍‌ରେ ଏହି ରୋମାଣ୍ଟିକ ଚେତନା ୧୭୯୭ରୁ ୧୮୦୦ ମଧ୍ୟରେ ବିକାଶ ଲାଭ କରିଥିଲା । ଏମାନେ ଅତି ପ୍ରାଚୀନ ସାହିତ୍ୟକୁ ସମ୍ପୂର୍ଣ୍ଣ ତ୍ୟାଗ କରିବାକୁ ଚାହୁଁ ନ ଥିଲେ; ମାତ୍ର ମଧ୍ୟଯୁଗୀୟ ସାହିତ୍ୟ ପ୍ରତି ଏମାନଙ୍କର ଏକପ୍ରକାର ମୋହ ଥିଲା । ଅତୀତ ପ୍ରତି ମୋହ, ସ୍ୱାଭାବିକ ଭାଷା, ସାଙ୍ଗୀତିକତା ସେ ସାହିତ୍ୟରେ ପ୍ରାଧାନ୍ୟ ଲାଭ କରିଥିଲା ।[୫୫] ଫ୍ରାନ୍ସରେ ୧୭୮୯ ମସିହାପରେ ଏହି ଚେତନାର ଆରମ୍ଭ ଓ ୧୮୨୦ ମସିହା ବେଳକୁ ପୂର୍ଣ୍ଣ ବିକାଶ ପ୍ରାପ୍ତ ହୋଇଥିଲା । ବଦ୍‌ଲେୟାର, ମାଲାର୍ମେ

ଓ ର୍‍ୟାଁବୋ ଇତ୍ୟାଦି ଏହି ଚେତନାର ସଫଳ ରୂପାୟନ କରିଛନ୍ତି । ଇଂଲଣ୍ଡରେ ୧୭୯୦ ପରେ ଏହା ବିକାଶ ଲାଭ କରିଥିଲେ ମଧ୍ୟ Lyrical ballads ପ୍ରକାଶ ପରେ ପରେ ଏହା ବିଶେଷଭାବରେ ସେଠାରେ ଲୋକପ୍ରିୟ ହୋଇପାରିଥିଲା । "ଏହି ଯୁଗରେ ଇଂଲଣ୍ଡରେ ସାହିତ୍ୟ ସୃଷ୍ଟି ସବୁଠୁଁ ଅଧିକ ହୋଇଥିଲା ଓ ଫ୍ରାନ୍‌ସରେ ତାହା ବୈପ୍ଳବିକ ରୂପ ପରିଗ୍ରହଣ କରିଥିଲା । ଊନବିଂଶ ଶତକର ଦ୍ୱିତୀୟ ଦଶକରେ ୟୁରୋପୀୟ ଚିନ୍ତାଚେତନାର ଦୁର୍ଗ ଥିଲା ଇଂଲଣ୍ଡ ।"[୫୬] .

ସଂକ୍ଷେପରେ କହିଲେ ଫରାସୀ ବିପ୍ଳବ (୧୭୮୯) ପରେ ରୋମାଣ୍ଟିକ ଚେତନାର ବିକାଶ ହୋଇଥିଲା । କିନ୍ତୁ ୱାର୍ଡ୍‌ସୱାର୍ଥଙ୍କ Lyrical ballads (୧୭୯୮)ର ପ୍ରକାଶ ପରେ ପରେ ଏହା ବିଶେଷ ଭାବରେ ବୃଦ୍ଧି ପାଇଥିଲା ବୋଲି ମନେ କରାଯାଇପାରେ । ନିଓ-କ୍ଲାସିକ ସ୍ରଷ୍ଟାମାନଙ୍କ ରଚନାଶୈଳୀକୁ ପରିହାର କରି ସାଧାରଣ ମଣିଷ ଭାଷାରେ କାବ୍ୟକବିତା ରଚନା କରିବାକୁ ସେ Lyrical balladsର ୨ୟ ସଂସ୍କରଣର ଭୂମିକାରେ ଘୋଷଣା କରିଥିଲେ ।[୫୭] ସେଥି ପାଇଁ ହୃଦୟର ଆବେଦନ, ସ୍ୱତଃସ୍ଫୂର୍ତ୍ତ ଅଭିବ୍ୟକ୍ତି, କଳ୍ପନାର ଅବାଧ ପରିପ୍ରକାଶ ସଙ୍ଗେ ସଙ୍ଗେ ସାଧାରଣ ମଣିଷର ଚିତ୍ର କବିତାରେ ପ୍ରକାଶ ଲାଭ କଲା । ଫରାସୀ ବିପ୍ଳବ ପରେ ଦାର୍ଶନିକ ରୁଷୋ ସାମନ୍ତବାଦୀ, ବୁର୍ଜୁଆ ଗୋଷ୍ଠୀଙ୍କ ଉପରେ ପ୍ରଚଣ୍ଡ ଆକ୍ରମଣ କରି ବନ୍ଧନମଧ୍ୟରୁ ମାନବସମାଜକୁ ସମ୍ପୂର୍ଣ୍ଣ ମୁକ୍ତ କରିବାକୁ ଆହ୍ୱାନ ଦେଇଥିଲେ । କାରଣ ସେ ସମୟରେ ସାମନ୍ତବାଦୀ ଓ ରୋମାନ୍ ଧର୍ମଯାଜକମାନେ ନିଜର ସ୍ୱାର୍ଥରକ୍ଷା ଲାଗି ଅପରକୁ ଶୋଷଣ କରୁଥିଲେ । କିନ୍ତୁ ଫରାସୀ ବିପ୍ଳବର ସାଫଲ୍ୟ ପରେ ମଣିଷ ସ୍ୱାଧୀନ ହେବା ସଙ୍ଗେ ସଙ୍ଗେ କ୍ଲାସିକ୍ ରଚନା ଶୈଳୀର ମଧ୍ୟ ପରିବର୍ତ୍ତନ ଘଟିଲା । ସେତେବେଳେ ଫରାସୀ ସାହିତ୍ୟ ଓ କଳା ସମଗ୍ର ଇଉରୋପକୁ ପ୍ରଭାବିତ କରିଥିଲା । ନେପୋଲିୟନଙ୍କ ଜର୍ମାନ୍ ଆକ୍ରମଣ ପରେ ଜର୍ମାନୀ ଜାତୀୟତାବୋଧର ଉଦ୍ରେକ ଘଟିଲା । ଇଂରେଜୀ ଓ ଫରାସୀ ରୋମାଣ୍ଟିକମାନଙ୍କ ସହିତ ଜର୍ମାନ୍ ରୋମାଣ୍ଟିକ ଶିଳ୍ପୀମାନଙ୍କ କଣ୍ଠସ୍ୱର ମିଳିତ ହେବା ଫଳରେ ୟୁରୋପୀୟ ସାହିତ୍ୟ କଳ୍ପନା-ବିଳାସ, ଅନୁଭୂତିର ଅବାଧ ଉଚ୍ଛ୍ୱାସ, ବ୍ୟକ୍ତି ସ୍ୱାଧୀନତା, ପ୍ରକୃତି ପ୍ରତି ବିସ୍ମୟ-ବିମୂଢ଼ ସ୍ୱପ୍ନାଚ୍ଛନ୍ନ ଦୃଷ୍ଟି, ଗଭୀର ମାନବିକତା, ଇତିହାସ ପ୍ରୀତି ଓ ଦାର୍ଶନିକ ଅନ୍ତର୍ଦୃଷ୍ଟିରେ ପ୍ରାଣୋଚ୍ଛଳ ହୋଇଉଠିଲା ।[୫୮] ଏହାହିଁ ଇଉରୋପୀୟ ସାହିତ୍ୟରେ ରୋମାଣ୍ଟିକ ଚିନ୍ତାଧାରାର ସଂକ୍ଷିପ୍ତ ଇତିହାସ । ପାଶ୍ଚାତ୍ୟ ଶିକ୍ଷାର ବିସ୍ତାର, ଜ୍ଞାନ ବିଜ୍ଞାନର ବିକାଶ ତଥା ଆନ୍ତର୍ଜାତିକ ସାହିତ୍ୟ ସଂସ୍ପର୍ଶରେ ଆସିବା ପରେ ଭାରତୀୟ ସାହିତ୍ୟରେ ରୋମାଣ୍ଟିକ ଚେତନା ଟିକେ ବିଳମ୍ବରେ ସୃଷ୍ଟି ହୋଇଛି ।

## ସଂଜ୍ଞା ଓ ସ୍ୱରୂପ

ରୋମାଣ୍ଟିକ ସାହିତ୍ୟର ସଂଜ୍ଞା ଓ ସ୍ୱରୂପ ସମ୍ପର୍କରେ ଆଲୋଚନା କରିବା ପୂର୍ବରୁ ରୋମାଣ୍ଟିକ ଚେତନାର ଉଦ୍ଭବ ଓ ଏହାର ପ୍ରବକ୍ତାମାନଙ୍କ ସମ୍ପର୍କରେ ସାମାନ୍ୟ ସୂଚନା ଦେବା ବିଧେୟ। ରୋମାଣ୍ଟିକ ଚେତନାର ବିକାଶ ପୂର୍ବରୁ ଦୀର୍ଘ ଏକ ଶତାବ୍ଦୀ ଧରି କ୍ଲାସିକ ପରମ୍ପରା ବ୍ୟବହୃତ ହୋଇ ଆସୁଥିଲା। କ୍ଲାସିକ ପନ୍ଥୀମାନେ ସାହିତ୍ୟରେ ଏକ ନିୟମ ପ୍ରତିଷ୍ଠା କରିଥିଲେ, ଯାହାଦ୍ୱାରା ଲେଖକ ସ୍ୱାଧୀନଭାବରେ ଚିନ୍ତାକରିବାକୁ ଏବଂ ବାଧଭାବରେ ତାର ଚେତନାକୁ ପ୍ରକାଶ କରିବାକୁ ଶିକ୍ଷା କରିଥିଲା। ଯେପରି ମେଟାଫିଜିକାଲ ଏଲିଜାବେଥନ୍ ଆଦର୍ଶକୁ ତ୍ୟାଗ କରିଥିଲା, ସେହିପରି ଡ୍ରାଇଡେନ ଓ ପୋପ୍‌ଙ୍କ ଅନୁଧାବକମାନେ କ୍ଲାସିକର ମର୍ଯ୍ୟାଦା, ସଂଯମତା ଆଦିକୁ ତ୍ୟାଗ କରିଥିଲେ। ୧୭୨୬ ଖ୍ରୀ:ରେ ଏକ ସାହିତ୍ୟିକ ଆନ୍ଦୋଳନର ସୂତ୍ରପାତ ହେଲା ଯେତେବେଳେ ଜେମ୍‌ସ୍ ଥମ୍‌ସନ୍‌ଙ୍କର 'The season'କବିତା ଗ୍ରନ୍ଥର ପ୍ରଥମଭାଗ ପ୍ରକାଶିତ ହେଲା। ଏହା ପୂର୍ବବର୍ତ୍ତୀ ଏକଶତ ବର୍ଷର କବିତାମାନଙ୍କଠାରୁ ଉଭୟ ବିଷୟବସ୍ତୁ ଓ ରୀତିଠାରୁ ସମ୍ପୂର୍ଣ୍ଣ ପୃଥକ ଥିଲା। କୋଲିନ୍‌ସ ଓ ଗ୍ରେ ସମ୍ବୋଧନ ଗୀତିକା ଓ ଏଲିଜି୍‌ରେ ନୂତନତା ଆଣିଲେ। ଗୋଲ୍‌ଡ଼ସ୍ମିଥ୍ ଓ ବର୍ଣ୍ଣେ ବାସ୍ତବ କବିତା କ୍ଷେତ୍ରରେ ଏବଂ ଶ୍ଳେଷ ଭାଷା ପ୍ରୟୋଗରେ ଯୁଗାନ୍ତକାରୀ ପରିବର୍ତ୍ତନ ଆନୟନ କଲେ। ବ୍ଲେକ୍, କାଓପର ପୁରୁଣା ଢାଞ୍ଚାରେ ପରିବର୍ତ୍ତନ ଆଣିଲେ। ୧୭୮୯ ଖ୍ରୀ:ରେ ୱାର୍ଡ଼ସୱାର୍ଥ ଓ କଲେରିଜ୍‌ଙ୍କ Lyrical ballads ପ୍ରକାଶ ପରେପରେ ପୁରାତନ କବିତା ଏକ ନୂତନ ମୋଡ଼ନେଲା। ଏହି କବିତା ଗ୍ରନ୍ଥଟି କ୍ଷମତା, ପରମ୍ପରା ଓ ଗତାନୁଗତିକତା ବିରୋଧରେ ଏକ ପରୋକ୍ଷ ସଂଗ୍ରାମ ଥିଲା। ବର୍ତ୍ତମାନ ରୋମାଣ୍ଟିକ କବିତାର ସଂଜ୍ଞା ଓ ସ୍ୱରୂପ ସମ୍ପର୍କରେ ଆଲୋଚନା କରାଯାଇପାରେ।

ରୋମାଣ୍ଟିକ କବିତା ସମ୍ପର୍କରେ ଆଲୋଚନା କରିବାକୁ ଯାଇ ସମାଲୋଚକ କୁହନ୍ତି:- କବି ସାଧାରଣ ଜୀବନରୁ ଘଟଣାବଳୀ ସଂଗ୍ରହ କରି ତାକୁ କଥିତ ଭାଷାରେ ବର୍ଣ୍ଣନା କରିବା ଉଚିତ।[୫୯] 'ରୋମାନ୍‌ସ' ଶବ୍ଦରୁ ରୋମାଣ୍ଟିକ୍ ଶବ୍ଦର ସୃଷ୍ଟି। ସପ୍ତଦଶ ଶତାବ୍ଦୀରେ ମିଥ୍ୟା ଓ କାଳ୍ପନିକ ବିଷୟବସ୍ତୁକୁ ପ୍ରକାଶ କରିବାପାଇଁ ରୋମାଣ୍ଟିକ ଶବ୍ଦର ବ୍ୟବହାର କରାଯାଇଥିଲା। ଅନୁରୂପ ଭାବେ ମଧ୍ୟଯୁଗୀୟ ଜୀବନଧାରାରେ ଯେଉଁ ସ୍ୱପ୍ନମୟ ବାତାବରଣ ସୃଷ୍ଟି ହୋଇଥିଲା ତାକୁ ଦୃଷ୍ଟି ସମ୍ମୁଖରେ ରଖି ଅଷ୍ଟାଦଶ ଶତାବ୍ଦୀରେ ସୃଷ୍ଟି ହୋଇଥିବା ସାହିତ୍ୟକୁ ରୋମାଣ୍ଟିକ ସାହିତ୍ୟ ଆଖ୍ୟା ଦିଆଯାଇଥିଲା। ଜୀବନକୁ କଳ୍ପନାଦ୍ୱାରା କବିତ୍ୱମୟୀ ଭାଷାରେ ସରଳଭାବରେ ବର୍ଣ୍ଣନା କରିବାହିଁ ରୋମାଣ୍ଟିସିଜିମ୍‌ର

ଲକ୍ଷ୍ୟ ଯାହା ଅଷ୍ଟାଦଶ ଶତାବ୍ଦୀର ଇଂରାଜୀ ଦର୍ଶନର ଏକ ବିଶିଷ୍ଟ ମତବାଦ ଭାବରେ ଗୃହୀତ ହୋଇଥିଲା।[୬୦] ଅନ୍ୟାର୍ଥରେ କହିଲେ, "ଯାହା ଆମ ସାଧାରଣ ଜୀବନରେ ସହଜ ଲଭ୍ୟ ନୁହେଁ, ଏଭଳି ଦୃଶ୍ୟ ବା ଘଟଣା ଯେଉଁଥିରେ ବର୍ଣ୍ଣିତ ହୋଇଥାଏ, ଯେଉଁ ରଚନା କଳ୍ପନାଧର୍ମୀ, ସ୍ୱପ୍ନଚାରୀ ବା କୌଣସି ଅଦ୍ଭୁତ ଘଟଣା ଉପରେ ଆଧାରିତ; ଯେଉଁ ରଚନାରେ ମାତ୍ରାତିରିକ୍ତ ଭାବେ ସୌନ୍ଦର୍ଯ୍ୟ ସୃଷ୍ଟିର ପ୍ରୟାସ ଲକ୍ଷଣୀୟ; ଫଳତଃ ରଚନାର ସାମଗ୍ରିକ ରୂପ ଯେଉଁଠି ଖଣ୍ଡିତାଂଶ ପାଖରେ ଅଥବା ଆଙ୍ଗିକ ଭାବବସ୍ତୁ (matter) ପାଖରେ ଗୌଣ ହୋଇଯାଏ, ତାକୁହିଁ କୁହାଯାଏ ରୋମାଣ୍ଟିକ।"[୬୧] "କଳ୍ପନାହିଁ ରୋମାଣ୍ଟିକ କବିର ମୁଖ୍ୟ ଉପଜୀବ୍ୟ, ଯାହା ଜୀବନ ଓ ପ୍ରକୃତିର ରହସ୍ୟ ଭେଦ କରିବା ନିମିତ୍ତ ଉପଯୁକ୍ତ ଦିଗ୍‌ଦର୍ଶନ ଦେଇଥାଏ।[୬୨] ତେଣୁ ରୋମାଣ୍ଟିକ କବିତାରେ କଳ୍ପନା ପ୍ରବଣତାର ଆଧିକ୍ୟ, ଜୀବନ ପ୍ରତି ସହଜ ସରଳ ଦୃଷ୍ଟିଭଙ୍ଗୀ, ପ୍ରକୃତି ଚିତ୍ରଣରେ ନବୀନତା, ଗଭୀର ରହସ୍ୟବୋଧର ପ୍ରକାଶ, ସୂକ୍ଷ୍ମ ଜୀବନ ଦର୍ଶନ, ପରମ୍ପରାର ନିଗୂଢ଼ ବନ୍ଧନରୁ ମୁକ୍ତି ଓ ସର୍ବୋପରି ଅତିରିକ୍ତ ସୌନ୍ଦର୍ଯ୍ୟ ସୃଷ୍ଟିର ପ୍ରୟାସ ଲକ୍ଷ୍ୟ କରାଯାଇଥାଏ। ଏହା ଏକ ମାନସିକ ଚିତ୍ତବୃତ୍ତି କହିଲେ ଅତ୍ୟୁକ୍ତି ହେବ ନାହିଁ। ଆଲୋଚିକା ଜ୍ୟୋତ୍ସ୍ନାମୟୀ ପ୍ରଧାନ କୁହନ୍ତି – "ରୋମାଣ୍ଟିକ ଶବ୍ଦ ଏକ କଳାତ୍ମକ ସମାଲୋଚନା ନୁହେଁ ବରଂ ଏକ ମାନସିକ ଚିତ୍ତବୃତ୍ତି। ଏହାଦ୍ୱାରା ଜାଗତିକ ବସ୍ତୁକୁ ଏକ କଳ୍ପନାପ୍ରବଣ ଚକ୍ଷୁରେ ଭାବପ୍ରବଣତା ନେଇ ଲକ୍ଷ୍ୟକରାଯାଇଥାଏ।[୬୩] ବିଭିନ୍ନତା ଓ ବୈଚିତ୍ର୍ୟ ଏହାର ପ୍ରାଣସ୍ୱରୂପ। ଧରାବନ୍ଧା ଗତାନୁଗତିକ ପଦ୍ଧତିକୁ ଏହା ସ୍ୱୀକାର କରେ ନାହିଁ। ବୈୟକ୍ତିକତାର ପ୍ରାଧାନ୍ୟ, ଇନ୍ଦ୍ରିୟଗ୍ରାହ୍ୟ, ଚାକ୍ଷୁସ ସୌନ୍ଦର୍ଯ୍ୟ ପ୍ରତି ଅଧିକ ଧ୍ୟାନ, ସାହସିକତାର ଆକର୍ଷଣ, ବୀରତ୍ୱ, ବିସ୍ମୟ ଉଦ୍ଦୀପକ କାର୍ଯ୍ୟ, ଅଲୌକିକତା, ସ୍ୱପ୍ନ ଓ ଅବଚେତନର ରୂପାୟନରେ ବ୍ୟଗ୍ରତା, ପ୍ରକୃତିର ବିପୁଳ ବୈଚିତ୍ର୍ୟ ପ୍ରଦର୍ଶନରେ ନିପୁଣତା, ମାନବିକତାର ଗୁରୁତ୍ୱ ଆରୋପ, ଚିତ୍ତର ମୁକ୍ତି ଓ ଚିନ୍ତାର ନିଷ୍କୃତି, ଆଧ୍ୟାତ୍ମିକତା, କୌତୂହଳତା, କ୍ଷୁବ୍ଧତା, ଦୁଃସାହସିକତା, ଚମକ ଓ ଉତ୍ତେଜନା ରୋମାଣ୍ଟିକ ସାହିତ୍ୟର ବିଶିଷ୍ଟଗୁଣ। ଇଂରାଜୀ ଶିକ୍ଷା ମାଧ୍ୟମରେ ଓଡ଼ିଆ ସାହିତ୍ୟରେ ରୋମାଣ୍ଟିକ ଚେତନା ପ୍ରବେଶ ଲାଭ କରିଛି। ବିଳମ୍ବରେ ହେଲେ ମଧ୍ୟ ଓଡ଼ିଆ ସାହିତ୍ୟର ମୋଡ଼ ପରିବର୍ତ୍ତନରେ ଯେ ଏହା ଏକ ଗୁରୁତ୍ୱପୂର୍ଣ୍ଣ ଅଂଶ ଗ୍ରହଣ କରିଛି, ଏହା ଅସ୍ୱୀକାର କରାଯାଇ ନ ପାରେ।

## ରୋମାଣ୍ଟିକ ସାହିତ୍ୟର ବୈଶିଷ୍ଟ୍ୟ

ସାଧାରଣତଃ ସମାଲୋଚକମାନେ ରୋମାଣ୍ଟିକ ସାହିତ୍ୟର ପାଞ୍ଚଟି ବିଶିଷ୍ଟ ଲକ୍ଷଣ ସମ୍ପର୍କରେ ଆଲୋକପାତ କରିଥାନ୍ତି। ସେଗୁଡ଼ିକ ହେଲା –

**ରକ୍ଷଣଶୀଳତା ଓ ପରମ୍ପରା ବିରୋଧରେ ସ୍ୱର ଉତ୍ତୋଳନ** – ମାନବର ସ୍ୱତଃସ୍ଫୂର୍ତ୍ତ ଭାବାବେଗ ଉପରେ ଏମାନେ ଗୁରୁତ୍ୱ ଆରୋପ କରିଥାନ୍ତି। ସେମାନଙ୍କ ମତରେ ମାନବର ନିଜ ଭାବାନୁଯାୟୀ ଭାବପ୍ରକାଶ କରିବାର ସମ୍ପୂର୍ଣ୍ଣ ସ୍ୱାଧୀନତା ରହିଛି। କ୍ଲାସିକ୍ ସାହିତ୍ୟରେ ନୂତନତା ବୋଲି କିଛି ନାହିଁ। ସେହି ଗୋଟିଏ ଆଦର୍ଶ ଓ ନିୟମର ବାରମ୍ବାର ପୁନରାବୃତ୍ତି ଘଟିଥାଏ। କ୍ଲାସିକ କବିଙ୍କର ସମସ୍ତ ସୃଷ୍ଟି ଗୋଟିଏ ମେସିନ୍‌ରେ ନିର୍ମିତ ହେବାପରି ଜଣାଯାଇଥାଏ। କିନ୍ତୁ ରୋମାଣ୍ଟିକ୍ ସାହିତ୍ୟର ପ୍ରତ୍ୟେକ ସୃଷ୍ଟିରେ ପାର୍ଥକ୍ୟ ଓ ନୂତନତା ଅନୁଭୂତ ହୋଇଥାଏ। ମାନବର ବ୍ୟକ୍ତିତ୍ୱହିଁ ରୋମାଣ୍ଟିକ ସାହିତ୍ୟର ପ୍ରଧାନ ବୈଶିଷ୍ଟ୍ୟ।

**ପ୍ରକୃତିକୁ ପ୍ରତ୍ୟାବର୍ତ୍ତନ ଓ ସରଳ ଜୀବନ ପ୍ରତି ଅନୁରାଗ** – ସରଳ ଓ ପ୍ରାକୃତିକ ଜୀବନଯାପନ ଉପରେ ରୋମାଣ୍ଟିକମାନେ ଅଧିକ ଗୁରୁତ୍ୱ ଦେଉଥିଲେ। ପଲ୍ଲୀପ୍ରାଣତା ଓ ପ୍ରକୃତି ପ୍ରାଣତା ରୋମାଣ୍ଟିକ କବିତାଗୁଡ଼ିକୁ ସୌନ୍ଦର୍ଯ୍ୟମୟ କରି ତୋଳିଛି। ସରଳ ମାନବର ଗ୍ରାମୀଣ ଜୀବନ ଯାପନ ପ୍ରଣାଳୀକୁ ପ୍ରକାଶ କରିବାକୁ ରୋମାଣ୍ଟିକ କବିଗଣ ଶ୍ରେୟଃ ମନେ କରିଛନ୍ତି। ତେଣୁ ରୋମାଣ୍ଟିକ କବିତା ହୋଇଛି ସାଧାରଣ ମାନବର ଜୀବନ୍ତ ଓ ବିଶ୍ୱସ୍ତ ପରିପ୍ରକାଶ।

**ବିଭିନ୍ନତା ଓ ବୈୟକ୍ତିକତା** – ଭାବପ୍ରବଣତା, ମାନବୀୟ ପ୍ରବୃତ୍ତି ଓ ଆତ୍ମନିଷ୍ଠତା ରୋମାଣ୍ଟିକ କବିତାର ପ୍ରାଣ। କଳ୍ପନାକୁ ସ୍ୱଚ୍ଛନ୍ଦରେ ବିହାର କରିବାକୁ ଏମାନେ ଛାଡ଼ିଦିଅନ୍ତି। ଏହି ପ୍ରବଣତା ଶେଲୀ, ବାଇରନ୍ ଓ କୀଟ୍‌ସ ପ୍ରଭୃତି ବିଶିଷ୍ଟ କବିମାନଙ୍କର କବିତାରେ ଦୃଷ୍ଟିଗୋଚର ହୋଇଥାଏ। ସେମାନେ ପ୍ରତ୍ୟେକ ଏକ ନିର୍ଦ୍ଦିଷ୍ଟ ବିଷୟବସ୍ତୁ ଉପରେ କବିତା ରଚନା କଲେ ମଧ୍ୟ ପ୍ରତ୍ୟେକଙ୍କଠାରେ ପ୍ରକାଶଭଙ୍ଗୀର ବୈଚିତ୍ର୍ୟ ପରିଦୃଷ୍ଟ ହୋଇଥାଏ। ଅଗଷ୍ଟାଇନ୍‌ଙ୍କ ସମୟର କବିତାମାନଙ୍କରେ ଏକ ନିର୍ଦ୍ଦିଷ୍ଟ ପାରିବାରିକ ସୌସାଦୃଶ୍ୟ ପ୍ରତ୍ୟେକ କବିଙ୍କଠାରେ ଦୃଷ୍ଟିଗୋଚର ହେଉଥିଲା, ଯାହା ପାଠ କରିବାକୁ ପାଠକମାନଙ୍କ ମନରେ କୌଣସି ପ୍ରକାର ଆଗ୍ରହ ଜାତ ହେଉ ନ ଥିଲା। କିନ୍ତୁ ରୋମାଣ୍ଟିକ କବିମାନେ ଏହି ପରମ୍ପରା ଉପରେ କୁଠାରଘାତ କରି ପ୍ରକାଶଭଙ୍ଗୀରେ ନୂତନତା ଆଣିଲେ।

**ସାଙ୍ଗୀତିକତା** – ଭାବର ସ୍ୱାଧୀନତା ପ୍ରକାଶ ଏକ ସାଙ୍ଗୀତିକମୟ ପ୍ରକାଶର ଅପେକ୍ଷା ରଖେ। ରୋମାଣ୍ଟିକ କବିମାନେ ସେମାନଙ୍କ କବିତାରେ ସାଙ୍ଗୀତିକତା, ବୌଦ୍ଧିକହୀନତା, ଇନ୍ଦ୍ରିୟ ପ୍ରବଣତା ଓ ଗଭୀର ଆବେଗ ପୂର୍ଣ୍ଣତାର ପ୍ରକାଶ ଘଟାଇଲେ। ଶେଲୀଙ୍କ ହସ୍ତରେ ଏହି ସାଙ୍ଗୀତିକ ପ୍ରକାଶ ଅନ୍ୟ ଏକ ରୂପ ପରିଗ୍ରହ କଲା। କବିତା ଏହି ସଙ୍ଗୀତମୟୀ ଗୁଣ ଯୋଗୁଁ ସତେଜ ଓ ଚିତ୍ତବିମୋହନ କରିପାରିଲା।

**ମଧ୍ୟଯୁଗୀୟ ପ୍ରବୃତ୍ତିପ୍ରତି ମୋହ** – ମଧ୍ୟଯୁଗୀୟ ଜୀବନ ଓ କିମ୍ବଦନ୍ତୀ ପ୍ରତି ରୋମାଣ୍ଟିକ କବିମାନଙ୍କର ଅଶେଷ ଦୁର୍ବଳତା ଥିଲା। ମଧ୍ୟଯୁଗୀୟ କଳା, ସଂସ୍କୃତି ଏପରିକି ପ୍ରାଚୀନ ଗୌରବାବହ ଐତିହ୍ୟ ଓ ନୈତିକତା ଦ୍ୱାରା ସେମାନେ ଅନୁପ୍ରାଣିତ ହୋଇଥିଲେ। ସ୍କଟ୍ ଓ କୀଟ୍‌ସଙ୍କ କବିତାରେ ଉପରୋକ୍ତ ମୋହର ବିଶେଷ ପ୍ରବଣତା ପରିଦୃଷ୍ଟ ହୋଇଥାଏ। ରୋମାଣ୍ଟିକ କବିମାନଙ୍କର ଆଉ ଏକ ବିଶିଷ୍ଟ ସୃଷ୍ଟି ହେଲା, ଗାଥା କବିତାର ପରିପ୍ରକାଶ। ସମାଜରୁ, ଇତିହାସରୁ ଓ କିମ୍ବଦନ୍ତୀରୁ ବିଭିନ୍ନପ୍ରକାର ଉପାଦାନ ସଂଗ୍ରହ କରି ଏମାନେ ଗାଥାକବିତା ସୃଷ୍ଟି କରିବାକୁ ଲାଗିଲେ, ଯାହାଦ୍ୱାରା ସାମସାମୟିକ ଚେତନଶୀଳ ବୁଦ୍ଧିଜୀବୀ ଗୋଷ୍ଠୀଙ୍କ ନିକଟରେ ଏମାନେ ଯଥେଷ୍ଟ ପ୍ରିୟ ହୋଇପାରିଲେ।

**ଓଡ଼ିଆ ସାହିତ୍ୟରେ ରୋମାଣ୍ଟିକ ଚେତନା** – ଯଦି କଳ୍ପନା ପ୍ରବଣତା ଓ ପ୍ରଣୟମୂଳକ ସୃଷ୍ଟି ରୋମାଣ୍ଟିକ ସାହିତ୍ୟର ଏକମାତ୍ର ଲକ୍ଷ୍ୟ ହୁଏ, ତେବେ ଉପେନ୍ଦ୍ରଭଞ୍ଜ ପ୍ରମୁଖ କବିମାନେ ଏ ଚେତନାର ବାର୍ତ୍ତାବହ ଭାବେ ପ୍ରଥମ ସମ୍ମାନ ପାଇବାକୁ ହକଦାର। କିନ୍ତୁ ପାଶ୍ଚାତ୍ୟ ସାହିତ୍ୟରେ ଯେଉଁ ପରିସ୍ଥିତି ଓ ପରିବେଶରୁ ଏହାର ସୃଷ୍ଟି, ସେ ଦୃଷ୍ଟିରୁ ବିଚାରକଲେ ପାଶ୍ଚାତ୍ୟ ଶିକ୍ଷାପ୍ରାପ୍ତ ରାଧାନାଥ ରାୟ ହେଉଛନ୍ତି ଓଡ଼ିଆ ସାହିତ୍ୟରେ ପ୍ରଥମ ରୋମାଣ୍ଟିକ କବି। ଏହି ପରିପ୍ରେକ୍ଷୀରେ ସମାଲୋଚକ ଚିନ୍ତାମଣି ବେହେରା କୁହନ୍ତି – "ରୋମାଣ୍ଟିକ କାବ୍ୟ ପ୍ରବାହର ଭଗୀରଥ ଭାବରେ ରାଧାନାଥ ଏ ଦେଶର କାବ୍ୟଲକ୍ଷ୍ମୀଙ୍କୁ ଦେଇଛନ୍ତି ଦୁର୍ବହ ଭୂଷଣ ଭାରର ପୀଡ଼ାରୁ ମୁକ୍ତି; କବିତାକୁ କରିଛନ୍ତି ଅଧିକତର ସନ୍ଧାନଧର୍ମୀ ଓ ଆବିଷ୍କାର ପ୍ରବଣ; ଆମମାନଙ୍କ ବ୍ୟାବହାରିକ ଜୀବନରେ ଯେଉଁ ପ୍ରାକୃତିକ ବସ୍ତୁ ସମୂହ ସୁଦୂର ଓ ଅପରିଚିତ ହୋଇ ରହିଥିଲେ ସେମାନଙ୍କ ମଧ୍ୟରେ ଏକ ଇଙ୍ଗିତମୟ ଓ ଇନ୍ଦ୍ରିୟଗ୍ରାହୀ ସମ୍ବନ୍ଧ ସ୍ଥାପନ କରି ଆମମାନଙ୍କର କରିଛନ୍ତି ଅନ୍ତରଙ୍ଗ ଓ ନିକଟବର୍ତ୍ତୀ; କାବ୍ୟ ବୀଣାରେ ଯୋଗ କରିଛନ୍ତି ଜାତୀୟତାର ନୂତନ ସ୍ୱର; ସର୍ବୋପରି ଭାବ ପ୍ରକାଶରେ ଆନୟନ କରିଛନ୍ତି ଅକୃତ୍ରିମତା, ସ୍ୱଚ୍ଛନ୍ଦତା ଓ ସାବଲୀଳତା।"[୬୪] ଓଡ଼ିଶାରେ ଇଂରାଜୀ ସାହିତ୍ୟର ପ୍ରସାର ସଙ୍ଗେ ସଙ୍ଗେ ପ୍ରତ୍ୟକ୍ଷରେ ହେଉ ବା ପରୋକ୍ଷରେ ହେଉ ଓଡ଼ିଆ କବି ତାଦ୍ୱାରା ପ୍ରଭାବିତ ହୋଇ କାବ୍ୟକବିତା ରଚନା କରିଛନ୍ତି। ରାଧାନାଥଙ୍କ ପରେ ଫକୀରମୋହନ, ମଧୁସୂଦନ, ନନ୍ଦକିଶୋର, ଗଙ୍ଗାଧର, ଗୋପବନ୍ଧୁ, ନୀଳକଣ୍ଠ, ଗୋଦାବରୀଶ, କୁନ୍ତଳାକୁମାରୀ, ଅନ୍ନଦାଶଙ୍କର, ପଦ୍ମଚରଣ, ବୈକୁଣ୍ଠନାଥ, କାଳିନ୍ଦୀଚରଣ, ହରିହର, ମାୟାଧର, ରାଧାମୋହନ ଏପରିକି ସଚିଦାନନ୍ଦ ରାଉତରାୟଙ୍କ ଆଦ୍ୟରଚନାବଳୀରେ ରୋମାଣ୍ଟିକ ପ୍ରବଣତା ଲକ୍ଷ୍ୟ କରାଯାଇପାରେ।

ରୋମାଣ୍ଟିକ ସାହିତ୍ୟ ମୂଲ୍ୟହୀନ ନୁହେଁ କି ବାସ୍ତବତାଠାରୁ ପଳାୟନ ମଧ୍ୟ ନୁହେଁ। ବିଶିଷ୍ଟ କବିମାନଙ୍କ କୃତିରେ ବାସ୍ତବତା ସହିତ ରୋମାଣ୍ଟିକ ଭାବର ମଧୁର ସମନ୍ୱୟ ଘଟିଥାଏ। ଏମାନଙ୍କର ସମ୍ପର୍କ ଅବିଚ୍ଛେଦ୍ୟ। ସେଥିପାଇଁ ଆଲୋଚକ ଦାଶରଥି ଦାସ କୁହନ୍ତି – "ରୋମାଣ୍ଟିକ ହେବା ଅମର୍ଯ୍ୟାଦାର କଥା ନୁହେଁ। କବି ୱାର୍ଡ଼ସୱାର୍ଥ, କଲେରିଜ୍ ପ୍ରବର୍ତ୍ତିତ ଐତିହାସିକ ରୋମାଣ୍ଟିକ ଆନ୍ଦୋଳନର କାବ୍ୟାଦର୍ଶ ବିରୁଦ୍ଧରେ ବିଦ୍ରୋହ ଘୋଷଣା କରିଥିଲେ ହେଁ ବିଶ୍ୱର କୌଣସି ଆଧୁନିକ କବି ସନାତନ ରୋମାଣ୍ଟିକ କଳ୍ପନାକୁ କେବେ ପରିହାର କରି ନାହାନ୍ତି। ରୋମାଣ୍ଟିକ କଳ୍ପନା ସବୁକାଳେ ଭଲ କବିଙ୍କର ଚିତ୍ତବୃତ୍ତି। ରୋମାଣ୍ଟିକ ନ ହୋଇ କବି ହୋଇହୁଏ ନାହିଁ। × × × ଯେଉଁଠି କବି ପ୍ରକୃତିସ୍ଥ, ସେଠାରେ ତାଙ୍କ ବାସ୍ତବବାଦ ଓ ରୋମାଣ୍ଟିକତା ହରିହରାତ୍ମା ହୋଇ ଉଠିଛନ୍ତି।"[୬୫] ସେଥିପାଇଁ ରୋମାଣ୍ଟିକ କବିଙ୍କୁ ଶସ୍ତା ବା ଦ୍ୱିତୀୟ ଶ୍ରେଣୀ କବି କହିବାରେ କୌଣସି ଯଥାର୍ଥତା ନାହିଁ। ସମାଜର ଚିନ୍ତା ଚେତନାକୁ କଳ୍ପନା ରଙ୍ଗରେ ରଙ୍ଗାୟିତ କରି ପ୍ରକାଶ କରିବାରେ ପ୍ରଥମ ଶ୍ରେଣୀୟ କବିଙ୍କର ସିଦ୍ଧହସ୍ତତାର ପରିଚୟ ରୋମାଣ୍ଟିକ କବି ଦେଇଛନ୍ତି। ଆମର ଆଧୁନିକ କବି ପରମ୍ପରା କ୍ରମେ ରୋମାଣ୍ଟିକ ଚିନ୍ତାଧାରାର ବାହକ। ଆଲୋଚକ ବଳ କୁହନ୍ତି – "ରାଧାନାଥଙ୍କଠାରୁ ଆରମ୍ଭ କରି ଆଜି ପର୍ଯ୍ୟନ୍ତ ଓଡ଼ିଆ କବିତା ମୁଖ୍ୟତଃ ରୋମାଣ୍ଟିକ ପରମ୍ପରାଶ୍ରୟୀ। ରୋମାଣ୍ଟିକ ଦୃଷ୍ଟିଭଙ୍ଗୀ ନେଇ ଆଧୁନିକ ମଣିଷର ଜୀବନଚର୍ଯ୍ୟା ଘଟିଛି ଓଡ଼ିଆ କବିତାରେ। 'ରୋମାଣ୍ଟିକ' କହିଲେ ଓଡ଼ିଆ କବିତାକୁ ଦ୍ୱିତୀୟ ଶ୍ରେଣୀର ବୋଲି ଭାବିବାର କୌଣସି ଯଥାର୍ଥତା ନାହିଁ। ବହୁ ଆଧୁନିକ ବିଶ୍ୱସ୍ରଷ୍ଟାଙ୍କର କଳାସୃଷ୍ଟି ଭିତରେ ରୋମାଣ୍ଟିକ ଆଭିମୁଖ୍ୟ ସ୍ପଷ୍ଟ।"[୬୬] ଚେତନାର ପରିବର୍ତ୍ତନ ସଙ୍ଗେ ସାହିତ୍ୟରେ ଆସିଥାଏ ପରିବର୍ତ୍ତନ। ବିଶ୍ୱସାହିତ୍ୟ ସହିତ ତାଳଦେଇ ଓଡ଼ିଆ ସାହିତ୍ୟ ଗତିକରି ଚାଲିଛି, ପରିବର୍ତ୍ତନକୁ ନିଜର କରିନେଇଛି। ଏହି ଦୃଷ୍ଟିରୁ ଓଡ଼ିଆ ସାହିତ୍ୟରେ ରୋମାଣ୍ଟିକ ଚେତନା ଅବାଞ୍ଛିତ ନୁହେଁ, କହିବା ବାହୁଲ୍ୟ ମାତ୍ର।

## କ୍ଲାସିକ୍ କବିତା

**ସଂଜ୍ଞା ଓ ସ୍ୱରୂପ** – 'Clasic' ଶବ୍ଦଟି 'Clacicus' ଶବ୍ଦରୁ ଆସିଅଛି। ଏହାର ଅର୍ଥ ମହାନ ଓ ପ୍ରଥମ ଶ୍ରେଣୀ ବୋଧକ। ସପ୍ତଦଶ ଶତକର ମଧ୍ୟଭାଗରେ ଇଂରାଜୀ କବିମାନଙ୍କ ମଧ୍ୟରେ ଏକ ପରିବର୍ତ୍ତନ ଲକ୍ଷ୍ୟ କରାଗଲା। ମେଟାଫିଜିକାଲ କବିତାର ସ୍ରୋତ କ୍ରମଶଃ କ୍ଷୀଣରୁ କ୍ଷୀଣତର ହେବାକୁ ଆରମ୍ଭ କଲା। ସେମାନେ ପ୍ରାକ୍ତନ ଏଲିଜାବେଥେନ ସମୃଦ୍ଧ ଗ୍ରୀକ୍ ଓ ଲାଟିନ୍ ସାହିତ୍ୟରୁ କ୍ଲାସିକ ଭାବଧାରା ଗ୍ରହଣ

କଲେ। ଫ୍ରାନ୍ସର ଉନ୍ନତ ସାହିତ୍ୟରୁ ପ୍ରେରଣା ପାଇ ସେମାନେ ଏକ ନୂତନ ସାହିତ୍ୟ ସୃଷ୍ଟି କରିବାକୁ ଚାହିଁଲେ। ଯଦ୍ୱାରା କ୍ଲାସିକ୍ ଭାବଦ୍ୱାରା ପ୍ରଭାବିତ ହୋଇ ସିନେକା ଟ୍ରାଜେଡ଼ି, -ପ୍ଲାଟୋସ୍ ଓ ଟେରେନ୍ସ. କମେଡ଼ି, ଭର୍ଜିଲ ଏପିକ୍, ପାସ୍‌ଟୋରାଲ ଓ ଜୁଭେନାଲ ସାଟାୟର ଓ ହୋରେସ ତାଙ୍କର ସମାଲୋଚନା ମାଧ୍ୟମରେ ପ୍ରସିଦ୍ଧି ଲାଭ କଲେ। ଏଡ଼୍‌ମର୍ଡ ୱାଲର ଓ ସାର୍ ଜନ୍ ଡେନହାମ୍ ଏହି ନୂତନ ଆନ୍ଦୋଳନର ପ୍ରବର୍ତ୍ତକ ଥିଲେ। ସେ ମେଟାଫିଜିକାଲ ବିରୋଧରେ କ୍ଲାସିକ୍ ସୃଷ୍ଟିପାଇଁ ଲେଖନୀ ଚାଳନା କଲେ।

ଗାମ୍ଭୀର୍ଯ୍ୟ ଓ ଉଚ୍ଚତର ସତ୍ୟତା କ୍ଲାସିକ୍ କବିତାର ପ୍ରାଣ।[୬୭] କ୍ଲାସିକ୍ ସାହିତ୍ୟର କଥାବସ୍ତୁର ଗତି ଧୀର, ଭାବ ଗଭୀର, ଭାଷା ଓ ଭଙ୍ଗୀ ଗମ୍ଭୀର। ଭାଷା ପ୍ରୟୋଗରେ ସଂଯମ ଓ ପରିମିତି ବୋଧ ଏହାର ଅନ୍ୟତମ ବୈଶିଷ୍ଟ୍ୟ। ପ୍ରକାଶଭଙ୍ଗୀରେ ପ୍ରଗଲ୍‌ଭତା, କଳ୍ପନା ବିଳାସରେ ଅସଂଲଗ୍ନତା କ୍ଲାସିକର ଧର୍ମ ନଷ୍ଟ କରେ। ପୁଣି କ୍ଲାସିକ୍‌ର ଭାବ ଯେହେତୁ ଗଭୀର, ତା'ର ଭାଷା ମଧ୍ୟ ସେହିପରି ଗାମ୍ଭୀର୍ଯ୍ୟ ପୂର୍ଣ୍ଣ ହେବା ଆବଶ୍ୟକ।[୬୮] କ୍ଲାସିକ୍ ପ୍ରାଣ ହେଉଛି ଏକତ୍ୱ। ଆଙ୍ଗିକ ଓ ସଙ୍ଗଠନ କୌଶଳରେ ଭିନ୍ନତା ପରିଲକ୍ଷିତ ହେଲେ ମଧ୍ୟ ଅନ୍ତର୍ନିହିତ ରସଟି ଏକତ୍ୱ ଉପରେ ଅନୁରଞ୍ଜିତ। ଏ ସାହିତ୍ୟରେ ସାମୂହିକତାର ଆଗ୍ରହ ଦେଖାଯାଏ। ବହୁ କାହାଣୀ, କିମ୍ବଦନ୍ତୀ ଓ ପରିକଳ୍ପନାରେ କ୍ଲାସିକ୍ ସାହିତ୍ୟ ଐଶ୍ୱର୍ଯ୍ୟଶାଳୀ ଓ ଏଥିରେ ଇନ୍ଦ୍ରିୟାତୀତ କାଳ୍ପନିକ ସୌନ୍ଦର୍ଯ୍ୟର ରୂପରେଖ ପ୍ରକାଶ ପାଇଥାଏ। ଏହାର ସ୍ରଷ୍ଟା ବିଶେଷ ଭାବରେ ଆଦର୍ଶବାଦୀ ହୋଇଥିବାରୁ ବାସ୍ତବତାର ଇନ୍ଦ୍ରିୟଗ୍ରାହ୍ୟ ଅନୁଭବ ପ୍ରତି ସେ ବୀତଶ୍ରଦ୍ଧ। ଏ ସାହିତ୍ୟ ଶାନ୍ତିର ପ୍ରଚାର ଓ ସ୍ଥିତିର ତରଙ୍ଗ ଉପରେ ଆସ୍ଥାଶୀଳ ହୋଇଥିବାରୁ ପରଂପରା ପରିହାର କରି ନୂତନତାରେ ଉଦ୍‌ବେଳିତ ହେବାପାଇଁ ଆଗ୍ରହ ପ୍ରକାଶ କରେ ନାହିଁ। ଆଦର୍ଶ, ନୈତିକତା, ଆଚାରବିଚାର, ମନୁଷ୍ୟତ୍ୱର ପ୍ରତିଷ୍ଠା ଓ ପ୍ରଶସ୍ତି, ଔଚିତ୍ୟ, ସଂଯମ, ଅନୁଶାସନ ସର୍ବୋପରି ସାମାଜିକତା ଉପରେ କ୍ଲାସିକ ସ୍ରଷ୍ଟା ଅଧିକ ଗୁରୁତ୍ୱ ଆରୋପ କରିଥାଏ। କ୍ଲାସିକ ସାହିତ୍ୟର ଗତି ଅର୍ନ୍ତଜଗତରୁ ବର୍ହିଜଗତକୁ ପ୍ରଧାବିତ।

## ବୈଶିଷ୍ଟ୍ୟ

**ପରମ୍ପରା ତଥା ବିଧି ପ୍ରତି ସମ୍ମାନ** – କ୍ଲାସିକ ସ୍ରଷ୍ଟା ପରମ୍ପରାର ମୋହ ତ୍ୟାଗ କରିପାରେ ନାହିଁ। ରକ୍ଷଣଶୀଳତା ଓ ପ୍ରାଚୀନ ଆଦର୍ଶକୁ ସେମାନେ ଗଭୀର ଶ୍ରଦ୍ଧା କରିଥାନ୍ତି। ଯେକୌଣସି ନୂତନ ଚେତନାର ବାର୍ତ୍ତାବହ ହେବାକୁ ସେମାନଙ୍କର ଆଦୌ ଆକାଂକ୍ଷା ନ ଥାଏ। ସେଥିପାଇଁ କ୍ଲାସିକ୍ ରୁଚି, ଆଦର୍ଶ ଓ ଔଚିତ୍ୟର ଏକ ଶାଶ୍ୱତିକ ପ୍ରତ୍ୟୟ। ନିୟମ, ନିଷ୍ଠାପ୍ରତି ଏହା ଅଧିକ ଧ୍ୟାନଶୀଳ।

**ବୌଦ୍ଧିକ ଚାତୁର୍ଯ୍ୟ** – କ୍ଲାସିକ୍ ସ୍ରଷ୍ଟାମାନଙ୍କ ନିକଟରେ ହୃଦୟ ଅପେକ୍ଷା ମସ୍ତିଷ୍କ ଅଧିକ ଗୁରୁତ୍ୱପୂର୍ଣ୍ଣ। ସେମାନେ ସୁରୁଚିର ଉପାସକ। ଭାବପ୍ରବଣତାକୁ ସେମାନେ ଦୁର୍ବଳତା ବୋଲି ଆକ୍ଷେପ କରନ୍ତି। ଭାବ ଅପେକ୍ଷା ବୁଦ୍ଧି ସେମାନଙ୍କ ପାଖରେ ଶ୍ରେୟ। ଚାତୁର୍ଯ୍ୟ, ବିଚାରବୋଧ ଓ ପୌରଚେତନା କ୍ଲାସିକ୍‌ର ବିଶିଷ୍ଟ ଲକ୍ଷଣ। ସେ ତା'ର ପରିବେଶ ଅପେକ୍ଷା ପରମ୍ପରାକୁ ଗଭୀର ଶ୍ରଦ୍ଧାର ଦୃଷ୍ଟି ଦେଇ ଲକ୍ଷ୍ୟ କରିଥାଏ।

**ରୀତିବଦ୍ଧତା** – ଏମାନେ ଏକ କୃତ୍ରିମ ଶୈଳୀଦ୍ୱାରା କାବ୍ୟକବିତା ରଚନା କରୁଥିଲେ। ଶବ୍ଦାଡ଼ମ୍ବର, ବକ୍ରୋକ୍ତି ଓ ଧ୍ୱନି ଥିଲା ଏ ସାହିତ୍ୟର ବୈଶିଷ୍ଟ୍ୟ। ଗ୍ରାମୀଣ ଭାଷାକୁ ଏ ସାହିତ୍ୟ ଅପଭାଷା ଆଖ୍ୟା ଦେଇ ତ୍ୟାଗ କରିଥାଏ। ଯାନ୍ତ୍ରିକ ଶୈଳୀରେ କାବ୍ୟ ପରିବେଷଣ ଓ ନୂତନ ଶୈଳୀର ଅନୁବର୍ତ୍ତନ ନ କରିବା ଏହାର ଚାରିତ୍ରିକ ବୈଶିଷ୍ଟ୍ୟ।

**ବୀରଗାଥା** – ଏ ସମୟରେ କବିତ୍ୱର ଆଦର୍ଶ ବୁଝିବାକୁ ହିରୋଇକ୍ କୁପ୍‌ଲେଟ କୁହାଯାଉଥିଲା। ଏହା ଡ୍ରାମା, ଏପିକ୍ ଓ ସାଟାୟର ପାଇଁ ସବୁଠାରୁ ବେଶି ଉପଯୁକ୍ତ ଥିଲା। ଏହାର ନିଜସ୍ୱ ଶୈଳୀ ଓ ନିୟମ ମଧ୍ୟ ଥିଲା। ଏହି ଶୈଳୀ ୱ୍ୟାଲର ଓ ଡେନହମ୍‌ଙ୍କ ଦ୍ୱାରା ପ୍ରବର୍ତ୍ତିତ ହୋଇଥିଲେ ମଧ୍ୟ ଡ୍ରାଇଡେନ୍ ଓ ପୋପଙ୍କ ଦ୍ୱାରା ସଂଶୋଧିତ ହୋଇଥିଲା। ଏହା କବିତାରୁ କେବଳ ଗୀତିମୟତାକୁ ବହିଷ୍କୃତ କଲା ନାହିଁ ପରନ୍ତୁ ନାଟକରେ ମୁକ୍ତ ଛନ୍ଦର ପ୍ରୟୋଗକୁ ମଧ୍ୟ ଅସ୍ୱୀକାର କରୁଥିଲା। ଇତିହାସର ପ୍ରସିଦ୍ଧ ଚରିତ୍ର ବା ପୁରାଣର ବିଶିଷ୍ଟ ଚରିତ୍ର ସଂଗ୍ରହ କରି କାବ୍ୟ, କବିତା ଓ ନାଟକାଦିରେ ପ୍ରୟୋଗ କରିବାର ପ୍ରବଣତା ତଥା ସେମାନଙ୍କର ବୀରତ୍ୱପୂର୍ଣ୍ଣ ଗାଥାକୁ ପ୍ରକାଶ କରିବାପାଇଁ ଆକାଂକ୍ଷା ଏ ସାହିତ୍ୟରେ ପରିଦୃଷ୍ଟ ହୋଇଥାଏ।

**ନଗର ସଭ୍ୟତା** – ସେ ସମୟରେ ଲଣ୍ଡନ ସହର ଥିଲା ବିଶିଷ୍ଟ କବିମାନଙ୍କର ପ୍ରେରଣାସ୍ଥଳ। କାରଣ ଏଠାରେ ବିଶିଷ୍ଟ ଧନାଢ଼୍ୟ ବ୍ୟକ୍ତି, ରାଜା ପ୍ରଭୃତି ବାସ କରୁଥିବାରୁ ଅର୍ଥାଗମର ଉପାୟ ପାଇଁ ସେ ସମୟର ବିଶିଷ୍ଟ କବି ଲଣ୍ଡନ ସହରକୁ ଆଶ୍ରୟସ୍ଥଳ ଭାବରେ ଗ୍ରହଣ କରି ନେଇଥିଲେ। କାବ୍ୟ ଚର୍ଚ୍ଚା ପାଇଁ ଏହା ଉପଯୁକ୍ତ ସ୍ଥାନ ଥିଲା। ଏହିପରି ବିଶିଷ୍ଟ ବ୍ୟକ୍ତିଙ୍କ ସମାବେଶ ଯୋଗୁଁ ଏକ ସମୟରେ ଲଣ୍ଡନରେ ତିନି ହଜାର କଫିହାଉସ୍ ସୃଷ୍ଟି ହୋଇଥିଲା। କଫିହାଉସ୍ ମାଲିକ ଏହାକୁ ଏକ ସୁନ୍ଦର ବ୍ୟବସାୟ ଭାବରେ ଗ୍ରହଣ କରିନେଇଥିଲେ। ଲୋକମାନଙ୍କ ସହିତ ସମ୍ପର୍କ, ଗୁଣୀବ୍ୟକ୍ତିମାନଙ୍କ ସହିତ ସମ୍ପର୍କ, ଅର୍ଥ ସହିତ ସମ୍ପର୍କ ଓ ଖ୍ୟାତି ପାଇଁ ଏଠାରେ ସମସ୍ତ ବୌଦ୍ଧିକ କବି ରୁଣ୍ଡ ହୋଇଥିବାରୁ ଏହି ସହର କ୍ଲାସିକ୍ ସାହିତ୍ୟ ଚର୍ଚ୍ଚାର ପ୍ରଧାନସ୍ଥଳୀ ହୋଇଉଠିଥିଲା।

**ଓଡ଼ିଆ କ୍ଲାସିକ୍ ସାହିତ୍ୟ** – ଥରେ ଇଲିଅଟ୍ ଇଂରାଜୀ ସାହିତ୍ୟରେ କ୍ଲାସିକ୍ ସ୍ରଷ୍ଟା ନାହାନ୍ତି ବୋଲି ଅଭିଯୋଗ କରିଥିଲେ। ସାଧାରଣତଃ ଯେଉଁ ସାହିତ୍ୟର ଏକ ଚିରନ୍ତନ ଆବେଦନ ଥାଏ ଆମେ ତାକୁ କ୍ଲାସିକ୍ ସାହିତ୍ୟ ଅନ୍ତର୍ଭୁକ୍ତ କରିପାରିବା। ଏହି ଦୃଷ୍ଟିରୁ ବିଚାରକଲେ ଆମର ରାମାୟଣ, ମହାଭାରତ, ଭାଗବତ, ଫକୀରମୋହନଙ୍କ ଉପନ୍ୟାସ, ଗୋପୀନାଥ ମହାନ୍ତିଙ୍କ ପରଜା, ମାଟିମଟାଳ, ରାଧାନାଥଙ୍କ କ୍ରାନ୍ତିକାରୀ ସୃଷ୍ଟି ମହାଯାତ୍ରା, ସୁରେନ୍ଦ୍ର ମହାନ୍ତିଙ୍କ ନୀଳଶୈଳ, କାଳିନ୍ଦୀଚରଣଙ୍କ ମାଟିର ମଣିଷ ପ୍ରଭୃତି କୃତିକୁ ଆମେ କ୍ଲାସିକ୍ ସାହିତ୍ୟ ବୋଲି କହିପାରିବା। କ୍ଲାସିକ୍ ସାହିତ୍ୟ ସଦାସର୍ବଦା ନୂତନ। ସମୟ ଏହାକୁ କବଳିତ କରିପାରେନା, ବରଂ ସମୟ ଏହା ପାଖରେ ପରାଜୟ ସ୍ୱୀକାର କରେ। ଏଥିରେ ନିହିତ ଆବେଦନ ସାର୍ବଜନୀନ ଓ ସାର୍ବକାଳୀନ। ଜୀବନକୁ ଏକ ସହଜ ସରଳ ଦୃଷ୍ଟିରେ ଦେଖିବା କ୍ଲାସିକ୍ ସାହିତ୍ୟର ପରିପନ୍ଥୀ। ଜୀବନର ବିଶିଷ୍ଟ ଦିଗ ଆଲୋକିତ କରିବା କ୍ଲାସିକ୍ ସାହିତ୍ୟର ଲକ୍ଷଣ। ଏହି ଦୃଷ୍ଟିରୁ ବିଚାର କଲେ ସ୍ୱଳ୍ପ ହେଲେ ମଧ୍ୟ ଓଡ଼ିଆ ସାହିତ୍ୟରେ କ୍ଲାସିକ୍ ସୃଷ୍ଟି ରହିଛି।

## କ୍ଲାସିକ୍ ଓ ରୋମାଣ୍ଟିକ : ଏକ ଆଲୋକପାତ

ବାସ୍ତବ ଦୃଷ୍ଟିକୋଣରୁ ବିଚାର କଲେ କ୍ଲାସିକ୍ ଓ ରୋମାଣ୍ଟିକ ପରସ୍ପରର ବିରୋଧ ନୁହନ୍ତି। ରୋମାଣ୍ଟିକମାନେ ବିପ୍ଳବୀ ଓ ନୂତନତାର ପୂଜାରୀ ବୋଲି ସେମାନଙ୍କୁ ପ୍ରଶଂସା କରାଯାଇଥାଏ। କ୍ଲାସିକ୍ ମଧ୍ୟ ଏ କ୍ଷେତ୍ରରେ ରୋମାଣ୍ଟିକର ନିକଟବର୍ତ୍ତୀ। କାରଣ ମେଟାଫିଜିକାଲ କବିତା ବିରୋଧରେ ସଂଗ୍ରାମ କରି କ୍ଲାସିକ୍ ସାହିତ୍ୟର ସୃଷ୍ଟି। ଅବଶ୍ୟ ବିଶିଷ୍ଟ ସମୀକ୍ଷକ ମେରିଓପ୍ରାଜ୍ କ୍ଲାସିକ୍ ଓ ରୋମାଣ୍ଟିକ କାବ୍ୟ ଚେତନା ଦ୍ୱୟ ଦୁଇଟି ସ୍ୱତନ୍ତ୍ର ଦିଗନ୍ତର ପ୍ରତୀକ ବୋଲି ମତବ୍ୟକ୍ତ କରିଛନ୍ତି।[୬୯] କିନ୍ତୁ ଆଲୋଚକ ବେହେରା କୁହନ୍ତି – "ରୋମାଣ୍ଟିକକୁ ବର୍ଜନ କରି ଯେ କ୍ଲାସିକ୍ ତାହା ନିଷ୍ପ୍ରାଣ, କ୍ଲାସିକ୍‌କୁ ପରିତ୍ୟାଗ କରି ଯେ ରୋମାଣ୍ଟିକ ତାହା ରୂପହୀନ ଓ ନିରର୍ଥକ।"[୭୦] ତେଣୁ ଉନ୍ନତ କଳାସୃଷ୍ଟି ପାଇଁ ଉଭୟଙ୍କର ସହଯୋଗ ଏକାନ୍ତ ଆବଶ୍ୟକ। ପ୍ରତ୍ୟେକ ବିଶିଷ୍ଟ ସାହିତ୍ୟ କୃତି ପାଇଁ ଶୃଙ୍ଖଳାଜ୍ଞାନର ଯେପରି ଭୂମିକା ରହିଛି, କଳ୍ପନା ତଥା ଚେତନାର ମୁକ୍ତସଞ୍ଚରଣର ସେହିପରି ମହତ୍ତ୍ୱପୂର୍ଣ୍ଣ ଅବଦାନ ରହିଛି।

ବିଶିଷ୍ଟ ଇଂରାଜୀ ସମାଲୋଚକ ସ୍କଟଜେମସ୍ କୁହନ୍ତି, "କ୍ଲାସିକର ଲକ୍ଷ୍ୟ ସ୍ଥିରତା ବେଳେ ରୋମାଣ୍ଟିକର ଲକ୍ଷ୍ୟ ଅନ୍ୱେଷଣ। ଗୋଟିକର ବୈଶିଷ୍ଟ୍ୟ ଔଚିତ୍ୟ, ଯୁକ୍ତିଯୁକ୍ତତା, ବିସ୍ତୃତି, ସଂଯମତା, ରକ୍ଷଣଶୀଳତା, ପ୍ରାମାଣିକତା, ପ୍ରଶାନ୍ତି, ଅଭିଜ୍ଞତା ଓ ସୌନ୍ଦର୍ଯ୍ୟ ସୃଷ୍ଟି ଉପରେ ଆଧାରିତ ହୋଇଥିବାବେଳେ ଅନ୍ୟଟିରେ ଉଦ୍ଦୀପନା, ସ୍ୱତଃସ୍ଫୂର୍ତ୍ତିତା, ବ୍ୟଗ୍ରତା,

ଅପାର୍ଥିବତା, କୌତୂହଳତା, ଅନୁସନ୍ଧିତ୍ସା, ଉଦ୍‌ବିଗ୍ନତା, ପ୍ରଗତି, ସ୍ୱାଧୀନ ମନୋବୃତ୍ତି, ତଥ୍ୟାନୁସନ୍ଧାନ ତଥା ଆକାଂକ୍ଷାର ପ୍ରଭାବ ପରିଲକ୍ଷିତ ହୋଇଥାଏ।[୭୧] କ୍ଲାସିକ୍ ସ୍ରଷ୍ଟା ରକ୍ଷଣଶୀଳତା, ପରମ୍ପରା ଓ ବାସ୍ତବତା ଉପରେ ଗୁରୁତ୍ୱ ଆରୋପ କରୁଥିବାବେଳେ ରୋମାଣ୍ଟିକ ସ୍ରଷ୍ଟା ଅଭିନବତା, ଆଦର୍ଶବାଦ, ଉଚ୍ଛ୍ୱାସ ଓ ଉଦ୍ଦାମତା ଉପରେ ଗୁରୁତ୍ୱ ଆରୋପ କରିଥାନ୍ତି। ସମାଲୋଚକ ଚିନ୍ତାମଣି ବେହେରାଙ୍କ ମତରେ, "ଅଭିବ୍ୟକ୍ତି କ୍ଷେତ୍ରରେ ନିୟମ ଓ ପରମ୍ପରାଠାରୁ ସବୁବେଳେ ରୋମାଣ୍ଟିକ ସ୍ରଷ୍ଟା ମୁକ୍ତି ଚାହେଁ। କିନ୍ତୁ କ୍ଲାସିକ୍ ସ୍ରଷ୍ଟାଠାରେ ସ୍ଥାନ, କାଳ, ପାତ୍ରୋତୀର୍ଣ୍ଣ ବିଚାରଧାରା ଓ ଗଭୀର ପରମ୍ପରାବୋଧ ଲକ୍ଷଣୀୟ। ରୋମାଣ୍ଟିକ ସ୍ରଷ୍ଟା ବିଶେଷ କାଳ, ବିଶେଷ ସ୍ଥାନ, ବିଶେଷ ପାତ୍ର ଓ ଅଭିନବତ୍ୱରେ ବିଶ୍ୱାସ କରେ।[୭୨] ଉଭୟଙ୍କ ମଧ୍ୟରେ ଅନେକ ପାର୍ଥକ୍ୟ ଥିଲେ ମଧ୍ୟ ସେମାନଙ୍କ ମଧ୍ୟରେ ସାମ୍ୟବି ଅନେକ। ସାହିତ୍ୟରେ ଆଦର୍ଶ ଓ ବାସ୍ତବତା ଏ ଦୁଇଟି ବଡ଼କଥା, ଯାହା ରୋମାଣ୍ଟିକ ଓ କ୍ଲାସିକ୍‌ର ବିଶିଷ୍ଟ ଲକ୍ଷଣ। ଯେକୌଣସି ସାହିତ୍ୟର ସମୂହ ଉନ୍ନତି ପାଇଁ ଉଭୟଙ୍କର ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି।

## ଆଧୁନିକ କବିତାର ବ୍ୟକ୍ତି, ବ୍ୟକ୍ତିତ୍ୱ ଓ ବିଶ୍ୱ

ପ୍ରତ୍ୟକ୍ଷ ଭାବରେ ହେଉ ବା ପରୋକ୍ଷ ଭାବରେ ହେଉ ଲେଖକ ତା'ର ସୃଷ୍ଟିରେ ଆତ୍ମପ୍ରକାଶ କରିଯାଇଥାଏ। ବଂକ୍ତିଂର ରଚନାରୁ ତା'ର ବ୍ୟକ୍ତିତ୍ୱ ସମ୍ପର୍କରେ ଏକ ସୂକ୍ଷ୍ମଧାରଣା ସୃଷ୍ଟି ହୋଇଥାଏ। ଯଦି ସାହିତ୍ୟ ଏକ ଦର୍ପଣ ହୁଏ, କବିର ବ୍ୟକ୍ତିତ୍ୱ ଏହି ସାହିତ୍ୟ ବିମ୍ବରେ ପ୍ରତିଫଳିତ ହୋଇଥାଏ। ପ୍ରତ୍ୟେକ ବିଶିଷ୍ଟ ଲେଖକଙ୍କର ରଚନାରେ ତାର ଐତିହ୍ୟ ଓ ନବୀନ ଦୃଷ୍ଟିଭଙ୍ଗୀ କଳାତ୍ମକ ଭାବରେ ପ୍ରକାଶ ଲାଭ କରିଥାଏ। ସେଥିପାଇଁ ସମାଲୋଚକ ସେହି ସ୍ରଷ୍ଟାଙ୍କୁ ଆଦର୍ଶ ସ୍ରଷ୍ଟା ଭାବରେ ଆଖ୍ୟାୟିତ କରିଥାଏ, ଯାହା ସୃଷ୍ଟିରେ ପ୍ରାଚୀନ ଓ ନବୀନ, ଐତିହ୍ୟବୋଧ ଓ ଯୁଗଚେତନା, ଗାମୀଣତା ଏବଂ ନାଗରିକତା, ଲିପି ନିପୁଣତା ସର୍ବୋପରି ବିଷୟ ବସ୍ତୁର ଚମତ୍କାରିତା, ମହିମା, ରୂପ ଓ ଭାବଭାବନା ଶୃଙ୍ଖଳିତ ଭାବରେ ପ୍ରକାଶ ଲାଭ କରିଥାଏ।[୭୩] କିନ୍ତୁ ଏହି ଆଧୁନିକ ଯୁଗରେ ମାନବ ବ୍ୟକ୍ତି କେନ୍ଦ୍ରିକ ହୋଇ ପଡୁଛି। ତା'ର ଜୀବନ ଖଣ୍ଡବିଖଣ୍ଡିତ। ତା'ର ଦୃଷ୍ଟି ଆଜି ବିଶ୍ୱମୁଖୀନତା। ତା' ଆଗରେ ଜୀବନ ଏକ ପ୍ରହେଳିକା। ଅନେକ ଅମୀମାଂସିତ ପ୍ରଶ୍ନରାଜିର ସମାହାର। "ଗୋଟିଏ କାର୍ଯ୍ୟ କରିବାକୁ ଯିବା ପୂର୍ବରୁ ଆମକୁ ଅନେକ ଭାବିବାକୁ ପଡ଼େ। ଆଜି ଆମର ଜୀବନ ମଧ୍ୟ ପୂର୍ଣ୍ଣାଙ୍ଗ ନୁହେଁ। ତେଣୁ ସେହି ଖଣ୍ଡିତ ଜୀବନକୁ ନେଇ କବି ଯେତେବେଳେ କବିତା ଲେଖେ ସେତେବେଳେ "Modern Poetry does not make any complete sense" ଯୁକ୍ତି ଧରିବାକୁ

ହୁଏ। ସମ୍ପୂର୍ଣ୍ଣ ଅର୍ଥ ପ୍ରକାଶ ପାଇପାରେନା। ଅର୍ଥ ତାହାର ଖଣ୍ଡିତ। କାରଣ ଆଜିର ଜୀବନରେ ମୂଲ୍ୟବୋଧ ନାହିଁ। ଜୀବନ ହେଉଛି ମୂଲ୍ୟହୀନ। ଜୀବନ ତାର ଅର୍ଥ ଶୂନ୍ୟ।"[୭୪] ଆଧୁନିକ ଜୀବନ ସମସ୍ୟାବହୁଳ। ଜୀବନର ପ୍ରତ୍ୟେକ ମୁହୂର୍ତ୍ତରେ, ଘଟଣା, ଦୁର୍ଘଟଣା ଲାଗି ରହିଛି। ଜୀବନକୁ ଏକ ନିର୍ଦ୍ଦିଷ୍ଟ ଧାରାରେ ଗତି କରାଇବା ଏବେ ଏକ କଷ୍ଟକର ବ୍ୟାପାର ହୋଇ ପଡ଼ିଛି। ପ୍ରତ୍ୟେକ ମୁହୂର୍ତ୍ତରେ ବିଭିନ୍ନ ସାମାଜିକ ଓ ବ୍ୟକ୍ତିଗତ ସମସ୍ୟା ମାନବ ମନକୁ ଆନ୍ଦୋଳିତ କରିବାକୁ ଲାଗୁଛି। ଜୀବନ କ୍ରମଶଃ ହୋଇ ଉଠୁଛି ଅଧିକ ଦୁର୍ବହ। ତେଣୁ ଆଧୁନିକ କବିର କବିତାରେ "ବର୍ତ୍ତମାନ ଜୀବନଯାତ୍ରାର କ୍ଳାନ୍ତି, ନୈରାଶ୍ୟ, ଅବସାଦ, ପାପବୋଧ, ବ୍ୟର୍ଥତା ଓ କ୍ଷୁଦ୍ରତା ପ୍ରାଧାନ୍ୟ ଲାଭ କରିଛି। ଆଧୁନିକ ମଣିଷ କ୍ଷୟିଷ୍ଣୁ ସଭ୍ୟତା ଓ ସଂସ୍କୃତିର ସଙ୍କଟରେ ପଡ଼ିଛି। ତାହାର ବ୍ୟକ୍ତିବୋଧ ବଡ଼ ନିଃସଙ୍ଗ ଓ ନିରୂପାୟ। ଏକ ପକ୍ଷରେ ବିପୁଳ ଜ୍ଞାନ ବିଜ୍ଞାନର ଭାର ଓ ଅନ୍ୟପକ୍ଷରେ ବ୍ୟକ୍ତି ବୋଧର ଅସହାୟତା; ଏହି ଦୁଇ ସୀମା ମଧ୍ୟରେ ତାହାର ଅନିଶ୍ଚିତ ବିଦ୍ରୋହ ଲକ୍ଷ୍ୟ ସ୍ଥିରକରି ପାରୁ ନାହିଁ। ନିଜର ଏହି ଜୀବନ ପ୍ରତି କାବ୍ୟନାୟକର ଦୃଷ୍ଟିଭଙ୍ଗୀ ବଡ଼ ବିଷାଦମୟୀ ଓ ଶ୍ଳେଷାତ୍ମକ। ମଣିଷର ଆଶା ଆକାଂକ୍ଷା ଓ ବାସ୍ତବ ଜୀବନ ମଧ୍ୟରେ ମଧ୍ୟ କୌଣସି ପ୍ରକାର ସଙ୍ଗତି ଲକ୍ଷ୍ୟକରି ହୁଏ ନାହିଁ।[୭୫]

ବିଜ୍ଞାନର ଅଭୂତପୂର୍ବ ସାଫଲ୍ୟ ଯୋଗୁଁ ବିଶ୍ୱ ତା' ନିକଟରେ ହୋଇଯାଇଛି ଅତ୍ୟନ୍ତ କ୍ଷୁଦ୍ର। ଏହି ଯାନ୍ତ୍ରିକ ଯୁଗରେ ଅନ୍ୟମାନଙ୍କ ସହ ପ୍ରତିଦ୍ୱନ୍ଦ୍ୱିତା କରି ବଞ୍ଚିବା ତା' ଜୀବନର ଏକମାତ୍ର ଲକ୍ଷ୍ୟ। ବିଶ୍ୱର କ୍ରିୟାକଳାପ ପ୍ରତି ମୁହୂର୍ତ୍ତରେ ତା'ର ଚେତନାକୁ ଆଘାତ କରୁଛି। ତା' ପାଖରେ ଐକ୍ୟ, ସଂହତିର କୌଣସି ମୂଲ୍ୟ ନାହିଁ, ତା' ଆଗରେ ବିରାଟ ପୃଥିବୀ କିନ୍ତୁ ବୈଚିତ୍ର୍ୟହୀନ। ଯେଉଁଠାରେ ଜୀବନ ଏକାନ୍ତ ଭାବରେ ବ୍ୟକ୍ତିଗତ, ସେଠାରେ ବା ବୈଚିତ୍ର୍ୟ ଆସିବ କେଉଁଠୁ? ନିଜକୁ ଆତ୍ମପ୍ରକାଶ କରିବାର ମୋହ ତାକୁ ପ୍ରଜାପତିର ଖୋସା ଭିତରେ ସମ୍ପୂର୍ଣ୍ଣରୂପେ ଆବଦ୍ଧ କରି ଦେଉଛି। ତେଣୁ ତା' କବିତାରେ ଆଉ ରସୋଚ୍ଛଳ, ଆନନ୍ଦମୟ ଆବେଗ ନାହିଁ। ବିଶ୍ୱଯୁଦ୍ଧର ସର୍ବଗ୍ରାସୀ ରୂପ ଦେଖି ଆଧୁନିକ କବି ଅସହାୟ ହେଇ ପଡ଼ିଛି। ଧ୍ୱଂସ ସ୍ତୂପ ଉପରେ ଠିଆ ହୋଇ ସେ ଏକାକ୍ଷର ମନ୍ତ୍ର ଜପ କରୁଛି। ସେଇଥିପାଇଁ ଆଜି ଏହି "ଯୁକ୍ତି ନିୟନ୍ତ୍ରିତ ଯାନ୍ତ୍ରିକ ଯୁଗରେ ମଣିଷ ପାଖରେ ବଞ୍ଚିବାଟା ସବୁଠାରୁ ବଡ଼ ହୋଇ ଉଠିଛି। ବଞ୍ଚିବାର ଯନ୍ତ୍ରଣାକୁ ହାଡ଼େ ହାଡ଼େ ଅନୁଭବ କରି ସେ ବୁଝିଛି ବଞ୍ଚିବା ସମଷ୍ଟିଗତ ପ୍ରକ୍ରିୟା ନୁହେଁ; ଏହା ଏକ ବ୍ୟକ୍ତିଗତ ଯନ୍ତ୍ରଣା।[୭୬] ନିଜକୁ ଆବିଷ୍କାର କରିବାର ପ୍ରବଳ ବାସନା ଯୋଗୁଁ ସେ ସରଳ ମାର୍ଗରୁ ବିଚ୍ୟୁତ ହୋଇଯାଇଛି। ତିନି ମୁହାଣୀରେ ଦଣ୍ଡାୟମାନ ହୋଇ ଯିବାର ନିର୍ଦ୍ଦିଷ୍ଟ ପଥ ହୁଡ଼ିଯାଇଛି। ଫ୍ରଏଡ଼ଙ୍କର ଆବିଷ୍କାର ତା'ର ନୀଳ ସଙ୍କେତକୁ ବିଲୁପ୍ତ

କରିଦେଇଛି । ତେଣୁ ଆଧୁନିକ କବିତାର କାବ୍ୟପୁରୁଷ ଯେତେବେଳେ ନିଜର ଅସହାୟତାକୁ ଚିହ୍ନିଲା ସେତେବେଳେ ସେ ସଚେତନ କେବଳ ହେଲା ନାହିଁ, ଆତ୍ମାବିଷ୍କାର ପାଇଁ ବହୁ ବିରୋଧାଭାସକୁ ମଧ୍ୟ ସ୍ୱାଗତ କଲା । ଏଇଠି କବିତାର ପୂର୍ବ ନିର୍ଦ୍ଦିଷ୍ଟ ସଂଜ୍ଞା ବଦଳିଗଲା । ଆଧୁନିକତାର ଏକ ନୂଆ ପ୍ରସ୍ଥ ଉଦ୍‌ଘାଟିତ ହେଲା । ସ୍ୱର ଶୁଭିଲା ଅସହାୟତାର, ଶୂନ୍ୟତାର, ଦୁର୍ବୋଧତାର ଏମିତି ଏମିତି କେତେ କଣର ।"(୭୭) ଆଜି ଏଇ ବ୍ୟକ୍ତିତନ୍ତ୍ର ଯୁଗରେ ଜଣେ କବି ବ୍ୟକ୍ତିକୈନ୍ଦ୍ରିକ ହେବାରେ କୌଣସି ବୈଚିତ୍ର୍ୟ ନାହିଁ । ଆଜି ଆମେ ପାରମ୍ପରିକ ଶଗଡ଼ ଗୁଳାଠାରୁ ଅନେକ ଦୂରରେ । କାରଣ ବିଜ୍ଞାନ ଆମର ଆଖି ଖୋଲିଦେଇଛି । ମାର୍କସ ଆମର ଚିନ୍ତାରାଜ୍ୟକୁ ପ୍ରସାରିତ କରିଦେଇଛନ୍ତି, ବିଶ୍ୱଯୁଦ୍ଧ ଚେତନାଶକ୍ତିକୁ ଜାଗ୍ରତ କରିଛି, ଶିଳ୍ପବିପ୍ଳବ ଅର୍ଥନୀତିକୁ ତ୍ୱରାନ୍ୱିତ କରିଛି । ଫ୍ରଏଡ଼ ଅବଚେତନ ସ୍ତରକୁ ଟିକିନିଖି କରି ପରୀକ୍ଷା ପୂର୍ବକ ଆମ ଆଗରେ ଖୋଲି ରଖିଛନ୍ତି, କିଏର୍କେ ଗାର୍ଡ଼ ଅସ୍ତିତ୍ୱକୁ ଖୋଜି ବୁଲିବାକୁ ଯାଇ ସ୍ଥିତିବାଦୀ ଦର୍ଶନର ଗୂଢ଼ ତତ୍ତ୍ୱକୁ ଆମ ପାତ୍ରରେ ପରିବେଷଣ କରିଛନ୍ତି । ଏ ସମସ୍ତ ଭାରତୀୟ ବୁଦ୍ଧିଜୀବୀମାନଙ୍କର ଆବିଷ୍କାର ନ ହେଲେ ମଧ୍ୟ ବିଶ୍ୱ ଚିନ୍ତାଚେତନାର ସହଯୋଗରେ ଆସି ଆମର ମଧ୍ୟ ମାନସିକ ପରିବର୍ତ୍ତନ ହୋଇଯାଇଛି । ବିଶ୍ୱର ହତାଶବୋଧ, ଅସହାୟତା ଆମ ଦେହରେ ସଂକ୍ରମିତ ହୋଇଛି ।

ଆଜି ଆଉ ବିଶ୍ୱ ବିଖଣ୍ଡିତ ନୁହେଁ, ଏକ । ଚିନ୍ତାଜଗତରେ ମଧ୍ୟ ସାମ୍ୟ ପରିଲକ୍ଷିତ । ବିଶ୍ୱର ଏକ ପାର୍ଶ୍ୱର ଆଲୋଡ଼ନ ମୁହୂର୍ତ୍ତକ ମଧ୍ୟରେ ଅପରପାର୍ଶ୍ୱକୁ ସଞ୍ଚରି ଯାଉଛି । ତେଣୁ ଗୋଟିଏ ମଣିଷର ଚିନ୍ତା ଚେତନା ଅପର ମଣିଷ ସହିତ ଅସମ୍ଭବ ଯୋଗସୂତ୍ର ରକ୍ଷା କରିପାରୁଛି । କବିତାରେ ସମକାଳୀନ ବିଶ୍ୱ ପ୍ରତିଫଳିତ ହେଉଥିବାରୁ ଏଥିରେ ଯେଉଁ ମାନବିକ ଆବେଦନ ଜନ୍ମଲାଭ କରେ, ତାହା ଉଭୟ ପ୍ରାଚ୍ୟ ଓ ପାଶ୍ଚାତ୍ୟ ଜଗତର ଚିନ୍ତା ଓ ଚେତନା ସହିତ ସମାନ ।

## ସମାଜ ଚେତନା

ସାହିତ୍ୟ ସମାଜର ଦର୍ପଣ ସଦୃଶ । ଏକ ଉନ୍ନତ ଓ ସମୃଦ୍ଧଶାଳୀ ସାହିତ୍ୟରୁ ସେ ଦେଶର ସମାଜ ଜୀବନ ଓ ବ୍ୟକ୍ତି ଜୀବନ ସମ୍ପର୍କରେ ସୂଚନା ମିଳିଥାଏ । ତେଣୁ କବିତା ସହିତ ସାମାଜିକ ଜୀବନର ସମ୍ପର୍କ ଓତପ୍ରୋତ ଭାବେ ଜଡ଼ିତ । କେବଳ ସମାଜ ଜୀବନ ନୁହେଁ, ରାଜନୀତିକ ଜୀବନର ସମ୍ପର୍କ ମଧ୍ୟ ନିବିଡ଼ । ସମୟେ ସମୟେ ଆମେ ଏ ସମ୍ପର୍କକୁ ଯେତେ ନିକୃଷ୍ଟ ବୋଲି ମନେକରୁ, ବାସ୍ତବରେ ଏ ସମ୍ପର୍କ ତା'ଠାରୁ ଅଧିକ ଜଟିଳ ।(୭୮) ମାନବ ସାମାଜିକ ଜୀବ । ଏହି ସମାଜରୁ ତା'ର ସୃଷ୍ଟି ଓ ସମାଜର

ଖାଦ୍ୟ ଖାଇ ସେ ପରିପୁଷ୍ଟ। ତେଣୁ ସେ ଯେଉଁ ପରିବେଶରେ ବର୍ଦ୍ଧିତ, ତା'ର ରଚନାରେ ସେହି ପରିବେଶଟି ସ୍ୱତଃ ଆତ୍ମପ୍ରକାଶ କରିବା ବିଚିତ୍ର ନୁହେଁ। "କାବ୍ୟ ସବୁ ଯୁଗରେ ପରିବେଶ ଦ୍ୱାରା ପ୍ରଭାବିତ ହୁଏ। ଧାର୍ମିକ, ପ୍ରାକୃତିକ ପରିବେଶ ଭଳି ସାମାଜିକ ପରିବେଶ, ମାନବ ଚିନ୍ତାକୁ ରୂପ ଦେବାରେ ଏହାର କ୍ଷମତା ଅସୀମ। କାବ୍ୟ ସହିତ ସମାଜ ଜୀବନର ସମ୍ପର୍କ ଏକ ସହଜ ସମ୍ପର୍କ।"[୭୯] ସମାଜର ସୁସ୍ଥ ବିକାଶରେ ସାହିତ୍ୟର ଅବଦାନକୁ ଅସ୍ୱୀକାର କରାଯାଇ ନ ପାରେ। ମାନବ ଜୀବନର ଆଶା, ଆକାଂକ୍ଷା ପ୍ରତିଫଳିତ ହୁଏ ସାହିତ୍ୟରେ। ପ୍ରାଗ୍ ଐତିହାସିକ କାଳରୁ ଆର୍ଯ୍ୟଋଷିମାନେ ମାନବ ସମାଜର ମଙ୍ଗଳ ନିମିତ୍ତ ବାଞ୍ଛିତ ଦିଗ୍‌ଦର୍ଶନ ପ୍ରତିପାଦିତ କରିଛନ୍ତି।"[୮୦] ତେଣୁ ପ୍ରତ୍ୟେକ ଲେଖକର "ଏକ ସାମାଜିକ ଆଦର୍ଶ ଓ ଆଭିମୁଖ୍ୟ ରହିବା ଆବଶ୍ୟକ। ଲେଖକକୁ ମଣିଷ ସମାଜର ଯନ୍ତ୍ରୀ ବୋଲି ନାମିତ କରାଯାଇଛି। ଏହାର ଅସଲ ଉଦ୍ଦେଶ୍ୟ ହେଲା, ମନୁଷ୍ୟ ସମାଜ ଯେଉଁ ଦିଗରେ ଧାବମାନ ହେଉଛି, ଯେଉଁ ଉଦ୍ଦେଶ୍ୟ ସିଦ୍ଧିପାଇଁ ସଂଗ୍ରାମ କରିଆସିଛି, ସେହି ଦିଗରେ ସାହିତ୍ୟ ଉପଯୁକ୍ତ ପ୍ରେରଣା ପ୍ରଦାନ କରିବା ଉଚିତ।"[୮୧]

ସମାଜର ବିବର୍ତ୍ତନଧାରାରେ ମାନବିକ ସମସ୍ୟା ଅଧିକରୁ ଅଧିକ ଜଟିଳ ହୋଇପଡୁଛି। ସେ ଏପରି ବ୍ୟସ୍ତ ଓ ବିବ୍ରତ ହୋଇ ପଡୁଛି ଯେ, ଜୀବନର ଜଟିଳ ନାଗଫାଶରୁ ମୁକ୍ତ ହେବାପାଇଁ ସତତ ଚେଷ୍ଟା କରୁଛି। ସାମୟିକ ପ୍ରଶାନ୍ତି ପାଇଁ ତା'ରି କଥା, ତା' ପରିବେଶର କଥା ଯେଉଁଥିରେ ଲିପିବଦ୍ଧ ହୋଇଛି, ତାକୁ ପାଠ କରିବାପାଇଁ ସେ ଆଗ୍ରହ ପ୍ରକାଶ କରୁଛି। ସେଇଥିପାଇଁ ମାନବର ସାଧାରଣ ଜୀବନ, ତା'ର ଜୀବନର ଘଟଣା, ଜୀବନର ଅନୁଭବ, ଜୀବନର ଆଦର୍ଶ, ଜୀବନର ସ୍ୱାଭାବିକତା, ଶାନ୍ତି ତଥା ସନ୍ତୋଷ ବିଷୟକୁ ଆଜିର କବିତା ରୁଚିକର ଭାବରେ ବର୍ଣ୍ଣନା କରୁଛି।[୮୨] ଯୁଗର ଦ୍ୱନ୍ଦ୍ୱ, ସମସ୍ୟା ସାହିତ୍ୟରେ କଳାତ୍ମକ ରୂପନେଇ ରୂପାୟିତ ହୋଇଥାଏ। ସମାଜର ଆଶା-ଆନନ୍ଦ, ସୁଖ-ଦୁଃଖ ସାହିତ୍ୟରେ ପ୍ରତିଫଳିତ ହେଲେ ସଚେତନ ନାଗରିକ ସମାଜର ସମସ୍ୟାକୁ ସମାଧାନ କରିବାପାଇଁ ଅଗ୍ରସର ହୋଇଥାଏ। ସାମାଜିକ ପରିସ୍ଥିତି ସାହିତ୍ୟର ସ୍ୱରୂପ ନିର୍ଦ୍ଧାରଣ କରିଥାଏ। ଓଡ଼ିଆ ସାହିତ୍ୟରେ ଆମ ସମାଜ ଚିତ୍ରର ଅଭାବ ନାହିଁ।

ସାରଳା ସାହିତ୍ୟ ପୂର୍ବରୁ ଚର୍ଯ୍ୟାଗୀତିକାରେ ଜୀବନକୁ ମହତ୍ତର ମାର୍ଗରେ ପରିଚାଳିତ କରିବାକୁ ନିର୍ଦ୍ଦେଶ ଦିଆଯାଇଛି। ସେତେବେଳେ ସମାଜରେ ଉଚ୍ଚନୀଚ ଭେଦଭାବ ପ୍ରଥାର ସ୍ଥାନ ନ ଥିଲା। ଜୀବନର ନିଗୂଢ଼ ତତ୍ତ୍ୱ ପ୍ରକାଶ ପାଇଁ ସିଦ୍ଧାଚାର୍ଯ୍ୟମାନେ ଅନବରତ ଚେଷ୍ଟା କରୁଥିଲେ। ତତ୍‌କାଳୀନ ସମାଜର ବେଶଭୂଷା, ପୋଷାକ ପରିଚ୍ଛଦ

ତଥା ଖାଦ୍ୟପେୟର ଏକ ଚମତ୍କାର ବିବରଣୀ ଚର୍ଯ୍ୟାଗୀତିକାମାନଙ୍କରେ ପରିଦୃଷ୍ଟ ହୋଇଥାଏ। ଲୋକ ସାହିତ୍ୟରେ ସମାଜରେ ପ୍ରଚଳିତ ନାନାବିଧ ପ୍ରଥା ଓ ଧର୍ମବିଶ୍ୱାସ, ଚମତ୍କାର ଭାବରେ ରୂପାୟିତ ହୋଇଛି। ପଞ୍ଚଦଶ ଓ ଷୋଡ଼ଶ ଶତାବ୍ଦୀର ରାଜନୀତିକ, ଆର୍ଥନୀତିକ, ସାମାଜିକ ତଥା ସାଂସ୍କୃତିକ ଜୀବନର ଚରମ ପ୍ରକାଶ ଘଟିଛି ସାରଳା ମହାଭାରତରେ। ପଞ୍ଚସଖା ସାହିତ୍ୟରେ ଓଡ଼ିଶାରେ ଘଟିଥିବା ଧାର୍ମିକ ଆନ୍ଦୋଳନର ଏକ ପୁଙ୍ଖାନୁପୁଙ୍ଖ ଚିତ୍ର ପରିଲକ୍ଷିତ ହୋଇଥାଏ। ପରାଧୀନ ପ୍ରାଦେଶିକ ରାଜାମାନଙ୍କର ବିଳାସ ବ୍ୟସନର ଚିତ୍ର ମନ୍ମୟ ରୂପ ପାଇଛି ରୀତି ସାହିତ୍ୟରେ। ସଙ୍ଗୀତ ଯୁଗରେ ଧର୍ମକୁ କେନ୍ଦ୍ରକରି ରଚିତ ଅସଂଖ୍ୟ କବିତାରେ ତତ୍କାଳୀନ ଜନମାନସର ଧାର୍ମିକ ପରିଚୟ ଉପଲବ୍ଧ।

ଊନବିଂଶ ଶତାବ୍ଦୀରେ ଇଂରେଜମାନଙ୍କ ଓଡ଼ିଶା ଆଗମନ ଫଳରେ ଓଡ଼ିଶାର ସାମାଜିକ ଓ ସାଂସ୍କୃତିକ ଜୀବନରେ ଲକ୍ଷଣୀୟ ପରିବର୍ତ୍ତନ ସାଧିତ ହୋଇଛି। ବିଶ୍ୱଯୁଦ୍ଧ ଓ ବିଭିନ୍ନ ବୈଜ୍ଞାନିକ ଆନ୍ଦୋଳନ ଦ୍ୱାରା "ବର୍ତ୍ତମାନ ଆମର ଜୀବନ ସଂଶୟପୂର୍ଣ୍ଣ ଓ ସନ୍ଦେହାକୁଳ। ଏହାର କାରଣ ଆମେ ଇତିହାସର କେନ୍ଦ୍ରବିନ୍ଦୁରୁ ବିଚ୍ୟୁତ ହୋଇ ଅତୀତ ଓ ଭବିଷ୍ୟହୀନ କତିପୟ ସାମ୍ପ୍ରତିକ ଜାଲରେ ଘୂରି ବୁଲୁଛୁ।"(୮୩) ବର୍ତ୍ତମାନ ଆମେ ଯେଉଁ ସମାଜରେ ବାସ କରୁଛୁ, ସେହି ସମାଜର ଚିତ୍ର, ଜନଜୀବନର ଚିତ୍ର ଆଜିର ସାହିତ୍ୟ ତଥା କବିତାଗୁଡ଼ିକରେ ପ୍ରତିଫଳିତ ହେଉଛି। "ସମସ୍ତ ଭାଷାର କବିତାରେ – କବିତାର ଜନ୍ମଲଗ୍ନରୁ ସମାଜ ଓ ସାମାଜିକ ଚେତନାର ବିଭିନ୍ନ ରୂପାନ୍ତର ପ୍ରତିବିମ୍ବିତ ହୋଇଛି, ହୋଇଛି ପ୍ରତିଫଳିତ; ଏହାର ଏକମାତ୍ର ମୌଳିକ ଅଥଚ ସାଧାରଣ କାରଣ ହେଉଛି କବିର ସାମାଜିକ ସ୍ଥିତି ଓ ବ୍ୟକ୍ତିତ୍ୱ।"(୮୪) ଏଣୁ ପ୍ରତ୍ୟେକ ସଚେତନ ସ୍ରଷ୍ଟାର ସୃଷ୍ଟିରେ ପ୍ରତ୍ୟକ୍ଷରେ ହେଉ ବା ପରୋକ୍ଷରେ ହେଉ ସାମାଜିକ ଚେତନା ଫୁଟି ଉଠିଥାଏ।

## ବେଦନାବୋଧ

କେବଳ ଆଧୁନିକ ସାହିତ୍ୟରେ କାହିଁକି ଆମର ପ୍ରାଚୀନ ସାହିତ୍ୟରେ ବେଦନାବୋଧର ମଧ୍ୟ ଚମ୍ତ୍କାର ପରିପ୍ରକାଶ ଘଟିଛି। ରାମାୟଣର ପ୍ରଥମ ପଦ ସୃଷ୍ଟି ହୋଇଥିଲା ଏହି ବେଦନାବୋଧରୁ। ବ୍ୟାଧ ଶରାଘାତରେ ପୁରୁଷ ପକ୍ଷୀଟିର ଅକାଳ ମୃତ୍ୟୁରେ ନାରୀପକ୍ଷୀଟି ଯେଉଁ ଆକୁଳ କ୍ରନ୍ଦନ କରିଥିଲା, ତା'ରି ଦୃଶ୍ୟ ଅବଲୋକନରେ ଆଦିକବିଙ୍କ କୋମଳ ହୃଦୟରୁ ଝରି ପଡ଼ିଥିଲା, ସୃଷ୍ଟିର ସେଦିନର ପ୍ରଥମ କବିତା। ଏହି ବେଦନାବୋଧ ଯେତେବେଳେ ମାନସିକ ସ୍ତରରୁ ବାଣୀବିନ୍ୟାସ ମାଧ୍ୟମରେ ଏକ ଶିଳ୍ପସଙ୍ଗତ ରୂପ ନେଇ ଆତ୍ମପ୍ରକାଶ କରେ ସେତେବେଳେ ତାହା ହୁଏ କବିତା।

କବିର ଦୃଷ୍ଟି ଏକ ସ୍ୱତନ୍ତ୍ର ଦୃଷ୍ଟି। ମଣିଷର ଯନ୍ତ୍ରଣା, ଦୁଃଖ, ଦୈନ୍ୟ କବିର ହୃଦୟରେ ସୃଷ୍ଟିକରେ ଆଲୋଡ଼ନ। ତେଣୁ ଏକ ସାର୍ବଜନୀନ ଉଦାର ମାନବିକ ଦୃଷ୍ଟିକୋଣ ନେଇ କବି ପ୍ରକାଶକରେ ତା'ର ଅନ୍ତରର ବେଦନାବୋଧକୁ ଏବଂ ଯେତେବେଳେ ସେ ତା'ର ବ୍ୟକ୍ତି ବିଶ୍ୱଚେତନାକୁ ପ୍ରକାଶ କରେ, ସେତେବେଳେ ତାହା ବିଶ୍ୱ-ବ୍ୟକ୍ତି ଚେତନାରେ ରୂପାନ୍ତରିତ ହୋଇ ଅଗଣିତ ଜନତାର ହୃଦୟର ଭାବକୁ ମର୍ମରିତ କରେ।"[୮୫] କବିର ଦରଦୀ ହୃଦୟ ତା'ରି ସମାଜର ନିର୍ଯ୍ୟାତିତ, ନିରନ୍ନ, କାଙ୍ଗାଳର ଶୋଚନୀୟ ଅବସ୍ଥା ଦେଖି କରୁଣ ବିଳାପ କରିଉଠେ। ସମଦୁଃଖୀଠାରୁ ଭାବୁକର ହୃଦୟ ଆହୁରି ସରଳ। ତେଣୁ "କବି ଭାବନା ନେତ୍ରରେ ସବୁ ମଣିଷଙ୍କୁ ଏକାଭାବରେ ଦେଖନ୍ତି। ଭେକ, ପଦବୀର ଆଚ୍ଛାଦନ ଭିତରେ ଅମନୁଷ୍ୟତା ତାଙ୍କ ଦୃଷ୍ଟି ଏଡ଼ାଇ ପାରେ ନାହିଁ। ଭାବ ପ୍ରବାହରେ ସତେଯେପରି କବି ଓ ଜନସାଧାରଣଙ୍କ ସ୍ୱତନ୍ତ୍ର ସତ୍ତା ହଜିଯାଏ। ଜନସାଧାରଣଙ୍କ ଭିତରେ କବି ନିଜକୁ ଦେଖନ୍ତି। କବିଙ୍କ ଅନ୍ତର୍ଲୋକରେ ଜନସାଧାରଣଙ୍କ ରୂପ ଭାସି ଉଠେ। ଏହି ତନ୍ମୟ ଏକାତ୍ମଭାବ କବିତାକୁ କରୁଣ ମଧୁର କରେ। ଆମ ହୃଦୟକୁ ବିଗଳିତ ଓ ମାନସ ଲୋକକୁ ବିହ୍ୱଳିତ କରିଦିଏ।"[୮୬] ଆଜି ସାହିତ୍ୟ କେବଳ କଳ୍ପନାର ବସ୍ତୁଭାବରେ ଗ୍ରହଣୀୟ ନୁହେଁ। ତା'ର ଏକ ସାମାଜିକ ଦାୟିତ୍ୱ ରହିଛି ମଣିଷର ମଣିଷ ସହିତ ସଂଯୋଗ ସ୍ଥାପନ। ସେଥିପାଇଁ ଯେଉଁ "କଳା ଓ ସାହିତ୍ୟ ମନୁଷ୍ୟ – ମନୁଷ୍ୟ ମଧ୍ୟରେ ଯେଉଁ ପରିମାଣରେ ଭାବ ସଂଯୋଗ କରିପାରନ୍ତି, ସେହି ପରିମାଣରେ ସେମାନେ ଉନ୍ନତ ଓ ସମୃଦ୍ଧ ହୁଅନ୍ତି।"[୮୭]

ଆଜି କବି ବା ସାହିତ୍ୟିକ କେବଳ ଦରିଦ୍ର, ନିଃସହାୟ ନିମିତ୍ତ ଦରଦଶୀଳ ନୁହନ୍ତି, ପରନ୍ତୁ ସମାଜରେ ପ୍ରତିଷ୍ଠିତ ବ୍ୟକ୍ତିମାନଙ୍କ ଅସହାୟତା ଓ ହା-ହୁତାଶମୟ ଜୀବନ ଦର୍ଶନ କରି ସେମାନଙ୍କ ପ୍ରତି ମଧ୍ୟ ସମବେଦନା ପ୍ରକାଶ କରିଥାନ୍ତି। ଯିଏ ଯେତେ ଧନୀ, ତା'ର ଅସହାୟତାବୋଧ ସେତିକି ଅଧିକ। ଏହି ଧନୀ ବଳଶାଳୀ ବ୍ୟକ୍ତି ଦୁର୍ବଳଙ୍କୁ ମଧ୍ୟ ଭୟ କରନ୍ତି, ଯେପରି ବଳଶାଳୀ ହସ୍ତୀ ଭୟକରେ ଚୋରାବାଲିକୁ। ଏଇ ବାଲି ହସ୍ତୀକୁ ସିନା ବାଧାଦେଇପାରେ ନାହିଁ। କିନ୍ତୁ ତାକୁ ତଳକୁ ତଳକୁ ଟାଣିନିଏ। ଯା'ର ଶକ୍ତି ଓ ଆୟତନ ଯେତେ ବଡ଼ ତା'ର ଓଜନ ସେତେ ବେଶୀ ଓ ବାଧାହୀନର ନିମ୍ନକୁ ଆକର୍ଷଣ ତା'ପ୍ରତି ସେହିପରି ବିପଦଦାୟକ। ଯେଉଁ ମାଟି କୌଣସି ବାଧା ନ ଦିଏ ତାକୁ ଯେତେ ଜୋର ଆଘାତ ଦେବ ପାଦକୁ ସେହି ପରିମାଣରେ କଷ୍ଟ ସ୍ୱୀକାର କରିବାକୁ ପଡ଼ିବ।[୮୮] ତେଣୁ ଦୁର୍ବଳ ହେଉ ବା ସବଳ ହେଉ, ବ୍ୟକ୍ତି ବିଶେଷର ଅସହାୟତା, ନିଃସଙ୍ଗତାବୋଧ, ହତାଶବୋଧ ଦରଦୀ କବି

ହୃଦୟରେ ଭାବାନ୍ତର ଜାତ କରେ ଓ ସେହି ଭାବାନ୍ତରରୁ ଯେଉଁ ନବସୃଷ୍ଟି ଜନ୍ମଲାଭ କରେ, ସେଥିରେ କବି ହୃଦୟର ବେଦନାବୋଧ ଚରମ ଅଭିବ୍ୟକ୍ତି ଲାଭ କରେ। ମଧ୍ୟଯୁଗୀୟ ସାହିତ୍ୟରେ ଏହି ଭାବଟି ବିରଳ ଥିଲା। କାରଣ "ଅତୀତ ଯୁଗରେ ଆଧୁନିକ ଯୁଗଭଳି ବ୍ୟକ୍ତିଚୈତନ୍ୟ ଜାଗ୍ରତ ହୋଇ ନ ଥିଲା। ବିଜ୍ଞାନର ଆବିଷ୍କାର ଫଳରେ ଦେଶ ଓ କାଳର ବ୍ୟବଧାନ ଦୂର ହୋଇ ପୃଥିବୀ କ୍ରମଶଃ ଏକତ୍ୱ ଆଡ଼କୁ ଅଗ୍ରସର ହେଉଛି × × × ପୃଥିବୀର ପ୍ରତ୍ୟେକ ବ୍ୟକ୍ତି ନିଜର ଅବସ୍ଥା ବିଷୟରେ ସଚେତନ ହେବା ସଙ୍ଗେ ସଙ୍ଗେ ନିଜର ପରିବାର, ସମାଜ, ଦେଶ ଓ ଅନ୍ୟ ଦେଶର ପରିସ୍ଥିତି ବିଷୟରେ ସଚେତନ।"(୮୯)

ଆଜି କବି ସମାଜର ଅନ୍ୟ ମଣିଷଙ୍କ ପରି ନିଜକୁ ଅନୁଭବ କରୁଛି। ଅନ୍ୟର ଅସହାୟତା ଓ ଉତ୍ପୀଡ଼ନକୁ ନିଜର ବୋଲି ଭାବୁଛି। ସମାଜରେ ଦୀନଦଳିତଙ୍କ ପ୍ରତି ଅତ୍ୟାଚାରକୁ ନିଜ ପ୍ରତି ଅତ୍ୟାଚାର ବୋଲି ଅନୁଭବ କରୁଛି। ଯେଉଁ କବି ବହିଃଜଗତର ବେଦନାବୋଧ ସହିତ ଅନ୍ତର୍ଜଗତର ବେଦନାବୋଧକୁ ଏକାତ୍ମ କରିପାରେ, ସେ କବି ସେହିପରି ବିରାଟ ଓ ତା'ର ସାହିତ୍ୟକୃତି ସେହି ପରିମାଣରେ କାଳଜୟୀ। ସମାଲୋଚିକା ମହାପାତ୍ର କୁହନ୍ତି – "ଅନନ୍ତ ସତ୍ତାର ଅନୁଚ୍ଛେଦରେ ଯାହାର ଅନ୍ତର ଓ ବହିର୍ଜୀବନ ସଙ୍ଗତ ସେ ଯେ କେବଳ ଯଥାର୍ଥ କାଳଜୟୀ କବି ଭାବରେ ଉଭାହୁଏ ତା' ନୁହେଁ, କାଳେ କାଳେ ସମ୍ପୂର୍ଣ୍ଣ ମାନବବାଦୀ ବ୍ୟକ୍ତି ଭାବରେ ହିଁ ତା'ର ପରିଚୟ ମିଳିଥାଏ। ଆତ୍ମାର ଓ ଆତ୍ମପ୍ରକାଶର ସ୍ୱାଚ୍ଛନ୍ଦ୍ୟରେ ସିଏ ହୁଏ ରୂପବାନ, ବିଭବାନ ଏବଂ ଚିତ୍ତଜୟୀ।"(୯୦)

ଆଜି ସମାଜ ନୁହେଁ, ବ୍ୟକ୍ତି ହେଉଛି କବିର ଆଦର୍ଶ। ପରିବେଶ ନୁହେଁ, ବ୍ୟକ୍ତି ଜୀବନର ଘଟଣାରାଜି ହେଉଛି କବିତାର ବିଷୟବସ୍ତୁ। ଦାର୍ଶନିକ ଭାବରେ ନୁହେଁ, ଜଣେ ଦରଦୀ, ସମଭାବାପନ୍ନ ବ୍ୟକ୍ତିଭାବରେ ସେ ଜନ ସମାଜକୁ ଦେଖୁଛି। ଦେଖୁଛି ତା'ର ଘଟଣାବହୁଳ ଜୀବନର ଉତ୍‌ଥାନ ପତନକୁ; ଅନୁଭବ କରୁଛି ତା'ର ବ୍ୟଥା ବେଦନାମୟ ଜୀବନର କରୁଣ କାହାଣୀକୁ ଓ ଶେଷରେ ରୂପ ଦେଉଛି ତାକୁ ବେଦନାର ପ୍ରଲେପଦେଇ କଳାତ୍ମକ କମନୀୟତାରେ।

## ହାସ୍ୟ ଓ ବ୍ୟଙ୍ଗ

ଆମର ପ୍ରାଚୀନ ସାହିତ୍ୟରେ ଯେ ହାସ୍ୟ ଓ ବ୍ୟଙ୍ଗ ନ ଥିଲା ତାହା ନୁହେଁ; ମାତ୍ର ପ୍ରାଚୀନ ଓ ଆଧୁନିକ ସାହିତ୍ୟରେ ପ୍ରକାଶିତ ହାସ୍ୟ ଓ ବ୍ୟଙ୍ଗର ପ୍ରକାଶଭଙ୍ଗୀ

ସ୍ୱତନ୍ତ୍ର। ପ୍ରାଚୀନ ସାହିତ୍ୟରେ ଯେଉଁ ହାସ୍ୟ ଓ ବ୍ୟଙ୍ଗର ଅବତାରଣା କରାଯାଇଛି, ତା'ର ଏକମାତ୍ର ଉଦ୍ଦେଶ୍ୟ ଥିଲା ଶୁଦ୍ଧ ହାସ୍ୟରସ ପରିବେଷଣ କରିବା। କିନ୍ତୁ ଆଧୁନିକ ସାହିତ୍ୟରେ ଏହି ହାସ୍ୟରସର ଭୂମିକା ଗୁରୁତ୍ୱପୂର୍ଣ୍ଣ। ଏହାର ଏକ ସାମାଜିକ ଉପଯୋଗିତା ଅଛି।

ପ୍ରାଚୀନ ଆଳଂକାରିକମାନେ 'ହାସ୍ୟ'ରସର ବ୍ୟାଖ୍ୟା କରିବାକୁ ଯାଇ କହିଛନ୍ତି 'ହାସ' ହାସ୍ୟରସରେ ସ୍ଥାୟୀଭାବ। ବାକ୍‌ଭଙ୍ଗୀର ବିକୃତ ସନ୍ଦର୍ଶନ ଫଳରେ ଯେଉଁ ରସର ଉତ୍ପତ୍ତି ଘଟେ ତାହା ହାସ୍ୟରସ। ଆନନ୍ଦର ପରିପୂର୍ଣ୍ଣ ବିକାଶହିଁ ହାସ୍ୟରସ।"[୯୧] କିନ୍ତୁ ଆଧୁନିକ ଯୁଗରେ ହାସ୍ୟରସର ଏ ସଂଜ୍ଞା ସମ୍ପୂର୍ଣ୍ଣ ବଦଳି ଯାଇଛି। "ଗଦ୍ୟ କିମ୍ବା ପଦ୍ୟରେ ଏହାର ପ୍ରୟୋଗ କରାଯାଇପାରେ। ଏହି ହାସ୍ୟ ଓ ବ୍ୟଙ୍ଗ ବ୍ୟକ୍ତିଗତ ବା ସାମୂହିକ ବିଷୟକୁ ନେଇ ପ୍ରକାଶଭଙ୍ଗୀର ଚମତ୍କାରିତା ଅନୁଯାୟୀ ପ୍ରକାଶ କରାଯାଇପାରେ। ଯେକୌଣସି ବିଷୟବସ୍ତୁକୁ ନେଇ ହାସ୍ୟ ଓ ବ୍ୟଙ୍ଗର ପ୍ରୟୋଗ କରାଯାଇପାରେ। ମୁଖ୍ୟତଃ ରାଜନୀତି ଓ ଧର୍ମକୁ ନେଇ ଏହା ରଚିତ ହୋଇଥାଏ। ଏହାର ପ୍ରକାଶ ଭଙ୍ଗୀ ସ୍ପଷ୍ଟ ଓ ପ୍ରତ୍ୟକ୍ଷ ହେବା ଉଚିତ ନୁହେଁ। ଏଥିରେ ଅଶ୍ଳୀଳ ଓ ଗ୍ରାମୀଣ ଶବ୍ଦମାଳାକୁ ବହିଷ୍କାର କରାଯାଇଥାଏ।"[୯୨] ଏପରି ହାସ୍ୟ ଓ ବ୍ୟଙ୍ଗ ପ୍ରଥମେ ଲାଟିନ୍‌ ସାହିତ୍ୟରେ ଦେଖାଯାଇଥିଲା ଓ ହୋରେସ, ପରସିଅସ, ଜୁଭେନାଲ ପ୍ରଭୃତି ରେନେଁସା ପରେ ପାଶ୍ଚାତ୍ୟ ଜଗତରେ ଏହାର ମୁଖ୍ୟ ପ୍ରୟୋଗକର୍ତ୍ତା ଭାବରେ ସ୍ୱୀକୃତି ଲାଭ କରିଥିଲେ।

ସମାଜ ଓ ବ୍ୟକ୍ତି ମାନସରେ ବସାବାନ୍ଧିଥିବା କୁସଂସ୍କାର, ରୀତିନୀତିର ସଂଶୋଧନ ଲାଗି ପରିହାସ ମାଧ୍ୟମରେ ଯେଉଁ କବିତା ରଚନା କରାଯାଇଥାଏ, ତାହା ମୁଖ୍ୟତଃ ବ୍ୟଙ୍ଗ କବିତା ନାମରେ ନାମିତ। ଏହା ପାପକୁ ଘୃଣା କରେ କିନ୍ତୁ ପାପୀକୁ ନୁହେଁ। କ୍ଷତି ସାଧନ ଅପେକ୍ଷା ସମାଜର ସାମୂହିକ ମଙ୍ଗଳ ପାଇଁ ଏହା ଉଦ୍ଦିଷ୍ଟ। କୌଣସି ବ୍ୟଙ୍ଗକବିତା ଉଚ୍ଚତର ସ୍ଥାନ ଲାଭ କରି ନ ପାରେ, ଯଦି ତା'ର ଏକ ନିର୍ଦ୍ଦିଷ୍ଟ ଉଦ୍ଦେଶ୍ୟ ନ ଥାଏ। ତୀର ପରି ବ୍ୟଙ୍ଗକବିତା ତା'ର କ୍ଷୁଦ୍ରାବୟବ ମଧ୍ୟରେ ଲକ୍ଷ୍ୟ ପୂରଣ କରିବାକୁ ସମର୍ଥ ହୋଇଥାଏ। ଏହା ସଂକ୍ଷିପ୍ତ ଓ ସ୍ପଷ୍ଟ ହେବା ଉଚିତ। ଦୀର୍ଘାବୟବ କିମ୍ବା ଶବ୍ଦ ବହୁଳତା ଏହାର ଉଦ୍ଦେଶ୍ୟ ସାଧନରେ ପ୍ରତିବନ୍ଧକ ସୃଷ୍ଟି କରିଥାଏ।[୯୩] ଅନ୍ୟକୁ ଆଘାତ ଦେବା ଏହାର ଉଦ୍ଦେଶ୍ୟ ହେଲେ ମଧ୍ୟ ତା'ର ପଶ୍ଚାତ୍‌ରେ ଏକ ନିର୍ଦ୍ଦିଷ୍ଟ ଉଦ୍ଦେଶ୍ୟ ସାଧନ କରିବାର ପ୍ରୟାସ ପରିଲକ୍ଷିତ ହୋଇଥାଏ। ଶାଳୀନତାବୋଧ ବ୍ୟଙ୍ଗ କବିର ଧର୍ମ।

କୌଣସି ବ୍ୟକ୍ତିର କଥା ଓ କାର୍ଯ୍ୟ ମଧ୍ୟରେ ପାର୍ଥକ୍ୟ ତଥା ଅସଙ୍ଗତି ପରିଦୃଷ୍ଟ ହେଲେ ତା'ର ଚରିତ୍ର ତଥା କାର୍ଯ୍ୟର ସଂଶୋଧନ ନିମିତ୍ତ ଏହିପରି ବ୍ୟଙ୍ଗାତ୍ମକ ଅସ୍ତ୍ରର ପ୍ରୟୋଗଦ୍ୱାରା କାର୍ଯ୍ୟ ହାସଲ କରାଯାଇଥାଏ। କୌଣସି କୁକାର୍ଯ୍ୟରେ ଲିପ୍ତ ଥିବା ବ୍ୟକ୍ତିକୁ ସିଧାସଳଖ କିଛି ନ କହି ବ୍ୟଙ୍ଗାତ୍ମକ ମାଧ୍ୟମରେ ଅନ୍ୟମାନଙ୍କ ନିକଟରେ ହାସ୍ୟାସ୍ପଦ କରାଇବା ପାଇଁ ଏହା ଏକ ଅବ୍ୟର୍ଥ ଔଷଧ।

ଜୀବନର ପରିପୂର୍ଣ୍ଣତା ପାଇଁ ହାସ୍ୟରସର ଆବଶ୍ୟକତା ରହିଛି। ବିଭିନ୍ନ ପ୍ରକାର ଅସଙ୍ଗତି, କିମ୍ଭୂତ କିମାକାର ଦୃଶ୍ୟ ଅବଲୋକନରେ ଆମ ମନରେ ହସର ଉଦ୍ରେକ ହୋଇଥାଏ। ଅଧ୍ୟାପକ ପଠାଣି ପଟ୍ଟନାୟକ ସେଥିପାଇଁ କୁହନ୍ତି – "ସକଳ ପ୍ରକାର ଅସଙ୍ଗତି ଏବଂ ବୈରୂପ୍ୟରୁ ହାସ୍ୟରସର ସୃଷ୍ଟି ହୁଏ। ସାଧାରଣ ପ୍ରବହମାନ ଧାରାରେ ଯେଉଁଠି ବ୍ୟତିକ୍ରମ ସୃଷ୍ଟି ହୁଏ, ଆଲୋଡ଼ନ ପାଇଁ ଯଥେଷ୍ଟ ସୁଯୋଗ ସେଠାରେ ଉପସ୍ଥିତ ହୁଏ। କୌତୂହଳ ସୃଷ୍ଟି ହେବାପାଇଁ ଆବଶ୍ୟକୀୟ ପରିବେଶ ଯେଉଁଠି ସ୍ପଷ୍ଟ ହୋଇଥାଏ, ସେଠାରେ ହାସ୍ୟରସର ଅବତାରଣା ସ୍ୱାଭାବିକ। ଯୋଗ୍ୟତା ନିର୍ବିଶେଷରେ ଯଦି କିଛି ଅନାଚରଣୀୟ ଆଚାର-ବ୍ୟବହାର ପରିଦୃଷ୍ଟ ହୁଏ, ତେବେ ହାସ୍ୟ ସୃଷ୍ଟି ହେବା ସ୍ୱାଭାବିକ।"[୯୪]

ମୁଖ୍ୟତଃ ଏହି ହାସ୍ୟ ଓ ବ୍ୟଙ୍ଗ ସମାଜର ଦୋଷ, ତ୍ରୁଟି ସଂଶୋଧନ କରିବା ନିମିତ୍ତ ଉଦ୍ଦିଷ୍ଟ। ସମାଜରେ ପ୍ରଚଳିତ ବିଭିନ୍ନ ଦୋଷତ୍ରୁଟି ତଥା ବିଧି-ବ୍ୟବସ୍ଥାର ସମାଲୋଚନା କରି ଓ ସମାଜର ଆଭ୍ୟନ୍ତରୀଣ ସଂଘର୍ଷକୁ ନିରାକରଣ କରି ଏକ ସୁସ୍ଥ ବାତାବରଣ ତଥା ସମାଜ ଗଠନ କରିବା ନିମିତ୍ତ ଏହା ପ୍ରେରଣା ଦେଇଥାଏ। ଆଧୁନିକ ସାହିତ୍ୟରେ ହାସ୍ୟ ଓ ବ୍ୟଙ୍ଗକୁ ସମାଜ ପରିବର୍ତ୍ତନର ଏକ ଅମୋଘ ଅସ୍ତ୍ରରୂପେ ପ୍ରୟୋଗ କରାଯାଉଛି। ଆଧୁନିକ ସାହିତ୍ୟରେ ଏହା ଏବେ ଏକ ବଳିଷ୍ଠ ବିଭାଗ ଭାବରେ ନିଜର ଦାୟିତ୍ୱ ବଜାୟ ରଖିଛି। କେବଳ ବ୍ୟଙ୍ଗ ମାଧ୍ୟମରେ ସାମାଜିକ ବୈଷମ୍ୟ ଦୂର କରାଯାଇପାରେ। କିନ୍ତୁ ଏଥିରେ ହାସ୍ୟର ପ୍ରୟୋଗ କରିବାର ଉଦ୍ଦେଶ୍ୟ ହେଉଛି "ବ୍ୟଙ୍ଗ ମଧ୍ୟରେ ହାସ୍ୟ ନ ରହିଲେ ତାହା ନିରସ ସମାଲୋଚନା ହୋଇଯିବ। ତହିଁରେ ଉପଭୋଗର ସାମଗ୍ରୀ ରହିବ ନାହିଁ। ମାତ୍ର ହାସ୍ୟଯୁକ୍ତ ବ୍ୟଙ୍ଗ ମନରେ ଗଭୀର ଆଲୋଡ଼ନ ସୃଷ୍ଟି କରେ। ଅନ୍ୟକୁ ପୀଡ଼ନ କରିବାର ବଳବତୀ ଇଚ୍ଛା ଏଥିରେ ନିହିତ। ଏହି ଆଘାତ ଦେବାର ଅନ୍ତରାଳରେ ନିଜର ବଡ଼ ପଣିଆର ଅନୁଭୂତି ଜାଗ୍ରତ ହୋଇଉଠେ। ହେଲେହେଁ ଅନ୍ୟ ପ୍ରତି ସ୍ୱାଭାବିକ ସହାନୁଭୂତି ହେତୁ ତାହାର ସଂସ୍କାର ପାଇଁ ଆଘାତ ଦେବାକୁ ଇଚ୍ଛା ହୋଇଥାଏ।"[୯୫] ଏହି ଦୃଷ୍ଟିରୁ ବିଚାର କଲେ ସମାଜ ତଥା ବ୍ୟକ୍ତିର ସଂସ୍କାର

ପାଇଁ ହାସ୍ୟ ଓ ବ୍ୟଙ୍ଗର ଏକ ବଳିଷ୍ଠ ଭୂମିକା ରହିଛି। କେବଳ ଆଘାତ ଦେବାକୁ ଯା'ର ସୃଷ୍ଟି, ତା'ର କୌଣସି ଚିରନ୍ତନ ମୂଲ୍ୟ ରହେ ନାହିଁ। କିନ୍ତୁ ଆଘାତ ଦେବା ପଶ୍ଚାତରେ ଯଦି କୌଣସି ସୁମହତ୍ ଲକ୍ଷ୍ୟ ଲୁକ୍‌କାୟିତ ଥାଏ, ତା'ର ଆବେଦନ ହୋଇଉଠେ ସାର୍ବକାଳିକ।

## ପ୍ରକୃତ ପ୍ରତି ଦୃଷ୍ଟିଭଙ୍ଗୀ

ସାହିତ୍ୟରେ ପ୍ରକୃତି ଯେ ଯୁଗେ ଯୁଗେ ଏକ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଅଧିକାର କରି ଆସିଛି ଏହା ଅସ୍ୱୀକାର କରାଯାଇ ନ ପାରେ। କିନ୍ତୁ ଆମେ ପ୍ରାଚୀନ ସାହିତ୍ୟରେ ପ୍ରକୃତିର ଯେଉଁ ରୂପ ଦେଖି ଆସିଥିଲୁ ତାହା ଥିଲା ମୁଖ୍ୟତଃ ନାୟକ ନାୟିକାମାନଙ୍କର ପ୍ରଣୟର ବିକାଶ ନିମିତ୍ତ ଏକ ଉଦ୍ଦୀପନ ବିଭାବ। ପ୍ରକୃତିର ନିଜର ଗୋଟିଏ ଭାଷା ଅଛି। ସେହି ଭାଷାକୁ ନିଜର ବୋଧି (intuition), ଅନୁଭୂତି ଓ ଆବେଗ ଦ୍ୱାରା ଆୟତ୍ତ କରି ପାରିଲେ ଗୋଟିଏ ସୁବିପୁଳ ଆନନ୍ଦ ଓ ଆଲୋକର ରାଜ୍ୟରେ ପ୍ରବେଶ କରାଯାଇପାରେ[୯୬] ଏକଥା ଆମର ପ୍ରାଚୀନ ଓ ମଧ୍ୟଯୁଗୀୟ କବି ଧାରଣା କରିପାରି ନ ଥିଲେ। ପ୍ରକୃତି ଯେ ମଣିଷର ହସ-କାନ୍ଦ, ସୁଖ-ଦୁଃଖର ସାଥୀ ହୋଇପାରେ, ଏହା ସେମାନେ କେବେ କଳ୍ପନା କରିପାରି ନ ଥିଲେ। ପ୍ରକୃତିର ମଣିଷ ପରି ହୃଦୟ ଅଛି। ପ୍ରକୃତି କ୍ରୋଡ଼ରେ କ୍ରୀଡ଼ା କରି ଆମେ ସଭ୍ୟତାର ଚରମ ସୀମାରେ ଆଜି ଉପନୀତ ହୋଇପାରିଛୁ। ପ୍ରକୃତି ମଧ୍ୟରେ ଅନନ୍ତ ସତ୍ତାର ଶକ୍ତି ନିହିତ। ସେଇଥିପାଇଁ ରୁଷୋ ପ୍ରକୃତି କ୍ରୋଡ଼କୁ ପ୍ରତ୍ୟାବର୍ତ୍ତନ ପାଇଁ ଆହ୍ୱାନ ଦେଇଥିଲେ। କାରଣ ପ୍ରକୃତି ସ୍ୱାଧୀନ ଓ ଚିର ସମବେଦନଶୀଳ।

ରୋମାଣ୍ଟିକ୍ କବିମାନେ ପ୍ରକୃତିର ଥିଲେ ଗଭୀର ଉପାସକ। ତାଙ୍କ ପାଇଁ ପ୍ରକୃତି ଥିଲା ନିସର୍ଗ ସୌନ୍ଦର୍ଯ୍ୟର ଆଧାର। ଇଂରାଜୀ କବି ୱାର୍ଡ଼ସୱାର୍ଥ ପ୍ରକୃତିରେ ଚିନ୍ମୟ ଆନନ୍ଦର ସନ୍ଧାନ ପାଇବା ସଙ୍ଗେ ସଙ୍ଗେ ଉନ୍ନତ, ମହୀୟାନ ଅନୁଭୂତି ମଧ୍ୟ ଉପଲବ୍ଧି କରିବାକୁ ସକ୍ଷମ ହୋଇ ପାରୁଥିଲେ।[୯୭] ବିଶ୍ୱ ସୃଷ୍ଟିରେ 'ପ୍ରକୃତିର ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି। ଏହା ସୃଷ୍ଟିର ଏକ ବାହ୍ୟରୂପ ନୁହେଁ; ଏହାର ଏକ ଅନ୍ତର୍ନିହିତ ସୌନ୍ଦର୍ଯ୍ୟ ରହିଛି। ପ୍ରକୃତି ମଧ୍ୟରେ ଏକ ସୃଷ୍ଟିଶୀଳ ଶକ୍ତି ରହିଛି[୯୮] ଯାହା ଆମକୁ ସମସ୍ତ କାର୍ଯ୍ୟ କରିବାରେ ପ୍ରେରଣା ଦେଇଥାଏ। ପ୍ରକୃତିର ଯେ ଏକ ଆତ୍ମା ଅଛି, ତାହା କବି ଅନୁଭବ କରି ନ ପାରିଲେ ତାହା ସହିତ ସେ ଏକାତ୍ମ ହୋଇ ପାରନ୍ତି ନାହିଁ।

ପ୍ରକୃତି ସହିତ କବି ପ୍ରତ୍ୟକ୍ଷ ଭାବରେ ଆତ୍ମୀୟତା ସ୍ଥାପନ କରି ସେଥିରୁ ଅନେକ ଉପାଦାନ ଗ୍ରହଣ କରିଛି। କିନ୍ତୁ ପ୍ରକୃତି ସବୁଦିନ ଆଉ ସେପରି ସୁନ୍ଦର,

କମନୀୟ ହୋଇ ରହିପାରି ନାହିଁ। ପ୍ରକୃତି ମଧ୍ୟରେ ଆସିଛି ବିରାଟ ପରିବର୍ତ୍ତନ। ଇଉରୋପର ଶିଳ୍ପ ବିପ୍ଳବ ପରେ ସେ ତା'ର ପୂର୍ବ ରୂପ ହରାଇ ବସିଛି। ଶସ୍ୟ ଶୋଭିତ ସୁଜଳା ସୁଫଳା କ୍ଷେତ୍ର ଉପରେ ଗଢ଼ି ଉଠିଛି ଆଧୁନିକ ବିଜ୍ଞାନର ସର୍ବଗ୍ରାସୀ କଳକାରଖାନା। ଯେଉଁଠି ଦିନେ ପ୍ରକୃତି ତା'ର ରୂପର ପସରା ମେଲାଇ କବି ଓ ଭାବୁକର ଚିତ୍ତ ଆକର୍ଷଣ କରୁଥିଲା, ସେ ସ୍ଥାନ ଆଜି ଗୋଟାଏ ପୋଡ଼ା ଭୂଇଁରେ ପରିଣତ ହୋଇଛି। ଯେଉଁ ମାନବ ଦିନେ ପ୍ରକୃତିରୁ ତା'ର ଦୈନନ୍ଦିନ ଜୀବନର ସମସ୍ତ ଅଭାବ ପରିପୂରଣ ପାଇଁ ଉପାଦାନ ସଂଗ୍ରହ କରୁଥିଲା, ସେହି ମାନବ ଆଜି ପ୍ରକୃତିକୁ ଖିନ୍‌ଭିନ୍ କରି ପରୀକ୍ଷା କରୁଛି। ଆଜି ପ୍ରକୃତି ପରିଣତ ହୋଇଯାଇଛି ଏକ ପରୀକ୍ଷା ଗାରରେ।

ଆଜିର କବି ପ୍ରକୃତିକୁ ବିଶ୍ଳେଷଣ କରିବାକୁ ଚାହୁଁଛି। ତା' ନିକଟରେ ପ୍ରକୃତି ବୈଚିତ୍ର୍ୟମୟୀ। ପୋଡ଼ା ଭିତରେ ସେ ଦେଖୁଛି ତା'ର ଲାସ୍ୟମୟୀ ରୂପକୁ। ତେଣୁ ଆଧୁନିକ କବି ପ୍ରକୃତିର ସନ୍ଧାନ ପାଇଛନ୍ତି ବିଭିନ୍ନ ରୂପରେ। କେତେବେଳେ ସେ ହାସ୍ୟ-ଲାସ୍ୟମୟୀ ରହସ୍ୟ ପ୍ରତିମା, ମିଳନର ଆଲୋକ-ନିର୍ଝର ତୀରରେ କବି ସହିତ କ୍ରୀଡ଼ାରତା; କେବେ ଅବା ପ୍ରଗଲ୍‌ଭ ଶିଶୁ ଚଞ୍ଚଳ ଓ ଚପଳ। ପୁଣି କେତେବେଳେ ଭୀତି ସଞ୍ଚାରିଣୀ ଭୈରବୀ-ପ୍ରଳୟଙ୍କରୀ, ସଂହାର-କର୍ମନିରତା। ସେ ସୀମା ମଧ୍ୟରେ ଅସୀମ। ଅନ୍ଧକାର ଭେଦକରି ବାଣୀର ବିଦ୍ୟୁତ୍ ଦୀପ୍ତି ବାଜିଲା ଯାହାର ବକ୍ଷରେ; ସେହିତ ଅସୀମର ପୂଜାରୀ, ବାଣବିଦ୍ଧ ସେହି କବିର ଆବେଗ ଅସୀମକୁ ଦେଲା ରୂପ, ରୂପସୀକୁ ଦେଲା ବାଣୀ, ବାଣୀ ପାଇଲା କଳାକାର ଗତି, ମରାଳର ଛନ୍ଦ। କବିତା ଏହି ଛନ୍ଦର ସ୍ପନ୍ଦନ, ଅଲିଖିତ ଜଗତର ଅନୁଭୂତି।"[୯୯] ଆଜିର ପ୍ରକୃତି ପ୍ରତି କବିର ଏହି ଦୃଷ୍ଟିଭଙ୍ଗୀ ତାର କଳାକୁ କରିଛି ଆବେଗମୟୀ।

## ସୌନ୍ଦର୍ଯ୍ୟଚେତନା

କବିମାନେହିଁ ସୌନ୍ଦର୍ଯ୍ୟର ଉପାସକ। କାରଣ ସୌନ୍ଦର୍ଯ୍ୟ ବିନା କଳା ବା ସାହିତ୍ୟର କୌଣସି ମୂଲ୍ୟ ନାହିଁ। କଳା ବା ସାହିତ୍ୟକୁ ନୈତିକତା ବା ରାଜନୀତି ମାନଦଣ୍ଡରେ ମାପିଲେ ଏହାର କୌଣସି ମୂଲ୍ୟ ରହେ ନାହିଁ। କାରଣ ସୌନ୍ଦର୍ଯ୍ୟ-ଚେତନା ଏପରି ଏକ ବସ୍ତୁ, ଯାହା କେବଳ ହୃଦୟ ଦେଇ ଉପଭୋଗ କରାଯାଇପାରେ। ଏହାର ଏକ ଅନ୍ତର୍ନିହିତ ଆନନ୍ଦ ରହିଛି। ବାସ୍ତବ ମୂଲ୍ୟ ଅପେକ୍ଷା ଏହାର ଏକ ପ୍ରତ୍ୟକ୍ଷ ମୂଲ୍ୟ ରହିଛି।[୧୦୦] ଯେଉଁ କାବ୍ୟର ସୌନ୍ଦର୍ଯ୍ୟ ମୂଲ୍ୟ ନାହିଁ, ସେ କାବ୍ୟ ଏକ ଚିରନ୍ତନ ଆବେଦନ ସୃଷ୍ଟି କରିବାକୁ ଅକ୍ଷମ। ଯଥାର୍ଥରେ ଗୁଜୁରାଟୀ ସାହିତ୍ୟିକ ଜ୍ଞାନପୀଠ

ପୁରସ୍କାର ପ୍ରାପ୍ତ ଉମାଶଙ୍କର ଯୋଶୀ କୁହନ୍ତି – "କାବ୍ୟ ଦୀକ୍ଷା ସୌନ୍ଦର୍ଯ୍ୟର, ଜୀବନ ଦୀକ୍ଷା ପ୍ରେମର – ଯାହା ମନରେ ଉଙ୍କି ମାରିବା ଗୋଟିଏ କଥା; କିନ୍ତୁ ଜୀବନରେ ପ୍ରତିକ୍ଷଣ ଅନୁଭବ ବସ୍ତୁ ହୋଇଯିବା ଆଉ ଗୋଟିଏ କଥା।"[୧୦୧]

ସାହିତ୍ୟରେ ସୌନ୍ଦର୍ଯ୍ୟ ସହିତ ବାସ୍ତବତାର ମିଶ୍ରଣ ହେଲେ, ତାହା ସହୃଦୟ ପାଠକ ମନରେ ଚିରନ୍ତନ ଆବେଦନ ସୃଷ୍ଟିକରେ ଓ ସେ ସାହିତ୍ୟ ଏକ କାଳଜୟୀ କୃତିଭାବରେ ବିଶ୍ୱରେ ତା'ର ଶ୍ରେଷ୍ଠ ଆସନ ଦାବୀ କରିବାକୁ ସମର୍ଥ ହୁଏ।[୧୦୨] ପ୍ରତ୍ୟେକ ସୃଷ୍ଟିରୁ ସୌନ୍ଦର୍ଯ୍ୟ ଆହରଣ କରିବାର ଦାୟିତ୍ୱ ପାଠକର। ନିଜର ସହଜାତ ପ୍ରବୃତ୍ତି ମାଧ୍ୟମରେ ଶ୍ରେଷ୍ଠମାନବ, କୁତ୍ସିତ ସୃଷ୍ଟିରୁ ମଧ୍ୟ ସୌନ୍ଦର୍ଯ୍ୟ ଗ୍ରହଣ କରିବାକୁ କ୍ଷମ। "ଏଣୁ ସୌନ୍ଦର୍ଯ୍ୟ ତତ୍ତ୍ୱ ମୂଳକ ଅଭିଜ୍ଞତା କେବଳ ଏକ ଭାବ ବା ଆବେଗାତ୍ମକ ଅଭିଜ୍ଞତା। ଏହାକୁ ମଧ୍ୟ ଅତୀନ୍ଦ୍ରିୟ ବା ଆଧ୍ୟାତ୍ମିକ ସ୍ତରର ଅନ୍ତର୍ଭୁକ୍ତ କରାଯାଇପାରେ। ସୌନ୍ଦର୍ଯ୍ୟ ତତ୍ତ୍ୱ ଗ୍ରହଣ କରିବାର ଦାୟିତ୍ୱ କେବଳ ପାଠକ ଉପରେ ନିର୍ଦ୍ଦିଷ୍ଟ କରିଦେଲେ ଚଳିବ ନାହିଁ; ପରନ୍ତୁ ଉଚ୍ଚାଙ୍ଗ କଳାର ପ୍ରକୃତ ମୁଖ୍ୟ ବା ସ୍ୱତନ୍ତ୍ର ଲକ୍ଷ୍ୟ ହେଉଛି କଳାତ୍ମକ ବା ସୌନ୍ଦର୍ଯ୍ୟ ତତ୍ତ୍ୱମୂଳକ।"[୧୦୩] ବିଶିଷ୍ଟ ସାହିତ୍ୟ ସୁନ୍ଦର ଓ ମନୋହର ହେବା ଉଚିତ। କାରଣ ସାହିତ୍ୟର ସୌନ୍ଦର୍ଯ୍ୟ ହେଉଛି ସାତ୍ତ୍ୱିକ ସୌନ୍ଦର୍ଯ୍ୟ। ଯାହା ସୁନ୍ଦର ତାର ପରିସର ସଂକୀର୍ଣ୍ଣ, ଯାହା ମନୋହର ତାହା ବହୁଦୂର ପ୍ରସାରିତ। × × ସୌନ୍ଦର୍ଯ୍ୟର ସୃଷ୍ଟି ସେଇଠି, ଯେଉଁଠି ମଣିଷର ହୃଦୟ ଅପର ହୃଦୟରେ ଓ ବହିଃ ପ୍ରକୃତିର ସଙ୍ଗେ ଆତ୍ମୀୟତା କରେ।[୧୦୪] ସାହିତ୍ୟର ସୌନ୍ଦର୍ଯ୍ୟ ବାସ୍ତବ ଜଗତର ସୌନ୍ଦର୍ଯ୍ୟଠାରୁ ପୃଥକ୍।

କୌଣସି ପଦାର୍ଥର ବହିଃଦୃଶ୍ୟ ବର୍ଣ୍ଣନ ପ୍ରକୃତ ସୌନ୍ଦର୍ଯ୍ୟତତ୍ତ୍ୱର ପ୍ରଖ୍ୟାପନ ନୁହେଁ; ବରଂ ତା'ର ଅନ୍ତର୍ନିହିତ୍ ସୌନ୍ଦର୍ଯ୍ୟହିଁ ପ୍ରକୃତ ସୌନ୍ଦର୍ଯ୍ୟତତ୍ତ୍ୱ। ପୁଣି ସତ୍ୟ ଓ ସୌନ୍ଦର୍ଯ୍ୟ ପରସ୍ପର ଅଭିନ୍ନ। ମିଥ୍ୟା ବା କଳ୍ପନାଦ୍ୱାରା ପରିବେଷିତ ସୌନ୍ଦର୍ଯ୍ୟ କ୍ଷଣସ୍ଥାୟୀ। ସେଥିପାଇଁ କୀଟ୍ସ ତାଙ୍କର 'Ode on A Grecian urn କବିତାରେ ଲେଖିଛନ୍ତି –

Beauty is truth, Truth is beauty – That is all.
Ye know on earth, and all ye need to know.

ବିଶ୍ଳେଷଣ ମାଧ୍ୟମରେ ସତ୍ୟର ଆବିଷ୍କାର କେବଳ ବିଜ୍ଞାନ କ୍ଷେତ୍ରରେ ପ୍ରଯୁଜ୍ୟ। ସାହିତ୍ୟ କ୍ଷେତ୍ରରେ ହୃଦୟ ଓ ଭାବଗ୍ରହଣ କ୍ଷମତାର ପ୍ରୟୋଜନ ରହିଛି। ବୈଜ୍ଞାନିକ ସତ୍ୟରେ ସୌନ୍ଦର୍ଯ୍ୟ ଦେଖେ, କଳାକାର ସୌନ୍ଦର୍ଯ୍ୟରେ ସତ୍ୟ ଆବିଷ୍କାର କରେ। କିନ୍ତୁ ତପସ୍ୱୀ ଉତ୍ତମ କାର୍ଯ୍ୟରେ ହିଁ ସତ୍ୟକୁ ଅବବୋଧ କରେ।"[୧୦୫] କବି ଅନ୍ତରର ଭାବ

ସୌନ୍ଦର୍ଯ୍ୟ ମାଧ୍ୟମରେ ପରିପ୍ରକାଶ ହେଲେ ଦର୍ଶନର ଗୌରବ ମିଳେ। ଅଧ୍ୟାପକ ବେହେରା ସେଥିପାଇଁ କୁହନ୍ତି, "ଅନ୍ତରର ନିର୍ଯ୍ୟାସ ଯଦି ସୌନ୍ଦର୍ଯ୍ୟ ମାଧ୍ୟମରେ ଆପଣାକୁ ପ୍ରକାଶିତ ନ କରେ ଅନ୍ୟର ଆତ୍ମାକୁ ସ୍ପର୍ଶ କରିବାର ଯୋଗ୍ୟତା ଯଦି ହାସଲ ନ କରେ, ତେବେ ଦର୍ଶନ ବା ଅଧ୍ୟାତ୍ମର ଗୌରବ ପାଇବାକୁ ସେ ଅଯୋଗ୍ୟ।"(୧୦୬) ବିଜ୍ଞାନର ସତ୍ୟ ସମୟକ୍ରମେ ସାମାନ୍ୟ ତ୍ରୁଟିଯୁକ୍ତ ବୋଲି ବିବେଚନ ହୋଇପାରେ। "ସାହିତ୍ୟରେ କିନ୍ତୁ ସତ୍ୟ ଓ ସୌନ୍ଦର୍ଯ୍ୟ ସର୍ବଦା ସତ୍ୟ ଓ ସମ୍ବନ୍ଧଶୀଳ। ଯାହା ଇନ୍ଦ୍ରିୟ ସୁଖକର ତାହାହିଁ ସୌନ୍ଦର୍ଯ୍ୟ। ତେଣୁ ସୌନ୍ଦର୍ଯ୍ୟ ସୁଖର ସ୍ରଷ୍ଟା। ସୁଖ ମଧ୍ୟରେ ସୌନ୍ଦର୍ଯ୍ୟ ବିଦ୍ୟମାନ। × × × ଯାହା ସୁନ୍ଦର, କମନୀୟ ତାହା ସାହିତ୍ୟର ଉପଜୀବ୍ୟ ଉପାଦାନ। ରମଣୀୟ ବସ୍ତୁକୁ କମନୀୟ ଭାଷାରେ ବ୍ୟକ୍ତ କରିବା କବି ପ୍ରତିଭାର ପ୍ରକୃଷ୍ଟ ପରିଚାୟକ।(୧୦୭) ସୌନ୍ଦର୍ଯ୍ୟମୂଳରେ ଯେ ଭାବାବେଗର ମିଶ୍ରଣ ରହିଛି, ଏହା ଅସ୍ୱୀକାର କରାଯାଇ ନ ପାରେ। ସୌନ୍ଦର୍ଯ୍ୟଦ୍ୱାରା ମାନବ ହୁଏ ଭାବମୟ। "ମନୁଷ୍ୟ ହୃଦୟରେ ଚିରନ୍ତନ ଭାବାବେଗ କ୍ରମଶଃ ପୁଷ୍ଟ ହୋଇ ସାରସ୍ୱତ ସମ୍ଭାର ରୂପେ ରୂପାନ୍ତରିତ ହୁଏ ଓ ତାହାହିଁ ସୌନ୍ଦର୍ଯ୍ୟ ଚେତନାର ଉତ୍ସଭୂମି।"(୧୦୮)

ଜଣେ କବି ସମାଜ ସଂସ୍କାରକ ଓ ନୈତିକତାର ପ୍ରବକ୍ତା ହେବାଠାରୁ କାବ୍ୟ କବିତାରେ ସୌନ୍ଦର୍ଯ୍ୟ ସୃଷ୍ଟି କରିବାକୁ ଅଧିକ ଆଗ୍ରହ ପ୍ରକାଶ କରିବା ଉଚିତ। ସୌନ୍ଦର୍ଯ୍ୟ ମାଧ୍ୟମରେ ପାଠକକୁ ଆନନ୍ଦ ଦାନ ବିଶିଷ୍ଟ କବିଙ୍କର ଆଦର୍ଶ ହେବା ଉଚିତ। ହୁଏତ ସଂସ୍କୃତିର ସହାୟକ ହିସାବରେ ସାହିତ୍ୟର କାର୍ଯ୍ୟକାରିତା ଥାଇପାରେ କିନ୍ତୁ ଆନନ୍ଦଦାନ ଏହାର ମୁଖ୍ୟ ଉଦ୍ଦେଶ୍ୟ। ଉପନିଷଦ ମଧ୍ୟ ଏହି କଥା ଘୋଷଣା କରିଥାଏ। ସେଇଥିପାଇଁ ସୌନ୍ଦର୍ଯ୍ୟର ମୂଳଉତ୍ସ ଆହ୍ଲାଦ ଭାବରେ ସ୍ୱୀକୃତି ଲାଭ କରିଛି। କଳ୍ପନା ଓ ବାସ୍ତବର ସମ୍ମିଶ୍ରଣ ଯେତେବେଳେ ହୃଦୟରେ ଏକ ଅପୂର୍ବ ଅନିର୍ବଚନୀୟ ଆନନ୍ଦ ଆଣେ, ସେତେବେଳେ ସୌନ୍ଦର୍ଯ୍ୟର ମହତ୍ତ୍ୱ ପ୍ରତିଷ୍ଠିତ ହୋଇଥାଏ। ଅବଶ୍ୟ ବାହ୍ୟ ଦୃଷ୍ଟି ଏ ସୌନ୍ଦର୍ଯ୍ୟ ଅବଧାରଣା କରିବାକୁ ସମର୍ଥ ହୋଇପାରେନା। ସେଥିପାଇଁ ଆବଶ୍ୟକ ହୁଏ ଏକ ଅନ୍ତର୍ଦୃଷ୍ଟିର। ଏହି ଅନ୍ତର୍ଦୃଷ୍ଟି ଯାହାର ଯେତେ ପ୍ରଖର, ତା'ର ସୃଷ୍ଟି ସେତିକି ସୌନ୍ଦର୍ଯ୍ୟମୟ। ଏଣୁ ସ୍ରଷ୍ଟାର ପ୍ରଥମ କର୍ତ୍ତବ୍ୟ ସୌନ୍ଦର୍ଯ୍ୟ ସୃଷ୍ଟି ହେବା ଉଚିତ।

## କବିତାର ଆଙ୍ଗିକରେ ବୈଚିତ୍ର୍ୟ :

ସାହିତ୍ୟ ଯୁଗାନୁସାରୀ। ଯୁଗର ପ୍ରାଣ ସ୍ପନ୍ଦନକୁ ସାହିତ୍ୟରେ ପ୍ରକାଶ କରିବା ସାହିତ୍ୟିକର ଏକ ବିଶିଷ୍ଟ କର୍ତ୍ତବ୍ୟ। ଯୁଗ ବା ଚେତନାର ପରିବର୍ତ୍ତନ ସଙ୍ଗେ ସଙ୍ଗେ ସାହିତ୍ୟର ବିଭିନ୍ନ ଅଙ୍ଗରେ ମଧ୍ୟ ପରିବର୍ତ୍ତନ ସାଧିତ ହୋଇଥାଏ। ଏହି ଦୃଷ୍ଟିରୁ ବିଚାର

କଲେ ରୀତିଯୁଗୀୟ ସାହିତ୍ୟର ଆଙ୍ଗିକଠାରୁ ଆଧୁନିକ ଯୁଗ ସାହିତ୍ୟର ଆଙ୍ଗିକରେ ନିଶ୍ଚୟ ପରିବର୍ତ୍ତନ ସାଧିତ ହୋଇଥିବାର ଲକ୍ଷ୍ୟ କରାଯାଇପାରେ। ରୀତିଯୁଗୀୟ ସାହିତ୍ୟ ଥିଲା ମୁଖ୍ୟତଃ ବିଳାସ ସାହିତ୍ୟ ବା ବରାଦିଆ ସାହିତ୍ୟ। ରାଜା ବା ଶାସକଙ୍କର ନିର୍ଦ୍ଦେଶରେ କବିମାନେ କାବ୍ୟକବିତା ରଚନା କରୁଥିଲେ। ପ୍ରାଦେଶିକ ଶାସକ ଥିଲେ ପରାଧୀନ ଓ ମୋଗଲ ଶାସକମାନଙ୍କର ନିର୍ଦ୍ଦେଶାନୁଯାୟୀ ଶାସନକାର୍ଯ୍ୟ ପରିଚାଳନା କରୁଥିଲେ। ହାତରେ ଥିଲା ପ୍ରଚୁର ସମୟ ବିଳାସବ୍ୟସନରେ ଜୀବନକୁ ଅତିବାହିତ କରିବା ଲାଗି। ତେଣୁ ମନ କ୍ଷୁଧା ମେଣ୍ଟାଇବା ନିମିତ୍ତ ଦରବାରୀ କବିଙ୍କୁ ରସ ସାହିତ୍ୟ ସୃଷ୍ଟି ନିମନ୍ତେ ନିର୍ଦ୍ଦେଶ ଦିଆଯାଉଥିଲା। ଜୀବନ ପରାଧୀନ ଥିଲେ ମଧ୍ୟ, ଥିଲା ସ୍ୱୟଂସମ୍ପୂର୍ଣ୍ଣ। ତେଣୁ ସେମାନେ ରଚନା କଲେ କାବ୍ୟ, ମହାକାବ୍ୟ ଓ ଖଣ୍ଡକାବ୍ୟ।

ଆଧୁନିକ ଜୀବନ ମଧ୍ୟଯୁଗୀୟ ଜୀବନ ପରି ଏତେ ସହଜ, ସରଳ ନୁହେଁ। କାର୍ଯ୍ୟବ୍ୟସ୍ତ ମଣିଷର ସମୟ ନାହିଁ ଘଣ୍ଟା ଘଣ୍ଟା ବସି ରସ ସାହିତ୍ୟ ଚର୍ଚ୍ଚା କରିବାପାଇଁ। ତା'ର ସମୟ ସ୍ୱଳ୍ପ କିନ୍ତୁ କାର୍ଯ୍ୟ ଅନେକ। ତଥାପି ଏହି ସୀମିତ ସମୟ-ସୀମା ମଧ୍ୟରେ ସେ ଚାହେଁ କିଛି ପାଠ କରିବାକୁ। ଏହି ସ୍ୱଳ୍ପ ସମୟର ଉପଯୋଗିତା ପାଇଁ ଆଧୁନିକ କବି ସୃଷ୍ଟି କଲା କ୍ଷୁଦ୍ର କବିତା, ଯାହାକୁ ଖୁବ୍ କମ୍ ସମୟ ମଧ୍ୟରେ ପାଠକରି ପାଠକ ଆନନ୍ଦ ଉପଭୋଗ କରିପାରିବ। ସେଥିପାଇଁ ଆଧୁନିକ କବିତାର ଆଙ୍ଗିକରେ ଆସିଲା ବିପୁଳ ପରିବର୍ତ୍ତନ। କାବ୍ୟ ବଦଳରେ ଖଣ୍ଡକାବ୍ୟ ଓ ଗୀତିକବିତା ଆଦି ସୃଷ୍ଟିଲାଭ କଲା।

## ବର୍ଣ୍ଣନାତ୍ମକ କବିତା ବା ଗାଥା କବିତା

ଗାଥା କବିତା ସମ୍ପର୍କରେ ମତାମତ ଦେବାକୁ ଯାଇ ଉଭୟ ପ୍ରାଚ୍ୟ ଓ ପାଶ୍ଚାତ୍ୟ ପଣ୍ଡିତମାନଙ୍କ ମଧ୍ୟରେ ମତାନୈକ୍ୟ ପରିଦୃଷ୍ଟ ହୋଇଥାଏ। 'ଗାଥା'ର ପ୍ରାଚୀନତା ବୈଦିକ ଯୁଗରୁ ଥିବାର ଜଣାଯାଏ। ସର୍ବପ୍ରାଚୀନ ବେଦ ଭାବରେ ସ୍ଥିରୀକୃତ ଋଗ୍‌ବେଦରେ 'ଗାଥା'କୁ 'ଗୀତ' ବା 'ମନ୍ତ୍ର' ଭାବରେ ଗ୍ରହଣ କରାଯାଇଛି।[୧୦୯]

କେହି କେହି ମତ ଦିଅନ୍ତି ଗାଥା କବିତାଗୁଡ଼ିକ ସାଧାରଣତଃ ଅଶିକ୍ଷିତ ଜନସାଧାରଣଙ୍କର ମୌଖିକ ରଚନା। ଜଟିଳତା ବର୍ଜିତ ଗୋଟିଏ ପୂର୍ଣ୍ଣାଙ୍ଗ କାହାଣୀ ଗୀତ ମାଧ୍ୟମରେ ବର୍ଣ୍ଣିତ ହୋଇ ଗାଥା କବିତାର ରୂପ ପରିଗ୍ରହଣ କରିଛି। ଅନ୍ୟାର୍ଥରେ କହିଲେ ଏହା ଗୋଟିଏ କାହାଣୀମୂଳକ ଗୀତ।[୧୧୦] ପୁରାଣମାନଙ୍କ ସୃଷ୍ଟି ପୂର୍ବରୁ ଗାଥା କବିତାର ସୃଷ୍ଟି ହୋଇଛି। ମହାନ୍ ବ୍ୟକ୍ତିମାନଙ୍କୁ ଉତ୍ସବ ଅନୁଷ୍ଠାନମାନଙ୍କରେ ସମ୍ମାନ ପ୍ରଦର୍ଶନ ପାଇଁ ଗାଥା ଓ ସମବେତ ନୃତ୍ୟ-ସଙ୍ଗୀତ ସାରଙ୍ଗୀ ମାଧ୍ୟମରେ ଗାନ କରାଯାଉଥିଲା

ଓ ଏଗୁଡ଼ିକ ତତ୍କାଳୀନ ବ୍ୟକ୍ତିମାନଙ୍କ ପ୍ରଶଂସାରେ ମୁଖରିତ ଥିଲା।[୧୧୧] କିନ୍ତୁ ଉଇଣ୍ଟରନିଟ୍‌ଜ୍‌ଙ୍କ ମତରେ ଦେବତାମାନଙ୍କର କାହାଣୀ ସମ୍ବଳିତ ଗାଥା ଯଜ୍ଞ ଓ ଭୋଜି ଉତ୍ସବରେ ଗାୟନ ହେଉଥିଲା।[୧୧୨] ରବୀନ୍ଦ୍ର କୁମାର ପ୍ରହରାଜ କୁହନ୍ତି – "ଆକର୍ଷଣୀୟ ସ୍ୱର ସାହାଯ୍ୟରେ ବ୍ୟକ୍ତିଗତ ଓ ସାମାଜିକ ଅନୁଭୂତି, ସ୍ମରଣୀୟ ଐତିହାସିକ ଘଟଣା, ଯୁଦ୍ଧକାଳୀନ ବିବରଣୀ ଅଥବା ବିଜୟ ଜୈତ୍ର ଗୀତି ଯେଉଁ ଦିନଠାରୁ ଜନସାଧାରଣରେ ପ୍ରଚଳିତ ଓ ଆଦୃତ ଓ ସେଥିପାଇଁ ମୁଖରେ ମୁଖରେ ଆବୃତ୍ତ ହୋଇ ଆସୁଛି, ସେହିଦିନଠାରୁ ବିଶ୍ୱର ବିଭିନ୍ନ ସାହିତ୍ୟ ରାଜ୍ୟରେ ଗାଥା-କବିତାର ଅଭ୍ୟୁଦୟ ଘଟିଅଛି।"[୧୧୩]

ଉପରୋକ୍ତ ସଂଜ୍ଞାମାନଙ୍କରୁ ଏହା ସ୍ୱତଃ ପ୍ରତୀୟମାନ ହୁଏ ଯେ, ଗାଥା କବିତାରେ ଯେପରି ଗାନ ଯୋଗ୍ୟତା ରହିଛି, ସେହିପରି ରହିଛି କଥନକତା, ସଂକ୍ଷିପ୍ତତା ତଥା ବର୍ଣ୍ଣନାର ଚରମ ଅଭିବ୍ୟକ୍ତି। ଏ ସମସ୍ତ ଆଲୋଚନାର ସାରାଂଶ ଗ୍ରହଣ କରି ଅଧ୍ୟାପକ ଦୀନବନ୍ଧୁ ରଥ କୁହନ୍ତି – "ଗେୟତା, ସଂକ୍ଷିପ୍ତତା, ବର୍ଣ୍ଣନାତ୍ମକତା, କଥନକ ଗର୍ଭିତ, ନୃତ୍ୟସହଚର, ପ୍ରେରଣାମୂଳକ, ସରଳ ନାଟକୀୟ ଶୈଳୀ, ପ୍ରତିନିଧିମୂଳକ ଚରିତ୍ରଚିତ୍ରଣ, ଅବୈକ୍ତିକତା ହେଉଛି ଗାଥା କବିତାର ଲକ୍ଷଣ।"[୧୧୪] ଏଥିରେ କିମ୍ବଦନ୍ତୀ, ଇତିହାସ ଓ ପୁରାଣ ଆଖ୍ୟାନ ବିଶେଷତଃ ମୁଖ୍ୟ ସ୍ଥାନ ଅଧିକାର କରିଥାଏ। ଯଥାର୍ଥରେ ଟାଏଲର କୁହନ୍ତି – "ପୁରାଣ କଥା ଓ ଆଖ୍ୟାନ ନୀ, ପ୍ରାଚୀନ ମାନବ ଜାତିର କଥା ପ୍ରକାଶନର ଏକ କାବ୍ୟରୂପ ହୋଇଥିବାରୁ ଏହାକୁ 'ଗାଥା'ର ଅନ୍ତର୍ଭୁକ୍ତ କରାଯାଇପାରେ।"[୧୧୫] ଗାଥା କବିତାରେ ସାର୍ବଜନୀନ ଆବେଦନ ନିହିତ ଥାଏ। ଆଧୁନିକ ଯୁଗରେ ଗାଥା କବିତା ବ୍ୟକ୍ତି ବିଶେଷ ଦ୍ୱାରା ସୃଷ୍ଟି ହେଲେ ହେଁ ଏଥିରେ ରଚୟିତାର ବ୍ୟକ୍ତିଗତ ଚିନ୍ତାଚେତନା ପ୍ରକାଶ ପାଇ ନ ଥାଏ। ଗୀତ ମାଧ୍ୟମରେ କୌଣସି ଏକ ବିଶିଷ୍ଟବ୍ୟକ୍ତି ବା ସାମୂହିକ ବ୍ୟକ୍ତିବିଶେଷଙ୍କର ଚରିତ୍ରବତ୍ତା, ଘଟଣାବଳୀ, କଳାତ୍ମକ ରୂପରେ ପ୍ରକାଶ ଲାଭ କରିଥାଏ। ତେଣୁ "ଗାଥା କବିତା ସଙ୍ଗୀତ ପାଇଁ ଉଦ୍ଦିଷ୍ଟ। ଏହା ବ୍ୟକ୍ତିଗତ ନୁହେଁ, ସାର୍ବଜନୀନ। ନୃତ୍ୟ ସହିତ ଏହାର ସମ୍ପର୍କ ବହୁ ପ୍ରାଚୀନ ପରି ମନେହୁଏ ଏବଂ ସାହିତ୍ୟିକ ତଥା କାବ୍ୟିକ ପ୍ରଭାବରୁ ମୁକ୍ତ କେତେକ ବ୍ୟକ୍ତିଙ୍କ ଦ୍ୱାରା ଏହାର ମୌଖିକ ପରମ୍ପରା ପ୍ରତିଷ୍ଠିତ।"[୧୧୬]

ସଭ୍ୟତାର ବିକାଶ ସଙ୍ଗେ ସଙ୍ଗେ ଗାଥା କବିତାର ରୂପରେ ମଧ୍ୟ ପରିବର୍ତ୍ତନ ଆସିଲା। ପ୍ରାଚୀନ କାଳରେ ସିନା କେବଳ ଦେବଦେବୀଙ୍କୁ ନେଇ ପ୍ରଥମେ ଗାଥା କବିତା ରଚନାର ଉଦ୍ୟମ ହୋଇଥିଲା, କିନ୍ତୁ ଆଧୁନିକ ଯୁଗରେ ଅନେକ ଘଟଣାକୁ ନେଇ ଗାଥା କବିତା ରଚନା ହେଲା। ତେଣୁ ଆଜି ଆମେ ଆଧୁନିକ ଗାଥା କବିତାକୁ

ବିଭିନ୍ନ ଭାବରେ ବିଭକ୍ତ କରିପାରିବା । ଯଥା – ସମର ଭିତ୍ତିକ ଗାଥା, ସମାଜ ଭିତ୍ତିକ ଗାଥା, ଧର୍ମ ଭିତ୍ତିକ ଗାଥା, ଇତିହାସ ଭିତ୍ତିକ ଗାଥା, ପୌରାଣିକ ଗାଥା ପ୍ରଭୃତି ।

ଗାଥା କବିତାର ବିଶିଷ୍ଟ ଲକ୍ଷଣ ହେଉଛି ଭାଷାର ସରଳତା । ସରଳ ଭାଷାରେ ଏକ ନିର୍ଦ୍ଦିଷ୍ଟ ବିଷୟକୁ ନେଇ ଚମତ୍କାର ଭାବରେ ପରିପ୍ରକାଶ କରିବା ଏହାର ଉଦ୍ଦେଶ୍ୟ ହୋଇଥିବାରୁ ଯେକୌଣସି ବ୍ୟକ୍ତି ଗାଥା କବିତା ରଚନାକ୍ଷେତ୍ରରେ ପାରଦର୍ଶିତା ଲାଭ କରିପାରନ୍ତି ନାହିଁ। କେବଳ ପ୍ରତିଭାବାନ ବ୍ୟକ୍ତି ପକ୍ଷରେ ଏହା ସମ୍ଭବ । ଏଥିରେ କେବଳ ସାର୍ବଜନୀନ ସମସ୍ୟାର ଚିତ୍ର ନ ଥାଏ, ବରଂ ସମସ୍ୟା ସମାଧାନର ଉପାୟ ଥାଏ । ମାନବକୁ ସୁପଥରେ ଗତିକରାଇ ତା'ର ସର୍ବାଙ୍ଗୀନ ଉନ୍ନତି ସାଧନ କରିଥାଏ । ପ୍ରାଚୀନ ଗାଥା କବିତାମାନଙ୍କରେ କବି ଅଜ୍ଞାତ ଓ ଆବୃତ୍ତିଧର୍ମିତା ବିଶେଷ ଭାବରେ ପ୍ରାଚୀନ ଗାଥା କବିତାଗଡ଼ିକର ଆଦର୍ଶ ଥିଲା ।

ଆଧୁନିକ ଯୁଗରେ ଗାଥାକବିତାର ଯେ ବିଶେଷ ଭୂମିକା ରହିଛି, ଏହା ଅସ୍ୱୀକାର କରାଯାଇ ନପାରେ । ମଣିଷ କ୍ରମଶଃ ଇତିହାସ କେନ୍ଦ୍ରବିନ୍ଦୁରୁ ବିଚ୍ୟୁତ ହୋଇ ବ୍ୟକ୍ତିକେନ୍ଦ୍ରିକ ହୋଇ ପଡୁଛି । ତେଣୁ ମାନବର ଏପରି ଏକ ଦୁଃସ୍ଥିତି ସମୟରେ ତାକୁ ଇତିହାସର ବାର୍ତ୍ତା ଶୁଣାଇ ସମାଜମୁଖୀ କରାଇବା କ୍ଷେତ୍ରରେ ଗାଥା କବିତାର ଏକ ବିଶିଷ୍ଟ ଭୂମିକା ରହିଛି । ଜାତୀୟ ଐକ୍ୟ ଓ ଜାତୀୟଚେତନା ଜନମାନସରେ ସୃଷ୍ଟି ପାଇଁ ଗାଥା କବିତାଯେ ଏକ ଉତ୍କୃଷ୍ଟ ମାଧ୍ୟମ, ଏହା ଅସ୍ୱୀକାର କରାଯାଇ ନ ପାରେ । ସାମୂହିକ ଜୀବନର ଉନ୍ନତି ପାଇଁ ତଥା ଏକ ଆଦର୍ଶମୟ ଜୀବନଯାପନ ପାଇଁ ଏହା ପ୍ରେରଣା ଦେଇଥାଏ । କାହାଣୀ ମାଧ୍ୟମରେ ଅନେକ ସମୟରେ ନାଟକୀୟତା ପରିଲକ୍ଷିତ ହେଉଥିବାରୁ ଏହା ଜନମାନସରେ ଅତିଶୀଘ୍ର ଆଲୋଡ଼ନ ସୃଷ୍ଟି କରିପାରେ । କବିର ଆତ୍ମାନୁଭୂତି, ବାକ୍ ଚତୁରତା, କବିଚାତୁରୀ ପ୍ରତିଫଳିତ ହେବାକୁ ଅବକାଶ ନ ଥାଏ ।

ଓଡ଼ିଆ ସାହିତ୍ୟରେ ଅନେକ ଗାଥା କବିତା ପରିଦୃଷ୍ଟ ହୋଇଥାଏ । ପ୍ରଥମ ଲିପିବଦ୍ଧ ଗାଥା ଭାବରେ 'କାଳିଙ୍ଗୀପ୍ରାକୃତ' ବୋଲି ଅଭିହିତ ଭାଷାରେ ଉତ୍କୀର୍ଣ୍ଣ ଖାରବେଳଙ୍କ ହାତୀଗୁମ୍ଫା ଶିଳାଲେଖରେ ସନ୍ଧାନ କରାଯାଇଥିଲା ।(୧୨) ଏହାପରେ ଅନେକ ଗାଥା କବିତାର ଆବିଷ୍କାର କରାଯାଇଛି । ଓଡ଼ିଶାରେ ଯଶୋବନ୍ତ ଦାସ, ଦୈବଜ୍ଞ ବିପ୍ର, ଶିଶୁ ଅନନ୍ତ ଦାସ, ନୀଳାମ୍ବର ଦାସ, ବଳରାମ ଦାସ, ଜଗନ୍ନାଥ ଦାସ, ପୁରୁଷୋତ୍ତମ ଦାସ, ସାରଳାଦାସ, ଫକୀରମୋହନ, ଗଙ୍ଗାଧର, ଗୋଦାବରୀଶ ମିଶ୍ର ରାଧାମୋହନ ଗଡ଼ନାୟକ ପ୍ରଭୃତିଙ୍କ ରଚନାରେ ଗାଥା କବିତା ପରିଦୃଷ୍ଟ ହୋଇଥାଏ ।

## ଗୀତିକବିତା

ଭାରତରେ ଆଦିମ କାଳରୁ ଗୀତି କବିତା ସୃଷ୍ଟି ଲାଭ କରିଛି। ବ୍ୟାଧ ଶରାହତ କ୍ରୌଞ୍ଚ ମିଥୁନ ଯୁଗଳଙ୍କର କରୁଣ ଦୃଶ୍ୟ ଦର୍ଶନରେ ଆଦିକବି ବାଲ୍ମୀକିଙ୍କର ହୃଦୟରୁ ଯେଉଁ ଭାବ ଗୀତ ଆକାରରେ ପ୍ରକାଶ ଲାଭ କରିଥିଲା, ତାହା ବୋଧହୁଏ ଭାରତୀୟ ସାହିତ୍ୟରେ ପ୍ରଥମ ଗୀତିକାବ୍ୟର ରୂପନେଇ ଆତ୍ମପ୍ରକାଶ କରିଥିଲା। କିନ୍ତୁ ପାଶ୍ଚାତ୍ୟ ଗୀତିକବିତାର ସମ୍ପର୍କରେ ଆସିବା ଫଳରେ ଭାରତୀୟ ଗୀତିକବିତାର ରୂପ ଓ କଥାବସ୍ତୁରେ ପରିବର୍ତ୍ତନ ଆସିଲା।

ଗାନଯୋଗ୍ୟ କବିତାକୁ Lyric ବା ଗୀତିକବିତା କୁହାଯାଏ। ପୂର୍ବେ Lyre ବା ବୀଣା ସାହାଯ୍ୟରେ ଏ ସଙ୍ଗୀତ ଗାନ କରାଯାଉଥିବାରୁ ତା'ର ନାମ ହୋଇଥିଲା ଲିରିକ୍। ବର୍ତ୍ତମାନ ଏ ସଂଜ୍ଞା ଆଧୁନିକ କବିତା କ୍ଷେତ୍ରରେ ପ୍ରଯୁଜ୍ୟ ନୁହେଁ। ଗୀତି କବିତାର କବି ଭ୍ରମର ସଦୃଶ ଉଦ୍ୟାନରେ ବୁଲି ସଜଫୁଟା କଳିକାରୁ ମଧୁ ସଂଗ୍ରହ କରିଥାଏ। ଅର୍ଥାତ୍ ପୃଥିବୀ କାନନରେ ପରିଭ୍ରମଣ କରି ଅନୁଭୂତି ରୂପକ ମଧୁ ସଂଗ୍ରହ କରି ପାଠକମାନଙ୍କ ସମ୍ମୁଖରେ ସେ ଉପସ୍ଥାପିତ କରିବା ଉଚିତ।[୧୧୮] ଏଥିରୁ ଜଣାଯାଏ ଯେ କବିର ଅନୁଭୂତି ଗୀତିକବିତା କ୍ଷେତ୍ରରେ ପ୍ରାଧାନ୍ୟ ଲାଭ କରିଥାଏ। ଗୀତିକବିତା ସାଧାରଣତଃ ସଂକ୍ଷିପ୍ତ ହୋଇଥାଏ। ପ୍ରକାଶ ଭଙ୍ଗୀରେ ସରଳତା, ଗୀତିମୟତା ଓ ବ୍ୟକ୍ତିଗତ ଭାବନା ଯାହା କବି ନିଜେ ଦର୍ଶନ କରେ, ଶ୍ରବଣ କରେ ବା ଅନୁଭବ କରେ ତାକୁ କଳାତ୍ମକ ଭାବରେ ପ୍ରକାଶ କରିଥାଏ।"[୧୧୯]

କବିର ଅନୁଭୂତି, ଭାବୋଲ୍ଲାସ, ବ୍ୟକ୍ତିତ୍ୱ, ଚରିତ୍ର ଗୀତି କବିତାରେ ପ୍ରକାଶ ପାଇଥାଏ। ଜଗତର ରୂପ, ରସ, ଗନ୍ଧ, ଶବ୍ଦ, ସ୍ପର୍ଶ କବିର ହୃଦୟକୁ ଆଲୋଡ଼ିତ କରେ। ତା'ର ହୃଦୟ ଯେତେବେଳେ ବିଭିନ୍ନ ଅନୁଭୂତିରେ ପରିପୂର୍ଣ୍ଣ ହୋଇଯାଏ, ସେତେବେଳେ ତାହା ବହିଃ ପ୍ରକାଶ ପାଇଁ ଉଦ୍ୟମ କରେ ଓ ଏହି ଉଦ୍ୟମର ପରିପୂର୍ଣ୍ଣ ପ୍ରକାଶ ହେଉଛି ଗୀତିକବିତା। ହୃଦୟହିଁ ଗୀତିକବିତାର ଆଶ୍ରୟ ସ୍ଥଳ। କବିର ଭାବନା ଏଥିରେ ପ୍ରକାଶ ଲାଭ କରିଥାଏ। "ଗୀତି କବିତାର ପ୍ରଧାନ ଧର୍ମ ହେଉଛି ଏହିଯେ, ଏଥିରେ କବିର ନିଜସ୍ୱ ଗୋଟିଏ ସତ୍ତା ଅତି ସହଜରେ ଧରାପଡ଼େ। × × ଗୀତି କବିତାର ମଧ ଦେଇ କବିର ନିଜସ୍ୱ ଗୋଟିଏ ବକ୍ତବ୍ୟ ବିଷୟ ପ୍ରକାଶ ପାଏ ଓ ଏହା ନିଜସ୍ୱ ହେଲେ ମଧ ସାର୍ବଜନୀନ ଆବେଦନ ଏଥିରେ ନିହିତ ଥିବା ଉଚିତ। ନଚେତ ଏହା ଗୀତିକବିତା ନ ହୋଇ କବିର ଜୀବନ କଥା ମାତ୍ର ହୋଇ ପଡ଼ିବ।[୧୨୦] ଗୀତି କବିତାର ପ୍ରଧାନ ଧର୍ମ ହେଉଛି ଭାବ ଐକ୍ୟ। × × × ଗୀତିକବିତାର କବି ନିଜର

ଅନ୍ତରାତ୍ମାରେ ପ୍ରବେଶ କରି ସାରିବା ପରେ ହିଁ ନିଜର ଭାବନାରାଜିକୁ ସୁଶୃଙ୍ଖଳିତ ଭାବରେ ଭାଷା ଜରିଆରେ ପ୍ରକାଶ କରିପାରେ। କେବଳ ଭାବ ଚିତ୍ରଣ ବା କଳ୍ପନା ବା ଅନ୍ତର୍ଜଗତର ଚିତ୍ରଣରେ ଏହାର ସ୍ଥିତି ସୀମିତ ନୁହେଁ। ଭାଷା ଓ ଭାବ ମଧ୍ୟରେ ଏକ ସମ୍ପର୍କ ପ୍ରତିଷ୍ଠା କରିବାପାଇଁ କବି ହୃଦୟ ସର୍ବଦା ଆନ୍ଦୋଳିତ ହେଉଥାଏ। ସେଥିପାଇଁ କବି ଛନ୍ଦ, ଲାଳିତ୍ୟ, ସାଙ୍ଗୀତିକତା ଉପରେ ନିର୍ଭର କରେ। ଅନ୍ୟଅର୍ଥରେ କହିଲେ କଳ୍ପନା, ଭାବ, ବ୍ୟକ୍ତିତ୍ୱ ସହିତ ଭାଷାର ସୁସମନ୍ୱୟ ଫଳରେ ଗୀତିକବିତା ଉଚ୍ଚକୋଟୀର ହୋଇପାରେ।"[୧୨୧] ଜୀବନର ଆଶା, ଆନନ୍ଦ, ଦୁଃଖ ବିଷାଦ ପ୍ରଭୃତି କଳାତ୍ମକ ରୂପରେ ଗୀତିକବିତାରେ ପ୍ରକାଶପାଏ। ସେଥିପାଇଁ ସମାଲୋଚକ କ୍ଷେତ୍ରବାସୀ ନାୟକ କୁହନ୍ତି – "ବସ୍ତୁତଃ କବିର ବ୍ୟକ୍ତିଗତ ଚିନ୍ତା, ଆବେଗ, ଅନୁଭୂତି ଓ ଉଚ୍ଛ୍ୱାସର ସାଙ୍ଗୀତିକ ରୂପାୟନହିଁ ଗୀତିକବିତା। ଗୀତିକବିତା ଆତ୍ମନିଷ୍ଠ; ଆତ୍ମା ତାର ପିଣ୍ଡ, ଭାବ ତାର ଆଧାର ଏବଂ ସଙ୍ଗୀତ ତାର ସ୍ୱର। ଏହା କ୍ଷୁଦ୍ର ଓ ସଂକ୍ଷିପ୍ତ; କିନ୍ତୁ ଏହାର ପ୍ରତି ଚରଣରେ ଏକ ଦ୍ରୁତ ଗତିଶୀଳତା ପରିଲକ୍ଷିତ। ବ୍ୟକ୍ତି ନିଷ୍ଠ ହେଲେ ବି ଏହା ସାର୍ବଜନୀନ ଆବେଦନର ଦୂରବର୍ତ୍ତୀ ନୁହେଁ।"[୧୨୧]

ବସ୍ତୁନିଷ୍ଠ କବିତାଠାରୁ ଏହାର ଆଙ୍ଗିକ ଲକ୍ଷଣ ମଧ୍ୟ ପୃଥକ। ଗୀତିକବିତାରେ ଭାବବସ୍ତୁ ଓ ସ୍ୱରର ସମନ୍ୱୟ ସଂଘଟିତ ହୋଇଥାଏ। ଅନ୍ତର୍ମୁଖୀନତା ଗୀତିକବିତାର ସର୍ବ ପ୍ରଧାନ ଗୁଣ। ଏ ସମ୍ପର୍କରେ ଆଲୋଚକ ମହାନ୍ତି କୁହନ୍ତି – "ଯେଉଁ ସବୁ ଲକ୍ଷଣ ଓ ଗୁଣାବଳୀଯୋଗୁଁ ସାମ୍ପ୍ରତିକ ସାହିତ୍ୟରେ ଗୀତିକାବ୍ୟ ସ୍ୱତନ୍ତ୍ର କାବ୍ୟରୂପ ଭାବରେ ପରିଗଣିତ ହୁଏ, ତନ୍ମଧ୍ୟରୁ ଅନ୍ତର୍ମୁଖୀନତାକୁ ତାହାର ସର୍ବପ୍ରଧାନ ଗୁଣ ଭାବେ ଗ୍ରହଣ କରାଯାଏ।"[୧୨୨] କବି ହୃଦୟର ସମସ୍ତ ଭାବ ଗ୍ରହଣ କରି ଗୀତିକବିତା ସମୃଦ୍ଧ। ବ୍ୟକ୍ତିଗତ ଅନୁଭୂତିରୁ ଏହାର ଜନ୍ମ ହୋଇଥିଲେ ମଧ୍ୟ ଆବେଦନ ଦୃଷ୍ଟିରୁ ଏହା ସାର୍ବଜନୀନ, ସଂକ୍ଷିପ୍ତ ହୋଇ ମଧ୍ୟ ସ୍ୱୟଂ ସମ୍ପୂର୍ଣ୍ଣ। ଗୀତି କବିତାରେ ବସ୍ତୁର ରୂପାୟନ ନ ହୋଇ ହୁଏ ବସ୍ତୁର ନିର୍ଯ୍ୟାସ। ଗୀତିମୟତା ଏହାର ପ୍ରଧାନ ବୈଶିଷ୍ଟ୍ୟ ବୋଲି କେତେକ ସମାଲୋଚକ ଦୃଢ଼ ମତ ପୋଷଣ କରିଥାନ୍ତି। ଆୟେଙ୍ଗର ଓ ନନ୍ଦକୁମାର କୁହନ୍ତି – "କବିତା କେବଳ ଭାବାବେଗ ନୁହେଁ କି କେବଳ କଳ୍ପନା ନୁହେଁ କିମ୍ବା ଦୁଇର ସମ୍ମିଶ୍ରଣରେ ନୁହେଁ; ପରନ୍ତୁ ଗୀତିମୟତା ଏହାର ବିଶିଷ୍ଟ ଲକ୍ଷଣ।"[୧୨୩] ଅନ୍ୟାର୍ଥରେ କହିଲେ ଗୀତିକବିତା କ୍ଷୁଦ୍ର ରୂପ ନେଇ ବିରାଟ ଓ ମହାନ୍। ଏକାନ୍ତ ଆତ୍ମକୈନ୍ଦ୍ରିକ ଭାବ ଓ କଳ୍ପନାବିଳାସର ଅବାଧ ସଞ୍ଚରଣ ଏହାର ମହତ୍ତ୍ୱ ହାନି କରେ। ସତ୍ୟାନୁସନ୍ଧିତ୍ସା ଓ ହୃଦୟାବେଗ ଗୀତିକବିତାର ଅନ୍ୟତମ ଲକ୍ଷଣ ଭାବରେ ଗୃହୀତ ହୋଇପାରେ।

ଗୀତିକବିତାର ପରିସର ସୁଦୂରପ୍ରସାରୀ। ଏହା ପ୍ରକୃତିକୁ ନେଇ, ଦେଶପ୍ରୀତି ବା ଜାତିପ୍ରୀତିକୁ ନେଇ, ପ୍ରେମକୁ ନେଇ, ଦେବାଦେବୀଙ୍କୁ ନେଇ, ମାନବିକତାକୁ ନେଇ, ସନ୍ଦେଶକୁ ନେଇ ମଧ୍ୟ ରଚିତ ହୋଇପାରେ। ପୂର୍ବରୁ ଓଡ଼ିଆରେ ରଚିତ ପ୍ରାଚୀନ କୋଇଲି ସାହିତ୍ୟ, ପୋଇ ସାହିତ୍ୟ, ଚଉପଦୀ, ଚଉତିଶା ପ୍ରଭୃତିରେ ଗୀତି କବିତାର ସମସ୍ତ ଲକ୍ଷଣ ନିହିତ। କିନ୍ତୁ ଆଧୁନିକ ଇଂରାଜୀ ସାହିତ୍ୟ ସଂସ୍ପର୍ଶରେ ଆସିବାପରେ ଏହାର ଗଠନ ରୀତି (Form)ରେ କେତେକ ପରିବର୍ତ୍ତନ ସାଧିତ ହୋଇଛି। ଏହିଥିରୁ ଗୀତିକବିତାର ମଧ୍ୟ ଶ୍ରେଣୀ ବିଭାଗ ହୋଇଛି। ଯଥା – ସମ୍ବୋଧନ ଗୀତି, ଶୋକ ଗୀତି, ଚତୁର୍ଦ୍ଦଶ ପଦୀ ଏବଂ ବ୍ୟଙ୍ଗ ଗୀତି। ସମ୍ବୋଧନ ଗୀତି, ଶୋକ ଗୀତି ଓ ଚତୁର୍ଦ୍ଦଶ ପଦୀ କବିତାପାଇଁ ସ୍ୱତନ୍ତ୍ର ପରିଚ୍ଛେଦରେ ଆଲୋଚନା ସ୍ଥିରୀକୃତ ହୋଇଥିବାରୁ ଏହି ପରିଚ୍ଛେଦରେ ତା'ର ଆଲୋଚନା କରାଗଲା ନାହିଁ। ସେହିପରି ହାସ୍ୟ ଓ ବ୍ୟଙ୍ଗ ସମ୍ପର୍କରେ ଏହି ପରିଚ୍ଛେଦରେ ଆଲୋଚନା କରାଯାଇଥିବାରୁ ବ୍ୟଙ୍ଗ ଗୀତିକୁ ବର୍ତ୍ତମାନ ଆଲୋଚନାରୁ ବାଦ ଦିଆଗଲା।

## ପାଶ୍ଚାତ୍ୟ କବିତାର ପ୍ରଭାବରେ ଓଡ଼ିଆ କବିତାର ନବଜନ୍ମ

ଯୁଗର ଆଭିମୁଖ୍ୟ ନେଇ କବିତାର ଆଭିମୁଖ୍ୟରେ ଆସିଥାଏ ପରିବର୍ତ୍ତନ। ମଧ୍ୟଯୁଗୀୟ ବିଳାସୀ ରାଜାଙ୍କ ମନୋରଞ୍ଜନ ଉଦ୍ଦେଶ୍ୟରେ ସେତେବେଳେ ଯେଉଁ କାବ୍ୟକବିତା ରଚିତ ହୋଇଥିଲା ତାହା ଥିଲା ସମ୍ପୂର୍ଣ୍ଣ ରାଜକୀୟ ଓ ବିଳାସୀ ସାହିତ୍ୟ। ଆଧୁନିକ ଯୁଗ ସମସ୍ୟା ଓ ଯନ୍ତ୍ରଣାର ଯୁଗ। ଏଥିରେ କଳ୍ପନା ବିଳାସର ଅବାଧ ସଞ୍ଚରଣ ଯୁଗରୁଚିର ପ୍ରତିକୂଳ। ଆଧୁନିକ ଭାରତୀୟ ସାହିତ୍ୟର ଆଭିମୁଖ୍ୟରେ ଏ ଯେଉଁ ପରିବର୍ତ୍ତନ ଆସିଲା, ଏହାର ପଶ୍ଚାତ୍‌ରେ ଅଛି ପାଶ୍ଚାତ୍ୟ ଜଗତର ଚିନ୍ତା ଓ ଚେତନା।

ଇଉରୋପରେ ପୁନର୍ଜାଗରଣଠାରୁ ଊନବିଂଶ ଶତକ ପର୍ଯ୍ୟନ୍ତ ସେ ଦେଶର ଶିଳ୍ପୀ, ଚିନ୍ତାନାୟକ ଓ ବୈଜ୍ଞାନିକମାନେ ଏକ ନୂତନ ପୃଥିବୀର ସର୍ଜନା କଲେ। ସେତେବେଳେ ପୋପ୍‌ଙ୍କ ନିର୍ଦ୍ଦେଶାନୁଯାୟୀ ସମାଜର ନୀତି ନିୟମ ନିର୍ଦ୍ଧାରଣ କରାଯାଉଥିଲା। ରେନେସାଁପରେ ଚିନ୍ତାଶୀଳ ମାନବ ଚର୍ଚ୍ଚର ନିୟମକୁ ଉପେକ୍ଷା କରିବା ସଙ୍ଗେ ସଙ୍ଗେ ପ୍ରତାପୀ ଏକଛତ୍ରବାଦୀ ସମ୍ରାଟ୍‌ଙ୍କ ଶାସନ ବିରୋଧରେ ସ୍ୱର ଉତ୍ତୋଳନ କଲେ। ଫରାସୀ ବିପ୍ଳବ, ସାମ୍ୟବାଦୀ ଚିନ୍ତାଧାରା, କପରନିକସ୍, ଗାଲିଲିଓ, ନିଉଟନ, ଡାରଉଇନ୍ ପ୍ରଭୃତିଙ୍କ ବୈଜ୍ଞାନିକ ଚିନ୍ତାଧାରା ଆମର ବିଶ୍ୱ ଓ ସମାଜ ସମ୍ପର୍କରେ ଥିବା ସମସ୍ତପ୍ରକାର ଧାରଣାକୁ ବଦଳାଇ ଦେଲା। ଏହି ନୂତନ ଚିନ୍ତାଧାରାରୁ ଊନବିଂଶ ଶତାବ୍ଦୀରେ ଗଣତନ୍ତ୍ର, ସାମ୍ୟ ଓ ସ୍ୱାଧୀନତାର ସ୍ୱର ଉତ୍ତୋଳିତ ହେଲା। ସାହିତ୍ୟ

ରାଜ୍ୟରେ ମଧ୍ୟ ଆସିଲା ପରିବର୍ତ୍ତନ। ଶ୍ରେଣୀ ସଂଘର୍ଷ, ନୂତନ ବୈଜ୍ଞାନିକ ଆବିଷ୍କାର ସାହିତ୍ୟର ଦୃଷ୍ଟିକୋଣକୁ ପରିବର୍ତ୍ତନ କରିଦେଲା।

ଇଉରୋପରେ ସୃଷ୍ଟି ହୋଇଥିବା ଏହି ନୂତନ ଚିନ୍ତାଧାରା କ୍ରମଶଃ ସମଗ୍ର ବିଶ୍ୱରେ ପ୍ରଚାରିତ ହେଲା। ଇଂରାଜୀ ଶିକ୍ଷା ମାଧ୍ୟମରେ ଓଡ଼ିଶା ମଧ୍ୟ ନୂତନତାକୁ ସ୍ୱାଗତ କଲା। ବାସ୍ତବରେ କହିବାକୁ ଗଲେ, "ଗତ ଶତକର ଶେଷ ପାଦରେ ଇଂରେଜୀ ଶିକ୍ଷା ମାଧ୍ୟମରେ ଇଉରୋପୀୟ ସଂସ୍କୃତିର ସଂସ୍ପର୍ଶରେ ଆସି ଆମ ସାହିତ୍ୟରେ ଯେଉଁ ନୂତନ କାବ୍ୟ କବିତା ରଚନାର ଧାରା ପ୍ରବର୍ତ୍ତିତ ହେଲା, ତାହାହିଁ ଆଧୁନିକ କବିତା।"(୧୨୪) ନୂତନ ଆଲୋକର ତୃଷାରେ ପିପାସିତ ବହୁ ବ୍ୟାକୁଳ ହୃଦୟ ଯୌନତା ଓ ଜଡ଼ତାର ରାତିକୁ ଭୋଅର କରାଇ ଦେବାପାଇଁ ସୂର୍ଯ୍ୟର ପ୍ରତୀକ୍ଷାରେ ଅତନ୍ଦ୍ର ଆଖିରେ ତପସ୍ୟାରତ ହେଲେ। ଶୁଣାଗଲା ସାହିତ୍ୟର ପ୍ରଶସ୍ତ ରାଜପଥରେ ସେମାନଙ୍କର ସମ୍ମିଳିତ ଦ୍ରୁତ ପଦ ଶବ୍ଦ। ସେମାନଙ୍କ କଣ୍ଠର କୋରସରେ ମଧ୍ୟଯୁଗର ରାତ୍ରି ଫିକା ପଡ଼ିଗଲା। ସେଇ ଅଗଣିତ ଅବହେଳିତ ଜନସାଧାରଣଙ୍କ ହସକାନ୍ଦ, ଜୟପରାଜୟ, ଜୀବନ ମରଣର ଜୟଗାନରେ ସାହିତ୍ୟରେ ଆଧୁନିକ ଯୁଗ ଅଭ୍ୟୁଦୟର କାହାଣୀ ଲିପିବଦ୍ଧ ହେଲା।"(୧୨୫)

ଓଡ଼ିଆ ସାହିତ୍ୟରେ ପ୍ରଥମେ ରାଧାନାଥ ରାୟ ତାଙ୍କର କାବ୍ୟ କବିତାରେ ପାଶ୍ଚାତ୍ୟ ଚିନ୍ତାଧାରାର ପ୍ରୟୋଗ କଲେ। ମାତ୍ର ତାଙ୍କ କାବ୍ୟରେ ସେହି ପାରମ୍ପରିକ ରୋମାଣ୍ଟିକ ଚିନ୍ତାଧାରା ପ୍ରକାଶିତ ହେଲା। ସାଧାରଣ ଜନମାନସର ଚିତ୍ର ପୁଷ୍କଳ ଭାବରେ ଫୁଟି ପାରିଲା ନାହିଁ। ତଥାପି ଓଡ଼ିଆ ସାହିତ୍ୟରେ ସେ ଯେଉଁ ନୂତନତାର ଶୁଭାରମ୍ଭ କଲେ, ତଦ୍ୱାରା ପରବର୍ତ୍ତୀ କାଳରେ ଅନେକ କବି ଓ ଲେଖକ ପାଶ୍ଚାତ୍ୟ ଚିନ୍ତାଧାରା ଦ୍ୱାରା ପ୍ରଭାବିତ ହୋଇ କାବ୍ୟକବିତା ରଚନା କରିବାକୁ ଲାଗିଲେ। ବିଶ୍ୱଯୁଦ୍ଧ ପରେ ପରେ ଏହାର ପ୍ରଳୟଙ୍କରର ରୂପ ଯୋଗୁଁ ପୃଥିବୀର ସାହିତ୍ୟ କ୍ଷେତ୍ରରେ ଅନ୍ୟ ଏକ ଆଲୋଡ଼ନର ସୂତ୍ରପାତ ହେଲା। ସେହି ପୋଡ଼ା ଭୂଇଁ ଉପରେ ଠିଆହୋଇ ପାଶ୍ଚାତ୍ୟ କବିମାନେ କବିତା ରଚନା କଲେ। ଚିତ୍ରକର ଧ୍ୱଂସର ଚିତ୍ର ଅଙ୍କନ କଲେ, ନାଟ୍ୟକାର ନାଟକ ରଚନାରେ ନୂତନତା ଆଣିଲେ। ଓଡ଼ିଆ ସାହିତ୍ୟ ମଧ୍ୟ ଏଥିରୁ ବାଦ ପଡ଼ିଲା ନାହିଁ। ବିଜ୍ଞାନର ଅଭୂତପୂର୍ବ ପ୍ରସାର ଫଳରେ ବିଶ୍ୱ କ୍ରମଶଃ କ୍ଷୁଦ୍ର ହୋଇଗଲା। ଗୋଟିଏ ଦେଶର ଅର୍ଥନୀତି, ସମାଜ ନୀତି, ବେଦନାବୋଧ ଅନ୍ୟ ଦେଶକୁ ସଂକ୍ରମିତ ହେଲା। ଗୋଟିଏ ଦେଶର ଦୁର୍ଦ୍ଦିନରେ ଅନ୍ୟ ଦେଶ ସମ୍ବେଦନଶୀଳ ହୋଇ ଉଠିଲା। ସାହିତ୍ୟ ବା ଏଥିରୁ ବାଦ୍ ପଡ଼ନ୍ତା କିପରି? ସୁତରାଂ ସାହିତ୍ୟ କ୍ଷେତ୍ରରେ ଆସିଲା ପରିବର୍ତ୍ତନ। ଗୋଟିଏ ଦେଶର ଦୁର୍ଦ୍ଦଶା ଓ ବିଚ୍ଛିନ୍ନତାବୋଧ ପଡ଼ୋଶୀ ଦେଶର ସାହିତ୍ୟରେ

ନିଜର କାୟା ବିସ୍ତାର କଲା । ଏହିପରି ଭାବରେ ପାଶ୍ଚାତ୍ୟ ଦେଶ ଓ ସାହିତ୍ୟ ସଂସ୍ପର୍ଶରେ ଆସିବା ଦ୍ୱାରା ଓଡ଼ିଆ ସାହିତ୍ୟରେ ନୂତନ କବିତାର ସୂତ୍ରପାତ ହେଲା ।

## ଉପସଂହାର

ସାହିତ୍ୟ ସର୍ବଦା ପରିବର୍ତ୍ତନଶୀଳ । ସମାଜର ଆଶା-ଆକାଂକ୍ଷା ତଥା ଆବଶ୍ୟକତା ଅନୁଯାୟୀ ସାହିତ୍ୟ ପରିବର୍ତ୍ତିତ ହୋଇଥାଏ । ଏହି ପରିବର୍ତ୍ତନର ଧାରା, ଯାହା ନିକଟରେ ଯେତେ ସ୍ପଷ୍ଟ ସେହି କବି ବା ସାହିତ୍ୟିକ ସେତେ ସମାଜ ସଚେତନ । ପାଶ୍ଚାତ୍ୟ ଜଗତରେ ସାହିତ୍ୟ କ୍ଷେତ୍ରରେ ଯେତେ ପରିବର୍ତ୍ତନ ଆସିଛି, ନିଜର ଅଧ୍ୟୟନ, ଚେତନା ତଥା ସମାଜ ଦୃଷ୍ଟିକୋଣ ନେଇ ଓଡ଼ିଆ ସାହିତ୍ୟରେ ମଧ୍ୟ ଅନୁରୂପ ପରିବର୍ତ୍ତନର ଧାରା ଦେଖାଯାଇଛି । ମଧ୍ୟଯୁଗୀୟ ସାହିତ୍ୟର ବିଳାସବ୍ୟସନ ପରିତ୍ୟାଗ କରି, କ୍ଲାସିକର ଆଦର୍ଶ ଓ ନିୟମକୁ ପରିହାର କରି, ରୋମାଣ୍ଟିକ ସାହିତ୍ୟର ଶୂନ୍ୟ ସଞ୍ଚରଣ ତ୍ୟାଗ କରି ସାହିତ୍ୟ ଆଜି ଆଧୁନିକ ଯୁଗର ପ୍ରଶସ୍ତ ରାଜପଥରେ ବିଚରଣରତ । ଏହାପରେ ସାହିତ୍ୟ ଜଗତରେ ଆହୁରି ଯେ ପରିବର୍ତ୍ତନ ନ ଆସିବ ତାହା କିଏ କହିପାରିବ ? ତଥାପି ଯୁଗ ସହିତ ତାଳ ମିଳାଇ ଓଡ଼ିଆ ସାହିତ୍ୟ ଯେ ଗତି କରିପାରୁଛି, ତାହା କମ୍ ଗର୍ବ ଓ ଗୌରବର କଥା ନୁହେଁ ।

# ସହାୟକ ସୂଚୀ

୧. ସାମ୍ପ୍ରତିକ ସାହିତ୍ୟ – ବିଭୂତି ପଟ୍ଟନାୟକ। ପୃ. ୧୦୫, ୨ୟ ମୁଦ୍ରଣ ୧୯୮୦, 'ଫ୍ରେଣ୍ଡସ୍ ପବ୍ଲିଶର୍ସ, ବିନୋଦବିହାରୀ, କଟକ।

୨. 'ବାଗର୍ଥାବିବ ସମ୍ପୃକ୍ତୌ ବାଗର୍ଥ ପ୍ରତିପତ୍ତୟେ। ୧ମପଦ – ରଘୁବଂଶ-କାଳିଦାସ। ଅନୁବାଦକ ଧନେଶ୍ୱର ମହାପାତ୍ର। ପୃ.୧, ୧ମ ସଂ. ୧୯୬୬, କଟକ ଟ୍ରେଡ଼ିଂ କମ୍ପାନୀ, ବାଲୁବଜାର, କଟକ-୨।

୩. ତଦଦୋଷୌ ଶବ୍ଦାର୍ଥୌ ସଗୁଣାବନଳଂକୃତୀ ପୁନଃ କ୍ୱାପି – ସାହିତ୍ୟ ଦର୍ପଣ – ବିଶ୍ୱନାଥ କବିରାଜ, ୧ମ ପରିଚ୍ଛେଦ, ପୃ. ୭, ଅନୁବାଦକ ପଣ୍ଡିତ ନାରାୟଣ ମହାପାତ୍ର। ୧ମ ସଂ. ୧୯୭୫, ଓଡ଼ିଆ ସାହିତ୍ୟ ଏକାଡ଼େମୀ, ଭୁବନେଶ୍ୱର।

୪. କାବ୍ୟସ୍ୟ ଶବ୍ଦାର୍ଥୌ ଶରୀରମ୍, ରସାଦିଶ୍ଚାତ୍ମା
ଗୁଣାଃ ଶୌର୍ଯ୍ୟାଦିବତ୍ ଦୋଷାଃ କାଣତ୍ୱାଦିବତ୍
ରୀତୟୋଽବୟବ ସଂସ୍ଥାନବତ୍,
ଅଳଂକାରାଶ୍ଚ କଟକ କୁଣ୍ଡଳାଦିବତ୍।
ଏଜନ୍, ୧ମ ପରିଚ୍ଛେଦ, ପୃ. ୧୫।

୫. ବକ୍ରୋକ୍ତିଃ କାବ୍ୟଜୀବିତମ୍।
ଏଜନ୍, ୧ମ ପରିଚ୍ଛେଦ। ପୃ. ୧୬।

୬. ଏଜନ୍। ୧ମ ପରିଚ୍ଛେଦ, ପୃ. ୧୬, 'ରୀତିରାତ୍ମା କାବ୍ୟସ୍ୟ'।

୭. 'ରୀତିରାତ୍ମା କାବ୍ୟସ୍ୟ × ×
କାବ୍ୟସ୍ୟାତ୍ମା ସ ଏବାଥସ୍ତଥା ଚାଦିକ ବେଃ ପୁର।
ଧ୍ୱନ୍ୟାଲୋକ – ଆନନ୍ଦବର୍ଦ୍ଧନ
ଅନୁବାଦ ପଣ୍ଡିତ କୁଳମଣି ମିଶ୍ର ଶର୍ମା। ପ୍ରଥମଉଦ୍ୟୋତଃ। ଶ୍ଳୋକ-୪। ପୃ-୧୪। ୨ୟ ମୁଦ୍ରଣ ୧୯୮୧। ବାସନ୍ତୀଦୁର୍ଗା ପ୍ରିଣ୍ଟର୍ସ, ଖଟ୍‌ବିନ ସାହି, କଟକ।

୮. "ବାକ୍ୟ' ରସାତ୍ମକଂ କାବ୍ୟମ୍"
ସାହିତ୍ୟଦର୍ପଣ – ବିଶ୍ୱନାଥ କବିରାଜ। ଅନୁବାଦକ ପଣ୍ଡିତ ନାରାୟଣ ମହାପାତ୍ର। ୧ମ ପ୍ରକାଶ ୧୯୭୫, ୧ମ ପରିଚ୍ଛେଦ। ପୃ. ୨୫, ଓଡ଼ିଆ ସାହିତ୍ୟ ଏକାଡ଼େମୀ।

୯. Poetry is the breath and finer spirit of all knowledge × × × and the impassioned expression which is in the counterance of all science.

Lyrical ballads – Preface – Wordsworth (ii)
Ed. by – Derk Roper and Glasgou, London–1973.

୧୦. All that Poetry can Legitimately aspire to is to be a brief synthesis of music and painting of sensation and thought. In this respect, no other art, no other mental discipline, can compete with it. × × × Poetry alone can give harmonious, though abbreviated, expression to the human spirit in its entirety.

Contemporary Studies – Charles Baudouin Pigo-240 George Allen and unwin – London 1924.

୧୧. Literary criticism A Reading – Ed. by B. Das and J. Mohanty. Page – 59, oxford university press 1985.

୧୨. ସାହିତ୍ୟର ସଂଜ୍ଞା – ଶ୍ରୀ ଗଦାଧର ମିଶ୍ର। ପୃ. ୧, ୧ମ ପ୍ରକାଶ – ୧୯୮୧ ଫ୍ରେଣ୍ଡସ ପବ୍ଲିଶର୍ସ, ବିନୋଦବିହାରୀ କଟକ ୧।

୧୩. ସାହିତ୍ୟ ରୂପ – ପ୍ରମୋଦ ବର୍ମା। ପୃ. ୧୫। ୧ମ ସଂ. ୧୯୭୧। ରଚନାପ୍ରକାଶନ ୪୫, ଏ ଖୁଲ୍‌ବାଦ ଏହ୍ଲାବାଦ ୧।

୧୪. The best poetry is what we want the best poetry will be found to have a power of forming, sustaining and delighting us as nothing else can. A clearer deeper sense of the best in poetry and of the strength and joy to be drawn from it is the most precious benefit which we can gather from a poetical collection such as the present.

Literary criticism – Ed. by – B. Das, J. Mohanty, P. 68, Oxford university press 1985.

୧୫. "The poetry of a people takes its life from the peoples speech and inturn gives life to it." The use of poetry and the use of criticism – By T.S. Eliot,. P-5 Cambridge Mass 1933.

୧୬. Critical Approches to Literature – By David Daiches. P. 154. Grean and co. Ltd – 9th Edition – 1967.

୧୭. ସାଂସ୍କୃତିକ ସାହିତ୍ୟ – ବିଭୂତି ପଟ୍ଟନାୟକ । ପୃ. ୧୦୬ । ୨ୟ ସଂ ୧୯୮୦। ଫ୍ରେଣ୍ଡସ ପବ୍ଲିଶର୍ସ, ବିନୋଦବିହାରୀ, କଟକ-୧।

୧୮ ସାହିତ୍ୟର ସ୍ୱରୂପ – ବୀର କିଶୋର ଦାସ – ପୃ. ୪୫। ନୂତନ ମୁଦ୍ରଣ ୧୯୭୮ ସାଥୀମହଲ, କଟକ।

୧୯ The full significance of poetry as an interpretation of life though imagination and feeling will be made apparent.

An introduction to the study of literature – By William Henry Hudson – Page-67. 8th Indian Edition 1978. Kalyani Publishers, New Delhi.

୨୦. କାବ୍ୟତତ୍ତ୍ୱ – ଅନୁବାଦକ ଓ ଟୀକା; ଅଧ୍ୟାପକ ଯତୀନ୍ଦ୍ରମୋହନ ମହାନ୍ତି। ପୃ. ୪୬। ୧ମ ସଂ. ୧୯୭୬।

ପ୍ରକାଶକ – ପାଠ୍ୟପୁସ୍ତକ ପ୍ରଣୟନ ସଂସ୍ଥା, ଭୁବନେଶ୍ୱର।

୨୧. ସାହିତ୍ୟର ସୂଚୀପତ୍ର – ବିଭୂତି ପଟ୍ଟନାୟକ, ପୃ. ୨-୩। ୩ୟ ସଂ-୧୯୮୨। ନାଳନ୍ଦା, ବିନୋଦବିହାରୀ କଟକ-୨।

୨୨. New Bearings in English literature – F.R. Leavis P-16. 8th Edition 1979. Penguin Books.

୨୩. ଆଧୁନିକ ଓଡ଼ିଆ ସାହିତ୍ୟର ମୂଲ୍ୟାୟନ – ଡଃ ବାସୁଦେବ ସାହୁ। ପୃ. ୧୦୩, ୧ମ ପ୍ରକାଶ ୧୯୭୫। ପ୍ରକାଶକ – ରାମଚନ୍ଦ୍ର ସାହୁ, ରଙ୍ଗଣୀପାଟଣା, ଓଡ଼ଗାଁ, ପୁରୀ।

୨୪. ଆଧୁନିକ ଓଡ଼ିଆ କାବ୍ୟଧାରା – (ଆଦିଯୁଗ) ଡଃ ନରେନ୍ଦ୍ର ନାଥ ମିଶ୍ର। ପୃ. ୩୮, ୧ମ ପ୍ରକାଶ-୧୯୬୪। ବିଶ୍ୱଭାରତୀ, ଶାନ୍ତିନିକେତନ।

୨୫. ×× Poetry and the arts were their Proper Sphere. For it was only in the forms of art that truth could be presented immediately without the interposition of logical method. It was only through these forms that the same guarantee of truth – the emotion which arises from the beautiful – could be conveyed from the artist to those who contemplete his work.

The making of literature – R.A. Scott James. P-167. Reprinted 1970. SECKER and WARBURG, London.

୨୬. A Preface to Eighteenth century Poetry – James Sutherland. P-120 4th Edition – 1975. Oxford University Press.

୨୭. କବିତାର ଅବବୋଧରେ – ବିନୋଦବିହାରୀ ପଲାଇ। ପୃ. ୩୨, ୧ମ ପ୍ରକାଶ – ୧୯୭୭, ଫ୍ରେଣ୍ଡସ୍ ପବ୍ଲିଶର୍ସ।

୨୮ The resources of poetry had been applied to exposition of all subjects and branches of knowledge, systems of Philosophy, Medicine and Mathematics, grammar, lexicon and concordance and other technical subjects including all kinds of arts, crafts, grammar and pastimes."

Aspects of Indian poetics – "The purpose of poetry. By Dr. V. Raghvan P-9. May 1969. Ministry of information and Broadcasting Govt. of India.

୨୯. Sometimes art (poetry) is bad, because communication is defective, the vehicle inoperative, sometimes because the experience communicated is worthless. Sometimes for both reason. Principles of Literary criticism – By I.A. Richards P-199.

15th Edition – 1959, Routledge and Kegar paul Ltd. Broadway Home 68-74 Carter Lane E.C.G.

୩୦. New Bearings in English poetry – F.R. Leavis, P-16. Reprinted 1979. Pelican Books.

୩୧. The Future of poetry – Sri Aurobindo P-52. Pub-1953, Sri Aurobindo Ashram, Pandicheri.

୩୨. ସାହିତ୍ୟର ବିଚାର – ଅଧ୍ୟାପକ ଦୀନବନ୍ଧୁ ରଥ। ୧ମ ପ୍ରକାଶ – ୧୯୭୦, ପୃ. ୧୪୧-୪୩। ଫ୍ରେଣ୍ଡସ ପବ୍ଲିଶର୍ସ, ବିନୋଦବିହାରୀ, କଟକ।

୩୩. ସାହିତ୍ୟର ରୂପରେଖ – ନୀଳାଦ୍ରି ଭୂଷଣ ହରିଚନ୍ଦନ। ପୃ. ୩୦, ୧ମ ସଂ ୧୯୭୬, ବିଦ୍ୟାପୁରୀ, କଟକ।

୩୪. The relation of poetry to social life to politics in the wider sense of the word is not a very profound or difficult subject, but it is a little profounder, a little more difficult than it is sometimes thought to be.

A New Study of English Poetry – Henry Newbolt P-69. Constable and Co. London – 1919.

୩୫. ଆଧୁନିକ କାବ୍ୟଜିଜ୍ଞାସା : ଚିତ୍ରକଳ୍ପ – ଦାଶରଥି ଦାସ, ପୃ. ୩୯୯, ଅଗ୍ରଦୂତ ପ୍ରକାଶନୀ, ବାଙ୍କାବଜାର, କଟକ ୧ମ ପ୍ରକାଶ – ୧୯୭୭।

୩୬. ଆଧୁନିକତା ଓ ଆଧୁନିକ ସାହିତ୍ୟ – ଡଃ ନରେନ୍ଦ୍ର ନାଥ ମିଶ୍ର। ପୃ. ୧୮। ୧ମ ସଂ. ୧୯୭୬। ଫ୍ରେଣ୍ଡସ ପବ୍ଲିଶର୍ସ।

୩୭. କବିତାର ଅବବୋଧରେ – ବିନୋଦବିହାରୀ ପଲାଇ। ପୃ. ୩୬। ୧ମ ସଂ. ୧୯୭୭। ଫ୍ରେଣ୍ଡସ୍ ପବ୍ଲିଶର୍ସ, କଟକ।

୩୮. Modernism seeks to combine is a higher unity the two ways of looking at christian history, the evolutional and the inspirational. Encyclopaedia of Britanika – Vol. 15.

୩୯. ଆଧୁନିକ କାବ୍ୟ ମେଁ ନବୀନ ଜୀବନ ମୂଲ୍ୟ – ଡଃ ହୁକୁମ ଚନ୍ଦ ରାଜପାଳ। ପୃ. ୮୯। ୧ମ ସଂ. ୧୯୭୦। ଭାରତୀୟ ସଂସ୍କୃତି ଭବନ।

୪୦. ଦୟୀ କବିତାକେ ପ୍ରତିମାନ – ଲକ୍ଷ୍ମୀକାନ୍ତ ବର୍ମା। ପୃ. ୨୬୪-୬୫, ୧ମ ସଂସ୍କରଣ, ରାଜକମଳ ପ୍ରକାଶନ।

୪୧. କଳ୍ପନା (ପତ୍ରିକା) – ନିରାଲାକା ଆଧୁନିକ ବୋଧ। ପୃଷ୍ଠା. ୪୮, ଜୁଲାଇ ୧୯୬୭।

୪୨. ଜ୍ଞାନୋଦୟ – (ପତ୍ରିକା) – ଆଧୁନିକତା – ବାତ୍-ତତ୍ତ୍ୱ-ବୋଧକୀ – ନରେନ୍ଦ୍ର ଦେବ ବର୍ମା। ପୃ. ୧୭, ଜାନୁଆରୀ ୧୯୬୭।

୪୩. Modernism in protestant churches is not an organised movement but an approach to religion.

Encyclopaedia of America – Vol. 19, Page – 3891.

୪୪. ହିନ୍ଦୀଭାଷା ଔର ସାହିତ୍ୟ କୋ ଆର୍ଯ୍ୟ ସମାଜ କୀ ଦାନ – ଡଃ ଲକ୍ଷ୍ମୀନାରାୟଣ ଗୁପ୍ତ। ପୃ. ୮୦, ୧ମ ପ୍ରକାଶ।

Macmilon Company of India Ltd. New Delhi.

୪୫. ହିନ୍ଦୀ କବିତାମେ ରାଷ୍ଟ୍ରୀୟ ଭାବନା – ଡଃ ବିଦ୍ୟାନାଥ ଗୁପ୍ତ, ପୃ. ୨୦୮। ୧ମ ପ୍ରକାଶ, ପ୍ରାଇମା ପବ୍ଲିକେଶନ, କଲିକତା।

୪୬. ମୋ ଦୃଷ୍ଟିରେ ସାମ୍ପ୍ରତିକ ସାହିତ୍ୟ – ସଂ. ଅଧ୍ୟାପକ ପରୀକ୍ଷିତ ନନ୍ଦ, ପୃ. ଙ, ମୁଖବନ୍ଧ ପ୍ରଫେସର ବିଧୁଭୂଷଣ ଦାସ। ୧ମ ପ୍ରକାଶ – ୧୯୭୩, ଜ୍ଞାନମନ୍ଦିର, କଟକ।

୪୭. ସାମ୍ପ୍ରତିକ ସାହିତ୍ୟ – ବିଭୂତି ପଟ୍ଟନାୟକ। ପୃ. ୧୦୭, ୨ୟ ପ୍ରକାଶ – ୧୯୮୦। ଫ୍ରେଣ୍ଡସ୍ ପବ୍ଲିଶର୍ସ।

୪୮. The world is a fallen world. Man is a fallen creature. Most change is of the nature of decay. The Modern writer and his world – G. S. Fraser, P. 16, 3rd Edition – 1967, Pelican Books.

୪୯. ଆଧୁନିକ ଓଡ଼ିଆ ସାହିତ୍ୟର ଭୂମି ଓ ଭୂମିକ (ଆଧୁନିକ କବିତା) ଡଃ କୁଞ୍ଜବିହାରୀ ଦାଶ। ପୃ. ୧୨-୧୩। ୧ମ ପ୍ରକାଶ – ୧୯୬୨, ଓଡ଼ିଶା ସାହିତ୍ୟ ଏକାଡ଼େମୀ।

୫୦. ସବୁଜରୁ ସାମ୍ପ୍ରତିକ – ଡଃ ନିତ୍ୟାନନ୍ଦ ଶତପଥୀ। ପୃ. ୫, ୨ୟ ସଂ. ୧୯୮୫। ଗ୍ରନ୍ଥମନ୍ଦିର, ବିନୋଦବିହାରୀ, କଟକ।

୫୧. କବିତା ଯୁଗେ ଯୁଗେ – ଡଃ ନିତ୍ୟାନନ୍ଦ ଶତପଥୀ। ପୃ. ୧୫୪, ୧ମ ସଂ. ୧୯୭୪। ଗ୍ରନ୍ଥମନ୍ଦିର, ବିନୋଦବିହାରୀ, କଟକ।

୫୨. ଆଧୁନିକ ଓଡ଼ିଆ ସାହିତ୍ୟର ଭୂମି ଓ ଭୂମିକା – (ଆଧୁନିକ କବିତା) ଡଃ. କୁଞ୍ଜବିହାରୀ ଦାଶ। ପୃ. ୧୬, ୧ମ ପ୍ର. ୧୯୬୨। ଓ.ସା. ଏକାଡ଼େମୀ।

୫୩. ଆଧୁନିକ କବିତାର ଦିଗ୍‌ଦର୍ଶନ – ସଂ. ଅପୂର୍ବ ରଞ୍ଜନ ରାୟ। (ଆଧୁନିକତା ଓ ଆଧୁନିକ ଚେତନା – ସୌରିନ୍ଦ୍ର ବାରିକ), ପୃ. ୧୦, ୧ମ ସଂ. ୧୯୭୨, ଫ୍ରେଣ୍ଡସ୍ ପବ୍ଲିଶର୍ସ।

୫୪. After Rouseau and the French Revolution came the stormy age of Romanticism marked by mansed clouds, binding lightening flashes, rumbling thunder and torrential rains.

The Adventure of criticism – K.R. Srinivasa Iyengar P. 180- 1985. Asian Publishing House, Bombay.

୫୫. In German Romanticism between 1797 and 1800 there grew up and mainly from a single root both an apotheosis of the future and a tendency to retrospection – a retrospection directed not indeed towards classical antiquity or Towards the Primitive but towards the medieval.

English Romantic Poets – Ed. By M. H. Abrams on the Discrimination of Romanticism – Arthur O. Lovejoy, P. 22, 3rd Ed. 1968, Oxford University Press.

୪୬. କଳ୍ପନାର ଅଭିଷେକ – ଡଃ ପ୍ରତିଭା ଶତପଥୀ। ପୃ. ୩୫, ୧ମ ପ୍ରକାଶ ୧୯୮୨, ଓଡ଼ିଶା ବୁକ୍ ଷ୍ଟୋର, ବିନୋଦବିହାରୀ, କଟକ।

୪୭. Lyrical ballads with other poems – 2nd Ed. 1800, Preface by Wordworth.

୪୮ ସାହିତ୍ୟର ସୂଚୀପତ୍ର – ବିଭୂତି ପଟ୍ଟନାୟକ। ପୃ. ୧୧୮, ୩ୟ ସଂ ୧୯୮୨, ନାଳନ୍ଦା, ବିନୋଦବିହାରୀ, କଟକ।

୪୯. The Poet should choose incidents and situations from common life and relate them as far as possible in a selection of language really used by men. Critical Idioms – romanticism – L.R. Furst. P. 52, Methuen & Co. Ltd – 1971.

୬୦. Romanticism is simple the expression of life as seen by imagination rather than by Prosaic common sense which was the central doctrine of English philosophy in the eighteenth century. History of English Literatur – Vol. II (1798-1966) By. W.R. Goodman. P. 20, 2nd Revised Edition. Doaba House, Book sellers & Publishers, 1688, Naisarak Delhi.

୬୧. ସାହିତ୍ୟରେ ସୂଚୀପତ୍ର – ବିଭୂତି ପଟ୍ଟନାୟକ, ପୃ. ୧୧୪, ୩ୟ ପ୍ର. ୧୯୮୨, ନାଳନ୍ଦା, ବିନୋଦବିହାରୀ, କଟକ।

୬୨. The supreme faculty of the poet is imagination which must take the place of reason for the solution of the riddle of life and nature.

A short History of English Literature By. Emile Legouis. Translated by V.F. Boyson & J. Coulson, P. 277, Reprinted – 1976, Oxford Press, Great Britain.

୬୩. ସାହିତ୍ୟ ତତ୍ତ୍ୱ : ପ୍ରାଚ୍ୟ ଓ ପାଶ୍ଚାତ୍ୟ – ଅଧ୍ୟାପିକା ଜ୍ୟୋତ୍ସ୍ନାମୟୀ ପ୍ରଧାନ, ପୃ. ୧୯୭, ୧ମ ପ୍ର. ୧୯୮୦, ଫ୍ରେଣ୍ଡସ୍ ପବ୍ଲିଶର୍ସ।

୬୪. ରାଧାନାଥ ପରିଚିତି – ରୂପପ୍ରାଣ ରାଧାନାଥ – ଅଧ୍ୟାପକ ଚିନ୍ତାମଣି ବେହେରା, ପୃ. ୨୩, ପ୍ରକାଶକ – ରାଧାନାଥ ପାଠାଗାର, ସୋର। ୧ମ ପ୍ରକାଶ, ୧୯୬୦।

୬୫. ଆଧୁନିକ ଓଡ଼ିଆ କବିତାରେ ସୌନ୍ଦର୍ଯ୍ୟ ଚେତନା – ଅଧ୍ୟାପକ ଦାଶରଥି ଦାସ, ପୃ. ୮୫୯। ଝଙ୍କାର, ଜାନୁଆରୀ ୧୯୭୯।

୬୬. ରୋମାଣ୍ଟିକ ପରମ୍ପରା ଓ ସୀତାକାନ୍ତଙ୍କ 'ଆଧୁନିକତା' – ଶ୍ରୀକୃଷ୍ଣ ଚରଣ ବଳ, ପୃ. ୪୨, ଝଙ୍କାର – ଏପ୍ରିଲ ୧୯୮୪।

୬୭. Sublimity or higher reality or any quality of content imputed to the poem itself.

Literary criticism : A short history – William K. Wimsatt Jr & Cleanth Brooks P – 101. Oxford and IBH Publishing, Co. 66, Janpath, New Delhi – 1957.

୬୮. ସାହିତ୍ୟ ସୂଚୀପତ୍ର – ବିଭୂତି ପଟ୍ଟନାୟକ। ପୃ. ୧୦୧, ୩ୟ ପ୍ର. ୧୯୮୨, ନାଳନ୍ଦା।

୬୯. Romantic Agony – Mario Praz, P. 34, Oxford University Press – 1954.

୭୦. କାବ୍ୟ ଓ କଳାକାର – ଅଧ୍ୟାପକ ଚିନ୍ତାମଣି ବେହେରା। ପୃ. ୨୬, ୧ମ ପ୍ରକାଶ, ଆଲୋକ ସାହିତ୍ୟ ପ୍ରତିଷ୍ଠାନ।

୭୧. Repose satisfies the classic, adventure attracts the Romantic. The one appeals to tradition, the other demands the novel. On the one side we may range the virtues and defects which go with the notions of fitness, Propriety, measure, restraint, conservatism, authority, calm, experience, comeliness on the other those which are suggested by excitement, energy, restlessness, spirituality, curiosity, troublousness, Progress, liberty exporiment, Provocativeness."

The makingk of literature – R.A. Scott James, P. 167, Reprinted – 1967, SECKER & WARBURG, LONDON.

୭୨. କାବ୍ୟ ଓ କାଳାକାର – ଅଧ୍ୟାପକ ଚିନ୍ତାମଣି ବେହେରା, ପୃ. ୨୫, ୧ମ ପ୍ରକାଶ, ଆଲୋକ ସାହିତ୍ୟ ପ୍ରତିଷ୍ଠାନ।

୭୩. ସମାଲୋଚକେର ସମସ୍ୟା – ସମକାଳୀନ ସାହିତ୍ୟ, ନାରାୟଣ ଚୌଧୁରୀ, ପୃ. ୧୧୧, ବଙ୍ଗୀୟ ସାହିତ୍ୟ ପରିଷଦ, ୧ମ ସଂ ୧୯୬୬।

୭୪. ଆଧୁନିକ କବିତାର ଦିଗ୍‌ଦର୍ଶନ, ସଂ. ଅପୂର୍ବ ରଞ୍ଜନ ରାୟ – ଆଜିର କବିତା। ପୃ. ୧୭୬, ୧ମ ସଂ. ୧୯୭୨, ଫ୍ରେଣ୍ଡସ୍ ପବ୍ଲିଶର୍ସ।

୭୫. ଆଧୁନିକ କାବ୍ୟ ଜିଜ୍ଞାସା : ଚିତ୍ରକଳ୍ପ – ଦାଶରଥି ଦାସ, ପୃ. ୪୨୪, ଅଗ୍ରଦୂତ ପ୍ରକାଶନୀ – ୧୯୭୭।

୭୬. ମୋ ଦୃଷ୍ଟିରେ ସାମ୍ପ୍ରତିକ ସାହିତ୍ୟ – ସଂ. ଅଧ୍ୟାପକ ପରୀକ୍ଷିତ ନନ୍ଦ। ମୋ ଦୃଷ୍ଟିରେ ସାମ୍ପ୍ରତିକ କବିତା ଏକ ଦିଗନ୍ତ – ଅଧ୍ୟାପକ ସୌରୀନ୍ଦ୍ର ବାରିକ, ପୃ. ୨୧୫, ୧ମ ପ୍ରକାଶ ୧୯୭୩। ଜ୍ଞାନମନ୍ଦିର କଟକ।

୭୭. ଇସ୍ତାହାର – ୩ ଓ ୪ ସଂଖ୍ୟା, ଅକ୍ଟୋବର ୧୯୭୮, ପୃ. ୨୩୭। ରୋମାଣ୍ଟିକ କବି ଜଗନ୍ନାଥ ପ୍ରସାଦ ଦାସ – ନିରଞ୍ଜନ ବେହୁରିଆ।

୭୮. The relation of poetry to social life, to politics in the wider sense of th word is not a very Profound of difficult subject, but it is a little Profounder a little more difficult than it is sometimes thought to be.

A New study of English Poetry – Henry Newbolt. P. 69, constable & Co. London – 1919.

୭୯. ଆଧୁନିକ ଓଡ଼ିଆ କାବ୍ୟଧାରା – (ଆଦିଯୁଗ) ଡଃ ନରେନ୍ଦ୍ର ନାଥ ମିଶ୍ର। ପୃ: ୬୭, ୧ମ ପ୍ର. ୧୯୬୪, ବିଶ୍ୱଭାରତୀ, ଶାନ୍ତିନିକେତନ।

୮୦. ଋଗ୍‌ବେଦ ସୌରଭ – ପ୍ରିୟବ୍ରତ ଦାସ। ମଣ୍ଡଳ ୧୦, ସୂକ୍ତ ୧୯୧, ମନ୍ତ୍ର ୨, ପୃ. ୧୯୪, ୧ମ ପ୍ର. ୧୯୭୨, ବୈଦିକ ଅନୁସନ୍ଧାନ ପ୍ରତିଷ୍ଠାନ, ଭୁବନେଶ୍ୱର।

୮୧. ସମାଜ ଓ ସାହିତ୍ୟ – ପଠାଣି ପଟ୍ଟନାୟକ, ପୃ. ୪୩। ୧ମ ପ୍ର. ୧୯୭୫, ଜନଶକ୍ତି ପୁସ୍ତକାଳୟ, ବାଙ୍କାବଜାର, କଟକ।

୮୨. ଆଲୋଚନା : ଇତିହାସ ତଥା ସିଦ୍ଧାନ୍ତ – ଏସ୍.ପି. କ୍ଷତ୍ରୀ, ପୃ. ୨୨୪, ୨ୟ ପ୍ର. ୧୯୬୪, ରାଜକମଳ ପ୍ରକାଶ।

୮୩. ରଚନା ଔର ଆଲୋଚନା – ଦେବୀଶଙ୍କର ଅବସ୍ଥୀ, ପୃ. ୫୪, ୧ମ ପ୍ର. ୧୯୭୯ । The Macmillion Company of India Ltd. New Delhi.

୮୪. ମୋ ଦୃଷ୍ଟିରେ ସାମ୍ପ୍ରତିକ ସାହିତ୍ୟ – ସଂ. ପରୀକ୍ଷିତ ନନ୍ଦ। (ମୋ ଦୃଷ୍ଟିରେ ସାମ୍ପ୍ରତିକ ଓଡ଼ିଆ କବିତାରେ ସମାଜ ଚେତନା – ଅଧ୍ୟାପକ ଦୀପକ ମିଶ୍ର। ପୃ. ୪୨୧, ୧ମ ପ୍ର. ୧୯୭୩, ଜ୍ଞାନମନ୍ଦିର, କଟକ।

୮୫. ଏକନ୍, ମୋ ଦୃଷ୍ଟିରେ ସାମ୍ପ୍ରତିକ ଓଡ଼ିଆ କବିତାରେ ମାନବବାଦୀ ଚିନ୍ତାଧାରା – ଅଧ୍ୟାପକ ବୈଷ୍ଣବ ଚରଣ ସାମଲ, ପୃ. ୪୩୩।

୮୬. ଆଧୁନିକ ଓଡ଼ିଆ କାବ୍ୟଧାରା – (ଆଦିଯୁଗ) ଡଃ ନରେନ୍ଦ୍ର ନାଥ ମିଶ୍ର। ପୃ. ୭୨-୭୩, ୧ମ ପ୍ର. ୧୯୬୪, ବିଶ୍ୱଭାରତୀ, ଶାନ୍ତିନିକେତନ।

୮୭. ଝଙ୍କାର, ସମ୍ପାଦକୀୟ ଡଃ ହରେକୃଷ୍ଣ ମହତାବ, ୨୧ଶ ବର୍ଷ ବିଷୁବ ସଂଖ୍ୟା।

୮୮. କାଳାନ୍ତର – ରବୀନ୍ଦ୍ର ନାଥ ଠାକୁର, ପୃ. ୧୪୧, ବିଶ୍ୱଭାରତୀ ପରିବର୍ଦ୍ଧିତ ସଂସ୍କରଣ।

୮୯. ଓଡ଼ିଆ ସାହିତ୍ୟ ପରିକ୍ରମା – ଡଃ ଜାନକୀ ବଲ୍ଲଭ ମହାନ୍ତି, ପୃ. ୭୬, ୧ମ ପ୍ରକାଶ, ଗ୍ରନ୍ଥମନ୍ଦିର।

୯୦. ମାନବବାଦୀ କବି ରବୀନ୍ଦ୍ର ନାଥ – ମନୋରମା ମହାପାତ୍ର। ସମାଜ ତା. ୨୧.୯.୮୬, ପୃ. ୧୧ (ସପ୍ତାହିକ ସାହିତ୍ୟ ଆଲୋଚନା)।

୯୧. ଅଳଂକାର ଶାସ୍ତ୍ରପରିଚିତି – ଡଃ ଭାବଗ୍ରାହୀ ମିଶ୍ର ଓ ଶାନ୍ତିଲତା ମିଶ୍ର। ପୃ. ୭୮, ୨ୟ ପ୍ରକାଶ – ୧୯୭୧, ଫ୍ରେଣ୍ଡସ୍ ପବ୍ଲିଶର୍ସ।

୯୨. Satire is a from of literature, which may be either in prose or in verse, directed against the subject of some personal or public grievance. All kinds of subjects are chosen, but politics and religion are the commonest. The style should not clear and vigorous, though it should not descend to vulgar abuse. The usal metre is the heroic couplet.

History of English Literature – By W.R. Goodman, Vol. II, P. 23, DOABA HOUSE, Book SELLERS and PUBLISHERS. 2nd Revised Edition.

୯୩. No satire can be great which is not forceful and out spokes and some have been crushing × × ×. The Satire like an arrow, has to take the shortest route to its target. It must be terse and concise so as to say a great deal in a brief space. Prolixity destroys its effect.

A Background to the study of English literature – By B. Prasad P. 39-40. Macmillan Publication – 1973.

୯୪. ସମାଜ ଓ ସାହିତ୍ୟ – ଅଧ୍ୟାପକ ପଠାଣି ପଟ୍ଟନାୟକ। ପୃ. ୧୬୨, ୧ମ ପ୍ର. ୧୯୭୫, ଜନଶକ୍ତି ପୁସ୍ତକାଳୟ, ବାଙ୍କାବଜାର, କଟକ।

୯୫. ଏଜନ୍ – ପୃ. ୧୬୬।

୯୬. କବି ଗୋଦାବରୀଶ – ଚିନ୍ତାମଣି ଦାସ। ପୃ. ୯୫।

ନୂତନ ସଂ. ୧୯୭୨। ପ୍ରକାଶକ – ଜଗନ୍ନାଥ ରଥ, ବିନୋଦବିହାରୀ, କଟକ।

୯୭. A. Presence that disturbs me with the joy of elevated thoughts, a sense sublime.

Lyrical ballads–Words worth – Preface, 2nd Edition – 1800.

୯୮. The Term 'nature' would in itself put the matter beyond dispute; for nature in not the outward world of created things, it is the creative force, the Productive Principle of the universe.

Aristotle Theory of Poetry and Fine Arts – Translated with critical Notes, General Introduction, Biographical Notes by – S.H. Butcher, Gunter Ralfs & and Henry Thomas, P. 116, Reprinted – 1981, Kalyani Publishers, Ludhiana.

୯୯. ସହକାର – 'କଳ କଲ୍ଲୋଳ' ଆଲୋଚନା – ତ୍ରିଲୋଚନ ମିଶ୍ର, ୨୭/୫ମ ସଂଖ୍ୟା।

୧୦୦. In the broadest sense aesthetic value is taken as intrinsic pleasure or the liking of a thing for itself as against liking it as a means to an end. Aesthetic values are immediate (direct) an opposed to mediate or Practical Value.

The New Encyclopaedia Britanica – Vol. 1-15th Edition, 1983, London, P. 149.

୧୦୧. କବିତା : ଆତ୍ମାର ମାତୃଭାଷା – ଉମାଶଙ୍କର ଯୋଶୀ, ସଂକ୍ଷିପ୍ତ ମର୍ମାନୁବାଦ – ବ୍ରଜ କିଶୋର ଦାସ। 'ସମାଜ. ତା. ୨୧.୯.୮୬, ପୃ. ୧୧ (ସାପ୍ତାହିକ ସାହିତ୍ୟ ଆଲୋଚନା)।

୧୦୨. The Principles of Aesthetics – Dewitt H. Parker. P. 37, Reprinted – 1976, Lendon.

୧୦୩. ଭାରତୀୟ ଓ ଗ୍ରୀସ୍-ରୋମୀୟ ସୌନ୍ଦର୍ଯ୍ୟ ତତ୍ତ୍ୱର ସାଧାରଣ ଧାରା– ଗଙ୍ଗାଧର ବଳ। ପୃ. ୭୨୬, ଝଙ୍କାର – ନଭେମ୍ବର ୧୯୭୮।

୧୦୪. ଆଧୁନିକ ଓଡ଼ିଆ ସାହିତ୍ୟର ଭୂମି ଓ ଭୂମିକା – ସବୁଜ କବିତାର ଧାରା – ରାଘବାନନ୍ଦ ନାୟକ, ପୃ. ୧୧୩, ୧ମ ପ୍ର. ୧୯୬୨। ଓଡ଼ିଆ ସାହିତ୍ୟ ଏକାଡ଼େମୀ।

୧୦୫. The scientist sees beauty in truth, whereas the artist sees truth in Beauty and saint sees truth in goodness alone.
Quintessence of Literary Essays – (Essays on Poetry) W.R. Goodman, P. 26, 2nd Edition – 1963. DOABA HOUSE BOOK SELLERS & PUBLISHERS.

୧୦୬. ଆଧୁନିକତାର କ, ଖ ଓ ଅନ୍ୟାନ୍ୟ – ଅଧ୍ୟାପକ ଚିନ୍ତାମଣି ବେହେରା, ୧ମ ପ୍ରକାଶ, ପୃ. ୮୬, ଫ୍ରେଣ୍ଡସ୍ ପବ୍ଲିଶର୍ସ, ବିନୋଦବିହାରୀ, କଟକ।

୧୦୭. ସାହିତ୍ୟର ସ୍ୱରୂପ – ବୀର କିଶୋର ଦାସ, ପୃ. ୧୦। ନୂତନ ମୁଦ୍ରଣ – ୧୯୭୮, ସାଥୀମହଲ, କଟକ।

୧୦୮. ସାହିତ୍ୟ ତତ୍ତ୍ୱ : ପ୍ରାଚ୍ୟ ଓ ପାଶ୍ଚାତ୍ୟ – ଜ୍ୟୋତ୍ସ୍ନାମୟୀ ପ୍ରଧାନ। ପୃ. ୨୮୦। ୧ମ ପ୍ରକାଶ – ୧୯୮୦। ଫ୍ରେଣ୍ଡସ୍ ପବ୍ଲିଶର୍ସ।

୧୦୯. ଋଗ୍‌ବେଦ – ୯/୩୨/୧, ୯/୭୧/୧୪, ୯/୧୯/୧, ୧/୧୧/୪, ପ୍ରକାଶକ – ଧର୍ମଗ୍ରନ୍ଥ ଷ୍ଟୋର, କଟକ।

୧୧୦. ବାଂଲା ଗାଥା କାବ୍ୟ – ଡଃ ବହ୍ନିକୁମାରୀ ଭଟ୍ଟାଚାର୍ଯ୍ୟ। ପୃ. ୬, ୧ମ ସଂ. ୧୯୬୨। ମଡ଼ର୍ଣ୍ଣ ବୁକ୍ ଏଜେନ୍‌ସୀ ପ୍ରାଇଭେଟ୍ ଲିମିଟେଡ୍।
୧୦ ବଙ୍କିମଚନ୍ଦ୍ର ଚାଟାର୍ଜୀ ଷ୍ଟ୍ରୀଟ୍, କଲିକତା-୧୨।

୧୧୧. The Cambridge History of India. Vol-I, P. 227, Ed. by E.J. Rapson, S. Chand & Company – 1955.

୧୧୨. History of Indian Literature – M. Winternitz. Vol-III, Part. I. Translated by Subhadra Jha – Motilal Banarasi Das, P. 180. Bunalow Rood, Jawahar Nagar Delhi 7-1963.

୧୧୩. ଓଡ଼ିଆ ଗାଥା କାବ୍ୟ – ରବୀନ୍ଦ୍ର କୁମାର ପ୍ରହରାଜ, ପୃ. ୫, ପିଏଚ୍.ଡ଼ି. ଥେସିସ୍, ଉତ୍କଳ ବିଶ୍ୱବିଦ୍ୟାଳୟରେ ସଂରକ୍ଷିତ।

୧୧୪. ସାହିତ୍ୟ ବିଚାର – ଅଧ୍ୟାପକ ଦୀନବନ୍ଧୁ ରଥ। ପୃ. ୧୦୬-୦୭, ୧ମ ପ୍ରକାଶ – ୧୯୭୦, ଫ୍ରେଣ୍ଡସ୍ ପବ୍ଲିଶର୍ସ।

୧୧୫. Myth was Primitive ethnology expressed in poetic form." Primitive Culture – By E.B. Tyler – London 1873, Page. 317.

୧୧୬. ସାହିତ୍ୟର ସଂଜ୍ଞା – ଶ୍ରୀ ଗଦାଧର ମିଶ୍ର। ପୃ. ୫୫, ୧ମ ପ୍ର. ୧୯୮୦, ଫ୍ରେଣ୍ଡସ୍ ପବ୍ଲିଶର୍ସ।

୧୧୭. ଓଡ଼ିଆ ସାହିତ୍ୟର ଇତିହାସ – ୧ମ ଭାଗ ପଣ୍ଡିତ ସୂର୍ଯ୍ୟନାରାୟଣ ଦାସ। ପୃ. ୨୯, ଗ୍ରନ୍ଥମନ୍ଦିର ୧୯୬୮।

୧୧୮. For the poet is a light and winged and holy thing and there is no invention in him untill he has been inspired and is out of his senses and the mind is no longer in him, when he has not attained to this state, he is powerless and is unable to utter his oracles.

Crilical Approaches to the literature – David Daiches, P. 5, Reprinted in India 1967, Green & Co. Ltd.

୧୧୯. They are usally short and many have a songlike quality. The poet expresses his personal reactions to things what he sees hears and thinks and feels.

A History of English Literature – Vol. I By W. R. Goodman, P. 12, 2nd Revised Edition, DOABA HOUSE BOOK SELLERS & PUBLISHERS.

୧୨୦. ଗୀତିକବି ଶ୍ରୀ ମଧୁସୂଦନ – ଶ୍ରୀ ଆଶୁତୋଷ ଭଟ୍ଟାଚାର୍ଯ୍ୟ। ପୃ. ୧୨୧, ନୂତନ ସଂସ୍କରଣ ୧୯୭୪, ଦେ'ଜ ପବ୍ଲି ଶିଂ ୩୧/୧ ବି. ମହାତ୍ମାଗାନ୍ଧୀ ରୋଡ଼, କଲିକତା-୯।

୧୨୧. ସାହିତ୍ୟିକ ବୀକ୍ଷା ଓ ନିରୀକ୍ଷା – ଅଧ୍ୟାପକ କ୍ଷେତ୍ରବାସୀ ନାୟକ। ପୃ. ୧୦୭, ୧ମ ମୁଦ୍ରଣ ୧୯୭୦, ଫ୍ରେଣ୍ଡସ୍ ପବ୍ଲିଶର୍ସ।

୧୨୨. ଓଡ଼ିଆ ଗୀତିକାବ୍ୟ – ଡଃ ଜାନକୀ ବଲ୍ଲଭ ମହାନ୍ତି। ପୃ. ୭, ୨ୟ ମୁଦ୍ରଣ ୧୯୭୬, ଗ୍ରନ୍ଥମନ୍ଦିର, କଟକ।

୧୨୩. Poetry was neither feeling alone nor imagination alone, nor a sum of the two, but lyrical intuition × × × Introduction to the study of English Literature – By K.R. Srinivasa Iyengar & Prema Nanda Kumar. P. 189.

Sterling Publishers Pvt. Ltd. New Delhi – 1984.

୧୨୪. ଆଧୁନିକ ଓଡ଼ିଆ କାବ୍ୟଧାରା – (ଆଦିପର୍ବ) ଡଃ. ନରେନ୍ଦ୍ର ନାଥ ମିଶ୍ର। ପୃ. ୪୧-୪୨, ୧ମ ପ୍ର. ୧୯୬୪। ଶାନ୍ତିନିକେତନ, ବିଶ୍ୱଭାରତୀ।

୧୨୫. ସାହିତ୍ୟର ସୂଚୀପତ୍ର – ବିଭୂତି ପଟ୍ଟନାୟକ। ପୃ. ୮, ୩ୟ ପ୍ର. ୧୯୮୨। ନାଲନ୍ଦା ପ୍ରକାଶନ, କଟକ।

# ଦ୍ୱିତୀୟ ପରିଚ୍ଛେଦ

## ଊନବିଂଶ ଶତକର ଓଡ଼ିଶା

ଯୁଗେ ଯୁଗେ ଓଡ଼ିଶା ବିଭିନ୍ନ ଶାସକମାନଙ୍କ ଦ୍ୱାରା ବିଭିନ୍ନ ସମୟରେ ଶାସିତ ହୋଇ ଆସିଛି। ଏ ଜାତିର ନିରୀହ ଜନସାଧାରଣଙ୍କୁ ସହ୍ୟ କରିବାକୁ ପଡ଼ିଛି ମୋଗଲମାନଙ୍କର ଅତ୍ୟାଚାର, ବର୍ଗୀମାନଙ୍କର ଲୁଣ୍ଠନ। ଏବେ ବି ଇତିହାସ ମରହଟ୍ଟାମାନଙ୍କର ହତ୍ୟା ଓ ଅମାନୁଷିକ ବର୍ବର ପୀଡ଼ନର ସାକ୍ଷ୍ୟ ପ୍ରଦାନ କରିଥାଏ। ମରହଟ୍ଟାମାନଙ୍କୁ ପରାସ୍ତ କରି ୧୮୦୩ ମସିହାରେ ଇଂରେଜମାନେ ଏ ଦେଶର ଶାସନଭାର ନିଜ ହସ୍ତକୁ ନେଲେ। ତତ୍କାଳୀନ ଓଡ଼ିଶା ସମଗ୍ର ଭାରତବର୍ଷ ତୁଳନାରେ ଯେ ଅତ୍ୟନ୍ତ ଶୋଚନୀୟ ଥିଲା, କହିବା ବାହୁଲ୍ୟ ମାତ୍ର। ତଥାପି ଏ ଜାତି ମରି ମଧ ମରିନାହିଁ। ଶତ ନିର୍ଯ୍ୟାତନା ସତ୍ତ୍ୱେ ଏ ଜାତି ନିଜକୁ ପ୍ରତିଷ୍ଠିତ କରି ଶିଖିଛି। ଏ ଦେଶର ଉଦାର ମାନବିକ ଭାବ, ପୃଥିବୀବାସୀଙ୍କୁ ଚମକୃତ କରିଛି। ଆଲୋଚନାର ସୌକର୍ଯ୍ୟ ଦୃଷ୍ଟିରୁ ଊନବିଂଶ ଶତକ, ଓଡ଼ିଶାର ସାମାଜିକ, ରାଜନୀତିକ, ସାଂସ୍କୃତିକ ତଥା ଧାର୍ମିକ ଅବସ୍ଥା ସଂପର୍କରେ ଏଠାରେ ସୂଚନା ପ୍ରଦାନ କରାଯାଉଛି।

### ସାମାଜିକ ଅବସ୍ଥା

ଇଂରେଜମାନେ ଓଡ଼ିଶା ଅଧିକାର କରିବା ପୂର୍ବରୁ ମରହଟ୍ଟାମାନେ ଥିଲେ ଏ ଦେଶର ଭାଗ୍ୟବିଧାତା। ସେତେବେଳେ ମରହଟ୍ଟାମାନଙ୍କ ଲୁଣ୍ଠନ ଓ ଅତ୍ୟାଚାର ଯୋଗୁଁ ସମଗ୍ର ଓଡ଼ିଶା ଅତିଷ୍ଠ ହୋଇ ପଡ଼ିଥିଲା। ମରହଟ୍ଟାମାନଙ୍କ ପ୍ରତି ଓଡ଼ିଆମାନଙ୍କର ଘୃଣା ଭାବ ଲକ୍ଷ୍ୟକରି ଇଂରେଜମାନେ ଏକ ନୂତନ ଯୋଜନା ଆରମ୍ଭ କଲେ। ହରକୋର୍ଟ ସାହେବ ତତ୍କାଳୀନ ପୁରୀର ମହନ୍ତଙ୍କ ପାଖକୁ ଏକ ବାର୍ତ୍ତା ପଠାଇ ସେମାନଙ୍କୁ ସମ୍ପୂର୍ଣ୍ଣ ନିରାପତ୍ତା ଦେବାର ପ୍ରତିଶ୍ରୁତି ଦେବା ସଙ୍ଗେ ସଙ୍ଗେ ମାଣିକ ପାଟଣାଠାରେ ଥିବା ମରହଟ୍ଟା ଫୌଜଦାରଙ୍କ ନିକଟକୁ ଏକ ଦୂତ ପଠାଇ ଇଂରେଜମାନଙ୍କୁ ସାହାଯ୍ୟ କରିବା ନିମିତ୍ତ ଅନୁରୋଧ କରିଥିଲେ। ନିଜ ସୈନ୍ୟମାନଙ୍କର ସ୍ୱଚ୍ଛନ୍ଦ ଯାତାୟତର

ସୁବିଧା ନିମିତ୍ତ ଖୋର୍ଦ୍ଧାରାଜାଙ୍କୁ ଏକ ଲକ୍ଷ ଟଙ୍କା ଲାଞ୍ଚ ଦେଇ କରଗତ କରିଥିଲେ। ରାଜା ମଧ୍ୟ ପୁରୀ ମନ୍ଦିରରେ ମରହଟ୍ଟାମାନଙ୍କର ହସ୍ତକ୍ଷେପ ନୀତିକୁ ପସନ୍ଦ କରୁ ନ ଥିବାରୁ ହରକୋର୍ଟଙ୍କ ପ୍ରସ୍ତାବରେ ରାଜି ହୋଇଗଲେ। ୧୮୦୩ ମସିହା ସେପ୍ଟେମ୍ବର ୧୮ ତାରିଖରେ ଇଂରେଜମାନେ ପୁରୀକୁ ନିଜ ଦଖଲକୁ ଆଣିଲେ ଓ ପୁରୀ ଜଗନ୍ନାଥଙ୍କ ସମ୍ମାନ ରକ୍ଷା ତଥା ମରହଟ୍ଟାମାନଙ୍କ କବଳରୁ ତା'ର ସୁରକ୍ଷା ଯୋଗୁଁ ଅନ୍ୟାନ୍ୟ ପ୍ରାଦେଶିକ ରାଜାମାନେ ମଧ୍ୟ ନୀରବ ହୋଇଯାଇଥିଲେ। ଏହାଦ୍ୱାରା ଜନମାନସରେ ମରହଟ୍ଟା ଶକ୍ତି ଇଂରେଜ ଶକ୍ତିଙ୍କ ନିକଟରେ ହୀନବଳ ବୋଲି ପ୍ରମାଣିତ ହୋଇଯାଇଥିଲା। ହରକୋର୍ଟସାହେବ ମେଜର ଫ୍ଲେଚରଙ୍କୁ ପୁରୀର ସୁରକ୍ଷା ତଥା ମରହଟ୍ଟାମାନଙ୍କର ବିଶୃଙ୍ଖଳା ପରିସ୍ଥିତିକୁ ଆୟତ୍ତ କରିବାର ଦାୟିତ୍ୱ ଦେଇ କଟକ ଅଭିମୁଖେ ଅଗ୍ରସର ହୋଇଥିଲେ। କଟକ ଅଗ୍ରସର ସମୟରେ ଅହମ୍ମଦପୁର ଓ ମୁକୁନ୍ଦପୁରଠାରେ ମରହଟ୍ଟାମାନେ ତାଙ୍କୁ ପ୍ରତିରୋଧ କରିଥିଲେ। ମାତ୍ର ସେ ପ୍ରତିରୋଧ ନିହାତି ଦୁର୍ବଳ ଥିଲା। ଅକ୍ଟୋବର ୮ ତାରିଖରେ ହରକୋର୍ଟସାହେବ ସହର ମଧ୍ୟକୁ ପ୍ରବେଶ କଲେ। ତାଙ୍କର ମୁଖ୍ୟ ଉଦ୍ଦେଶ୍ୟ ଥିଲା ବାରବାଟୀ-ଦୁର୍ଗ ଅଧିକାର। ସେଠାରେ ଥିବା ମରହଟ୍ଟା ଅଫିସର ଶିବପ୍ରସାଦଙ୍କୁ ଏକଲକ୍ଷ ଟଙ୍କା ଲାଞ୍ଚ ଦେଇ ଅତି ସହଜରେ ଅକ୍ଟୋବର ୧୪ ତାରିଖରେ ଓଡ଼ିଶାର ଐତିହାସିକ ଦୁର୍ଗ ଅଧିକାର କଲେ।

ବାରବାଟୀ ଦୁର୍ଗ ଅଧିକାର ପରେ କଟକର ପରିଚାଳନା ପାଇଁ ଏକ କମିଶନ ଗଠନ କରାଗଲା, ଯେଉଁଥିରେ ହରକୋର୍ଟ, ଟି.ଏଚ. ଆର୍ଣ୍ଣେଷ୍ଟ (ମେଦିନୀପୁରର ମାଜିଷ୍ଟ୍ରେଟ୍) ଓ ମେଲ୍‌ଭିଲେ ଏକ ଏକ ସଦସ୍ୟ ଥିଲେ। ଏଥିରେ ଖୋର୍ଦ୍ଧା, ମୟୂରଭଞ୍ଜ, ଅନୁଗୁଳ, ହିନ୍ଦୋଳ, ଦଶପଲ୍ଲା, ଆଳି, କୁଜଙ୍ଗ, ହରିଶପୁର, ଦର୍ପଣ, ସୁକିନ୍ଦା, ମଧୁପୁର, ମରିଚପୁର, ବିଷ୍ଣୁପୁର ଓ କନିକା ଇତ୍ୟାଦି ରାଜା ତଥା ଜମିଦାରମାନେ ଯୋଗଦେଇ ବ୍ରିଟିଶ୍ ଶାସକଙ୍କୁ ବାର୍ଷିକ କରଦେବାକୁ ରାଜି ହୋଇଥିଲେ।

ସେପ୍ଟେମ୍ବର ୨୧ ତାରିଖରେ କ୍ୟାପ୍‌ଟେନ୍ ମୋରଗାଁଙ୍କ ନେତୃତ୍ୱରେ ଇଂରେଜ ସୈନ୍ୟ ବାଲେଶ୍ୱରଠାରେ ଅବତରଣ କଲେ। ସାତଟି ଗାଡ଼ିରେ ସେମାନେ ତାଙ୍କର ଗୋଳାବାରୁଦ ଓ ସୈନ୍ୟମାନଙ୍କୁ ପଠାଇଲେ। ଓଏଲ୍‌ସେଲୀଙ୍କ ଚତୁରତା ଯୋଗୁଁ ଅତିକମ୍ ପରିଶ୍ରମରେ ସେମାନେ ବାଲେଶ୍ୱର କରାୟତ୍ତ କଲେ। ସେହିପରି ଫୋର୍ବସ୍‌ଙ୍କ ନେତୃତ୍ୱରେ ସେମାନେ ସମ୍ବଲପୁର ମଧ୍ୟ କରାୟତ୍ତ କରିପାରିଥିଲେ।

ସମ୍ପୂର୍ଣ୍ଣ ଓଡ଼ିଶା ଦଖଲ ପରେ ୧୮୦୩ ଡିସେମ୍ବର ମାସରେ କମିଶନର କାର୍ଯ୍ୟ ନିର୍ବାହକ କଲେକ୍ଟର ଜେମ୍‌ସ ହଣ୍ଟର (ପୁରୀ)ଙ୍କୁ ଭୂରାଜସ୍ୱ ନୀତି ପାଇଁ ନିର୍ଦ୍ଦେଶ

ଦେଲେ ।[୧] ଓଡ଼ିଶାରେ ଇଂରେଜମାନେ ନିଜକୁ ପ୍ରତିଷ୍ଠିତ କରିସାରିବାପରେ ସେମାନଙ୍କର ପ୍ରଥମ ଲକ୍ଷ୍ୟ ରହିଲା ଅଧିକରୁ ଅଧିକ କର ଆଦାୟ । ପୁରୀ ମନ୍ଦିରକୁ ମଧ୍ୟ ସେମାନେ ତାଙ୍କର ଏକ ଆୟର ପନ୍ଥା ଭାବରେ ଗ୍ରହଣ କରିନେଲେ । କାରଣ ସେମାନେ ଜାଣିଥିଲେ ଜଗନ୍ନାଥଙ୍କ ନିକଟକୁ କେହି କେବେ ଶୂନ୍ୟ ହସ୍ତରେ ଆସନ୍ତି ନାହିଁ । ଗରୀବଠାରୁ ଧନୀ ପର୍ଯ୍ୟନ୍ତ ନିଜର ସାଧ୍ୟାନୁସାରେ ଜଗନ୍ନାଥଙ୍କ ପାଦତଳେ ଭେଟି ଦେଇ ନିଜର ଅଭିଳାଷ ଜ୍ଞାପନ କରିଥାନ୍ତି । ଏପରିକି ଅନେକ ଧନୀ ହୀରା, ନୀଳା, ସୁନା ପର୍ଯ୍ୟନ୍ତ ମଧ୍ୟ ଜଗନ୍ନାଥଙ୍କୁ ଅର୍ପଣ କରିଥାନ୍ତି ।[୨] ତେଣୁ ଇଂରେଜମାନଙ୍କ ପକ୍ଷରେ ଜଗନ୍ନାଥ ମନ୍ଦିର ଥିଲା ଏକ ଉତ୍ତମ ଆୟର ପନ୍ଥା । ସେତେବେଳେ ଇଂରେଜମାନଙ୍କର ଭୂ-ରାଜସ୍ୱନୀତି ଓଡ଼ିଶାକୁ ଅନ୍ତଃସାର ଶୂନ୍ୟ କରି ଦେଇଥିଲା । ସେଥିପାଇଁ ସେମାନେ ଓଡ଼ିଶାରେ ଚିରସ୍ଥାୟୀ ବନ୍ଦୋବସ୍ତ କରିବାକୁ ରାଜି ନ ଥିଲେ । ଚିରସ୍ଥାୟୀ ବନ୍ଦୋବସ୍ତ ହେବା ପୂର୍ବରୁ ସେମାନେ ୧୮୦୪ ମସିହାରୁ ୧୮୩୭ ମସିହା ମଧ୍ୟରେ ଏଗାର ଥର ଅସ୍ଥାୟୀ ବନ୍ଦୋବସ୍ତ କରିଥିଲେ ।

ଇଂରେଜମାନଙ୍କ ଦ୍ୱାରା ଏହି ଯେଉଁ ଜମିଜମା ବନ୍ଦୋବସ୍ତର ସୂତ୍ରପାତ ହୋଇଥିଲା ତା'ର ପ୍ରଥମ ପର୍ଯ୍ୟାୟ ସମ୍ପୂର୍ଣ୍ଣ ବିଫଳତା ମଧ୍ୟଦେଇ ଗତି କରିଥିଲା । ଇଂରେଜ କର୍ମଚାରୀମାନଙ୍କର ଦୂରଦୃଷ୍ଟିହୀନତା ଓ ନିର୍ଦ୍ଦିଷ୍ଟ ନିଷ୍ପତ୍ତି ନେବାର ଅସାମର୍ଥତା ଯୋଗୁଁ ଏପରି ବିଭ୍ରାଟ ହୋଇଥିଲା । ପୁଣି କର୍ମଚାରୀମାନେ ସମ୍ପୂର୍ଣ୍ଣ ଭାବରେ ଅଫିସରମାନଙ୍କ ନିଷ୍ପତ୍ତିକୁ ଆଖିବୁଜି ମାନିନେଉଥିବାରୁ ବିଭିନ୍ନ ପ୍ରକାର ଅସୁବିଧାର ସମ୍ମୁଖୀନ ହୋଇଥିଲେ । କାରଣ ତତ୍କାଳୀନ ଅଫିସରମାନେ ସାମୂହିକ ସ୍ୱାର୍ଥ ଅପେକ୍ଷା ବ୍ୟକ୍ତିଗତ ସ୍ୱାର୍ଥ ଉପରେ ଅଧିକ ଗୁରୁତ୍ୱ ଦେଉଥିଲେ । ଯେଉଁ ଅଫିସରମାନେ ଏହାର ଦାୟିତ୍ୱରେ ରହିଥିଲେ, ସେମାନଙ୍କ ମଧ୍ୟରେ ମତପାର୍ଥକ୍ୟ ଓ ଦୂରଦୃଷ୍ଟିହୀନତା ଯୋଗୁଁ ଏହା ଠିକ୍ ଭାବରେ କାର୍ଯ୍ୟକାରୀ ହୋଇ ପାରିଲା ନାହିଁ । କେତେକ ଅଫିସର ଓଡ଼ିଶାର ଭାଷା, ପରମ୍ପରା ଉପରେ ଗୁରୁତ୍ୱ ଆରୋପ କରୁଥିବାବେଳେ ଅନ୍ୟ କେତେକ ଏହାର ବିରୋଧ ମଧ୍ୟ କରୁଥିଲେ । ତେଣୁ ସେମାନେ ଏକ ସର୍ବସମ୍ମତ ନିଷ୍ପତ୍ତି ଗ୍ରହଣ କରିବାରେ ସମର୍ଥ ହୋଇ ନ ପାରିବାରୁ ଜମିଜମା ବନ୍ଦୋବସ୍ତର ପ୍ରାଥମିକ ପର୍ଯ୍ୟାୟ ସମ୍ପୂର୍ଣ୍ଣ ବିଫଳତାରେ ପର୍ଯ୍ୟବସିତ ହୋଇଥିଲା ।[୩]

ବାରମ୍ବାର ବନ୍ଦୋବସ୍ତ ଦ୍ୱାରା ପ୍ରତ୍ୟେକ ଥର ଖଜଣାହାର ବୃଦ୍ଧିପାଉଥିବାରୁ ଗରିବ ଚାଷୀକୁଳ ବିଶେଷଭାବରେ କ୍ଷତିଗ୍ରସ୍ତ ହେଉଥିଲେ । ଏହାଦ୍ୱାରା ମଧ୍ୟ ଏକ ନୂତନ ଜମିଦାର ଶ୍ରେଣୀ ମୁଣ୍ଡଟେକି ଉଠିଥିଲେ । ଇଂରେଜମାନେ ଜମି ତଥା ଜମିଦାରଙ୍କ

ସହିତ ଅପରିଚିତ ଥିବାରୁ କାନୁନ୍‌ଗୋ ଶ୍ରେଣୀର ଲୋକଙ୍କ ଉପରେ କର ଆଦାୟର ଦାୟିତ୍ୱ ନ୍ୟସ୍ତକରି ନୀରବରେ ବସିଯାଇଥିଲେ। ଏମାନେ ଅତ୍ୟଧିକ କର ଆଦାୟ କରିବାରୁ ଚାଷୀମାନେ କରଭାରରେ ନିଷ୍ପୀଡ଼ନ ହୋଇ ପଡ଼ିଲେ ଓ ସମୟ କ୍ରମେ କର ଦେବାକୁ ମଧ୍ୟ ଅକ୍ଷମତା ପ୍ରକାଶ କଲେ। ଏହାର ସୁଯୋଗ ନେଇ କର ଆଦାୟକାରୀମାନେ ନିଜେ ଗୋଟିଏ ଗୋଟିଏ ପରମ୍ପରାହୀନ ଜମିଦାର ହୋଇଗଲେ। ବଙ୍ଗଳାରେ ପ୍ରଚଳିତ ଚିରସ୍ଥାୟୀ ବନ୍ଦୋବସ୍ତର ନିୟମ ଓଡ଼ିଶାରେ ପ୍ରଯୁକ୍ତ ହେବାରୁ ଜମିଦାରମାନେ ନିୟମିତ ଭାବେ ଅଧିକ କର ଆଦାୟ କରି ନ ପାରିବାରୁ ସାନ୍ଧ୍ୟ ଆଇନ୍ ଅନୁଯାୟୀ ଜମିଦାରୀ ବଙ୍ଗଳାରେ ନିଲାମ ହେବାକୁ ଲାଗିଲା ଏବଂ ବଙ୍ଗାଳୀମାନେ ଏହାର ଫାଇଦା ଉଠାଇଥିଲେ।[୪] ଏହାଦ୍ୱାରା ସମାଜରେ ପାରମ୍ପରିକ ଓ ନୂତନ ସୃଷ୍ଟ – ଏହିପରି ଦୁଇଟି ଜମିଦାରୀ ଗୋଷ୍ଠୀର ଆବିର୍ଭାବ ହେଲା। ମରହଟ୍ଟା ସମୟରେ ଯେଉଁ ପାରମ୍ପରିକ ଜମିଦାରୀ ଗୋଷ୍ଠୀର ଅବସାନ ହେବାକୁ ଆରମ୍ଭ କରିଥିଲା, ଇଂରେଜ ଶାସନ କାଳରେ ଜମିଜମା ବନ୍ଦୋବସ୍ତ ଦ୍ୱାରା ଏହା ଚରମ ସୀମାରେ ଉପନୀତ ହେବାକୁ ଲାଗିଲା। ଯେଉଁ ନୂତନ ଗୋଷ୍ଠୀର ଜମିଦାର ଓଡ଼ିଶାରେ ଆବିର୍ଭାବ ହେଲେ, ସେମାନେ ନିଜର ବ୍ୟକ୍ତିଗତ ସ୍ୱାର୍ଥ ସାଧନ ନିମିତ୍ତ ଯେତେପ୍ରକାର କୁକାର୍ଯ୍ୟ କରାଯାଇପାରେ ତାହା କରିବାକୁ ଲାଗିଲେ। "ଏ ଦେଶରେ ଯେଉଁ କେତେଜଣ ଓଡ଼ିଆ ଜମିଦାର ଥିଲେ ସେମାନେ ହେଲେ ଆଧୁନିକ ଶିକ୍ଷା ବର୍ଜିତ, ବ୍ୟାପକ ଦୃଷ୍ଟିକୋଣ ରହିତ ଓ ପରିବର୍ତ୍ତିତ ପରିସ୍ଥିତିରେ ନିଜକୁ ଚଳାଇବାରେ ପୂର୍ଣ୍ଣ ଅସମର୍ଥ। କମ୍ପାନୀ ନିୟମ କାନୁନ୍‌ରେ ଦକ୍ଷ ଆଧୁନିକ ଜ୍ଞାନରେ ଅତୀବ ସମର୍ଥ ନୂତନ ଜମିଦାର ଶ୍ରେଣୀ (କମ୍ପାନୀର କର୍ମଚାରୀ ଓ ଅନ୍ୟାନ୍ୟ ଅନୁପସ୍ଥିତ ଅଣଓଡ଼ିଆ) ମଧ୍ୟ ଏ ଦେଶର ସ୍ୱାର୍ଥ ସଂରକ୍ଷଣରେ ଆଦୌ ତତ୍ପର ନ ଥିଲେ।"[୫]

ଊନବିଂଶ ଶତାବ୍ଦୀରେ ଓଡ଼ିଶାର ଅର୍ଥନୀତି ବିଶେଷ ଭାବରେ ଲବଣ ଉତ୍ପାଦନ ଦ୍ୱାରା ସମୃଦ୍ଧ ହୋଇଥିଲା। ମୋଗଲ ରାଜତ୍ୱ କାଳରେ ଯଦିଓ ଲବଣ ପ୍ରୋତ୍ପାନି ଏକ ବିଶିଷ୍ଟ ବୃତ୍ତି ଥିଲା, ତଥାପି ସେମାନେ ଏହି ଶିଳ୍ପକୁ ସମୃଦ୍ଧ କରିପାରି ନ ଥିଲେ। କିନ୍ତୁ ଇଂରେଜମାନେ ଓଡ଼ିଶାକୁ ଆସି ଏହାର ସମୃଦ୍ଧି ସଙ୍ଗେ ସଙ୍ଗେ ନିଜର ଏକଚାଟିଆ ବ୍ୟବସାୟ ଆରମ୍ଭ କରିଦେଲେ।[୬] ୧୮୦୪ ମସିହାରେ ଇଂରେଜମାନଙ୍କ ଏହି ଏକଚାଟିଆ ଲବଣ ବ୍ୟବସାୟ ଯୋଗୁଁ ଓଡ଼ିଶାର ଜନସାଧାରଣ ସେମାନଙ୍କ ଉପରେ ଭୀଷଣ ଭାବରେ ଅସନ୍ତୁଷ୍ଟ ହୋଇଯାଇଥିଲେ। ଯେଉଁମାନେ ଲୁଣ ମାରି ଜୀବିକା ଉପାର୍ଜନ କରୁଥିଲେ ଏହାଦ୍ୱାରା ସେହିମାନେହିଁ ବିଶେଷ ଭାବରେ କ୍ଷତିଗ୍ରସ୍ତ

ହୋଇଥିଲେ।[୭] ଇଂରେଜ ସରକାର ସେତେବେଳେ କୌଣସି ସହାନୁଭୂତି ପୂର୍ବକ ଲୋକମାନଙ୍କର ଆର୍ଥିକ ପରିସ୍ଥିତିକୁ ବିଚାର କଲେ ନାହିଁ। ବରଂ ଏହି ଲବଣ ଆଇନ୍ ଦ୍ୱାରା ମଣିଷର ନିତ୍ୟବ୍ୟବହାର୍ଯ୍ୟ ଲବଣ ଦାମ୍ ଛଅଗୁଣ ବଢ଼ାଇ ଦିଆଗଲା ଓ ଏହା ସହିତ ସରକାର ଏକ ଟଙ୍କାର ମୂଲ୍ୟକୁ ୬/୭ କାହାଣ କଉଡ଼ିର ମୂଲ୍ୟ ସହିତ ସମାନ କରିଦେଲେ। ଏହି ସମୟରେ "ଶାସନ କଳରେ ଥିବା କର୍ମଚାରୀ ବୃନ୍ଦଙ୍କର ବିବିଧ ଅପକର୍ମ ମଧ୍ୟ ଚରମ ଶୋଷଣ ରୂପେ ଦେଖା ଦେଇଥିଲା। ଜଣେ ଜଣେ ଆଲିଜୁମାନ, ମିରଜା ମୁଣ୍ଡି, ସାହିବଜୁମାନ, ମୌଲବି ସାଲେମ ଆଲିଙ୍କ ଜୀବନର ଇତିହାସ, ବ୍ୟବହାର ଓ ଚରିତ୍ର ତତ୍କାଳୀନ ବିଚାରାଳୟରେ ସମସ୍ତ ଦୋଷ ଦୁର୍ବଳତାକୁ ଲୋକ ଲୋଚନକୁ ଆଣିଦେଇଥିଲା।"[୮] ବିଚାରାଳୟରେ ମଧ୍ୟ ଉତ୍କୋଚର ପ୍ରାବଲ୍ୟ ଯୋଗୁଁ ସାଧାରଣ ଜନତା ନିରପେକ୍ଷ ବିଚାର ପାଇବାରେ ସମର୍ଥ ହେଉ ନ ଥିବାରୁ ସେଠାକୁ ଯିବାକୁ ପସନ୍ଦ କରୁ ନ ଥିଲେ। ଶାସନନୀତିର ଚରମ ଅବହେଳା ଯୋଗୁଁ ଏ ଜାତିର ଜୀବନ କ୍ରମଶଃ କରୁଣମୟ ହୋଇଯାଇଥିଲା।

ପାଇକ ବିଦ୍ରୋହ (୧୮୧୭) ଯୋଗୁଁ ଶାସକମାନେ ଦୁର୍ଦ୍ଧର୍ଷ ଓଡ଼ିଆମାନଙ୍କର ମନୋବଳ ଭାଙ୍ଗି ଦେବାପାଇଁ ଆପ୍ରାଣ ଚେଷ୍ଟା କଲେ; ଯାହାଦ୍ୱାରା ସେମାନେ ବିଭିନ୍ନ ଉପାୟରେ ଓଡ଼ିଶାବାସୀଙ୍କୁ ହଇରାଣ କରିବାକୁ ଲାଗିଲେ। ତାହାଙ୍କ ସହିତ ସେତେବେଳେ ଯୋଗ ଦେଇଥିଲେ ଶିକ୍ଷିତ ବଙ୍ଗାଳୀମାନେ, ଯେଉଁମାନେ ନିଜର ସ୍ୱାର୍ଥ ସାଧନ ନିମିତ୍ତ ଓଡ଼ିଶାବାସୀଙ୍କୁ ତିଳତିଳ ହତ୍ୟା କରିବାକୁ ଦ୍ୱିଧା ପ୍ରକାଶ କରି ନ ଥିଲେ। ଜମିଜମା ବନ୍ଦୋବସ୍ତ ମଧ୍ୟ ଓଡ଼ିଶାର ଆର୍ଥନୀତିକ ପରିସ୍ଥିତିକୁ ସଙ୍କଟାପନ୍ନ କରିଥିଲା। ଜମି କ୍ରମଶଃ ଅନେକ କ୍ଷୁଦ୍ର ଅଂଶରେ ବିଭକ୍ତ ହୋଇଗଲା। ସହରବାସୀ ଏହାର ଫାଇଦା ଉଠାଇ ଜମିଦାର ହୋଇଗଲେ। ଭେଦଭାବ ନୀତି ଯୋଗୁଁ ଆମର ସାମାଜିକ ସମସ୍ୟା ମଧ୍ୟ ବଢ଼ିଗଲା। ପୂର୍ବରୁ ଗ୍ରାମର ଜମି ଉପରେ ସମସ୍ତଙ୍କର ସମାନ ଅଧିକାର ଥିଲା। କୃଷକ କ୍ଷେତରେ କାର୍ଯ୍ୟ କରୁଥିଲା। କୁମ୍ଭାର, ଧୋବା, ବଢ଼େଇ ଆଦି ଗ୍ରାମର ଅନ୍ୟାନ୍ୟ ଆବଶ୍ୟକତା ପୂରଣ କରୁଥିଲେ। ବୃତ୍ତି ଥିଲା ଜାତି ଅନୁସାରୀ। ଏକ ଜାତିର ବ୍ୟକ୍ତି ଅନ୍ୟ ଜାତିର ବୃତ୍ତି କରୁ ନ ଥିଲା। ନଗର ଓ ଗ୍ରାମ ପରସ୍ପର କାର୍ଯ୍ୟାନୁଯାୟୀ ଭିନ୍ନ ଥିଲେ। ଲର୍ଡ଼ କର୍ଣ୍ଣୱାଲିସ୍ ୧୮୨୦ ମସିହାରେ ଜମିଦାରୀ ପ୍ରଥା କାର୍ଯ୍ୟକାରୀ କରିବା ଦ୍ୱାରା କ୍ଷେତ ଉପରେ ବ୍ୟକ୍ତିଗତ ମାଲିକାନା ସ୍ୱତ୍ୱ ଆରୋପ ଯୋଗୁଁ କ୍ଷେତ କ୍ରମଶଃ ଏକ ବ୍ୟବସାୟରେ ପରିଣତ ହୋଇଗଲା। ପୂର୍ବରୁ କୃଷିଜାତ ଦ୍ରବ୍ୟ ଗ୍ରାମ ମଧ୍ୟରେ ରହୁଥିଲା। କିନ୍ତୁ ବର୍ତ୍ତମାନ ତାହା ବଜାରକୁ ବିକ୍ରୟ ହେବାକୁ ଆସିଲା।

ସରଳ ଗ୍ରାମ ବ୍ୟବସ୍ଥାରେ ପାରସ୍ପରିକ ଝଗଡ଼ା ପଞ୍ଚାୟତ ମାଧ୍ୟମରେ ସମାଧାନ କରାଯାଉଥିଲା। ଇଂରେଜୀ ଶାସନରେ ପଞ୍ଚାୟତର ସ୍ଥାନ ଗ୍ରହଣ କଲା ବିଚାରାଳୟ। ସରଳ ମଫସଲୀ ଅଧିବାସୀ ବିଚାର ପାଇଁ ସହରର କଚେରିକୁ ଆସିଲା। ଇଂରେଜୀ ଶିକ୍ଷିତମାନେ ସେମାନଙ୍କଠାରୁ ଅର୍ଥ ଲାଞ୍ଚ ନେଇ ଧପ୍‌ପା ଦେଲେ।[୯] ଏହିପରି ନୂତନ ସାମାଜିକ ବ୍ୟବସ୍ଥାଦ୍ୱାରା ଜନସାଧାରଣ କ୍ରମଶଃ ଜାତିର ଜାତୀୟ ସ୍ରୋତରୁ ବିଚ୍ଛିନ୍ନ ହୋଇଯିବାକୁ ଲାଗିଲେ। ଅବଶ୍ୟ ଇଂରେଜମାନଙ୍କର ଏଇଟାହିଁ ଥିଲା ପ୍ରଥମ ଉଦ୍ଦେଶ୍ୟ। ସେମାନେ ନିଜର ଫାଇଦା ଉଠାଇବା ନିମିତ୍ତ ଜାତି ଜାତି ମଧ୍ୟରେ ଭେଦଭାବର ପ୍ରାଚୀର ଠିଆ କରାଇଲେ, ସାମାଜିକ ବ୍ୟବସ୍ଥାରେ ନବୀକରଣ କଲେ। ଏ ଜାତିକୁ ଇଂରେଜ ଶାସନର ଗୋଡ଼ାଣିଆ କରିବାକୁ ପ୍ରବର୍ତ୍ତାଇଲେ। ଏହିପରି ଇଂରେଜମାନେ ନୂତନ ଚିନ୍ତାଚେତନାକୁ ଆଣି ଓଡ଼ିଶାର ସାମାଜିକ ବ୍ୟବସ୍ଥାକୁ କ୍ରମଶଃ ପଙ୍ଗୁ କରାଇଦେବାକୁ ଲାଗିଲେ।

## ରାଜନୀତିକ ଅବସ୍ଥା

ବଙ୍ଗ ଅଧିକାରର ଯଥେଷ୍ଟ ପରବର୍ତ୍ତୀ ସମୟରେ ଓଡ଼ିଶା ଇଂରେଜ ଶାସନାଧୀନ ହୋଇଥିଲା। ଓଡ଼ିଶାର ବାସ୍ତବ ଅବସ୍ଥାର ଅନୁଧାନ ନ କରି ଅର୍ଦ୍ଧ ଶତାବ୍ଦୀ ଧରି ବଙ୍ଗ ଦେଶରେ ପ୍ରଚଳିତ ନିୟମ କାନୁନ୍‌କୁ ଓଡ଼ିଶାରେ ଇଂରେଜ ଶାସକମାନେ ଅବାଧରେ ପ୍ରୟୋଗ କରିବାକୁ ଲାଗିଲେ। ଇଂରାଜୀ ଶିକ୍ଷାବଞ୍ଚିତ ଅନଭିଜ୍ଞ ଓଡ଼ିଆମାନଙ୍କୁ ଇଂରେଜ ଶାସନ କାଳରେ ସ୍ଥାନ ଦିଆଯାଉ ନ ଥିବାରୁ ଓଡ଼ିଶାର ସ୍ୱାର୍ଥବିରୋଧୀ ବଙ୍ଗାଳୀମାନେ ଓଡ଼ିଶାର ରାଜନୀତିକ ଇତିହାସରେ ଗୁରୁତ୍ୱପୂର୍ଣ୍ଣ ଅଂଶ ଗ୍ରହଣ କରିଥିଲେ।

ଜମିଦାରୀର ବିଲୋପ ସାଧନ ଯୋଗୁଁ ବକ୍ସି ଜଗବନ୍ଧୁ ବିଦ୍ୟାଧର ମହାପାତ୍ର ଭ୍ରମରବର ରାୟ ଉତ୍‌କ୍ଷିପ୍ତ ହୋଇ ପାଇକମାନଙ୍କୁ ଏକଜୁଟ କରି ୧୮୧୭ ମସିହାରେ ପାଇକ ବିଦ୍ରୋହ ଆରମ୍ଭ କରିଥିଲେ। "ମେଜର ଫ୍ଲେଚର ନାମକ ଜଣେ ଇଂରେଜ ଶାସନକର୍ତ୍ତା ପାଇକମାନଙ୍କ ଜାଗିରୀ ଉଠେଇ ଦେବାରୁ, ସେମାନେ ଏହି ଉତ୍ତେଜନାରେ ସରକାରଙ୍କ ବିରୋଧରେ ବିଦ୍ରୋହ ଘୋଷଣା କରିଥିଲେ। ଏହା ୧୮୧୭ରୁ ୧୮୫୭ ପର୍ଯ୍ୟନ୍ତ ଲାଗି ରହିଥିଲା। ସିପାହୀବିଦ୍ରୋହର ବାତାବରଣରେ ସମ୍ବଲପୁର ଓ ସିଂହଭୂମି ଅଞ୍ଚଳରେ ବିଦ୍ରୋହ ଦେଖା ଦେଇଥିଲା।"[୧୦] ଖାଦ୍ୟାଭାବ, ବଙ୍ଗାଳୀମାନଙ୍କ ଓଡ଼ିଶା ରାଜନୀତିରେ ପ୍ରତ୍ୟକ୍ଷ ଅଂଶ ଗ୍ରହଣ ଓ ଓଡ଼ିଶାର ଚଳଣିକୁ ତୀବ୍ର ସମାଲୋଚନା ପାଇକ ବିଦ୍ରୋହର ଅନ୍ୟତମ କାରଣ ମଧ୍ୟ।[୧୧] ଓଡ଼ିଆମାନେ ରକ୍ଷଣଶୀଳ ହୋଇଥିବାରୁ ପାଶ୍ଚାତ୍ୟ ଶିକ୍ଷାପ୍ରତି ସେମାନଙ୍କର ଏକ ପ୍ରକାର ଘୃଣାଭାବ ରହିଥିଲା। ଏହାର ସୁଯୋଗ

ନେଇ ବଙ୍ଗାଳୀମାନେ ବିଭିନ୍ନ ସରକାରୀ କାର୍ଯ୍ୟରେ ନିଯୁକ୍ତି ପାଇ ଓଡ଼ିଶା ଆସିବା ସଙ୍ଗେ ସଙ୍ଗେ ଓଡ଼ିଶାରେ ସ୍ଥାୟୀ ବାସିନ୍ଦାରୂପେ ବସବାସ କରିବାକୁ ଲାଗିଲେ।[୧୨]

ତତ୍‌କାଳୀନ ଓଡ଼ିଶାର ଭୌଗୋଳିକ ପରିସ୍ଥିତିକୁ ଲକ୍ଷ୍ୟ କଲେ ଇଂରେଜମାନଙ୍କର ଆଉ ଏକ ତ୍ରୁଟି ପରିଲକ୍ଷିତ ହୋଇଥାଏ। ସେମାନେ ବିଭିନ୍ନ ସଂସ୍ଥା ଗଠନ କରି ତା'ର ଅଧୀନରେ ଓଡ଼ିଶାର ବିଭିନ୍ନ ରାଜ୍ୟକୁ ଶାସନ କରିବାକୁ ମନସ୍ଥ କରିଥିବାରୁ ଖାଣ୍ଟି ଓଡ଼ିଆ ଭାଷୀ ରାଜ୍ୟମାନଙ୍କୁ ଅନ୍ୟ ପ୍ରଦେଶ ସହିତ ମିଶ୍ରଣ କରିଦେଇ ଥିଲେ। ସେଥିପାଇଁ ଓଡ଼ିଶାର ଆୟତନ ଯଥେଷ୍ଟ ସଂକୁଚିତ ହୋଇ ଯାଇଥିଲା। ୧୮୨୭ ପରେ ଓଡ଼ିଶାକୁ ଶାସନ କରିବା ନିମିତ୍ତ ଏକ ନିର୍ଦ୍ଦିଷ୍ଟ ଶାସନଗତ ପଦକ୍ଷେପ ନିଆଯାଇଥିଲା। ସେ ପର୍ଯ୍ୟନ୍ତ ମଧ୍ୟ ଓଡ଼ିଆ ଭାଷୀ ଅଞ୍ଚଳ ସମ୍ବଲପୁର, ସୋନ୍‌ପୁର ଓ ପାଟଣା, କେନ୍ଦ୍ରୀୟ ପ୍ରଦେଶ ଛତିଶଗଡ଼ ଶାସନାଧୀନ କରି ରଖାଯାଇଥିଲା।[୧୩] ଦୀର୍ଘ ଦିନ ପର୍ଯ୍ୟନ୍ତ ଓଡ଼ିଶାର ଭୌଗୋଳିକ ସ୍ଥିତି ଏକ ବିବଦମାନ ପରିସ୍ଥିତି ଦେଇ ଗତି କରିଥିଲା।

ଓଡ଼ିଶାରେ ପରିଚାଳନାଗତ ତ୍ରୁଟି ଦୀର୍ଘ ଦିନ ଧରି ଲାଗି ରହିଥିଲା। ରାଜ୍ୟରେ ଆତଙ୍କରାଜର ପରିସମାପ୍ତି ନିମିତ୍ତ ୧୮୩୯ ମସିହାରେ ଓଡ଼ିଶାକୁ ସୁପରିଚାଳନା ପାଇଁ ଏକ ପଦକ୍ଷେପ ନିଆଯାଇଥିଲେ ମଧ୍ୟ ତାହା ସ୍ୱୀକୃତି ଲାଭ କରି ନ ପାରିବାରୁ ଆଞ୍ଚଳିକ ରାଜା ବା ଜମିଦାରମାନଙ୍କୁ ସେମାନଙ୍କ ଅଞ୍ଚଳର ଅଧିବାସୀମାନଙ୍କର ନିରାପତ୍ତା ଦାୟିତ୍ୱ ଅର୍ପଣ କରାଯାଇଥିଲା। ଏକ ନିର୍ଦ୍ଦିଷ୍ଟ ଯୋଜନାର କାର୍ଯ୍ୟକ୍ରମ ହସ୍ତକୁ ନେଇ ଠିକ୍ ରୂପେ ପରିଚାଳନା କରିବାର ଦକ୍ଷତା ଓଡ଼ିଶା ଅଧିକାର କରିବାର ପ୍ରାଥମିକ ପର୍ଯ୍ୟାୟରେ ସେମାନେ ହରାଇ ବସିଥିବାରୁ ତତ୍କାଳୀନ ଓଡ଼ିଶାର ଶାସନ ନୀତି ବ୍ୟର୍ଥତାରେ ପର୍ଯ୍ୟବସିତ ହୋଇପଡ଼ିଥିଲା।

ଇଂରେଜମାନଙ୍କ ତ୍ରୁଟିପୂର୍ଣ୍ଣ ଭୂ-ରାଜସ୍ୱନୀତି ସେମାନଙ୍କ ରାଜନୀତିକ ବିଫଳତାର ଅନ୍ୟତମ କାରଣ ରୂପେ ନିର୍ଦ୍ଦେଶ କରାଯାଇପାରେ। ପ୍ରଥମେ ସେମାନେ ଓଡ଼ିଶାରେ ଚିରସ୍ଥାୟୀ ବନ୍ଦୋବସ୍ତ କରିବାକୁ ସମ୍ମତ ନ ଥିଲେ। ପୂର୍ବରୁ ରାଜା ବା ମରହଟ୍ଟାମାନେ ଖଜଣା ସ୍ୱରୂପ ଉତ୍ପାଦିତ ଶସ୍ୟର ଏକ ଅଂଶ ନେଉଥିଲେ। କିନ୍ତୁ ଇଂରେଜମାନେ ଫସଲର ଅଂଶ ନ ନେଇ ରୁପା ଟଙ୍କା ଆକାରରେ ଖଜଣା ଆଦାୟ କଲେ। ଯେଉଁମାନେ ଅଧିକ କର ଆଦାୟର ପ୍ରତିଶ୍ରୁତି ଦେଲେ ସେମାନଙ୍କୁ ଜମିଦାରୀ ପଟ୍ଟା ଦିଆଗଲା। ଅଧିକ କର ପାଇବାକୁ ଜମିଦାରୀ କଲିକତାରେ ବାରମ୍ବାର ନିଲାମ ହେବାକୁ ଲାଗିଲା।

ଚିଲିକା ଓ ବାଲେଶ୍ୱରର ସମୁଦ୍ର କୂଳରୁ ବହୁ ପରିମାଣରେ ଲୁଣ ମରା ହେଉଥିବାରୁ ଇଂରେଜମାନେ ଲୋଭର ବଶବର୍ତ୍ତୀ ହୋଇ ଲୁଣ ମାରିବାର ଏକଚାଟିଆ ଅଧିକାର ନିଜ ହସ୍ତକୁ ନେଲେ। ଏହାଦ୍ୱାରା ଦରିଦ୍ର ଚାଷୀ ପରିବାର ଅଧିକ ଅସୁବିଧାର ସମ୍ମୁଖୀନ ହେବା ସଙ୍ଗେ ସଙ୍ଗେ ମହାନଦୀର ବାଣିଜ୍ୟପଥ କ୍ରମଶଃ ବନ୍ଦହୋଇ ଯାଇଥିଲା। ଏ ସମ୍ପର୍କରେ ହଣ୍ଟରସାହେବ ଲେଖିଛନ୍ତି – "ଆମର ଓଡ଼ିଶାରେ ଲୁଣ ମରାଦ୍ୱାରା ବାସ୍ତବରେ ଆମେ ମହାନଦୀର ଜଳପଥକୁ ସମ୍ପୂର୍ଣ୍ଣ ରୂପେ ଅବରୋଧ କରିଦେଇଛୁ।[୧୪] ୧୮୬୬ ମସିହାରେ ଦେଖାଦେଇଥିବା ପ୍ରଳୟଙ୍କରୀ ନ'ଅଙ୍କ ଦୁର୍ଭିକ୍ଷ ପାଇଁ ଏହି ଲବଣ ଆଇନ କେତେକ ପରିମାଣରେ ଦାୟୀ। କାରଣ ଯେଉଁମାନେ ଲବଣ ଉତ୍ପାଦନ କରି ଜୀବିକା ଅର୍ଜନ କରୁଥିଲେ, ଲବଣ ଉତ୍ପାଦନ ବନ୍ଦ ହେବା ଦ୍ୱାରା ପ୍ରଥମେ ସେହିମାନେ ହିଁ ଦୁର୍ଭିକ୍ଷର ଶିକାର ହୋଇଥିଲେ। ବିଶେଷ ଭାବରେ ମାଲୁଦ ଓ ପାରିକୁଦର ଲବଣ ଉତ୍ପାଦନକାରୀମାନେ ପ୍ରଥମେ ଉପବାସରେ ମୃତ୍ୟୁବରଣ କଲେ ଓ ଅନ୍ୟ କେହି ଗଛମୂଳ ଖାଇ ଜୀବନ ଧାରଣ କରିଥିଲେ।[୧୫] ଅନ୍ୟଜଣେ ଆଲୋଚକ ଅଫିସରମାନଙ୍କର ଅପାରଗତା, ଜମିଜମା ବନ୍ଦୋବସ୍ତ ୧୮୬୬ ମସିହାରେ ସଂଘଟିତ ନ'ଅଙ୍କ ଦୁର୍ଭିକ୍ଷ ପାଇଁ କେତେକ ପରିମାଣରେ ଦାୟୀ ବୋଲି ମତ ପ୍ରଦାନ କରିଛନ୍ତି।[୧୬]

ଊନବିଂଶ ଶତକର ଶେଷ ପର୍ଯ୍ୟନ୍ତ ରାଜନୀତିକ ଅସ୍ଥିରତା ଓଡ଼ିଶାବାସୀଙ୍କ ଆର୍ଥିକ ମେରୁଦଣ୍ଡ ଭାଙ୍ଗି ଦେଇଥିଲା। ଅନଭିଜ୍ଞ ଅଫିସର ଓ ବଙ୍ଗାଳୀ କର୍ମଚାରୀମାନଙ୍କର ବ୍ୟକ୍ତିଗତ ସ୍ୱାର୍ଥ ସାଧନର ଲାଳସା ଓଡ଼ିଶାବାସୀଙ୍କୁ ଅସ୍ଥିର ତଥା ମ୍ରିୟମାଣ କରି ଦେଇଥିଲା। ପୁଣି ବିଖଣ୍ଡିତ ଓଡ଼ିଶାର ପୁନଃବିନ୍ୟାସ ସେ ପର୍ଯ୍ୟନ୍ତ ଠିକ୍ ରୂପେ ହୋଇ ପାରି ନ ଥିବାରୁ ସୀମା ବିବାଦ ନେଇ ଦୀର୍ଘଦିନ ପର୍ଯ୍ୟନ୍ତ ଓଡ଼ିଶା ଏକ ଅନିଶ୍ଚିତ ପଥ ମଧ୍ୟଦେଇ ଗତି କରିଥିଲା। ସମାଲୋଚକ ବୈଷ୍ଣବ ଚରଣ ବଳ ମତ ପ୍ରଦାନ କରି କୁହନ୍ତି – "ରାଜନୀତିକ କ୍ଷେତ୍ରରେ ଉନ୍ନତ ବଙ୍ଗ, ବିହାର ସହିତ ମିଶିଥିବାରୁ ଓଡ଼ିଶାରେ ସ୍ୱତନ୍ତ୍ରତାର ବିକାଶ ହୋଇ ନ ଥିଲା। ତେଣୁ ୧୮୦୩ରୁ ୧୯୦୩ ଯାଏ ଓଡ଼ିଶାରେ ବିଶେଷ ଅଗ୍ରଗତି ହୋଇ ନ ଥିଲା। ବରଂ ଇତିହାସ ପ୍ରସିଦ୍ଧ କଳିଙ୍ଗ ସାମ୍ରାଜ୍ୟ ବା ସ୍ୱାଧୀନ ଗଜପତି ବଂଶର ଦାୟଦମାନେ ନିଜର ଅସ୍ତିତ୍ୱ ପ୍ରତି ମଧ୍ୟ ସନ୍ଦେହ କରୁଥିଲେ।"[୧୭] ତେଣୁ ଊନବିଂଶ ଶତାବ୍ଦୀର ଓଡ଼ିଶାର ରାଜନୀତି ଓ ଜୀବନ ପ୍ରଣାଳୀ ମାତ୍ର କେତେକ ମୁଷ୍ଟିମେୟ ବ୍ୟକ୍ତିଙ୍କ ହସ୍ତରେ ନିବଦ୍ଧ ଥିବାରୁ ଏ ସମୟରେ ଓଡ଼ିଶାର ଏକ ଗୌରବୋଜ୍ଜ୍ୱଳ ଚିତ୍ର ପାଇବା କଷ୍ଟସାଧ। ସେତେବେଳେ ଓଡ଼ିଶାବାସୀ ଜୀବନକୁ ଦେଖିବାର ସୁଯୋଗ ପାଇ ନ ଥିଲେ କିମ୍ବା ନିଜକୁ ବିଶ୍ଳେଷଣ କରିବାର କ୍ଷମତା ତାଙ୍କର

ନ ଥିଲା। ଏଣୁ ଊନବିଂଶ ଶତାବ୍ଦୀ ଓଡ଼ିଶା ଇତିହାସର ଏକ ଅନ୍ଧାରୀମୂଳକର ଚିତ୍ର ପ୍ରଦାନ କରିଥାଏ।

## ସାଂସ୍କୃତିକ ଓ ଧାର୍ମିକ ଅବସ୍ଥା

ଓଡ଼ିଶା ଇଂରେଜ ଶାସନାଧୀନ ହେବାବେଳେ ଓଡ଼ିଶାର ଧର୍ମ ଓ ସଂସ୍କୃତି ସମ୍ପର୍କରେ ଇଂରେଜମାନେ ସମ୍ପୂର୍ଣ୍ଣ ଅନଭିଜ୍ଞ ଥିଲେ। ଓଡ଼ିଶାର ଧର୍ମ ଓ ସଂସ୍କୃତିର ବିକାଶ ସାଧନରେ ସେମାନଙ୍କର କୌଣସି ଉଲ୍ଲେଖଯୋଗ୍ୟ ଭୂମିକା ନାହିଁ କହିଲେ ଦୋଷଯୁକ୍ତ ହେବ ନାହିଁ। ବରଂ ମିସ୍‌ନାରୀମାନେ ଓଡ଼ିଶାରେ ଖ୍ରୀଷ୍ଟଧର୍ମର ପ୍ରଚାର ଓ ପ୍ରସାର ପାଇଁ ଓଡ଼ିଶାର ଆରାଧ୍ୟ ଦେବତା ଶ୍ରୀ ଜଗନ୍ନାଥଙ୍କ ସମ୍ପର୍କରେ ଅତ୍ୟନ୍ତ ତିକ୍ତ ମନ୍ତବ୍ୟ ପ୍ରଦାନ କରିଛନ୍ତି। ଆଧୁନିକ ଶିକ୍ଷା ମାଧ୍ୟମରେ ଓଡ଼ିଶାରେ ଖ୍ରୀଷ୍ଟଧର୍ମକୁ ପ୍ରଚାର କରିବା ଉଦ୍ଦେଶ୍ୟ ନେଇ ସେମାନେ ହିନ୍ଦୁଧର୍ମ ପ୍ରତି ତୀବ୍ର ବ୍ୟଙ୍ଗୋକ୍ତି ପ୍ରକାଶ କରୁଥିଲେ।

ମିସ୍‌ନାରୀମାନେ ପ୍ରତିମାପୂଜା ବିରୋଧୀ ଥିବାରୁ ଓଡ଼ିଶାର ଧର୍ମ, ସଂସ୍କୃତି ଓ ଜୀବନଧାରାର ପ୍ରାଣକେନ୍ଦ୍ର ଜଗନ୍ନାଥଙ୍କୁ ଅଶ୍ଳୀଳ, ଅପବିତ୍ର ଓ ଘୃଣ୍ୟ କହି ପୁରୀକୁ ଏକ ପ୍ରତିମା ପେଣ୍ଠ ଭାବରେ ଅଭିହିତ କରିବାକୁ ଟିକେ ହେଲେ କୁଣ୍ଠା ପ୍ରକାଶ କରି ନାହାନ୍ତି।[୧୮] ଜଗନ୍ନାଥଙ୍କ ବିଭିନ୍ନ ଭୋଗ, ମହାପ୍ରସାଦ ତଥା ଦେବନର୍ତ୍ତକୀ ସେମାନଙ୍କ ଚକ୍ଷୁରେ କିମ୍ଭୂତ କିମାକାର ରୂପରେ ପ୍ରକାଶ ଲାଭ କରିଥିଲେ। ତେଣୁ ସେମାନେ ଏହି ଦେବତା ଓ ପୀଠକୁ ସମ୍ପୂର୍ଣ୍ଣ ଧ୍ୱଂସ କରିଦେବାକୁ ଚେଷ୍ଟା ମଧ୍ୟ କରିଥିଲେ। "ସଟନ୍ ମଧ୍ୟ କୋଣାର୍କ ମନ୍ଦିରର ସୂକ୍ଷ୍ମାତିସୂକ୍ଷ୍ମ ଚାରୁକଳାରେ ବିସ୍ମୟ ବିମୁଗ୍ଧ ହୋଇ ଯାଇଥିଲେହେଁ ଅଚିନ୍ତନୀୟ ପାଶବ ମୂର୍ତ୍ତି ଓ ଅବର୍ଣ୍ଣନୀୟ ଅଶ୍ଳୀଳ ଚିତ୍ର ଚିତ୍ରଣରେ ମଣିଷ ହାତର ଅବିସ୍ମରଣୀୟ କଳାପାଟବ ଓ ଅର୍ଥର ଅସଦୁପଯୋଗିତା ନେଇ ସେ ଅତିଶୟ କ୍ଷୋଭ ପ୍ରକାଶ କରିଥିଲେ। ରଥଯାତ୍ରା ବେଳେ ଦଇତାମାନଙ୍କର କାମୋଦ୍ଦୀପକ ଅଭିନୟ ଓ 'ଅଶ୍ଳୀଳ' ଗୀତ ଗାନ ଏବଂ ଅନ୍ୟ ଲୋକମାନଙ୍କର ସେଥିରେ ଅପୂର୍ବ ଆନନ୍ଦ ଉପଭୋଗ, ସଟନ୍‌ସାହେବଙ୍କୁ ମଧ୍ୟ ଚମକିତ ଓ ବିଚଳିତ କରି ଦେଇଥିଲା। 'ଶିବ ମୂର୍ତ୍ତିର ଗଠନ ପରିପାଟୀ', ଜଗନ୍ନାଥ ମନ୍ଦିର ଗାତ୍ରରେ ଥିବା କାରୁକାର୍ଯ୍ୟ ପରିପୂର୍ଣ୍ଣ ଅପବିତ୍ର ଚିତ୍ର, ଦୁର୍ଗାପୂଜାର ଅଶ୍ଳୀଳତା, କେତେକ ସ୍ନାନଘାଟ ଓ ମନ୍ଦିରରେ ଥିବା 'ଜଘନ୍ୟ' ମୂର୍ତ୍ତି ମଧ୍ୟ ଏଇ ମିସ୍‌ନାରୀମାନଙ୍କୁ ଓଡ଼ିଆଜାତିର ନୈତିକ ଅଧଃପତନର କାରଣ ରୂପେ ଦେଖାଦେଇଥିଲେ।"[୧୯] କେବଳ ସେତିକି ନୁହେଁ ଓଡ଼ିଶାର ପ୍ରାଥମିକ ଶିକ୍ଷା ପ୍ରସାରର ଭାର ମିସ୍‌ନାରୀମାନଙ୍କ ହସ୍ତରେ ନ୍ୟସ୍ତ ଥିବାରୁ ସେମାନେ ହିନ୍ଦୁଧର୍ମ ଅପେକ୍ଷା ଖ୍ରୀଷ୍ଟିଆନ୍ ଧର୍ମର ଉତ୍‌ଥାନ ପାଇଁ ଅଧିକ ତତ୍ପର ଥିଲେ। ଓଡ଼ିଶାର ଜଗନ୍ନାଥ

ମନ୍ଦିର ଓ ଜଗନ୍ନାଥଙ୍କୁ ସେମାନେ ହୀନ ଚକ୍ଷୁରେ ଦେଖୁଥିଲେ। ଜଗନ୍ନାଥଙ୍କ ପ୍ରତି ଥିବା ଘୃଣାଭାବର ପ୍ରକାଶ ପାଇଁ ଓଡ଼ିଶାରେ କାଗଜ ନ ଥିବାରୁ ସେମାନେ ପ୍ରଥମେ କାଗଜ ଓ ପ୍ରିଣ୍ଟିଂ ପ୍ରେସ୍ ମଧ୍ୟ ଆଣିଥିଲେ।(୨୦)

ଓଡ଼ିଶାର ପାରମ୍ପରିକ ଆଚାର ବ୍ୟବହାର ଓ ଧର୍ମ ଦର୍ଶନ ଉପରେ ସେମାନେ ଏହିପରି ବାରମ୍ବାର ଆକ୍ରମଣ କରିବାର ଉଦ୍ଦେଶ୍ୟ ଥିଲା ଖ୍ରୀଷ୍ଟଧର୍ମର ପ୍ରଚାର। ସେଥିପାଇଁ ଅତି କ୍ରୂର ଭାବରେ ହିନ୍ଦୁଧର୍ମକୁ ସେମାନେ ସମାଲୋଚନା କରିବାକୁ ତିଳେମାତ୍ର କୁଣ୍ଠା ପ୍ରକାଶ କରୁ ନଥିଲେ। ଧର୍ମ ସାଧନ ନାମରେ ଶାରୀରିକ କୃଚ୍ଛ ସାଧନା, ସାକାର ଉପାସନା ବିରୋଧରେ ମଧ୍ୟ ସେମାନେ ସ୍ୱର ଉତ୍ତୋଳନ କରିଥିଲେ। ଏହା ସହିତ ଜଗନ୍ନାଥଙ୍କୁ ଦର୍ଶନ କରିବାକୁ ଆସୁଥିବା ଯାତ୍ରୀମାନଙ୍କଠାରୁ ଯାତ୍ରୀକର ଆଦାୟ କରୁଥିଲେ। କେତେକ ସ୍ଥଳରେ ସରକାର ମନ୍ଦିର ପରିଚାଳନା କ୍ଷେତ୍ରରେ ପ୍ରତ୍ୟକ୍ଷ ଭାବରେ ଅଂଶ ଗ୍ରହଣ କରୁଥିବାରୁ ସାମୟିକ ଆନ୍ଦୋଳନର ସୂତ୍ରପାତ ମଧ୍ୟ ହୋଇଥିଲା। ମନ୍ଦିର ପରିଚାଳନା ନିମିତ୍ତ ସରକାରଙ୍କ ତରଫରୁ ଯେଉଁ ଆର୍ଥିକ ସାହାଯ୍ୟ ମିଳୁଥିଲା ତାକୁ ମଧ୍ୟ ବନ୍ଦ କରି ଦେଇଥିଲେ। ପ୍ରତିମାପୂଜା ସମସ୍ତ ପ୍ରକାର ଭ୍ରଷ୍ଟାଚାରର କାରଣ – ଏହି ମତ ପ୍ରଚାର କରି ମିସ୍‌ନାରୀମାନେ ଓଡ଼ିଆମାନଙ୍କର ଆରାଧ୍ୟ ଦେବତା ଜଗନ୍ନାଥଙ୍କୁ ବିଭିନ୍ନ ଦିଗରୁ ସଣ୍ଟୁଆଶି ଆକ୍ରମଣ କରିବାକୁ ଲାଗିଲେ। ରକ୍ଷଣଶୀଳ ଓଡ଼ିଆ ଜାତି ନିଜର ଆରାଧ୍ୟ ଦେବତାଙ୍କ ପ୍ରତି ଏପରି ଆକ୍ରମଣର ତୀବ୍ର ପ୍ରତିବାଦ ଜଣାଇଥିଲେ ଓ ଇଂରେଜମାନଙ୍କର ଏହି ପ୍ରକାର ମନୋବୃତ୍ତି ଯୋଗୁଁ ସେମାନେ ମିସ୍‌ନାରୀ ତଥା ଇଂରେଜମାନଙ୍କଠାରୁ ଯଥେଷ୍ଟ ବ୍ୟବଧାନ ରଖି ଚଳିବାକୁ ଶ୍ରେୟସ୍କର ମଣିଥିଲେ। ତେଣୁ ପ୍ରାଥମିକ ସ୍ତରରେ ସେମାନଙ୍କ ଦ୍ୱାରା ପ୍ରଚାରିତ ଶିକ୍ଷାବ୍ୟବସ୍ଥା ଏବଂ ଧର୍ମ ମତବାଦକୁ ଓଡ଼ିଆମାନେ ଗ୍ରହଣ କରିବାକୁ ପରାଙ୍‌ମୁଖ ହୋଇଥିଲେ।

## ଛାପାକଳ ପ୍ରତିଷ୍ଠା

ସାହିତ୍ୟ ପ୍ରସାରର ଶ୍ରେଷ୍ଠ ମାଧ୍ୟମ ଛାପାକଳ ଓ ପତ୍ରପତ୍ରିକା। ପର୍ତ୍ତୁଗୀଜମାନେ ୧୫୫୦ ମସିହାରେ ଧର୍ମ ସମ୍ପର୍କୀୟ ପୁସ୍ତକ ଛାପିବା ନିମିତ୍ତ ଦୁଇଟି ମୁଦ୍ରଣ ଯନ୍ତ୍ର ଭାରତକୁ ଆଣିଥିଲେ। ୧୬୭୪ ମସିହାରେ ଇଷ୍ଟଇଣ୍ଡିଆ କମ୍ପାନୀ ଦ୍ୱାରା ବମ୍ବେରେ ମୁଦ୍ରଣ କାର୍ଯ୍ୟ ଆରମ୍ଭ ହେଲା। ଅଷ୍ଟାଦଶ ଶତାବ୍ଦୀରେ ମାନ୍ଦ୍ରାଜ, କଲିକତା, ହୁଗୁଳୀ, ବମ୍ବେ ଆଦି ସ୍ଥାନମାନଙ୍କରେ ଛାପାକଳ ସ୍ଥାପିତ ହେଲା। ଇଂରେଜ ଓ ମିଶନାରୀମାନେ ଉକ୍ତ ଛାପାଖାନାମାନଙ୍କରେ ସମାଚାର ପତ୍ର ପ୍ରକାଶ କରି ବଣ୍ଟନ କରୁଥିଲେ।(୨୧) ୧୭୯୭ ଖ୍ରୀଷ୍ଟାବ୍ଦରେ ଓଡ଼ିଶାର ପଡ଼ୋଶୀ ରାଜ୍ୟ ବଙ୍ଗଦେଶରେ ମୁଦ୍ରାଯନ୍ତ୍ର ପ୍ରତିଷ୍ଠା

କରାଯାଇଥିଲେ ମଧ୍ୟ[୨୨] ତା'ର ଦୀର୍ଘ ଚାଳିଶ ବର୍ଷ ପରେ ଅର୍ଥାତ୍ ୧୮୩୭ ମସିହାରେ ଖ୍ରୀଷ୍ଟିଆନ ପାଦ୍ରୀମାନଙ୍କ ଦ୍ୱାରା କଟକରେ 'ମିସନ୍ ପ୍ରେସ୍' ସ୍ଥାପନ କରାଗଲା। ଏହି ଛାପାଖାନା ମାଧ୍ୟମରେ ବିଭିନ୍ନ ଧର୍ମପୁସ୍ତକ ପ୍ରକାଶ କରି ଖ୍ରୀଷ୍ଟଧର୍ମ ପ୍ରଚାର କରିବା ଥିଲା ତାଙ୍କର ପ୍ରଥମ ଉଦ୍ଦେଶ୍ୟ। କେବଳ ଧର୍ମପ୍ରଚାର ନୁହେଁ, ପରନ୍ତୁ ଓଡ଼ିଆ ପତ୍ରିକା ପରିଚାଳନା କରବା ମଧ୍ୟ ସେମାନଙ୍କର ଲକ୍ଷ୍ୟ ଥିଲା। ସେ ସମୟରେ ଓଡ଼ିଶାବାସୀ ନିଜର ଦୁଃଖଦୁର୍ଦ୍ଦଶାକୁ ସରକାରଙ୍କ ନିକଟରେ ଉପସ୍ଥାପିତ କରିବାର ମାନସିକ ସାହସ ହରାଇ ବସିଥିଲେ। ପତ୍ରିକା ମାଧ୍ୟମରେ ଜନସାଧାରଣ ସେମାନଙ୍କର ନ୍ୟାର୍ଯ୍ୟଦାବୀ ତଥା ଅଭାବ ଅସୁବିଧା ସହଜରେ ପ୍ରକାଶ କରିବାର ଉଦ୍ଦେଶ୍ୟ ନେଇ ରେଭେନ୍ସାସାହେବଙ୍କ ଉଦ୍ୟମରେ ବିଚିତ୍ରାନନ୍ଦ ଦାସ ତଥା ଅନ୍ୟ କେତେକଙ୍କ ଚେଷ୍ଟାରେ ୧୮୬୬ ମସିହାରେ 'କଟକ ପ୍ରିଣ୍ଟିଂ ପ୍ରେସ୍' ଆତ୍ମପ୍ରକାଶ କଲା। ଏହି ପ୍ରେସ୍‌ଟି ସେତେବେଳେ ସରକାରଙ୍କ ଅନ୍ୟାୟନୀତିକୁ ସମାଲୋଚନା କରିବା ସଙ୍ଗେ ସଙ୍ଗେ ଜନସାଧାରଣଙ୍କ ଆଶା ଆକାଂକ୍ଷାକୁ ଏକ ନିର୍ଦ୍ଦିଷ୍ଟ ରୂପ ପ୍ରଦାନ କରିଥିଲା। ଫକୀରମୋହନଙ୍କ ଉଦ୍ୟମରେ ୧୮୬୮ ସାଲରେ 'ଉତ୍କଳ ପ୍ରିଟିଂକୋ ବା ପି.ଏମ୍. ସେନାପତି ଏଣ୍ଡକୋ ଉତ୍କଳ ପ୍ରେସ୍' ନାମରେ ଏକ ମୁଦ୍ରାଯନ୍ତ ପ୍ରତିଷ୍ଠା କରାଯାଇଥିଲା।[୨୩] କହିବା ବାହୁଲ୍ୟଯେ ୧୮୭୦ ମସିହାଠାରୁ ୧୯୦୦ ମସିହା ପର୍ଯ୍ୟନ୍ତ ଉକ୍ତ ପ୍ରେସ୍‌ଟି ଅନେକ ଉପାଦେୟ ପୁସ୍ତକ ପ୍ରକାଶ ଓ ଜନମତ ସୃଷ୍ଟି କରିବାରେ ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲା। ଏହାପରେ ଆଧୁନିକ ଶିକ୍ଷିତ ବୈକୁଣ୍ଠନାଥ ଦେଙ୍କ ପ୍ରତ୍ୟକ୍ଷ ଉଦ୍ୟମରେ 'ଦେ ପ୍ରେସ୍' ଆତ୍ମପ୍ରକାଶ କଲା ବାଲେଶ୍ୱରରେ ଓ ଏହିଠାରୁହିଁ ଓଡ଼ିଆ ଭାଷାର ପ୍ରଥମ ସାହିତ୍ୟ ପତ୍ରିକା 'ଉତ୍କଳ ଦର୍ପଣ' ତଥା ଅନ୍ୟାନ୍ୟ ଅନେକ ଉପାଦେୟ ପାଠ୍ୟପୁସ୍ତକ ପ୍ରକାଶ ଲଭା କଲା। ଏହା ବ୍ୟତୀତ ୧୮୭୩ ମସିହାରେ ଓଡ଼ିଶା ପେଟ୍ରିୟଟ୍ ପ୍ରେସ୍, ୧୮୮୫ରେ ବାମଣ୍ଡା ପ୍ରେସ୍ ଓ ଓଡ଼ିଶା ପ୍ରିଟିଂ କର୍ପୋରେସନ୍‌ର ଭିକ୍ଟୋରିୟା ପ୍ରେସ୍ ପ୍ରଭୃତି ସ୍ଥାପିତ ହୋଇଥିଲା। ଉକ୍ତ ପ୍ରେସ୍‌ଗୁଡ଼ିକ ବ୍ୟତୀତ ୧୮୯୦ ମସିହାରେ ପୁରୀଠାରେ ସ୍ଥାପିତ ପ୍ରିଟିଂ କର୍ପୋରେସନ୍ ପ୍ରେସ୍, ୧୮୯୩ରେ ଭାଗବତ ପ୍ରସାଦ ଦାନଙ୍କର ଅରୁଣୋଦୟ ପ୍ରେସ୍, ୧୮୯୪ରେ ରାୟ ପ୍ରେସ୍, ରାଜକୁମାର ହରିନାଥ ପଣ୍ଡିତ ବାହାଦୂରଙ୍କ ଉଦ୍ୟମରେ ୧୮୯୯ରେ ଦର୍ପଣରାଜ ପ୍ରେସ୍ ଓ ଉତ୍କଳ ପ୍ରେସ୍ ପ୍ରଭୃତି ନାମ ଉଲ୍ଲେଖଯୋଗ୍ୟ।

ଛାପାକଳ ଜନମାନସର ମୁଖପତ୍ର; ସାହିତ୍ୟର ସର୍ବଶ୍ରେଷ୍ଠ ବାହନ ଓ ସର୍ବୋପରି ସମାଜ ଜୀବନର ପରିପ୍ରକାଶକର ଭୂମିକା ଗ୍ରହଣ କରିଥାଏ। ଉପରୋକ୍ତ ଛାପାକଳଗୁଡ଼ିକର ପ୍ରତିଷ୍ଠାଦ୍ୱାରା ଓଡ଼ିଶାଯେ ବହୁ ଦିଗରୁ ଉପକୃତ ହୋଇ ପାରିଥିଲା

କହିବା ଅତ୍ୟୁକ୍ତି ମାତ୍ର। ଶିକ୍ଷା କ୍ଷେତ୍ରରେ ବିଭିନ୍ନ ପାଠ୍ୟପୁସ୍ତକ ପ୍ରକାଶ କରିବା ଓ ଜାତୀୟଜୀବନର ସର୍ବାଙ୍ଗୀନ ଉନ୍ନତି କ୍ଷେତ୍ରରେ ଏଗୁଡ଼ିକର ଉଦ୍ୟମ ପ୍ରଶଂସନୀୟ। ଓଡ଼ିଆବାସୀଙ୍କର ବହୁବିଧ ସାମାଜିକ ସମସ୍ୟା ତଥା ଅସୁବିଧାଗୁଡ଼ିକୁ ଏହି ପ୍ରେସ୍‌ର ମୁଖପତ୍ର ସିଧାସଳଖ ସରକାରଙ୍କୁ ଅବଗତ କରାଇ ଜନସାଧାରଣଙ୍କର ଅଶେଷ ମଙ୍ଗଳ ସାଧନ କରିଥିଲା। ବ୍ୟକ୍ତିଗତ ସ୍ୱାର୍ଥ ଅପେକ୍ଷା ସାମୂହିକ ସ୍ୱାର୍ଥ ଥିଲା ସେଗୁଡ଼ିକଙ୍କର ଲକ୍ଷ୍ୟ।

## ଭାଷାକୈନ୍ଦ୍ରିକ ଅବସ୍ଥା

ଇଂରେଜମାନେ ଓଡ଼ିଶା ଅଧିକାର କରିବା ସମୟରେ ଓଡ଼ିଆ ଭାଷା ଏକ ସଙ୍କଟ ମଧ୍ୟ ଦେଇ ଗତି କରୁଥିଲା। ଓଡ଼ିଆ ଭାଷା ଏକ ପ୍ରାଚୀନ ଓ ସମୃଦ୍ଧଶାଳୀ ଭାଷା ଭାବରେ ପୂର୍ବରୁ ପ୍ରସିଦ୍ଧିଲାଭ କରିଥିଲା। ଏପରିକି ୧୦୫୧ ଖ୍ରୀ:ରେ ଉରଜାମ ମିଳାଲେଖରେ ଏହି ଭାଷାର ପ୍ରାଚୀନତା ଭାଷାତତ୍ତ୍ୱବିତ୍‌ମାନେ ଆବିଷ୍କାର କରିଛନ୍ତି।[୨୪] ତଥାପି ଏ ଦେଶର ରକ୍ଷଣଶୀଳ ତଥା ଅଶିକ୍ଷିତ ସରଳ ଜନସାଧାରଣଙ୍କର ନିରୀହତାର ସୁଯୋଗ ନେଇ ଏ ଜାତିର ଭାଷା ଉପରେ ବାରମ୍ବାର ଆକ୍ରମଣ କରାଯାଇଛି। ଏ ଜାତି ଓ ଦେଶ ଇଂରେଜମାନଙ୍କ ଚକ୍ଷୁରେ ହୀନ ହୋଇ ପଡ଼ିଥିଲା। ସେଥିପାଇଁ ଷ୍ଟାର୍ଲିଂ କହିଥିଲେ ଓଡ଼ିଆମାନେ ମାଇଚିଆ, ପୌରୁଷହୀନ, ଅଜ୍ଞ, ନିର୍ବୋଧ ଓ ମୂର୍ଖ। କୌଣସି ବିଶେଷ ଦାୟିତ୍ୱପୂର୍ଣ୍ଣ କାର୍ଯ୍ୟ ନିର୍ବାହ ପାଇଁ ଓଡ଼ିଆମାନେ ସମ୍ପୂର୍ଣ୍ଣ ଅନୁପଯୁକ୍ତ। ସେମାନେ କୌଣସି ଦୁଃସାହସିକ ଓ ଜଘନ୍ୟ କାର୍ଯ୍ୟରେ ଲିପ୍ତ ନ ରହିଲେ ମଧ୍ୟ ଛୋଟ ଛୋଟ କଳିତକରାଳ, ଭଣ୍ଡାମି ଓ ବଦମାସି କାର୍ଯ୍ୟରେ ଏମାନେ ଖୁବ୍ ଧୁରନ୍ଧର। × × × ଏମାନେ ବିଶ୍ୱସ୍ତ ଚାକର ହେବାପାଇଁ ଉପଯୁକ୍ତ। କାରଣ ଏମାନେ ସାଧୁ ଓ ପ୍ରଭୁ ପରାୟଣ।[୨୫] ଓଡ଼ିଆମାନଙ୍କର ଶିକ୍ଷାଦୀକ୍ଷାର ଅଭାବ, ଏକତାର ଅଭାବ ତଥା ପ୍ରାଚୀନ ଶିକ୍ଷା ପଦ୍ଧତି ସମ୍ପର୍କରେ ରକ୍ଷଣଶୀଳ ମନୋଭାବ ପାଇଁ ଓଡ଼ିଆ ଭାଷାଯେ, ସମଗ୍ର ଭାରତବର୍ଷର ଅନ୍ୟାନ୍ୟ ଭାଷା ତୁଳନାରେ ଅନେକ ପଛରେ ପଡ଼ି ଯାଇଥିଲା, କହିବା ବାହୁଲ୍ୟମାତ୍ର। ହଣ୍ଟରସାହେବ ଊନବିଂଶ ଶତାବ୍ଦୀର ଓଡ଼ିଶା ସମ୍ପର୍କରେ ମତପ୍ରଦାନ କରିବାକୁ ଯାଇ କୁହନ୍ତି, "ସମଗ୍ର ଓଡ଼ିଶା ଅଜ୍ଞତା, ଅନ୍ଧବିଶ୍ୱାସ ଏବଂ ଅଶିକ୍ଷାରେ ପୂର୍ଣ୍ଣ ଥିଲା। କେଉଁଠି ବା ଜଣେ ଅଧେ ସଂସ୍କୃତ ପଣ୍ଡିତ ଧନୀ, ଜମିଦାର ପିଲାମାନଙ୍କୁ ସଂସ୍କୃତ ଶିକ୍ଷା ଦେଉଥିଲେ। ଅଧିକ ଲୋକ ବିଶିଷ୍ଟ ବଡ଼ ବଡ଼ ଗ୍ରାମରେ ଗୋଟିଏ ଲେଖା ଚାଟଶାଳୀ ଥିଲା। ସେଥିରେ ଅଧଡଜନ ପିଲା ଧୂଳି ଉପରେ ଆଣ୍ଠୁମାଡ଼ି ବସି କେତେଟା ଅକ୍ଷର ମାତ୍ର ଶିକ୍ଷା କରୁଥିଲେ ଓ ଶୁଆଙ୍କ ପରି ଘୋଷି ଘୋଷି ଗୀତ, ପଣିକିଆ ଆଦି

ଗାନ କରୁଥିଲେ। ତାଳପତ୍ର ଉପରେ ଲେଖନୀ ସାହାଯ୍ୟରେ ଯେ ଧାଡ଼ିଏ ଦି'ଧାଡ଼ି ଲେଖିଦେଇ ପାରୁଥିଲା, ସେ ଶିକ୍ଷିତ ଭାବରେ ବିବେଚିତ ହେଉଥିଲା।[୨୬]

ଯେଉଁ ଦେଶର ଜନସାଧାରଣ ଏପରି ଅଶିକ୍ଷିତ, ସେ ଦେଶର ଭାଷାକୁ ଲୋପ କରିଦେବାକୁ କୁଚକ୍ରୀମାନେ ସେ ସମୟରେ ନିଶ୍ଚୟ ଚକ୍ରାନ୍ତ କରିଥିବେ। ତଥାପି ସେ ସମୟର କେତେକ ସହାନୁଭୂତିଶୀଳ ଇଂରେଜସାହେବ ଓଡ଼ିଆଭାଷାର ସ୍ୱାତନ୍ତ୍ର୍ୟ ରକ୍ଷା କରିବାକୁ ଆପ୍ରାଣ ଉଦ୍ୟମ କରିଛନ୍ତି। ୧୮୦୧ ମସିହାରେ ଏଚ୍.ଟି କୋଲବ୍ରୁକ୍ ଓଡ଼ିଆଭାଷାର ବ୍ୟାପକତା ସମ୍ପର୍କରେ ମତପ୍ରଦାନ କରି କହିଥିଲେ "ମେଦିନୀପୁରଠାରୁ ଆରମ୍ଭ କରି ମାଣିକ ପାଟଣା ଓ ସମୁଦ୍ରଠାରୁ ସମ୍ବଲପୁର ପର୍ଯ୍ୟନ୍ତ ଓଡ଼ିଶା ସୁବାର ଲିପି ଓ ଭାଷା ଓଡ଼ିଆ ଭାବରେ ଅଭିହିତ। ଏ ପ୍ରଦେଶର ବ୍ରାହ୍ମଣମାନେ ଏପରିକି ସଂସ୍କୃତ ଭାଷାକୁ ମଧ୍ୟ ଓଡ଼ିଆ ଭାଷାର ସ୍ୱତନ୍ତ୍ର ଲିପି ମାଧ୍ୟମରେ ଲେଖିଥାନ୍ତି। ତାଳପତ୍ର ଉପରେ ଲୌହ ଲେଖନୀରେ ଲିଖିତ ହେଉଥିବାରୁ ଓଡ଼ିଆଲିପି ଦେବନାଗରୀ ଲିପିଠାରୁ ମଧ୍ୟ ସ୍ୱାତନ୍ତ୍ର୍ୟ ରକ୍ଷାକରିବାକୁ ସମର୍ଥ ହୋଇପାରିଛି। ଦକ୍ଷିଣ ଭାରତୀୟ ଲିପି ସହିତ ଏହି ଲିପିର କେତେକାଂଶରେ ସାଦୃଶ୍ୟ ଦୃଷ୍ଟିଗୋଚର ହୋଇଥାଏ।"[୨୭]

୧୮୦୫ ମସିହାରେ ଯେତେବେଳେ କଚେରିମାନଙ୍କରେ ପାର୍ସି ଭାଷା ବ୍ୟବହୃତ ହେଉଥିଲା, ସେତେବେଳେ ମଧ୍ୟ ପାର୍ସିଭାଷା ସହିତ ଓଡ଼ିଆ ଭାଷା କଚେରୀ ଭାଷା ରୂପେ ବ୍ୟବହୃତ ହୋଇଥିଲା। କେବଳ ସେତିକି ନୁହେଁ, ଯେତେବେଳେ କଚେରୀମାନଙ୍କରେ ପାର୍ସି ଭାଷା ପରିବର୍ତ୍ତେ ଦେଶୀୟ ଭାଷାର ପ୍ରଚଳନ ପାଇଁ ଜନମତ ପ୍ରକାଶ ପାଇବାକୁ ଆରମ୍ଭ କଲା, ତାହା ଉପଲବ୍ଧି କରି ୧୮୩୭ ମସିହା ମେ ମାସ ୩୦ ତାରିଖରେ ଏକ ଅନୁକୂଳ ପ୍ରସ୍ତାବ ଓଡ଼ିଶାରେ ତଥା ଭାରତରେ ନିଯୁକ୍ତି ପାଇଥିବା ବିଭିନ୍ନ କମିଶନରମାନଙ୍କ ନିକଟକୁ ପ୍ରେରଣ କରାଯାଇଥିଲା। ସେହି ପ୍ରସ୍ତାବରେ ଇଉରୋପୀୟ ସାହେବମାନଙ୍କ ପାଇଁ ସରକାରୀ କାଗଜପତ୍ର ପାର୍ସି ପରିବର୍ତ୍ତେ ଇଂରାଜୀ ଓ ଜନସାଧାରଣଙ୍କ ପାଇଁ ଦେଶୀୟ ଭାଷାରେ ଲେଖାଯିବା ନିମିତ୍ତ ଉଲ୍ଲେଖ ଥିଲା। ଦେଶୀୟ ଭାଷାଜ୍ଞାନ ସରକାରୀ ଚାକିରି କ୍ଷେତ୍ରରେ ବାଧ୍ୟତାମୂଳକ କରାଯିବାର ଏକ ଯୋଜନା ମଧ୍ୟ ସେ ପ୍ରସ୍ତାବରେ ଉଲ୍ଲିଖିତ ଥିଲା।[୨୮] କିନ୍ତୁ ବଡ଼ ଦୁଃଖର ବିଷୟ, ଏଭଳି ପ୍ରସ୍ତାବ ଆଗତ ସତ୍ତ୍ୱେ ଓଡ଼ିଶାର କମିଶନର ମିଃ ମିଲ୍‌ସ ଓଡ଼ିଶାର କଚେରିମାନଙ୍କରେ ଓଡ଼ିଆ ଭାଷାର ପ୍ରଚଳନ ବିରୋଧରେ ମତପ୍ରଦାନ କରିଥିଲେ।[୨୯]

୧୮୪୮-୪୯ ମସିହାରେ କଟକର କଲେକ୍ଟର ଓଡ଼ିଶାର କଚେରି ମାନଙ୍କରେ ଓଡ଼ିଆ ଭାଷା ପରିବର୍ତ୍ତେ ବଙ୍ଗଳା ଭାଷାର ପ୍ରବର୍ତ୍ତନ ପାଇଁ ପ୍ରସ୍ତାବ କରିଥିଲେ।

୧୮୫୧ ମସିହାରେ ଓଡ଼ିଶାର କମିଶନର ହେନେରୀ ରିକେଟ୍‌ସ କଚେରି ମାନଙ୍କରେ ହିନ୍ଦୀ ଭାଷା ପ୍ରଚଳନ ସପକ୍ଷରେ ମତଦାନ କରିଥିଲେ। ସେତେବେଳେ ଉଚ୍ଚ କର୍ମଚାରୀ ମହଲରେ ଓଡ଼ିଆ ଏକ ସ୍ୱତନ୍ତ୍ର ଭାଷା ନୁହେଁ ଓ ଏହା ବଙ୍ଗଳା ଭାଷାର ଅନ୍ତର୍ଗତ ତଥା ବଙ୍ଗଳା ଭାଷାରୁ ଉତ୍ପନ୍ନ ବୋଲି ଏକ ଧାରଣା ସୃଷ୍ଟି ହୋଇଥିଲା। ଉମାଚରଣ ହାଲ୍‌ଦାର ନାମକ ଜଣେ ବଙ୍ଗାଳୀ ଡେପୁଟି ସ୍କୁଲ ଇନ୍‌ସପେକ୍ଟର ଓଡ଼ିଆ ପରିବର୍ତ୍ତେ ବଙ୍ଗଳାକୁ ଶିକ୍ଷାର ମାଧ୍ୟମ ଭାବେ ମଧ୍ୟ ଗ୍ରହଣ କରିବାକୁ ନିର୍ଦ୍ଦେଶ ପ୍ରଦାନ କରିଥିଲେ।(୩୦) କିନ୍ତୁ ତାଙ୍କର ସମକାଳୀନ ଓଡ଼ିଶାର ଅନ୍ୟଜଣେ କମିଶନର ଗୋଲ୍‌ଡ଼ସ୍‌ବରୀସାହେବ ଓଡ଼ିଆ ଭାଷାର ସ୍ୱାତନ୍ତ୍ର୍ୟ ଓ ମାହାତ୍ମ୍ୟ ପ୍ରତିପାଦନ କରିବା ସଙ୍ଗେ ସଙ୍ଗେ କହିଥିଲେ, "ଯଦି ଓଡ଼ିଶାରେ ଓଡ଼ିଆ ଭାଷା ପରିବର୍ତ୍ତେ ବଙ୍ଗଳା ଭାଷାର ପ୍ରଚଳନ ହୁଏ, ତେବେ ଓଡ଼ିଆମାନେ ବଙ୍ଗାଳୀମାନଙ୍କ ଦ୍ୱାରା ଓଡ଼ିଶାରୁ ବିତାଡ଼ିତ ହେବେ ଓ ଚାକିରି ଲାଭରୁ ମଧ୍ୟ ସମ୍ପୂର୍ଣ୍ଣ ବଞ୍ଚିତ ହେବେ।(୩୧) ୧୮୪୨ ମସିହାରେ ଶିକ୍ଷା କାଉନ୍‌ସିଲର ସେକ୍ରେଟାରୀ ଏଚ୍.ଭି. ବେଲୀ ବିଭିନ୍ନ ଅଞ୍ଚଳରେ ବ୍ୟବହୃତ ପାଠ୍ୟପୁସ୍ତକର ଅବସ୍ଥା ଓ ତା'ର ବିକାଶ ସମ୍ପର୍କରେ ପ୍ରସ୍ତାବ ପଠାଇବାକୁ ସ୍ଥାନୀୟ କମିଟିର ସେକ୍ରେଟାରୀମାନଙ୍କ ପାଖକୁ ଚିଠି ପଠାଇଥିଲେ ମଧ୍ୟ ବଙ୍ଗାଳୀମାନଙ୍କ ଚକ୍ରାନ୍ତରୁ ଚିଠିର ଉତ୍ତରରେ କଟକ ଶିକ୍ଷା କମିଟି ବଙ୍ଗଳାରୁ ଓଡ଼ିଆ ଅନୁବାଦ କରି ପାଠ୍ୟପୁସ୍ତକ ପ୍ରଚଳନ କରାଯିବା ନିମିତ୍ତ ପ୍ରସ୍ତାବ ଦେଇଥିଲେ ଓ ଅନୁବାଦ କ୍ଷେତ୍ରରେ ସଟନ୍‌ସାହେବଙ୍କ ନାମ ସୁପାରିଶ କରିଥିଲେ।(୩୨) ଏହା ଜଣାଶୁଣା କଥାଯେ ସଟନ୍‌ସାହେବ ଓଡ଼ିଶାର ଧର୍ମ ଓ ପରମ୍ପରାର ସମ୍ପୂର୍ଣ୍ଣ ବିରୋଧୀ ଥିଲେ। ଯେତେବେଳେ ଦେଶୀୟ ଭାଷାରେ ପାଠ୍ୟପୁସ୍ତକ ପ୍ରଚଳନ କରିବାକୁ ସରକାରୀ ନିର୍ଦ୍ଦେଶନାମା ଜାରି ହୋଇଥିଲା, ସେତେବେଳେ ଓଡ଼ିଶାରେ ଥିବା କେତେକ ଉଚ୍ଚପଦସ୍ଥ ଅଫିସର ଏହାର ତୀବ୍ର ବିରୋଧ ମଧ୍ୟ କରିଥିଲେ। କଟକ ଜିଲ୍ଲାର ତତ୍କାଳୀନ ମାଜିଷ୍ଟ୍ରେଟ୍ ବାଉରିଂସାହେବ ଓଡ଼ିଶାର ବିଦ୍ୟାଳୟମାନଙ୍କରେ ଓଡ଼ିଆ ପାଠ୍ୟପୁସ୍ତକ ପ୍ରଚଳନ ବିରୋଧରେ ମତ ଦେଇ କହିଥିଲେ ଓଡ଼ିଆ ଭାଷା ବଙ୍ଗଳା ଭାଷାର ଏକ ଉପଭାଷା ମାତ୍ର।(୩୩)

ସେ ସମୟରେ ଓଡ଼ିଶାର ସମସ୍ତ ପ୍ରଦେଶଗୁଡ଼ିକ ଏକତ୍ରିତ ଭାବରେ ରହିପାରି ନ ଥିବାରୁ ଓ ଅନ୍ୟାନ୍ୟ ପଡ଼ୋଶୀ ରାଜ୍ୟମାନଙ୍କ ସହିତ ଏହାର କେତେକ ପ୍ରଦେଶ ମିଶି ରହିଯାଇଥିବାରୁ ଓଡ଼ିଶାର ଆୟତନ ଯଥେଷ୍ଟ ସଂକୋଚନ ହୋଇ ଯାଇଥିଲା। ପୁଣି ପଡ଼ୋଶୀ ରାଜ୍ୟଗୁଡ଼ିକ ସୁଯୋଗ ଦେଖି ନିଜର ମାତୃଭାଷାକୁ ଓଡ଼ିଶାର କେତେକ ପ୍ରଦେଶରେ ପ୍ରଚଳନ କରାଇବାକୁ ଯତ୍‌ପରୋନାସ୍ତି ଚେଷ୍ଟା ଚଳାଇଥିଲେ। କେତେକ କ୍ଷେତ୍ରରେ ସେମାନେ ମଧ୍ୟ ସଫଳକାମ ହୋଇପାରିଥିଲେ। ଏପରିକି ୧୯୩୫ ମସିହା

ପର୍ଯ୍ୟନ୍ତ ଓଡ଼ିଆଭାଷୀମାନଙ୍କୁ ଗୋଟିଏ ପ୍ରାଦେଶିକ ଶାସନରେ ରଖାଯାଇ ପାରି ନ ଥିଲା। ସାମାଜିକ, ସାଂସ୍କୃତିକ ଓ ଐତିହାସିକ ଐକ୍ୟ ସତ୍ତ୍ୱେ ମଧ୍ୟ ଏହା ବିଭିନ୍ନ ପ୍ରାଦେଶିକ ଶାସନ ଅଧୀନରେ ରହିଥିଲା।[୩୪] ଓଡ଼ିଶାର ଏହି ବିଚ୍ଛିନ୍ନିକରଣ, ଉପଯୁକ୍ତ ଶିକ୍ଷିତ ମାନସର ଆବିର୍ଭାବ ତଥା ବାରମ୍ବାର ବିପ୍ଳବ ଯୋଗୁଁ ଓଡ଼ିଶା ଇଂରେଜମାନଙ୍କ ଦୃଷ୍ଟିରେ ଏକ ଅବହେଳିତ ରାଜ୍ୟ ଭାବରେ ପରିଗଣିତ ହୋଇଥିଲା। ଏହାର ଭାଷା ଓ ସଂସ୍କୃତିର ବିକାଶ ପାଇଁ ସେମାନେ ଉପଯୁକ୍ତ ଦୃଷ୍ଟି ପ୍ରଦାନ କରି ନ ଥିଲେ। ଏହାର ସୁଯୋଗ ନେଇ ଶିକ୍ଷିତ ବଙ୍ଗାଳୀମାନେ ଓଡ଼ିଶାର ମାତୃଭାଷା ଉପରେ ନିଜ ମାତୃଭାଷାକୁ ଲଦି ଦେବାକୁ ଶତଚେଷ୍ଟା କରିଥିଲେ।

## ପତ୍ରପତ୍ରିକାର ପ୍ରକାଶନ

ଜନଜୀବନର ମୁଖପତ୍ର ହେଉଛି ପତ୍ରପତ୍ରିକା ଓ ସମ୍ବାଦପତ୍ର। ଜାତିର ନିଜସ୍ୱ ଅହମିକା, ଅଭିମାନ ଓ ସୁଖଦୁଃଖକୁ ଜନମାନସରେ ବିତରଣ କରିବାରେ ଏହାର ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି। କୌଣସି ଭାଷାଭାଷୀ ଜାତିର ମାନସ-ପଟ୍ଟଭୂମିରେ ରାଜନୀତିକ ପରିବର୍ତ୍ତନ ଓ ଅସ୍ଥିରତା ଯୋଗୁଁ ଯେତେବେଳେ ଆଲୋଡ଼ନ ଦେଖାଯାଏ, ସେତେବେଳେ ପତ୍ରିକାର ପ୍ରୟୋଜନ ସର୍ବାଧିକ ଅନୁଭୂତ ହୋଇଥାଏ। ବର୍ଦ୍ଧିଷ୍ଣୁ ଜନମତ ପାଇଁ ପ୍ରକାଶ୍ୟ ଆଭିମୁଖ୍ୟ ଯୋଗାଇ ଦେଇଥାଏ। ଏହି ଜନମତର ଉଚ୍ଛ୍ୱାସ ଓ ପ୍ରେରଣାରୁହିଁ ପତ୍ରପତ୍ରିକାର ସୃଷ୍ଟି[୩୫] ଗୋଟିଏ ଜାତି ଶିକ୍ଷିତ ଓ ଅଭିମାନୀ ନ ହେଲେ ତା'ର ଅନ୍ତର୍ଦାହ ପ୍ରକାଶ କରିବାକୁ ସେ କ୍ଷମ ହୋଇ ପାରେନା। ପୁଣି ଶିକ୍ଷାର ଅଭିବୃଦ୍ଧି ଓ ଦୂରଦୃଷ୍ଟି ପ୍ରସାରିତ ନ ହେଲେ ଗୋଟିଏ ଜାତି ନିଜକୁ ପ୍ରକାଶ କରିବାକୁ ଅକ୍ଷମତା ପ୍ରକାଶ କରିଥାଏ। ଶିକ୍ଷିତ ଜନମାନସର ମୁଖପତ୍ର ପତ୍ରପତ୍ରିକା।

୧୮୦୩ ମସିହାରେ ଇଂରେଜମାନେ ଓଡ଼ିଶା ଅଧିକାର କରିଥିଲେ ମଧ୍ୟ ଗୋଟିଏ ଓଡ଼ିଆ ପତ୍ରିକା ଓଡ଼ିଶାରୁ ପ୍ରକାଶିତ ହେବାକୁ ଏହାକୁ ଆହୁରି ଛଅଟି ଦଶକରୁ ଊର୍ଦ୍ଧ୍ୱ ସମୟ ଅପେକ୍ଷା କରିବାକୁ ପଡ଼ିଥିଲା। ଏହାର ଏକମାତ୍ର କାରଣ ସ୍ୱରୂପ ଆଧୁନିକ ଶିକ୍ଷାର ଅଭାବକୁ ଗ୍ରହଣ କରାଯାଇପାରେ। କିନ୍ତୁ ଏହା ସତ୍ୟଯେ, ଇଂରାଜୀ ଶିକ୍ଷାର ବିସ୍ତାର ଦ୍ୱାରା ଭାରତରେ ପତ୍ରିକା ସାହିତ୍ୟ ଜନ୍ମଲାଭ କରିଛି। ଭାରତର ଅନ୍ୟାନ୍ୟ ରାଜ୍ୟ ତୁଳନାରେ ଓଡ଼ିଶାରେ ଯଥେଷ୍ଟ ପରବର୍ତ୍ତୀ ସମୟରେ ପତ୍ରପତ୍ରିକା ପ୍ରକାଶ ଲାଭ କରିଛି। ୧୭୮୯ ମସିହାରେ ବମ୍ବେରୁ ପ୍ରଥମେ ଇଂରାଜୀ ସମ୍ବାଦପତ୍ର 'ବମ୍ବେ ହେରାଲଡ଼' ଓ ୧୭୯୦ ମସିହାରେ 'ବମ୍ବେ କ୍ୟୁରିଅର' ପ୍ରକାଶିତ ହୋଇଥିଲା। ୧୭୯୩ ମସିହାରୁ ଗୁଜୁରାଟୀ ଭାଷାରେ ବିଜ୍ଞାପନମାନ ପ୍ରକାଶ ପାଇଥିଲା। ପ୍ରାଦେଶିକ ଭାଷାରେ

ସମ୍ବାଦପତ୍ର ପ୍ରକାଶ କ୍ଷେତ୍ରରେ ରାଜାରାମମୋହନ ରାୟ, ଦ୍ୱାରକାନାଥ ଠାକୁର, ହରିଚନ୍ଦ୍ର ଘୋଷ, ଗୌରୀଚରଣ ବାନାର୍ଜୀ ପ୍ରମୁଖଙ୍କ ଦାନକୁ ଅସ୍ୱୀକାର କରାଯାଇ ନ ପାରେ। ବଙ୍ଗଳା ଭାଷାରେ ଫେବୃଆରୀ ୧୮୧୮ରେ 'ଦିଗଦର୍ଶନ' ଓ ମେ ମାସ ୧୮୧୮ରେ "ସମାଚାର ଦର୍ପଣ" ପ୍ରକାଶ ପାଇଥିଲା। ଖ୍ରୀଷ୍ଟିଆନ ପାଦ୍ରୀମାନଙ୍କ ଦ୍ୱାରା ଉପରୋକ୍ତ ପତ୍ରିକା ଦୁଇଟି ପ୍ରକାଶିତ ହୋଇଥିଲା। କିନ୍ତୁ ଦେଶୀୟ ଭାଷାରେ ପ୍ରଥମ ପତ୍ରିକା 'ସମ୍ବାଦ କୌମୁଦୀ' ୧୮୨୧ ମସିହାରେ କଲିକତାରୁ ରାଜା ରାମମୋହନ ରାୟଙ୍କ ପ୍ରଯୋଜନାରେ ପ୍ରକାଶ ଲାଭ କରିଥିଲା। ଏହା ଏକ ସାପ୍ତାହିକ ପତ୍ରିକା ଭାବରେ ଆତ୍ମପ୍ରକାଶ କରିଥିଲା ଓ ଏହାର ମୁଖ୍ୟ ଉଦ୍ଦେଶ୍ୟ ଥିଲା ସମାଜ ସଂସ୍କାର।[୩୬] ୧୮୫୦ ମସିହା ବେଳକୁ ବଙ୍ଗଳା ଭାଷାରେ ଏକାଧିକ ପତ୍ରିକା ପ୍ରକାଶ ଲାଭ କରି ସାରିଥିଲା। ମାତ୍ର ସେତେବେଳକୁ ଓଡ଼ିଶାରେ ମାତ୍ର ଗୋଟିଏ ପତ୍ରିକା ପ୍ରକାଶ ପାଇଥିଲା ଓ ତାହା ପୁଣି ଥିଲା ମିଶନାରୀମାନଙ୍କ ଦ୍ୱାରା ଖ୍ରୀଷ୍ଟଧର୍ମ ପ୍ରଚାର ଉଦ୍ଦେଶ୍ୟରେ। ସୁଧାକର ପଟ୍ଟନାୟକ କୁହନ୍ତି – "ଦୁଃଖର ବିଷୟ ଓଡ଼ିଶା ବ୍ରିଟିଶ୍ ଶାସନାଧୀନ ହେବାର ପ୍ରାୟ ପଚାଶ ବର୍ଷ ପରେ ଯାଇ ଓଡ଼ିଶାରେ ନିୟମିତ ସମ୍ବାଦପତ୍ରର ପ୍ରଚଳନ ଆରମ୍ଭ ହେଲା ଏବଂ କୁହାଯାଇପାରେ ତାହା ମଧ୍ୟ ଓଡ଼ିଶାର ନ'ଅଙ୍କ ଦୁର୍ଭିକ୍ଷର ଗୋଟିଏ ସୁଫଳ। ନ'ଅଙ୍କ ଦୁର୍ଭିକ୍ଷ ପର୍ଯ୍ୟନ୍ତ ଓଡ଼ିଶା ଉପରେ ଶାସନ କର୍ତ୍ତୃପକ୍ଷଙ୍କର କୌଣସି ଦୃଷ୍ଟିପାତ ହୋଇ ନ ଥିଲା କହିଲେ ଚଳେ ଏବଂ ଓଡ଼ିଶାର ଉନ୍ନତିକଳ୍ପେ ଯାହା ଯାହା କାର୍ଯ୍ୟାନୁଷ୍ଠାନ ହେଲା, ତାହା ନ'ଅଙ୍କ ଦୁର୍ଭିକ୍ଷର ପରବର୍ତ୍ତୀ। ସମ୍ବାଦପତ୍ରର ପ୍ରଚାର ହୋଇଥିଲା ସେହି ଅଧ୍ୟବସାୟୀ ଇଂରେଜ ମିଶନାରୀମାନଙ୍କ ଦ୍ୱାରା ୧୮୫୫-୫୬ ସାଲରେ। ତାହାପରେ ଯାଇ ଆମ୍ଭମାନଙ୍କର କୌଣସି କୌଣସି ଶିକ୍ଷିତ ଦେଶବାସୀ ଏ ଦିଗରେ ଆଖି ପକାଇଥିଲେ।"[୩୭] ପ୍ରକୃତରେ ଓଡ଼ିଶାରେ ୧୮୪୯ ମସିହାରେ ଖ୍ରୀଷ୍ଟଧର୍ମ ପ୍ରଚାର ଉଦ୍ଦେଶ୍ୟରେ ରେଭେରେଣ୍ଡ ମି. ଲେସିଙ୍କ ସମ୍ପାଦନାରେ 'ଜ୍ଞାନାରୁଣ' ନାମକ ଏକ ପତ୍ରିକା ପ୍ରକାଶ ପାଇଥିଲା। ୧୮୫୫ ଖ୍ରୀ:ରେ ମଧ୍ୟ ମି. ଲେସିଙ୍କ ସମ୍ପାଦନାରେ 'ପ୍ରବୋଧ ଚନ୍ଦ୍ରିକା' ନାମରେ ଅନ୍ୟ ଏକ ପତ୍ରିକା ପ୍ରକାଶିତ ହୋଇଥିଲା।

ଶିକ୍ଷିତ ମାନସର ଅଭାବ ଯୋଗୁଁ ଓଡ଼ିଶାକୁ ଅନେକ ଦିନ ଅପେକ୍ଷା କରିବାକୁ ପଡ଼ିଥିଲା ଏକ ପତ୍ରିକା ପ୍ରକାଶ ନିମିତ୍ତ। ଊନବିଂଶ ଶତାବ୍ଦୀର ପ୍ରାରମ୍ଭରେ ଓଡ଼ିଶାରେ ଗୋଟିଏ କିରାଣୀ ଚାକିରି ନିମିତ୍ତ ଯୋଗ୍ୟ ବ୍ୟକ୍ତି ମିଳିବା କଷ୍ଟକର ଥିଲା। ବିଦ୍ୟାଳୟମାନଙ୍କର ଅଭାବ, ପାଠ୍ୟପୁସ୍ତକର ଅଭାବ ଯୋଗୁଁ ଓଡ଼ିଶା ଶିକ୍ଷା କ୍ଷେତ୍ରରେ ଅଗ୍ରଗତି କରିପାରି ନ ଥିଲା। ପାରମ୍ପରିକ ଶିକ୍ଷା ବ୍ୟବସ୍ଥା ଆଧୁନିକ ଯୁଗପୋଯୋଗୀ

ନ ଥିଲା । ସେତେବେଳେ ଓଡ଼ିଶାର ପାରମ୍ପରିକ ଶିକ୍ଷାବ୍ୟବସ୍ଥା ସମ୍ପର୍କରେ ହଣ୍ଟରସାହେବ ଏକ ସୁନ୍ଦର କଥା କହିଛନ୍ତି । "ଧନୀ ଓ ଜମିଦାରମାନଙ୍କ ପିଲାମାନଙ୍କୁ ଜଣେ ଜଣେ ପଣ୍ଡିତ ସଂସ୍କୃତ ଶିକ୍ଷା ଦେଉଥିଲେ । ଅଧିକାଂଶ ଗ୍ରାମରେ ଗୋଟିଏ ନୂଆଣିଆ ଚାଳଘରେ ଅଧଡଜନେ ପିଲା ଜଣେ ଗୁରୁଙ୍କୁ ଘେରି ବସୁଥିଲେ ଓ ବର୍ଣ୍ଣମାଳା ସବୁ ଧୂଳି ଉପରେ ଲେଖାଯାଉଥିଲା । ଶୁଆ ଗୀତ ଗାଇଲା ପରି ପିଲାମାନେ ତାହାକୁ ବାରମ୍ବାର ଆବୃତ୍ତି କରି ମନେ ରଖୁଥିଲେ । ଯଦି ଜଣେ କେହି ଗୋଟିଏ ଦୁଇଟି ବାକ୍ୟ ତାଳପତ୍ରରେ ଲେଖିପାରୁଥିଲା, ତାକୁ ଉପର ଶ୍ରେଣୀକୁ ଉନ୍ନୀତ କରାଯାଉଥିଲା ଓ ସେ ଜଣେ ଶିକ୍ଷିତ ଭାବରେ ଗଣ୍ୟ ହୋଇପାରୁଥିଲା ।"[(୩୮)] ଯେଉଁଠାରେ ଶିକ୍ଷାର ମାନ ଏପରି ଅନୁନ୍ନତ ଥିଲା, ସେଠାରେ ଏକ ଉନ୍ନତମାନର ପତ୍ରିକା ଆଶା କରିବା ବିଡ଼ମ୍ବନା ମାତ୍ର ।

୧୮୩୭ ମସିହାରେ ଓଡ଼ିଶାରେ ପ୍ରିଣ୍ଟିଂ ପ୍ରେସ୍ ସ୍ଥାପନ ଓ କେତେକ ଇଂରାଜୀ ସ୍କୁଲ ପ୍ରତିଷ୍ଠା ଦ୍ୱାରା ଏ ଦେଶର ଲୋକମାନଙ୍କ ମଧ୍ୟରେ କେତେକାଂଶରେ ପରିବର୍ତ୍ତନ ଆସିଛି । ଆଘାତ ପାଇଲେ ସୁପ୍ତ ଜାଗ୍ରତ ହୁଏ, ଅଭାବ ପଡ଼ିଲେ ମାନବ ଉପାୟ ଖୋଜେ । ଠିକ୍ ସେହିପରି ୧୮୬୫-୬୬ ମସିହାର ନ'ଅଙ୍କ ଦୁର୍ଭିକ୍ଷ ଏ ଜାତିକୁ ସଚେତନ କରିଛି । ଏ ଜାତି ଆତ୍ମ ବିଶ୍ଳେଷଣ କରିବାକୁ ଶିଖିଛି ଓ ନିଜେ ନିଜର ଅଭାବ ଦୂରୀକରଣ ପାଇଁ ଅଣ୍ଟା ସଳଖି ଠିଆ ହୋଇଛି । ନ'ଅଙ୍କ ଦୁର୍ଭିକ୍ଷ ପରି ଏକ ଜାତୀୟ ଦୁର୍ଦ୍ଦିନର ପୃଷ୍ଠପେଟୀକା ଉପରେ ଆବିର୍ଭାବ କରିଛି ଓଡ଼ିଶାର ଓ ଓଡ଼ିଆ ଭାଷାର ପ୍ରଥମ ପତ୍ରିକା 'ଉତ୍କଳ ଦୀପିକା' (୧୮୬୬) । ଅବଶ୍ୟ ଏହା ପୂର୍ବରୁ ୧୮୪୦ ମସିହାରେ 'କୁଜିବର' ହାତ ଲେଖା ସମ୍ବାଦପତ୍ର ବାବାଜୀ ସାଧୁ ସୁନ୍ଦର ଦାସ ପ୍ରକାଶ କରିଥିଲେ ବୋଲି ଡଃ ବଂଶୀଧର ମହାନ୍ତି ମତପ୍ରଦାନ କରନ୍ତି ।[(୩୯)] ଯେହେତୁ ବର୍ତ୍ତମାନ 'କୁଜିବର' ପତ୍ର କୌଣସିଠାରେ ମିଳୁ ନାହିଁ ଓ ତାହା ମଧ୍ୟ ଗୋଟିଏ ହାତ ଲେଖିବା ପତ୍ର ହୋଇଥିବାରୁ, ଗୌରୀଶଙ୍କର ରାୟଙ୍କ ସମ୍ପାଦନାରେ ପ୍ରକାଶିତ 'ଉତ୍କଳ ଦୀପିକା'କୁ ଓଡ଼ିଆ ଭାଷାର ପ୍ରଥମ ପତ୍ରିକା ଭାବରେ ଗ୍ରହଣ କରାଯାଇପାରେ । ଓଡ଼ିଶାରେ ନ'ଅଙ୍କ ଦୁର୍ଭିକ୍ଷର ବିଷମୟ ଫଳାଫଳର ବିଲୋପ ସାଧନ, ଜାତୀୟ ଗୁରୁତ୍ୱପୂର୍ଣ୍ଣ ବିଭିନ୍ନ ସମ୍ବାଦ ପରିବେଷଣ, ଦେଶବାସୀଙ୍କ ପାଇଁ ଏକ ନିର୍ଦ୍ଦିଷ୍ଟ ଶିକ୍ଷା ଯୋଜନାର ଉଦ୍‌ବର୍ତ୍ତନ, ସଂକ୍ଷେପରେ ଓଡ଼ିଶାର ସର୍ବବିଧ ବିକାଶ ସାଧନ ଥିଲା 'ଉତ୍କଳ ଦୀପିକା'ର ଲକ୍ଷ୍ୟ ।[(୪୦)] ବଙ୍ଗାଳୀମାନଙ୍କର ଓଡ଼ିଆ ଭାଷା ପ୍ରତି ଆକ୍ରମଣକୁ ଏହି ପତ୍ରିକା ତୀବ୍ର ପ୍ରତିବାଦ ଜଣାଇ ଥିଲା । ଓଡ଼ିଆ ଭାଷା ଓ ଜାତିର ସୁରକ୍ଷା ପାଇଁ 'ଉତ୍କଳ ଦୀପିକା' ଯେଉଁ ସଂଗ୍ରାମ କରିଛି, ଓଡ଼ିଶା ଇତିହାସରେ ତା'ର ପଟାନ୍ତର ନାହିଁ । 'ଉତ୍କଳ ଦୀପିକା' ପତ୍ରିକା ୪.୮.୧୮୬୬ରେ ଆରମ୍ଭ ହୋଇ ପ୍ରଥମେ ସାପ୍ତାହିକ ଓ ପରେ ଦୈନିକ ସମ୍ବାଦପତ୍ରିକା

ଭାବେ ୬୬ ବର୍ଷ କାଳ ଓଡ଼ିଆ ଭାଷା, ସାହିତ୍ୟ ଓ ସାମ୍ବାଦିକତାକୁ ପ୍ରଭାବିତ କରିଥିଲା। କଟକ ଆଲାମଚାନ୍ଦ ବଜାରର କଟକ ପ୍ରିଣ୍ଟିଂ କମ୍ପାନୀରୁ ଏହା ପ୍ରକାଶ ଲାଭ କରିଥିଲା। ସେତେବେଳେ ଓଡ଼ିଆ ଟାଇପ୍ ଅଭାବରୁ ଉତ୍କଳ ଦୀପିକା ଦେଢ଼ବର୍ଷ ପର୍ଯ୍ୟନ୍ତ ଆଧୁନିକ ଲିଥୋପରି ପଥର ଛାପାରେ ଛାପା ଯାଇଥିଲା। ଯେଉଁ ସମୟରେ ଓଡ଼ିଶାରେ ଦେଖା ଦେଇଥିଲା କରାଳ ନ'ଅଙ୍କ ଦୁର୍ଭିକ୍ଷ ସେତେବେଳେ ଓଡ଼ିଶାବାସୀଙ୍କ ଦୁଃଖ ଦୁର୍ଦ୍ଦଶା ବାହାରେ ଓ ଭିତରେ ସଚେତନ କରାଇ ଦେବାପାଇଁ ଏହି ପତ୍ରିକା ଆତ୍ମପ୍ରକାଶ କଲା।[୪୧] କେବଳ ସେତିକି ନୁହେଁ ଓଡ଼ିଆ ଜାତୀୟ ଜୀବନର ବିକାଶ କ୍ଷେତ୍ରରେ ଏ ପତ୍ରିକା ମଧ୍ୟ ସେତେବେଳେ ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲା।

୧୮୬୬ର 'ଉତ୍କଳ ଦୀପିକା' ପରେ ବାଲେଶ୍ୱରରୁ 'ବୋଧଦାୟିନୀ' ପତ୍ରିକା ୧୮୬୮ ଖ୍ରୀ: ଜୁଲାଇ ମାସରେ ପ୍ରକାଶିତ ହୋଇଥିଲା। ୧୮୬୯ ଖ୍ରୀ:ରେ 'ଉତ୍କଳ ଶୁଭକରୀ' ପତ୍ରିକା ପ୍ରକାଶଲାଭ କରିଥିଲା। ଉକ୍ତ ପତ୍ରିକାରେ ବିଶେଷ ଭାବରେ ବ୍ରାହ୍ମଧର୍ମ ସମ୍ପର୍କୀୟ ଆଲୋଚନା ପ୍ରକାଶ କରାଯାଉଥିଲା। ସେହିବର୍ଷ କଟକରୁ 'ଉତ୍କଳ ହିତୈଷିଣୀ' ପାକ୍ଷିକ ପତ୍ରିକା ପ୍ରକାଶିତ ହୋଇଥିଲା। ଉତ୍କଳର ହିତ ସାଧନାର୍ଥେ ଏହାର ଆବିର୍ଭାବ ହୋଇଥିଲେ ମଧ୍ୟ ଉପଯୁକ୍ତ ବ୍ୟକ୍ତିଙ୍କର ଅଭାବ ତଥା ଅର୍ଥାଭାବରୁ ଏହା ଖୁବ୍ ଶୀଘ୍ର ବିଲୟପ୍ରାପ୍ତ ହୋଇଥିଲା।

୧୮୭୨ ମସିହାରେ 'ବାଲେଶ୍ୱର ସମ୍ବାଦ ବାହିକା' ପ୍ରକାଶିତ ହୋଇଥିଲା। ଏଥିରେ ସମ୍ବାଦ ଓ ସାହିତ୍ୟ ଉଭୟ ପ୍ରକାଶ ପାଇଥିଲା। ୧୮୭୩ ମସିହା ଜାନୁଆରୀ ମାସରେ 'ଉତ୍କଳ ଦର୍ପଣ' ପ୍ରଥମେ ମାସିକ ପରେ ୧୮୭୭ଠାରୁ ପାକ୍ଷିକ ଓ ୧୮୭୯ଠାରୁ ସାପ୍ତାହିକ ଭାବରେ ପ୍ରକାଶିତ ହେଲା। ଏହାର ମ୍ୟାନେଜର ଥିଲେ ବୈକୁଣ୍ଠ ନାଥ ଦେ। ଓଡ଼ିଆ ଭାଷାର ପ୍ରଥମ ସାହିତ୍ୟ ପତ୍ରିକା ଭାବରେ 'ଉତ୍କଳ ଦର୍ପଣ' ଗୌରବ ଦାବୀ କରିଥାଏ। ସେହିବର୍ଷ ଅର୍ଥାତ୍ ୧୮୭୩ ମସିହା ଏପ୍ରିଲ ମାସରେ ପ୍ୟାରୀମୋହନ ଆଚାର୍ଯ୍ୟଙ୍କ ସମ୍ପାଦନାରେ 'ଉତ୍କଳପୁତ୍ର' ପ୍ରକାଶ ଲାଭ କରିଥିଲା। ସେହିବର୍ଷେ କଟକରୁ 'ଭକ୍ତି ପ୍ରଦାୟିନୀ' ପାକ୍ଷିକ ପତ୍ରିକା 'ବିଦେଶୀ' ଓ ବାଲେଶ୍ୱରରୁ 'ଶିକ୍ଷକ ଓ ଧର୍ମବୋଧିନୀ' ପତ୍ରିକା ପ୍ରକାଶିତ ହୋଇଥିଲା। ୧୮୭୪ ମସିହାରେ ପୁରୀରୁ 'ପୁରୁଷୋତ୍ତମ ଚନ୍ଦ୍ରିକା' ମାସିକ ପତ୍ରିକା ଭାବରେ ଧର୍ମ ସମ୍ପର୍କୀୟ ଆଲୋଚନା ଉପରେ ଗୁରୁତ୍ୱ ଦେଇ ପ୍ରକାଶଲାଭ କଲା। ୧୮୭୬ରେ ବ୍ରହ୍ମପୁରରୁ ସ୍ୱଦେଶୀ, ୧୮୭୭ରେ ବ୍ରହ୍ମପୁରରୁ 'ବାର୍ତ୍ତାଲହରୀ', ୧୮୭୮ରେ କଟକରୁ 'ଉତ୍କଳ ମଧୁପ', ୧୮୭୯ରେ 'ଓଡ଼ିଆଗେଜେଟ୍' କଟକରୁ, ୧୮୭୯ରେ 'ମୟୂରଭଞ୍ଜ' ବାରିପଦାରୁ,

୧୮୮୦ରେ କଟକରୁ 'କୋହିନୂର' ପ୍ରଭୃତି ଆତ୍ମପ୍ରକାଶ କଲା। ଉଲ୍ଲିଖିତ ପତ୍ରିକାଗୁଡ଼ିକ ମଧ୍ୟରୁ 'ଦୀପିକା' ଓ 'ବାହିକା' ଊନବିଂଶ ଶତାବ୍ଦୀର ଭାଷା ସୁରକ୍ଷା ଆନ୍ଦୋଳନ ଓ ନ'ଅଙ୍କ ଦୁର୍ଭିକ୍ଷ ସମ୍ପର୍କରେ ସିଧାସଳଖ ମତବ୍ୟକ୍ତ କରିଥିଲେ । ଏହା ବ୍ୟତୀତ 'ବିଦେଶୀ', 'ଧର୍ମବୋଧିନୀ', 'ଉତ୍କଳ ସଂସ୍କାରକ' ପତ୍ରିକାଗୁଡ଼ିକ ଉଗ୍ର ଜାତୀୟତାବାଦର ପ୍ରଚାର ସଙ୍ଗେ ସଙ୍ଗେ ଧର୍ମମୂଳକ ତଥା ସାହିତ୍ୟ ଚର୍ଚ୍ଚା ମଧ୍ୟ କରୁଥିଲେ। ଉପରୋକ୍ତ ପତ୍ରିକାଗୁଡ଼ିକ ମଧ୍ୟରୁ 'ଉତ୍କଳ ଦର୍ପଣ' ସାହିତ୍ୟ ସମ୍ପର୍କୀୟ ଆଲୋଚନାରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲା। ଏଥିରେ ରାମଶଙ୍କର ରାୟଙ୍କ ଅସଂପୂର୍ଣ୍ଣ ଉପନ୍ୟାସ 'ସୌଦାମିନୀ', 'ପ୍ରେମତରୀ', ମଧୁସୂଦନଙ୍କ 'ଜୀବନ ଚିନ୍ତା', ଉପେନ୍ଦ୍ର ଭଞ୍ଜଙ୍କ 'କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ' ପ୍ରକାଶ ପାଇଥିଲା।

ଏହାଛଡ଼ା ୧୮୮୨ ମସିହାରେ ପୁରୀରୁ 'ପୁରୁଷୋତ୍ତମ ପତ୍ରିକା', ବାଲେଶ୍ୱରରୁ 'ପ୍ରଜାବନ୍ଧୁ', ୧୮୮୩ରେ କଟକରୁ 'ସେବକ', 'ସଂସ୍କାରକ' ଆତ୍ମପ୍ରକାଶ କରିଥିଲା। 'ସଂସ୍କାରକ' ପତ୍ରିକାଟି ଭିକ୍ଟୋରିଆ ପ୍ରେସ୍‌ରୁ ମୁଦ୍ରିତ ହୋଇଥିଲା। ଉଭୟ ସାହିତ୍ୟ ଓ ସମ୍ବାଦ ପରିବେଷଣ ଏହାର ମୁଖ୍ୟ ଉଦ୍ଦେଶ୍ୟ ଥିଲା। ସେହିବର୍ଷ ଅର୍ଥାତ୍ ୧୮୮୩ରେ ବାଲେଶ୍ୱରରୁ 'ଧୂମକେତୁ', ୧୮୮୫ରେ ବାଲେଶ୍ୱରରୁ 'ତାରକା' ମାସିକ ଖ୍ରୀଷ୍ଟିଆନ ପତ୍ରିକା ପ୍ରକାଶିତ ହୋଇଥିଲା। ୧୮୮୬ରେ କଟକରୁ 'ଶିକ୍ଷାବନ୍ଧୁ', ବାରିପଦାରୁ 'ବ୍ୟବସାୟୀ' ଓ କେନ୍ଦ୍ରାପଡ଼ାରୁ 'Orissa students' ପ୍ରକାଶ ଲାଭ କରି ଓଡ଼ିଶାର ବହୁବିଧ ଉନ୍ନତି ସାଧନ କରିପାରିଥିଲେ। ୧୮୮୭ ସାଲ ଜାନୁଆରୀ ୨୩ ତାରିଖରେ ପ୍ରକାଶିତ 'ନବସମ୍ବାଦ' ଓଡ଼ିଆ ସମ୍ବାଦପତ୍ର ଜଗତରେ ଏକ ବିଶିଷ୍ଟ ଆସନ ଦାବୀ କରେ। ଏହାର ସମ୍ପାଦକ ଥିଲେ ଶ୍ରୀଯୁକ୍ତ ନାଥ ବସୁ। "ଏହାର ବାର୍ଷିକ ମୂଲ୍ୟ ଥିଲା ଦେଢ଼ ଟଙ୍କା। ଏହି ପତ୍ରିକାର ଶିରୋନାମାରେ ମୁଦ୍ରିତ ହେଉଥିଲା 'ସତ୍ୟମେବ ଜୟତେ ନାନୃତମ୍ ତସ୍ମିନ୍ ପ୍ରୀତିଃ ତସ୍ୟ ପ୍ରିୟ କାର୍ଯ୍ୟ ସାଧନଂ ଚ ତଦୁପାସନ ମେବ।' ସେତେବେଳେ ଦୈନିକ ପତ୍ରିକା କେହି କଳ୍ପନା ସୁଦ୍ଧା କରିପାରୁ ନ ଥିଲେ। ଏହି ସାପ୍ତାହିକ ପତ୍ରିକାଟି ଧର୍ମନୀତି, ରାଜନୀତି, ସମାଜନୀତି, ସାହିତ୍ୟ, ଦର୍ଶନ, ବିଜ୍ଞାନାଦି ବିଷୟରେ ଆଲୋଚନା କରି ଦେଶର ସେବା କରିବେ ବୋଲି ଘୋଷଣା କରିଥିଲେ।"(୪୨) ଏହି 'ନବସମ୍ବାଦ' ପତ୍ରିକାରେ ଭାରତୀୟ ସାଂସ୍କୃତିକ ଅଭ୍ୟୁଦୟ, ରାଜନୀତିକ ଓ ଜାତୀୟ ଐକ୍ୟ ତଥା କୁସଂସ୍କାର ବିରୋଧରେ ଲେଖାମାନ ପ୍ରକାଶ ପାଇଥିଲା। ଊନବିଂଶ ଶତାବ୍ଦୀର ଶେଷ ଭାଗରେ ଆଧୁନିକ ଶିକ୍ଷିତମାନଙ୍କର ଉଚ୍ଛୃଙ୍ଖଳତାକୁ ମଧ୍ୟ ଏହି ପତ୍ରିକା ସମାଲୋଚନା କରିଥିଲା। ରକ୍ଷଣଶୀଳ ବ୍ରାହ୍ମଣ ସମାଜ ସେତେବେଳେ

ଇଂରାଜୀ ଶିକ୍ଷା ପ୍ରତି ବିମୁଖ ହୋଇପଡ଼ିଥିଲେ। ମାତ୍ର ଯେଉଁମାନେ ବ୍ରାହ୍ମଣ ସମାଜର ରକ୍ଷଣଶୀଳତାକୁ ସମ୍ମାନ ନ ଜଣାଇ ଉଚ୍ଚଶିକ୍ଷା ଲାଭ କରୁଥିଲେ, ସେମାନଙ୍କୁ ଅନେକ ସାମାଜିକ ନିର୍ଯ୍ୟାତନା ଭୋଗ କରିବାକୁ ପଡୁଥିଲା। କିନ୍ତୁ 'ନବସମ୍ବାଦ' ଏହି ଉଚ୍ଚଶିକ୍ଷିତ ବ୍ରାହ୍ମଣମାନଙ୍କୁ ସ୍ୱାଗତ ଜଣାଇଥିଲା। ଉତ୍କଳ ବ୍ରାହ୍ମଣମାନଙ୍କ ମଧ୍ୟରୁ ପ୍ରଥମ ଗ୍ରାଜୁଏଟ୍ ପୁରୀର ଦିବ୍ୟସିଂହ ମିଶ୍ରଙ୍କୁ ସମ୍ବର୍ଦ୍ଧନା ଜଣାଇ 'ନବସମ୍ବାଦ' ଲେଖିଥିଲା – "ଉତ୍କଳୀୟ ବ୍ରାହ୍ମଣମାନଙ୍କ ମଧ୍ୟରୁ ଆଜିଯାଏ କେହି ବି.ଏ. ପାସ୍ କରି ନ ଥିଲେ। ଏବର୍ଷ ପୁରୀରୁ ଶ୍ରୀ ଦିବ୍ୟସିଂହ ମିଶ୍ରଙ୍କୁ ଉକ୍ତ ପରୀକ୍ଷାରେ ପରୀକ୍ଷୋତ୍ତୀର୍ଣ୍ଣ ହୋଇ ଥିବାର ଦେଖି ଆମ୍ଭେମାନେ ଅତିଶୟ ସୁଖୀ ହୋଇଅଛୁ। ଉତ୍କଳୀୟ ବ୍ରାହ୍ମଣମାନଙ୍କୁ ଆମ୍ଭମାନଙ୍କର ଅନୁରୋଧ ଯେ, ସେମାନେ ଏହାଙ୍କୁ ଏ ବିଷୟରେ ଅନୁକରଣ କରିବା ନିମିତ୍ତ ପ୍ରୟାସୀ ହୁଅନ୍ତୁ।"(୪୩) ଓଡ଼ିଶାରେ ଉପଯୁକ୍ତ ପାଠ୍ୟପୁସ୍ତକର ଅଭାବ ଅନୁଭବ କରି ଉତ୍ତମ ପାଠ୍ୟପୁସ୍ତକ ରଚନା କରିବାକୁ ତତ୍କାଳୀନ ବୁଦ୍ଧିଜୀବୀମାନଙ୍କୁ 'ନବସମ୍ବାଦ' ଅନୁରୋଧ ଜଣାଇଥିଲା। ସେ ସମୟରେ ଉପାଧିପ୍ରିୟ ବ୍ୟକ୍ତିମାନଙ୍କର ହୀନକାର୍ଯ୍ୟ ଲକ୍ଷ୍ୟ କରି 'ନବସମ୍ବାଦ' ମଧ୍ୟ ସେମାନଙ୍କୁ ସମାଲୋଚନା କରି ଲେଖିଥିଲା – "ଧନ୍ୟରେ ବିଧାତା ! ତୁ କି ନ ଦେଖାଉ। ଭାରତ ସନ୍ତାନମାନେ ଅପମାନ ଭୁଲିଲେ। ସତ୍ୟାସତ୍ୟ ବିଚାର ଛାଡ଼ିଲେ। ଅସମ୍ଭବକୁ ସମ୍ଭବ କଲେ, ମନର ନୀଚତା ଏବଂ ଅସାରତା ପ୍ରକାଶ କଲେ। ଏଥୁ ବଳି ଆଉକି ଦୁଃଖ ଆଉ ଆଶ୍ଚର୍ଯ୍ୟ କଥା ଅଛି।"(୪୪) 'ନବସମ୍ବାଦ'ରେ ମଧ୍ୟ ଧାରାବାହିକ ସାହିତ୍ୟଚର୍ଚ୍ଚା ହେଉଥିଲା। 'ତାଳଚେର ଏବଂ ବାମଣ୍ଡା' ଶୀର୍ଷକ ଭ୍ରମଣ କାହାଣୀ ମଧ୍ୟ ଏଥିରେ ପ୍ରକାଶ ହୋଇଥିଲା ଓ ସେ ସମୟରେ ପ୍ରକାଶିତ ପୁସ୍ତକାବଳୀ ସମାଲୋଚନା କରାଯାଉଥିଲା। ୧୮୮୭ ମସିହା ଅକ୍ଟୋବର ୨୬ ତାରିଖରେ 'ଓଡ଼ିଆ' ନାମରେ ଏକ ସାପ୍ତାହିକ ପତ୍ରିକା ପ୍ରକାଶିତ ହୋଇଥିଲା। ପୁରୀକୁ ଆସୁଥିବା ଜଗନ୍ନାଥ ଯାତ୍ରୀମାନଙ୍କର ସୁବିଧା ଅସୁବିଧା ଓ ବିଭିନ୍ନ ସମସ୍ୟା ସମ୍ପାଦକ ଦ୍ୱାରିକା ନାଥ ଦାସଙ୍କ ସମ୍ପାଦକୀୟରେ ପ୍ରକାଶିତ ହେଉଥିଲା। ପରବର୍ତ୍ତୀ ସମୟରେ 'ଓଡ଼ିଆ ଓ ନବସମ୍ବାଦ' ଏକତ୍ରିତ ହୋଇ ୧୮୮୮ ମସିହାରୁ ବାଲେଶ୍ୱରରୁ ପ୍ରକାଶିତ ହେଲା। ଏଥିରେ ଓଡ଼ିଶାରେ ଗ୍ରାଜୁଏଟ୍ ଥିବା ସମୟରେ ଏକ ବଙ୍ଗାଳୀକୁ ପୁରୀ ଜିଲ୍ଲା ସ୍କୁଲରେ ଦ୍ୱିତୀୟ ଶିକ୍ଷକ ଭାବରେ ନିଯୁକ୍ତି ଦିଆ ଯାଇଥିବାରୁ କ୍ଷୋଭ ପ୍ରକାଶ ପାଇଥିଲା।

୧୮୮୮ ମସିହାରେ କଟକରୁ 'ସାମ୍ୟବାଦୀ' ପତ୍ରିକା ମୁକ୍ତିଲାଭ କରିଥିଲା। ଓଡ଼ିଶାର ଧର୍ମ, ସାହିତ୍ୟ ଓ ସଂସ୍କୃତି ସମ୍ପର୍କରେ ଏହି ପତ୍ରିକା ଆଲୋଚନା କରିବା ସଙ୍ଗେ ସଙ୍ଗେ ଓଡ଼ିଶାର ଜନସାଧାରଣଙ୍କ ସମସ୍ତ ସମସ୍ୟାବଳୀ ସହାନୁଭୂତି ସହ ବିଚାର

କରି ସରକାରଙ୍କ ସମ୍ମୁଖରେ ମତାମତ ଉପସ୍ଥାପିତ କରୁଥିଲା। ସେହିବର୍ଷ କଟକରୁ 'Orissa Patriot' 'ଆଶା' ପ୍ରଭୃତି ପତ୍ରିକା ପ୍ରକାଶିତ ହୋଇଥିଲା। ୧୮୮୯ ମସିହାରେ କଟକରୁ 'ସାହିତ୍ୟ ସମ୍ମିଳନୀ', 'ଦୀପକ' (ସାପ୍ତାହିକ), ବାମଣ୍ଡାରୁ 'ସମ୍ବଲପୁର ହିତୈଷିଣୀ' ପ୍ରକାଶ ପାଇଥିଲା। ଓଡ଼ିଆ ଭାଷା ଓ ସାହିତ୍ୟ କ୍ଷେତ୍ରରେ ନିଷ୍ଠାପର ଭାବରେ କାର୍ଯ୍ୟକରି ଏହି ପତ୍ରିକାଟି ଦୀର୍ଘ ତିରିଶ ବର୍ଷକାଳ ଓଡ଼ିଆ ପତ୍ରିକା ସାହିତ୍ୟ କ୍ଷେତ୍ରରେ ଏକ ପରମ୍ପରା ସୃଷ୍ଟି କରିପାରିଛି। ବାମଣ୍ଡା ରାଜାଙ୍କ ପ୍ରତିଷ୍ଠିତ ଜଗନ୍ନାଥ ବଲ୍ଲଭ ପ୍ରେସ୍‌ରୁ ଏହା ମୁଦ୍ରିତ ହୋଇଥିଲା। ସମ୍ବଲପୁର ହିତୈଷିଣୀ (ଆରମ୍ଭ ସମୟ ୧୮୮୯ ମେ ମାସ – ୧୯୨୩ ମାର୍ଚ୍ଚ) ଓଡ଼ିଶାର ଗଡ଼ଜାତ ସମୂହର ସମ୍ବଲପୁର ଅଞ୍ଚଳର ବିଭିନ୍ନ ସମସ୍ୟା ଉପରେ ଆଲୋକପାତ କରି ସେହି ସମୟରେ ସମଗ୍ର ଓଡ଼ିଶାରେ ଜାତୀୟ ଚେତନା ସୃଷ୍ଟି କରିଥିଲା।[(୪୫)] ଏହି ପତ୍ରିକାରେ ଓଡ଼ିଶାର ବିଶିଷ୍ଟ କବି ଓ ଲେଖକଗଣ ଲେଖାଲେଖି କରୁଥିଲେ। ତନ୍ମଧ୍ୟରୁ କବି ରାଧାନାଥ ରାୟ, ଶଶୀଭୂଷଣ ରାୟ, ଫକୀରମୋହନ ସେନାପତି, ଦାମୋଦର ପଟ୍ଟନାୟକ, ବିଶ୍ୱନାଥ କର, ଲାଲା ରାମନାରାୟଣ ରାୟ, କବି ଗଙ୍ଗାଧର ମେହେର, ବ୍ରଜମୋହନ ପଣ୍ଡା ପ୍ରଭୃତି ପ୍ରଧାନ। ଏହି ପତ୍ରିକାର ସମ୍ପାଦକ କାର୍ଯ୍ୟ କରୁଥିବା ବ୍ୟକ୍ତିମାନେ ହେଲେ ନୀଳମଣି ବିଦ୍ୟାରତ୍ନ, ଦାମୋଦର ମିଶ୍ର, ବ୍ରଜବନ୍ଧୁ ମିଶ୍ର, ବଡ଼କୁମାର ବଳଭଦ୍ର ଦେବ, ନବଘନ ନାୟକ ଓ ଦୀନବନ୍ଧୁ ଗଡ଼ନାୟକ। ଓଡ଼ିଆ ସାହିତ୍ୟକୁ ଏକ ବଳିଷ୍ଠ ଭିତ୍ତିଭୂମି ଦେବାରେ ଏ ପତ୍ରିକାର ଭୂମିକା ଅତୁଳନୀୟ।

୧୮୯୧ ମସିହାରେ ମୟୂରଭଞ୍ଜ ମହାରାଜାଙ୍କ ପୃଷ୍ଠପୋଷକତାରେ ଚୈତନ୍ୟ ପ୍ରସାଦ ରାୟଙ୍କ ସମ୍ପାଦନାରେ 'ଉତ୍କଳ ପ୍ରଭା' ପ୍ରକାଶିତ ହୋଇଥିଲା। ଓଡ଼ିଆ କାବ୍ୟକବିତାର ବିକାଶ କ୍ଷେତ୍ରରେ ଏହି ପତ୍ରିକାଟି ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲା। ରାଧାନାଥ ରାୟଙ୍କ ଚିଲିକା ଓ ମହାଯାତ୍ରାର ପ୍ରଥମ ପ୍ରକାଶ ଏହି ପତ୍ରିକାରୁ ଆରମ୍ଭ ହୋଇଥିଲା। ରାଧାନାଥ ରାୟଙ୍କ ବ୍ୟତୀତ ଉକ୍ତ ପତ୍ରିକାରେ ରାମଶଙ୍କର ରାୟ, ବିଶ୍ୱନାଥ କର, ରେବାରାୟ, ମଧୁସୂଦନ ରାଓ, ବିଜୟଚନ୍ଦ୍ର ମଜୁମଦାର, ଗଙ୍ଗାଧର ମେହେର, ଶିବନାରାୟଣ ନାୟକ ପ୍ରଭୃତି ଲେଖୁଥିଲେ। ଆଧୁନିକ ଓଡ଼ିଆ ସାହିତ୍ୟର ବିକାଶ କ୍ଷେତ୍ରରେ ଏହା ନିର୍ଦ୍ଦିଷ୍ଟ ଭୂମିକାଟିଏ ଗ୍ରହଣ କରିଥିଲା।

୧୮୯୨ ଓ ୯୩ ମସିହାରେ କଟକରୁ ଇନ୍ଦ୍ରଧନୁ ଓ ବାମଣ୍ଡାରୁ ବିଜୁଳି ପତ୍ରିକା ପ୍ରକାଶିତ ହୋଇଥିଲା। ଉପେନ୍ଦ୍ର ଭଞ୍ଜ ଓ ରାଧାନାଥଙ୍କୁ କେନ୍ଦ୍ରକରି ଏ ଦୁଇଟି ପତ୍ରିକାର ଆବିର୍ଭାବ। ସେ ସମୟରେ ଏକ ସୁସ୍ଥ ସାହିତ୍ୟିକ ବାତାବରଣ ସୃଷ୍ଟି କରିବାରେ ଯଦିଓ

ଏ ଦୁଇଟି ପତ୍ରିକା ପ୍ରତିବନ୍ଧକ ସୃଷ୍ଟି କରିଛି, ତଥାପି ଓଡ଼ିଆ ସମାଲୋଚନା ସାହିତ୍ୟ ପ୍ରଥମ ଥର ଏହି ପତ୍ରିକାଦ୍ୱୟରୁ ଆରମ୍ଭ ହୋଇଛି କହିଲେ ଅତ୍ୟୁକ୍ତି ହେବ ନାହିଁ। ଏହା ବ୍ୟତୀତ ୧୮୯୨ରେ କଟକରୁ 'ଆଶା' ଓ 'ବ୍ରାହ୍ମ' (ମାସିକ) ୧୮୯୪ରେ କଟକରୁ 'ଉତ୍କଳ ଚିକିତ୍ସକ' ମାସିକ, ୧୮୯୬ରେ ତାଳଚେରରୁ 'ଉତ୍କଳ ବନ୍ଧୁ' କଟକରୁ 'ପ୍ରଭାତି ତାରା ମାସିକ ଖ୍ରୀଷ୍ଟିଆନ ପତ୍ରିକା, ବ୍ରହ୍ମପୁରରୁ 'Ganjam News' ପ୍ରକାଶ ପାଇଥିଲା।

୧୮୯୭ ମସିହାରେ ବିଶ୍ୱନାଥ କରଙ୍କ ସମ୍ପାଦନାରେ 'ଉତ୍କଳ ସାହିତ୍ୟ' ପତ୍ରିକା ପ୍ରକାଶ ପାଇଥିଲା। ଓଡ଼ିଆ ସାହିତ୍ୟ ପତିକ୍ରା କ୍ଷେତ୍ରରେ ଏ ପତ୍ରିକାଟି ଏକ ଆଦର୍ଶ ସ୍ଥାନୀୟ ଥିଲା। ଦୀର୍ଘଦିନ ଧରି ଓଡ଼ିଶାରେ ଏହି ପତ୍ରିକାଟି ବଞ୍ଚିରହି ଏକ ସାହିତ୍ୟିକ ବାତାବରଣ ସୃଷ୍ଟି କରିବାରେ ସମର୍ଥ ହୋଇପାରିଥିଲା। ଏକ ବଳିଷ୍ଠ ସାହିତ୍ୟିକ ଗୋଷ୍ଠୀ ସୃଷ୍ଟି କରି ଓ ନବୀନ ଲେଖକମାନଙ୍କୁ ଉତ୍ସାହ ପ୍ରଦାନ କରି ଏ ପତ୍ରିକାଟି ଓଡ଼ିଆ ସାହିତ୍ୟର ଅଶେଷ ମଙ୍ଗଳ ସାଧନ କରି ପାରିଥିଲା। ସାହିତ୍ୟର ଗୁଣାତ୍ମକ ବିକାଶ ଓ କୃତି ସାହିତ୍ୟିକମାନଙ୍କୁ ପୁରସ୍କାର ପ୍ରଦାନ କରି ପ୍ରଥମ କରି 'ଉତ୍କଳ ସାହିତ୍ୟ' ଏକ ପରମ୍ପରା ସୃଷ୍ଟି କରି ପାରିଥିଲା। ଏହାର ସମ୍ପାଦକୀୟ ମଧ୍ୟ ଅତ୍ୟନ୍ତ ଉଚ୍ଚକୋଟୀର ଥିଲା। ବିଶ୍ୱନାଥ କର ନିଜେ ଜଣେ ପଣ୍ଡିତ ଓ ଜ୍ଞାନୀ ଥିବାରୁ ପରିମାଣାତ୍ମକ ଦୃଷ୍ଟି ଅପେକ୍ଷା ଗୁଣାତ୍ମକ ଦୃଷ୍ଟି ଉପରେ ଗୁରୁତ୍ୱ ଆରୋପ କରୁଥିଲେ।

୧୮୯୯ ମସିହାରେ ବ୍ରହ୍ମପୁରରୁ 'ଗଞ୍ଜାମ ଓଡ଼ିଆ ହିତବାଦିନୀ' ପତ୍ରିକା ପ୍ରକାଶ ପାଇଥିଲା। ପ୍ରଥମେ ଏହା ମାସିକ ଓ ପରେ ସାପ୍ତାହିକ ପତ୍ରିକା ଭାବରେ ଆତ୍ମପ୍ରକାଶ କରି ତତ୍କାଳୀନ ସାମାଜିକ ଜୀବନ ଓ ରାଜନୀତିକ ଜୀବନ ସମ୍ପର୍କରେ ଉପାଦେୟ ଲେଖାମାନ ପ୍ରକାଶ କରିଥିଲା। ୧୯୦୦ ମସିହା ମାର୍ଚ୍ଚ ମାସରେ ଜଳନ୍ଧର ଦେବଙ୍କ ସମ୍ପାଦନାରେ ବାମଣ୍ଡାରୁ 'ଆଲୋଚନା' ନାମକ ଏକ ପତ୍ରିକା ପ୍ରକାଶ ପାଇଥିଲା। ପାଶ୍ଚାତ୍ୟ ଜଗତରେ ବିଜ୍ଞାନର ଅଭୂତପୂର୍ବ ବିକାଶ ସାଧନ ହୋଇ ସାରି ଥିଲେ ମଧ୍ୟ ଓଡ଼ିଶାର କ୍ୱଚିତ ଜନସାଧାରଣ ସେ ସମ୍ପର୍କରେ ଅବହିତ ଥିଲେ। ତେଣୁ ଜନସାଧାରଣଙ୍କୁ ବିଜ୍ଞାନ ଓ ଉଦ୍ଭିଦ ଜଗତର ରହସ୍ୟ ସମ୍ପର୍କରେ ଧାରଣା ଦେବା ନିମିତ୍ତ ଏହି ପତ୍ରିକାଟିର ଆବିର୍ଭାବ ଘଟିଥିଲା। ୧୯୦୨ ମସିହାରେ ତାଳଚେରରୁ 'ଗଡ଼ଜାତବାସିନୀ' ନାମକ ଏକ ପତ୍ରିକା ପ୍ରକାଶ ଲାଭ କରି ଗଡ଼ଜାତ ରାଜ୍ୟମାନଙ୍କର ବିଭିନ୍ନ ସମସ୍ୟା ସମ୍ପର୍କରେ ଆଲୋକପାତ କରିବା ସଙ୍ଗେ ସଙ୍ଗେ ଜନସାଧାରଣଙ୍କ ସାମୂହିକ ଉନ୍ନତି ପାଇଁ କାର୍ଯ୍ୟ କରିଥିଲା।

ଉକ୍ତ ପତ୍ରିକାଗୁଡ଼ିକରୁ ତତ୍କାଳୀନ ଯୁବଶକ୍ତିର ଉନ୍ମାଦନା ସ୍ପଷ୍ଟ ରୂପେ ଲକ୍ଷ୍ୟ କରାଯାଇପାରେ। ଊନବିଂଶ ଶତାବ୍ଦୀର ଶେଷପାଦରେ ବିଭିନ୍ନ ପତ୍ରପତ୍ରିକା ପ୍ରକାଶ ଲାଭ କରିବାଦ୍ୱାରା ସମଗ୍ର ଉତ୍କଳରେ ଏକ ଜାତୀୟ ଚେତନା ସୃଷ୍ଟି ହୋଇ ପାରିଥିଲା। ବିଭିନ୍ନ ଦେଶ ତଥା ଜୀବଜଗତ ସମ୍ପର୍କରେ ଜ୍ଞାନଲାଭ କରି ଉତ୍କଳୀୟମାନଙ୍କର ଦୂରଦୃଷ୍ଟି ସୁଦୂର ପ୍ରସାରିତ ହୋଇପାରିଥିଲା। ଆଲୋଚିକା ଶତପଥୀ କୁହନ୍ତି – "ତତ୍କାଳୀନ ଅବହେଳିତ ଓଡ଼ିଶାବାସୀଙ୍କ ଦୁଃଖ ଦୁର୍ଦ୍ଦଶା ପ୍ରତି ସରକାରଙ୍କ ଦୃଷ୍ଟି ଆକର୍ଷଣ କରିବା ସେତେବେଳକାର ଓଡ଼ିଆପତ୍ର ପତ୍ରିକାଗୁଡ଼ିକର ମୂଳ ଲକ୍ଷ୍ୟ ଥିଲା।"[୪୬] ଏହି ପତ୍ରିକା ମାଧ୍ୟମରେ ତତ୍କାଳୀନ ଜନସାଧାରଣ ନିଜର ସମସ୍ୟାବଳୀକୁ ସରକାରଙ୍କ ନିକଟରେ ଉପସ୍ଥାପନ କରିବାକୁ ସମର୍ଥ ହୋଇପାରିଥିଲେ। ସଂକ୍ଷେପରେ କହିବାକୁ ଗଲେ ଊନବିଂଶ ଶତାବ୍ଦୀରେ ପ୍ରକାଶ ଲାଭ କରିଥିବା ଓଡ଼ିଆ ପତ୍ରପତ୍ରିକାଗୁଡ଼ିକ ଉତ୍କଳୀୟ ଜନମାନସକୁ ଯେ ବହୁଦିଗରୁ ସମୃଦ୍ଧ କରିପାରିଥିଲା ଏହା ଅସ୍ୱୀକାର କରାଯାଇ ନ ପାରେ।

## ନୂତନ ଶିକ୍ଷା ବିସ୍ତାର

ଓଡ଼ିଶାର ଅନେକ ପୂର୍ବରୁ ବଙ୍ଗାଳୀମାନେ ନୂତନ ଶିକ୍ଷାପଦ୍ଧତି ସହିତ ପରିଚିତ ହୋଇ ପାରିଥିଲେ। ୧୮୦୦ ମସିହା ସୁଦ୍ଧା କଲିକତାଠାରେ ଫୋର୍ଟ ଉଇଲିୟମ କଲେଜ ଓ ଶ୍ରୀରାମପୁରଠାରେ ବ୍ୟାପ୍‌ଟିଷ୍ଟ ମିଶନ୍ ପ୍ରେସ୍ ସ୍ଥାପନ ହୋଇସାରିଥିଲା।[୪୭] ସେଥିପାଇଁ ବଙ୍ଗାଳୀମାନେ ପ୍ରଥମେ ଆଧୁନିକ ଶିକ୍ଷା ପ୍ରାପ୍ତି ପାଇଁ ସୁଯୋଗ ପାଇଥିଲେ। ଏହି କଲେଜ ସ୍ଥାପନ କରିବାର ଉଦ୍ଦେଶ୍ୟ ଥିଲା ଭାରତର ଧର୍ମ, ଭାଷା, ପରମ୍ପରା ସମ୍ପର୍କରେ ଇଂରାଜୀ କର୍ମଚାରୀମାନଙ୍କୁ ସୂଚନା ପ୍ରଦାନ କରିବା। ଏ କଥା ନିଶ୍ଚୟ ସ୍ୱୀକାର କରିବାକୁ ପଡ଼ିବଯେ, ଇଂରାଜୀ ଶିକ୍ଷା ପ୍ରଚଳନ ଫଳରେ ଭାରତୀୟ ଜନମାନସରେ ପରିବର୍ତ୍ତନ ଆସିଛି ଏବଂ ତାଙ୍କର ଦୂରଦୃଷ୍ଟି ପ୍ରସାରିତ ହେବାଯୋଗୁଁ ସେମାନେ ଉନ୍ନତି କରିପାରିଛନ୍ତି, ନିଜକୁ ବିଶ୍ଳେଷଣ କରିବାର କ୍ଷମତା ହାସଲ କରିପାରିଛନ୍ତି ।[୪୮]

ଓଡ଼ିଆମାନଙ୍କର ରକ୍ଷଣଶୀଳତା ଯୋଗୁଁ, ଶିକ୍ଷାକ୍ଷେତ୍ରରେ ଭାରତର ଅନ୍ୟାନ୍ୟ ରାଜ୍ୟ ତୁଳନାରେ ଓଡ଼ିଶା ପଛରେ ପଡ଼ିଯାଇଥିଲା। ପୁରୀର ଅଧିବାସୀମାନେ ଦୀର୍ଘଦିନ ପର୍ଯ୍ୟନ୍ତ ଏହାକୁ ଆଦୌ ଗ୍ରହଣ କରିପାରି ନ ଥିଲେ। ସେଥିପାଇଁ ୧୮୩୭ ମସିହାରେ ଖୋର୍ଦ୍ଧାରେ ଅବସ୍ଥାପିତ କଲେକ୍ଟର ମି. ଡବ୍ଲ୍ୟୁ, ଉଇକିନ୍‌ସନ ପୁରୀରେ ଇଂରାଜୀ ଶିକ୍ଷା ପ୍ରଚଳନ କରିବାରେ ତାଙ୍କର ସମ୍ପୂର୍ଣ୍ଣ ଅକ୍ଷମତା ପ୍ରକାଶ କରିବାରୁ ପୁରୀଠାରେ ପ୍ରତିଷ୍ଠିତ ଇଂରାଜୀ ବିଦ୍ୟାଳୟ ଉଠିଯାଇଥିଲା।[୪୯] କିନ୍ତୁ ୧୮୩୫ ମସିହାରେ ଇଂରାଜୀ ଶିକ୍ଷିତ

ରାମମୋହନ ରାୟ ଇଂରାଜୀ ଶିକ୍ଷାକୁ ଦୃଢ଼ ସମର୍ଥନ କରିବାରୁ ଆଇନ୍ ସଚିବ ମେକ୍‌ଲେ ଓ ରାଜା ରାମମୋହନ ରାୟଙ୍କ ଚେଷ୍ଟାରୁ ଲର୍ଡ଼ବେଣ୍ଟିକ୍ ସରକାରୀ ତହବିଲ୍‌ର ଅର୍ଥ କେବଳ ମାତ୍ର ପାଶ୍ଚାତ୍ୟ ଶିକ୍ଷାଦାନ ପାଇଁ ବ୍ୟୟ ହେବ ବୋଲି ନିୟମ କଲେ।[୫୦] ସେହି କାରଣରୁ ପ୍ରଥମେ କଲିକତାଠାରେ ମେଡ଼ିକାଲ କଲେଜ ସ୍ଥାପନ ସମ୍ଭବ ହୋଇପାରିଥିଲା। ଯେତେବେଳେ ବଙ୍ଗାଳୀମାନେ ଇଂରାଜୀ ଶିକ୍ଷାକୁ ଅତି ଆନନ୍ଦରେ ସହିତ ଗ୍ରହଣ କରିନେବାକୁ ମାନସିକ ସ୍ତରରେ ପ୍ରସ୍ତୁତ ହୋଇସାରିଥିଲେ, ସେତେବେଳ ପର୍ଯ୍ୟନ୍ତ ଓଡ଼ିଆମାନେ ଇଂରାଜୀ ଶିକ୍ଷା ସମ୍ପର୍କରେ ଆଦୌ ଚିନ୍ତା ମଧ୍ୟ କରି ନ ଥିଲେ।

ଇଂରାଜୀ ଶିକ୍ଷାକୁ ସରକାରୀ ଚାକିରିର ମାଧ୍ୟମ ରୂପେ ଗ୍ରହଣ କରାଯିବା ପରେ ରକ୍ଷଣଶୀଳ ଓଡ଼ିଆମାନେ ଇଂରାଜୀ ଶିକ୍ଷାକୁ ଗ୍ରହଣ କରିନେବାକୁ ମାନସିକ ସ୍ତରରେ ପ୍ରସ୍ତୁତ ହେବାକୁ ଲାଗିଲେ।[୫୧] ୧୮୩୫ ମସିହାରେ ଲର୍ଡ଼ ଉଇଲିୟମ୍ ବେଣ୍ଟିକ୍ ଉଇଲିୟମ୍ ଆଡ଼ାମଙ୍କୁ ଓଡ଼ିଶାର ଶିକ୍ଷା ସମ୍ପର୍କରେ ଏକ ରିପୋର୍ଟ ଦେବାକୁ ନିର୍ଦ୍ଦେଶ ଦେଇଥିଲେ। ସେହି ରିପୋର୍ଟରୁ ଜଣାଯାଏ, କେବଳ ଓଡ଼ିଶାରେ କାହିଁକି ଓଡ଼ିଶା ବାହାରେ ମେଦିନୀପୁରଠାରେ ମଧ୍ୟ ପ୍ରତିଷ୍ଠିତ ସ୍କୁଲମାନଙ୍କରେ ଓଡ଼ିଆ ମାଧ୍ୟମରେ ଶିକ୍ଷାଦାନ ପଦ୍ଧତି ପ୍ରଚଳିତ ଥିଲା।[୫୨] ଇଂରାଜୀ ଶିକ୍ଷାର ଗୁରୁତ୍ୱ ସେତେବେଳେ ସେମାନେ ଅନୁଭବ କରିପାରି ନ ଥିବାରୁ ସାମାନ୍ୟ ମୋହରୀର ଚାକିରିରେ ଓଡ଼ିଆମାନେ ନିଯୁକ୍ତ ହୋଇପାରୁ ନ ଥିଲେ। ଓଡ଼ିଆମାନଙ୍କ ଏହିପରି ଦୁର୍ବଳତାର ସୁଯୋଗ ନେଇ ବଙ୍ଗାଳୀମାନେ ଓଡ଼ିଶାର ସମସ୍ତ ଚାକିରି ଅକ୍ଳେଶରେ କରାୟତ୍ତ କରିପାରିଥିଲେ ଓ ଓଡ଼ିଶାମାଟିରେ ଓଡ଼ିଆମାନେ ବଙ୍ଗାଳୀଙ୍କଠାରୁ ହୀନ ବୋଲି ଗଣ୍ୟ ହୋଇଥିଲେ।

ପ୍ରଥମେ ମିଶ୍‌ନାରୀମାନେ ଓଡ଼ିଶାର ଶିକ୍ଷାବିସ୍ତାର କ୍ଷେତ୍ରରେ ପଦକ୍ଷେପ ନେଇଥିଲେ। ଖ୍ରୀଷ୍ଟଧର୍ମ ପ୍ରଚାର ଏମାନଙ୍କର ଉଦ୍ଦେଶ୍ୟ ଥିଲେ ମଧ୍ୟ ଓଡ଼ିଶାରେ ପ୍ରଥମେ ଆଧୁନିକ ଶିକ୍ଷା ପ୍ରବର୍ତ୍ତନ କରାଇଥିବା ଯୋଗୁଁ ସେମାନେ ପ୍ରଶଂସନୀୟ। ସେହି ମିଶ୍‌ନାରୀମାନେ ୧୮୩୭ ମସିହାରେ ପ୍ରଥମେ ପ୍ରିଣ୍ଟିଂପ୍ରେସ୍ ସ୍ଥାପନ କରିଥିଲେ। ୧୮୨୨-୨୩ ମସିହା ବେଳକୁ ମିଶ୍‌ନାରୀମାନଙ୍କ ଚେଷ୍ଟାରେ କେତେଗୁଡ଼ିଏ ସ୍କୁଲ ସ୍ଥାପିତ ହୋଇଥିଲା। ମାତ୍ର ଏହି ବିଦ୍ୟାଳୟରେ କେତେକ ନୀଚ ଓ ଅନାଥ ବାଳକ ବ୍ୟତୀତ ଅନ୍ୟ କେହି ପଢ଼ିବାକୁ ଆସୁ ନ ଥିଲେ।[୫୩] କଟକ, ବାଲେଶ୍ୱରଠାରେ ଏମାନେ କେତୋଟି ସ୍କୁଲ ସ୍ଥାପନ କରିବା ସଙ୍ଗେ ସଙ୍ଗେ ଓଡ଼ିଶାର ସାହିତ୍ୟିକ ଓ ସାଂସ୍କୃତିକ ଆନ୍ଦୋଳନକୁ ଗତି ମୁଖର କରାଇ ପାରିଥିଲେ। ଏ ସମ୍ପର୍କରେ ହଣ୍ଟରସାହେବ କୁହନ୍ତି – "The missionaries have been the Pioneers of popular

education in Orissa, as indeed everywhere throughout Bengal. Their labours date from exactly half a century ago and during this period they have not only made a small population of converts but they have, by schools and printing presses introduced a new culture and a new literature into the District capitals of Cuttack and Balasore."[୫୪] ୧୮୪୮-୪୯ ମସିହାଠାରୁ ୧୮୬୯-୭୦ ମସିହା ପର୍ଯ୍ୟନ୍ତ ଓଡ଼ିଶାରେ ବିଦ୍ୟାଳୟର ସଂଖ୍ୟା ଓ ଛାତ୍ରଙ୍କ ସଂଖ୍ୟା ସମ୍ପର୍କରେ ନିମ୍ନରେ ଏକ ତାଲିକା ପ୍ରଦତ୍ତ କରାଗଲା।

| | ୧୮୪୮-୪୯ | | ୧୮୫୮-୫୯ | | ୧୮୬୮-୬୯ | | ୧୮୬୯-୭୦ | |
|---|---|---|---|---|---|---|---|---|
| | ସ୍କୁଲ ସଂଖ୍ୟା | ଛାତ୍ର ସଂଖ୍ୟା | ସ୍କୁଲ ସଂଖ୍ୟା | ଛାତ୍ର ସଂଖ୍ୟା | ସ୍କୁଲ ସଂଖ୍ୟା | ଛାତ୍ର ସଂଖ୍ୟା | ସ୍କୁଲ ସଂଖ୍ୟା | ଛାତ୍ର ସଂଖ୍ୟା |
| ଇଂରାଜୀ ସ୍କୁଲ | ୧ | ୮୫ | ୪ | ୮୦୪ | ୧୧ | ୮୮୫ | ୧୩ | ୧୦୮୬ |
| ଭର୍ଣ୍ଣାକୁଲାର ସ୍କୁଲ | ୮ | ୧୯୪ | ୨୫ | ୭୪୨ | ୫୨ | ୩୧୮୮ | ୮୨ | ୩୯୭୯ |
| ସମୁଦାୟ | ୯ | ୨୭୯ | ୨୯ | ୧୫୪୬ | ୬୩ | ୪୦୭୩ | ୯୫ | ୫୦୬୫ |

ଉପରୋକ୍ତ ତାଲିକାରୁ ଏହା ସ୍ପଷ୍ଟ ହୋଇଥାଏ ଯେ, ୨୧ ବର୍ଷ ମଧ୍ୟରେ ଭର୍ଣ୍ଣାକୁଲାର ସ୍କୁଲରେ ଛାତ୍ର ସଂଖ୍ୟା ୨୧ ଗୁଣ ବଢ଼ିଯାଇଥିଲା।[୫୫] ୧୮୭୦ ମସିହାରେ ସରକାର ଅଧିକ ଅର୍ଥ ବ୍ୟୟ କରି ଗ୍ରାମୀଣ ଅଞ୍ଚଳରେ ଶିକ୍ଷାର ବିସ୍ତାର କରିବାକୁ ଚାହିଁଥିଲେ। ମାତ୍ର ପୁରୀ ଜିଲ୍ଲାରେ ଅଧିକ ଗ୍ରାମ ଚାଟଶାଳୀ ଥିଲେ ମଧ୍ୟ ନିଜର ଅପାରଗତା ଯୋଗୁଁ ସେଠାରେ ଶିକ୍ଷାର ଉଲ୍ଲେଖନୀୟ ପରିବର୍ତ୍ତନ ସାଧିତ ହୋଇପାରି ନ ଥିଲା।

ଓଡ଼ିଶାରେ ସ୍କୁଲ ବିକାଶ କ୍ଷେତ୍ରରେ ରିକେଟ୍ସ ସାହେବଙ୍କ ଅବଦାନକୁ ଅସ୍ୱୀକାର କରାଯାଇ ନ ପାରେ। ତାଙ୍କର ରିପୋର୍ଟ ଦ୍ୱାରା ଓଡ଼ିଶାରେ ଅଧିକ ଶିକ୍ଷାନୁଷ୍ଠାନ ଗଢ଼ି ଉଠିଥିଲା। ରିକେଟ୍ସ ଅନୁଭବ କରିଥିଲେ ସରକାରୀ ଅବହେଳା ଫଳରେ ଓଡ଼ିଶା ଶିକ୍ଷାକ୍ଷେତ୍ରରେ ଅନେକ ପଛରେ ପଡ଼ିଯାଇଛି। "ତେଣୁ ସେ ସରକାରଙ୍କ ଉଦାସୀନତା ପାଇଁ ଗଭୀର କ୍ଷୋଭ ପ୍ରକାଶ କରିବା ସଙ୍ଗେ ସଙ୍ଗେ ସରକାରୀ ଅବହେଳାର ତୀବ୍ର ସମାଲୋଚନା କରିଥିଲେ।[୫୬] ଏହାଦ୍ୱାରା ସରକାର ସଚେତନ ହୋଇ ଓଡ଼ିଶାରେ ଶିକ୍ଷାବ୍ୟବସ୍ଥାକୁ ତ୍ୱରାନ୍ୱିତ କରାଇଥିଲେ। କେବଳ ସେତିକି ନୁହେଁ ୧୮୬୬ ମସିହାର

ନ'ଅଙ୍କ ଦୁର୍ଭିକ୍ଷ ପରେ ଏତେ ବିପୁଳ ପରିମାଣରେ ଲୋକକ୍ଷୟ ଘଟିବାରୁ ଇଂରେଜ ସରକାରଙ୍କ ଅପାରଗତା ପ୍ରମାଣିତ ହେଲା। କମିଶନର ରେଭେନ୍ସାସାହେବ ଦୁର୍ଭିକ୍ଷ ପରବର୍ତ୍ତୀ ନାନା ବିକାଶମୂଳକ ଯୋଜନା ଆରମ୍ଭ କଲେ। ଓଡ଼ିଶାର ଶିକ୍ଷା ବିସ୍ତାର ସେହି ଯୋଜନାର ଏକ ଅପରିହାର୍ଯ୍ୟ ଅଙ୍ଗ ଥିଲା।(୫୭) ୧୮୬୯ ମସିହାରେ ଓଡ଼ିଶାରେ ହାଇସ୍କୁଲ ସ୍ଥାପନ ହୋଇଥିବାର ଏକ ପ୍ରମାଣ 'ଉତ୍କଳ ଦୀପିକା'ରୁ ଜଣାଯାଇଥାଏ। × × × ଆମ୍ଭେମାନେ ଆହ୍ଲାଦର ସହିତ ସ୍ମରଣ କରୁଯେ ଏ ବର୍ଷ ଆରମ୍ଭରେ ଓଡ଼ିଶାରେ ହାଇସ୍କୁଲ ସ୍ଥାପନ ହୋଇ ଇଂରେଜ ଭାଷା ଶିକ୍ଷାପ୍ରତି ଯେଡ଼େ ସୁବିଧା ହେଲା ବର୍ଷଶେଷରେ ନର୍ମାଲ୍ ସ୍କୁଲର ପ୍ରସ୍ତାବ ଗବର୍ଣ୍ଣମେଣ୍ଟର ସମ୍ମତି ପ୍ରାପ୍ତ ହେବାରୁ ଦେଶୀୟ ଭାଷା ଉନ୍ନତିର ଓ ସର୍ବସାଧାରଣର ଶିକ୍ଷା ମଧ୍ୟ ସେହି ରୂପ ସୁବିଧା ହେବାର ଆଶା ହେଲା। ଏ ଉତ୍ତାରୁ ବାଲେଶ୍ୱରରେ ଗୋଟିଏ ଯନ୍ତ୍ରାଳୟ ଓ ବୋଧଦାୟିନୀ ପତ୍ରିକାର ଜନ୍ମ ଏବଂ ସମ୍ବଲପୁରର ଇନ୍‌ସପେକ୍ଟରବାବୁ ବିଚ୍ଛନ୍ଦ ପଟ୍ଟନାୟକ ଓ ଅନ୍ୟାନ୍ୟ ଲୋକଙ୍କ ଉଦ୍ୟମରେ କେତେଗୁଡ଼ିଏ ମୁଦ୍ରାଙ୍କନ ହେଲା।(୫୮) ଠିକ୍ ସେହିପରି 'ଉତ୍କଳ ଦୀପିକାର' ୧୮୭୧ ମସିହା ସେପ୍ଟେମ୍ବର ୨୩ ତାରିଖର ଏକ ବିଜ୍ଞାପନରୁ ଗୋଟିଏ ହିନ୍ଦୁବାଳିକା ବିଦ୍ୟାଳୟ ପ୍ରତିଷ୍ଠା ହୋଇଥିବାର ସୂଚନା ମିଳିଥାଏ। ପୁଣି 'ଉତ୍କଳ ଦୀପିକା'ର ୧୮୭୨ ମସିହା ଜାନୁଆରୀ ୧୩ ତାରିଖ ସଂଖ୍ୟାରୁ ସ୍କୁଲମାନଙ୍କର ସଂଖ୍ୟା ଜଣାଯାଇଥାଏ। ଯଥା – କଟକରେ ୮ଟି ସାହାଯ୍ୟପ୍ରାପ୍ତ ଏବଂ ୩ଟି ସ୍ୱାଧୀନ ଇଂରାଜୀ ଏବଂ ଇଂରାଜୀ-ଉତ୍କଳ (Anglo-Oriya) ବିଦ୍ୟାଳୟ ଓ ୧୯ ସରକାରୀ, ୩୪ ସାହାଯ୍ୟକୃତ ଭାଷା ବିଦ୍ୟାଳୟ ଥିଲା। ପୁରୀରେ ୨ଟି ସାହାଯ୍ୟକୃତ ଇଂରାଜୀ ସ୍କୁଲ ଏବଂ ୩ଟି ସ୍ୱାଧୀନ ଇଂରାଜୀ ଉତ୍କଳ ବିଦ୍ୟାଳୟ, ଦେଶୀୟ ଭାଷା ଶିକ୍ଷା ପାଇଁ ୧୩ଟି ସରକାରୀ ଏବଂ ୨୨ ସାହାଯ୍ୟକୃତ ଓ ସ୍ୱାଧୀନ ବିଦ୍ୟାଳୟ ଥିଲା। ବାଲେଶ୍ୱରରେ ୪ଟି ଇଂରାଜୀ-ଉତ୍କଳ ସାହାଯ୍ୟପ୍ରାପ୍ତ ଏବଂ ସ୍ୱାଧୀନ ବିଦ୍ୟାଳୟ, ଗଭର୍ଣ୍ଣମେଣ୍ଟ ଭାଷା ବିଦ୍ୟାଳୟ ୩ ଓ ସାହାଯ୍ୟ ଏବଂ ସ୍ୱାଧୀନ ଭାଷା ବିଦ୍ୟାଳୟ ୧୮ଟି ଥିଲା। ସେହିବର୍ଷ ଗଡ଼ଜାତ ରାଜାମାନେ ଗୋଟିଏ ଇଂରାଜୀ-ଉତ୍କଳ ଓ ୪ଟି ଭାଷା ବିଦ୍ୟାଳୟ ସ୍ଥାପନ କରିଥିବାର ସୂଚନା ମିଳିଥାଏ। କେଉଁଝର ଛୋଟ ମାହାଲରେ ୨୦ଟି ବିଦ୍ୟାଳୟଥିବାର ମଧ୍ୟ ଉକ୍ତ ବିଜ୍ଞାପନରୁ ଜଣାଯାଇଥାଏ।

୧୮୭୩-୭୪ ମସିହାରେ ଓଡ଼ିଶାରେ ୧୩ଟି ମିଡ଼ଲ ଇଂରାଜୀ ସ୍କୁଲ ଓ ସମସ୍ତ ସରକାରଙ୍କ ଦ୍ୱାରା ସାହାଯ୍ୟପ୍ରାପ୍ତ ସ୍କୁଲ ଥିଲା।(୫୯)

| ଏମ୍.ଇ. ସ୍କୁଲ | ସ୍କୁଲର ସଂଖ୍ୟା | ଛାତ୍ର ସଂଖ୍ୟା |
|---|---|---|
| କଟକ | ୯ | ୬୪୯ |
| ବାଲେଶ୍ୱର | ୨ | ୧୦୯ |
| ପୁରୀ | ୨ | ୫୪ |
| ମିଡ଼ିଲ ଭର୍ଣ୍ଣାକୁଲାର ସ୍କୁଲ | ସ୍କୁଲର ସଂଖ୍ୟା | ଛାତ୍ର ସଂଖ୍ୟା |
| କଟକ | ୧୦ | ୪୧୨ |
| ବାଲେଶ୍ୱର | ୧୨ | ୫୦୯ |
| ପୁରୀ | ୧୦ | ୨୯୨ |

କାମ୍ପେଲ ସାହେବଙ୍କ ନୂତନ ଶିକ୍ଷାନୀତିର ପ୍ରବର୍ତ୍ତନ ଫଳରେ ୧୮୭୦ ସାଲପରେ ଦେଶରେ ବହୁ ସଂଖ୍ୟକ ନିମ୍ନଶ୍ରେଣୀର ସ୍କୁଲ ଖୋଲାଯାଇଥିଲା । ଏହି ସମୟରେ ମଧ ଇଂରାଜୀ ଓ ଭର୍ଣ୍ଣାକୁଲାର ପାଠ୍ୟକ୍ରମରେ ପରିବର୍ତ୍ତନ ଦେଖାଗଲା । ପୁରସ୍କାର ପ୍ରଦାନ ବ୍ୟବସ୍ଥା ହେବାରୁ ପିଲାମାନଙ୍କର ମଧ ପାଠପଢ଼ିବାରେ ଆଗ୍ରହ ଦେଖାଦେଲା । ୧୮୭୦ ସାଲପରେ ଓଡ଼ିଶାରେ ସ୍କୁଲ ସଂଖ୍ୟା ବୃଦ୍ଧି ପାଇବା ସଙ୍ଗେ ସଙ୍ଗେ ଛାତ୍ରମାନଙ୍କର ସଂଖ୍ୟା ମଧ କିପରି ଆଶାନୁରୂପ ବୃଦ୍ଧି ପାଇଥିଲା, ତା'ର ଏକ ତାଲିକା ନିମ୍ନରେ ଦିଆଗଲା ।

| | ୧୮୭୩-୭୪ | ୧୮୯୦-୯୧ | ୧୮୯୯-୧୯୦୦ |
|---|---|---|---|
| ସ୍କୁଲ ସଂଖ୍ୟା | ୯୦୫ | ୮୦୭୩ | ୬୩୫୧ |
| ଛାତ୍ରଙ୍କ ସଂଖ୍ୟା | ୧୯୩୯୬ | ୧୨୨୮୪୬ | ୧୦୮୯୫୬ |

ଉକ୍ତ ଆଲୋଚନାରୁ ଏହା ସ୍ପଷ୍ଟ ପ୍ରତୀୟମାନ ହୋଇଥାଏ ଯେ, ୧୮୭୩-୭୪ ମସିହାପରେ ଓଡ଼ିଆମାନଙ୍କର ଇଂରାଜୀ ଶିକ୍ଷାପ୍ରତି ଆଗ୍ରହ ସୃଷ୍ଟି ହୋଇଛି । ଇଂରାଜୀ ଶିକ୍ଷା ଲାଭକରି ସରକାରୀ ଚାକିରି ପାଇବା ଉଦ୍ଦେଶ୍ୟରେ ସେମାନେ ଇଂରାଜୀ ଶିକ୍ଷା ପ୍ରତି ଆଗ୍ରହ କରିଥିଲେ । ମାତ୍ର ଦୁଃଖର ବିଷୟ ଯେଉଁ ସମୟରେ ଓଡ଼ିଆମାନଙ୍କର ଉଚ୍ଚଶିକ୍ଷା ପ୍ରତି ଆକାଂକ୍ଷା ପ୍ରକାଶ ପାଇଛି, ସେତେବେଳକୁ ଶିକ୍ଷିତ ବଙ୍ଗାଳୀମାନେ ଓଡ଼ିଶାର ଶାସନ ଓ ଶିକ୍ଷା କ୍ଷେତ୍ରରେ ଅସପତ୍ନ ରାଜତ୍ୱ ବିସ୍ତାର କରି ସାରିଥିଲେ । ଓଡ଼ିଶାର ପ୍ରତ୍ୟେକ କ୍ଷେତ୍ରରେ ବଙ୍ଗାଳୀମାନେ ନିଯୁକ୍ତି ପାଇ ଓଡ଼ିଆମାନଙ୍କୁ ଶୋଷଣ କରୁଥିଲେ । ଓଡ଼ିଶାର ଜମିଦାରୀ ବଙ୍ଗାଳୀମାନଙ୍କର ହୋଇସାରିଥିଲା । ତଥାପି ସୁଖର

ବିଷୟ ଏହିଯେ, ଉଚ୍ଚଶିକ୍ଷା ପାଇବାଦ୍ୱାରା ଶିକ୍ଷିତ ଓଡ଼ିଆମାନେ ନିଜର ଦାବୀକୁ ସରକାରଙ୍କ ସମ୍ମୁଖରେ ଉପସ୍ଥାପିତ କରିପାରିବାର ସାହସ ସଞ୍ଚୟ କରି ପାରିଥିଲେ। ଶିକ୍ଷା କ୍ଷେତ୍ରରେ ଓଡ଼ିଶା ଅନ୍ୟାନ୍ୟ ପ୍ରାଦେଶିକ ରାଜ୍ୟ ତୁଳନାରେ ପଛରେ ପଡ଼ିଯାଇଥିଲେ ମଧ୍ୟ ୧୮୯୯-୧୯୦୦ ମସିହା ବେଳକୁ ସେମାନେ ନିଜକୁ ପ୍ରତିଷ୍ଠିତ କରିବାକୁ ସମର୍ଥ ହୋଇପାରିଥିଲେ। ମିଶନାରୀମାନଙ୍କ ମାଧ୍ୟମରେ ଓଡ଼ିଶାରେ ଶିକ୍ଷାକ୍ଷେତ୍ରରେ ଯେଉଁ ବୀଜ ବପନ କରାଯାଇଥିଲା, ସରକାର ତଥା ଓଡ଼ିଶାର ରାଜା ଓ ଜମିଦାରଙ୍କ ପୃଷ୍ଠପୋଷକତାରେ ସେହି ବୀଜ ଏକ ବିରାଟ ମହୀଦ୍ରୁମରେ ପରିଣତ ହୋଇପାରିଥିଲା।

## ନୂତନ ଶିକ୍ଷିତ ମାନସର ଆବିର୍ଭାବ

ନୂତନ ଶିକ୍ଷାର ବିସ୍ତାର ସଙ୍ଗେ ସଙ୍ଗେ ଓଡ଼ିଶାରେ ଅନେକ ନୂତନ ଶିକ୍ଷିତ ମାନସଙ୍କର ଆବିର୍ଭାବ ଘଟିଲା। ଏହିମାନଙ୍କ ଉଦ୍ୟମରେ ଓଡ଼ିଶାର ମାନସ ରାଜ୍ୟରେ ଏକ ଭାବ ବିପ୍ଳବ ସଂଘଟିତ ହେବାକୁ ଆରମ୍ଭ କଲା। ନିଜକୁ ଅନ୍ୟମାନଙ୍କ ସମ୍ମୁଖରେ ପ୍ରତିଷ୍ଠିତ କରିବାର ପ୍ରବଳ ପ୍ରେରଣାରୁ ଏ ଦେଶରେ ସୃଷ୍ଟି ହେଲା ଛାପାକଳ ଓ ପତ୍ରପତ୍ରିକା। ନିଜର ନ୍ୟାଯ୍ୟ ଦାବୀକୁ ଅନ୍ୟ ସମ୍ମୁଖରେ ଉପସ୍ଥାପିତ କରିବାକୁ ଏମାନେ ଅଗ୍ରସର ହେଲେ। ଏହିମାନେ ପୁଣି ସୃଷ୍ଟିକଲେ ପାଠ୍ୟପୁସ୍ତକ, ଇତିହାସ ଓ ଆହୁରି ଅନେକ କିଛି। କେତେଜଣ ବିଶିଷ୍ଟ ସାହିତ୍ୟିକଙ୍କ ଆବିର୍ଭାବ ଯୋଗୁଁ ଓଡ଼ିଶାରେ ଆଧୁନିକ ସର୍ଜନଶୀଳ ସାହିତ୍ୟ ସୃଷ୍ଟିହୋଇ ଓଡ଼ିଆ ସାହିତ୍ୟକୁ ବିଭିନ୍ନ ଦିଗରୁ ସମୃଦ୍ଧ କରିବାକୁ ଲାଗିଲା। ଅନ୍ୟାନ୍ୟ ପ୍ରାଦେଶିକ ସାହିତ୍ୟ ତୁଳନାରେ ଓଡ଼ିଆ ସାହିତ୍ୟ ନିଜକୁ ସମକକ୍ଷ କରିବାକୁ ଆପ୍ରାଣ ଉଦ୍ୟମ କଲା।

ଆଧୁନିକ ଶିକ୍ଷାର ସଂସ୍ପର୍ଶରେ ଆସିବାଦ୍ୱାରା ଏହି ନୂତନ ଶିକ୍ଷିତ ଗୋଷ୍ଠୀ ଓଡ଼ିଆ ଭାଷା, ସାହିତ୍ୟ ତଥା ଜାତିର ସାମୂହିକ ବିକାଶ ନିମିତ୍ତ ଯଥେଷ୍ଟ ସାହାଯ୍ୟ କରିଛନ୍ତି। ପୁଣି ଏ ଦେଶରେ ସ୍ଥାୟୀ ଭାବରେ ବାସ କରୁଥିବା ବଙ୍ଗାଳୀମାନେ ମଧ୍ୟ ଓଡ଼ିଆ ଭାଷା ଓ ସାହିତ୍ୟର ରକ୍ଷା ପାଇଁ ଯେଉଁ ଉଦ୍ୟମ କରିଛନ୍ତି, ସେମାନଙ୍କର ଅବଦାନକୁ କଦାପି ଅସ୍ୱୀକାର କରାଯାଇ ନପାରେ। ବଙ୍ଗାଳୀ ହୋଇ ମଧ୍ୟ ରାଧାନାଥ ରାୟ, ମଧୁସୂଦନ ରାଓ, ଗୌରୀଶଙ୍କର ରାୟ, ପ୍ୟାରୀମୋହନ, ପ୍ରଭାକର ବିଦ୍ୟାରତ୍ନ, ସୀତାନାଥ ରାଓ, ନିମାଇଁ ବଲ୍ଲଭ ବିଦ୍ୟାସାଗର, ବୈକୁଣ୍ଠ ନାଥ ଦେ, ଜଗମୋହନ, ରାମଶଙ୍କର, ଲାଲା ରାମନାରାୟଣ, କୃଷ୍ଣପ୍ରସାଦ ଚୌଧୁରୀଙ୍କ ଅବଦାନ ଏ କ୍ଷେତ୍ରରେ ସ୍ମରଣୀୟ। ରାଧାନାଥ ରାୟ ଓ ନନ୍ଦ କିଶୋର ଦାସ ପ୍ରଭୃତି ଶିକ୍ଷାବିଭାଗର ଉଚ୍ଚସ୍ଥାନରେ ଅଧିଷ୍ଠିତ ହୋଇଥିବାରୁ ଓଡ଼ିଶାରେ ଶିକ୍ଷାର ଗୁଣାତ୍ମକ ବିକାଶ ନିମିତ୍ତ ଯତ୍‌ପରୋନାସ୍ତି ଚେଷ୍ଟା କରିଛନ୍ତି।

ଶିକ୍ଷାର ପ୍ରସାର ଶିକ୍ଷିତମାନଙ୍କର ଏକମାତ୍ର ଉଦ୍ଦେଶ୍ୟ ଥିବାରୁ ଏହି ଶିକ୍ଷିତ ସମ୍ପ୍ରଦାୟ ପ୍ରଥମେ ନିଜକୁ ଶିକ୍ଷକ ଭାବରେ ପ୍ରତିଷ୍ଠା କରିବାକୁ ଆଗ୍ରହ ପ୍ରକାଶ କରୁଥିଲେ । ପଣ୍ଡିତ ବିଶ୍ୱମ୍ଭର ବିଦ୍ୟାଭୂଷଣ ଥିଲେ ଏହିପରି ଜଣେ ଜ୍ଞାନୀ ବ୍ୟକ୍ତି । ପଣ୍ଡିତ ରୁଦ୍ରେଶ୍ୱର ପଣ୍ଡା ମଧ କଟକ ସ୍କୁଲରେ ଶିକ୍ଷକ ଭାବରେ ନିଯୁକ୍ତି ପାଇବାକୁ ଯୋଗ୍ୟ ବିବେଚିତ ହୋଇଥିଲେ । ଅଚ୍ୟୁତାନନ୍ଦ ସାହୁ, ନବୀନ ଚନ୍ଦ୍ର ଷଡ଼ଙ୍ଗୀ, ଭାବଗ୍ରାହୀ ମହାନ୍ତି, କୃତ୍ତିବାସ ବହିଦାର, ଗଣେଶ୍ୱର ମିଶ୍ର, ଜଳଧର ମିଶ୍ର, ସଦାଶିବ ମିଶ୍ର, ଆତ୍ମାରାମ ନନ୍ଦ ପ୍ରଭୃତି ଶିକ୍ଷିତ ଯୁବକ ଶିକ୍ଷକତା କରି ଓଡ଼ିଶାରେ ଶିକ୍ଷାର ପ୍ରସାର ନିମନ୍ତେ ଉଦ୍ୟମ କରି ଯାଇଛନ୍ତି ।

ବିଶେଷ ଭାବରେ ଲକ୍ଷ୍ୟକରିବାର ବିଷୟ, ରେଭେନ୍ସା କଲେଜ ସ୍ଥାପନ ପରେ ଓଡ଼ିଶାରେ ଶିକ୍ଷିତ ମାନଙ୍କର ସଂଖ୍ୟା ବୃଦ୍ଧି ହୋଇଛି । ୧୮୭୮ ସାଲରେ କଲିକତା ବିଶ୍ୱବିଦ୍ୟାଳୟରୁ ଜଣେ ହେଲେ ଛାତ୍ର ଉତ୍ତୀର୍ଣ୍ଣ ହୋଇ ନ ଥିବା ବେଳେ ରେଭେନ୍ସା କଲେଜ ସ୍ଥାପନ ପରେ ଯଦୁମଣି ଘୋଷ, ଦୁର୍ଗାଚରଣ ସାହୁ, ଗୋପାଳ ବଲ୍ଲଭ ଦାସ ଏହି କଲେଜରୁ ପ୍ରଥମ ଏଫ୍.ଏ. ବି.ଏ. ଓ ଏମ୍.ଏ ପାସ୍ କରିଥିବା ଛାତ୍ର । ଭଗବତୀ ଚାଟାର୍ଜୀ, ବଳରାମ ଦାସ, ଚତୁର୍ଭୁଜ ପଟ୍ଟନାୟକ, ମଧୁସୂଦନ ରାଓ ପ୍ରଭୃତି ଉକ୍ତ ମହାବିଦ୍ୟାଳୟରୁ ଉତ୍ତୀର୍ଣ୍ଣ ହେବାପରେ ସାହିତ୍ୟର ବିଭିନ୍ନ ବିଭାଗରେ ଲେଖନୀ ଚାଳନା କରିଛନ୍ତି । ଏହି ଶିକ୍ଷିତ ଗୋଷ୍ଠୀ ପାଠ୍ୟପୁସ୍ତକ ରଚନା ଦିଗରେ ମନୋନିବେଶ କରିଥିବାର ପ୍ରମାଣ ମିଳିଥାଏ । ୧୮୬୮-୮୦ ମସିହା ମଧ୍ୟରେ ପଣ୍ଡିତ କପିଳେଶ୍ୱର ବିଦ୍ୟାଭୂଷଣ, ପଣ୍ଡିତ ଗୋବିନ୍ଦ ରଥ, ଗୋବିନ୍ଦ ଚନ୍ଦ୍ର ପଟ୍ଟନାୟକ, ଗୌରୀଶଙ୍କର ରାୟ, ରାମ ପ୍ରସନ୍ନ ମୁଖୋପାଧ୍ୟାୟ, ବିଚ୍ଛନ୍ଦ ଚରଣ ପଟ୍ଟନାୟକ, ନିମାଇଁ ବଲ୍ଲଭ ବିଦ୍ୟାସାଗର, ପ୍ରଭାକର ବିଦ୍ୟାରତ୍ନ, ଶିବ ନାରାୟଣ ନାୟକ, ଭୁବନେଶ୍ୱର ଦତ୍ତ, ଉମେଶ ଚନ୍ଦ୍ର ବସୁ ପ୍ରଭୃତି ପାଠ୍ୟପୁସ୍ତକ ରଚନା କରି ଓଡ଼ିଆ ଭାଷାର ମର୍ଯ୍ୟାଦା ରକ୍ଷା କରିଛନ୍ତି । ୧୮୯୧-୧୯୦୦ ମଧ୍ୟରେ ଗୋପାଳ ଚନ୍ଦ୍ର ପ୍ରହରାଜ, ଅଭିରାମ ଭଞ୍ଜ, ନନ୍ଦକିଶୋର ବଳ, ଗୋପବନ୍ଧୁ ଦାସ ପ୍ରଭୃତି ମଧ ରେଭେନ୍ସା କଲେଜରୁ ଉତ୍ତୀର୍ଣ୍ଣ ହେବା ସଙ୍ଗେ ସଙ୍ଗେ ପାଠ୍ୟପୁସ୍ତକ ଓ ସାହିତ୍ୟ ରଚନା କ୍ଷେତ୍ରରେ ନିଜକୁ ନିୟୋଜିତ କରିଥିଲେ । ଆଧୁନିକ ଶିକ୍ଷାର ବିକାଶ ସହିତ ଊନବିଂଶ ଶତାବ୍ଦୀର ଶେଷ ବେଳକୁ ଓଡ଼ିଶାରେ ଅନେକ ଶିକ୍ଷିତ ମାନସଙ୍କର ଆବିର୍ଭାବ ଘଟିଥିଲା ।

## ନ'ଅଙ୍କ ଦୁର୍ଭିକ୍ଷ

୧୮୬୫-୬୬ ମସିହା ଓଡ଼ିଶାବାସୀଙ୍କ ପାଇଁ ଥିଲା ଏକ ଦୁର୍ଭାଗ୍ୟର ବର୍ଷ । ରାଜା ଦିବ୍ୟସିଂହ ଦେବଙ୍କ ନ'ଅଙ୍କରେ ଏହି ଦୁର୍ଭାଗ୍ୟପୂର୍ଣ୍ଣ ଦୁର୍ଭିକ୍ଷ ପଡ଼ିଥିବାରୁ ଏହା

ନ'ଅଙ୍କ ଦୁର୍ଭିକ୍ଷ ନାମରେ ଖ୍ୟାତ। ଏହି ଦୁର୍ଭିକ୍ଷ ଫଳରେ ଓଡ଼ିଶାବାସୀଙ୍କ ଆର୍ଥନୀତିକ ଅବସ୍ଥା ବିପର୍ଯ୍ୟସ୍ତ ହୋଇ ପଡ଼ିଥିଲା। ଏ ସମ୍ପର୍କରେ ସମାଲୋଚକ ଡଃ ଦେବେନ୍ଦ୍ର ମହାନ୍ତି କୁହନ୍ତି – "୧୮୬୬ ସାଲର ନ'ଅଙ୍କ ଦୁର୍ଭିକ୍ଷ ଓ ବନ୍ୟା ଫଳରେ ଓଡ଼ିଆ ଜାତି ନିଜର ଅସହାୟ ଅବସ୍ଥାକୁ କେବଳ ଲକ୍ଷ୍ୟ କରିଛି। ଇଂରେଜ ସରକାର ଓ ଅଣଓଡ଼ିଆ ସରକାରୀ କର୍ମଚାରୀମାନଙ୍କର ଅପରିଣାମଦର୍ଶିତା ଏବଂ ଦାୟିତ୍ୱହୀନତାର ଚରମ ନିଦର୍ଶନ ନ'ଅଙ୍କ ଦୁର୍ଭିକ୍ଷ।"[୬୦]

ଇଂରେଜ ରାଜତ୍ୱର ଦୀର୍ଘ ୬୦ ବର୍ଷ ପରେ ମଧ ଓଡ଼ିଶା ଏକ ଅବହେଳିତ ରାଜ୍ୟ ଭାବରେ ପଡ଼ି ରହିଥିଲା। ସେ ପର୍ଯ୍ୟନ୍ତ ଓଡ଼ିଶାରେ କୌଣସି ଚିରସ୍ଥାୟୀ ବନ୍ଦୋବସ୍ତ ହୋଇପାରି ନ ଥିଲା। ଶାସକ ଓ ଶାସିତମାନଙ୍କ ମଧ୍ୟରେ ସିଧାସଳଖ ଯୋଗାଯୋଗ ସ୍ଥାପନର କୌଣସି ସୁବ୍ୟବସ୍ଥା ମଧ ନ ଥିଲା। ତତ୍କାଳୀନ ସରକାର ସାଧାରଣ କେତେକ ବଙ୍ଗାଳୀ କର୍ମଚାରୀମାନଙ୍କ ଉପଦେଶାନୁଯାୟୀ ଶାସନ କାର୍ଯ୍ୟ ପରିଚାଳନା କରୁଥିବାରୁ ଜନସାଧାରଣଙ୍କ ସ୍ୱାର୍ଥ ପ୍ରତି ଆଖିବୁଜି ଦେଇଥିଲେ। କୃଷିର ବିକାଶ ତଥା ରାସ୍ତାଘାଟର ସୁବିଧା ପାଇଁ ସେମାନେ ସେତେବେଳେ ଆଦୌ କୌଣସି ନିର୍ଦ୍ଦିଷ୍ଟ ପଦକ୍ଷେପ ନେଇପାରି ନ ଥିଲେ! ଭୌଗୋଳିକ କାରଣରୁ ଓଡ଼ିଶା ଅନ୍ୟାନ୍ୟ ପ୍ରଦେଶଠାରୁ ସମ୍ପୂର୍ଣ୍ଣ ବିଚ୍ଛିନ୍ନ ହୋଇ ପଡ଼ିଯାଇଥିଲା।[୬୧] କେବଳ ସେତିକି ନୁହେଁ ୧୮୬୫ ମସିହା ସେପ୍ଟେମ୍ବର ମାସ ବେଳକୁ ଓଡ଼ିଶାରେ ଆଦୌ ବର୍ଷା ମଧ ହୋଇ ନ ଥିଲା।[୬୨] "ଭାଦ୍ର ମାସ ଚାରିଦିନ ଖୁବ୍ ଟାଣ ଅସରାଏ ପାଣି ବରଷି ଛାଡ଼ିଗଲା। ଭାଦ୍ର ଉତ୍ତାରେ ଅଶିଣ ପ୍ରଥମରୁ ଲୋକେ ଢଳ ସକାଶେ କାତର ଭାବରେ ଆକାଶକୁ ଚାହିଁବାକୁ ଲାଗିଲେ। କାହାରି ମୁଖରୁ ଅନ୍ୟ କୌଣସି କଥା ଶୁଣିବାକୁ ନାହିଁ। କେବଳ – ଜଳ, ଜଳ।"[୬୩] ସେତେବେଳେ ଓଡ଼ିଶାରେ ଜଳସେଚନର କୌଣସି ସୁବିଧା ନ ଥିବାରୁ ଚାଷୀକୁଳ ଚାଷ କାର୍ଯ୍ୟ ନିମିତ୍ତ ବର୍ଷା ଉପରେ ସମ୍ପୂର୍ଣ୍ଣ ନିର୍ଭର କରୁଥିଲେ। ବର୍ଷାର ଘୋର ଅଭାବ ଓ ମୌସୁମୀ ବାୟୁର ଗତି ପରିବର୍ତ୍ତନ ଯୋଗୁଁ ଓଡ଼ିଶାରେ ଦୁର୍ଭିକ୍ଷର ପଦଧ୍ୱନି ଶୁଣାଗଲା।

୧୮୬୫-୬୬ ମସିହାରେ ଓଡ଼ିଶାରେ ଗଚ୍ଛିତ ଖାଦ୍ୟଶସ୍ୟର ପରିମାଣ ପୁଣି ଖୁବ୍ ସ୍ୱଳ୍ପ ଥିଲା। ଏହାଛଡ଼ା ୧୮୬୪-୬୫ ମସିହାରେ ୯.୩୭.୫୨୮ ସେର ଚାଉଳ ବାହାରକୁ ପଠାଯାଇଥିବାରୁ ଖାଦ୍ୟଶସ୍ୟର ଅଭାବ ପଡ଼ିବା ମଧ ସ୍ୱାଭାବିକ ଥିଲା।[୬୪] ଏହି ଦୁର୍ଭିକ୍ଷର ଅନ୍ୟତମ କାରଣ ରୂପେ ଜମିଜମା ବନ୍ଦୋବସ୍ତର ଅନିୟମିତତାକୁ ମଧ ଗ୍ରହଣ କରାଯାଇପାରେ। କାରଣ ୩୦ ବର୍ଷିଆ ଜମିଜମା

ବନ୍ଦୋବସ୍ତ ଠିକ୍ ସେହି ସମୟରେ ଶେଷ ହୋଇ ଯାଉଥିବାରୁ ଓ ଅନ୍ୟ କୌଣସି ବନ୍ଦୋବସ୍ତର ସୂଚନା ନ ଥିବାରୁ ସମସ୍ତ ଶ୍ରେଣୀୟ ଲୋକମାନଙ୍କ ମଧ୍ୟରେ ଏକ ଅନିଶ୍ଚୟତାର ସନ୍ଦେହର କୁହେଳିକା ସୃଷ୍ଟି ହୋଇଥିଲା।(୬୫)

ଦୁର୍ଭିକ୍ଷର ମୁଖ୍ୟକାରଣ ହେଉଛି ଓଡ଼ିଶାର ଜନସାଧାରଣଙ୍କର ଦାରିଦ୍ର୍ୟ। ଓଡ଼ିଶାର ଜମିଦାରମାନେ ଥିଲେ ଗରୀବ ଓ ଦୂରଦୃଷ୍ଟିହୀନ। ସେତେବେଳେ ରୟତମାନଙ୍କର ଖଜଣା ମଧ୍ୟ ଆକାଶ ଛୁଆଁଥିଲା। ଏମାନଙ୍କ ମଧ୍ୟରେ କେହି ବାଣିଜ୍ୟିକ ଶ୍ରେଣୀ ନ ଥିବାରୁ ଓ ଯାତାୟତର ସୁବିଧା ନ ଥିବାରୁ ସମ୍ପଦ ଠୁଳ କରିବା ଏମାନଙ୍କ ପକ୍ଷରେ ଅସମ୍ଭବ ହୋଇଉଠିଥିଲା।(୬୬) ପୁନରାୟ ବାହାରୁ ଓଡ଼ିଶାକୁ କୌଣସି ଖାଦ୍ୟଦ୍ରବ୍ୟ ଯୋଗାଇବାରେ ଅସୁବିଧା ଦେଖାଦେଇଥିଲା। ଓଡ଼ିଶା ଅନ୍ୟ ରାଜ୍ୟଠାରୁ ବିଚ୍ଛିନ୍ନ ହୋଇ ପଡ଼ିଥିବାରୁ ବାହାରୁ ମଧ୍ୟ ଏ ଦେଶର କୌଣସି ବ୍ୟବସାୟୀ ଚାଉଳ ଆଣିପାରି ନ ଥିଲେ। ଏ କ୍ଷେତ୍ରରେ ଜନସାଧାରଣ କେବଳ ସରକାରଙ୍କ ସାହାଯ୍ୟ ଉପରେ ନିର୍ଭର କରୁଥିଲେ। କିନ୍ତୁ ଦୁଃଖର ବିଷୟ ସରକାରୀ ଅଫିସରମାନେ ଓଡ଼ିଶାରେ ଦେଖା ଦେଇଥିବା ଦୁର୍ଭିକ୍ଷର ଅବସ୍ଥା ସମ୍ପର୍କରେ ସମ୍ପୂର୍ଣ୍ଣ ଅଜ୍ଞ ଥିଲେ। ତେଣୁ ନିର୍ଦ୍ଦିଷ୍ଟ ସମୟରେ ନିର୍ଦ୍ଦିଷ୍ଟ ପଦକ୍ଷେପ ନେବାରେ ଏମାନେ ଅସାମର୍ଥତା ପ୍ରକାଶ କରିଥିଲେ।(୬୭)

ନଭେମ୍ବର ଓ ଡିସେମ୍ବର ମାସରେ ଦୁର୍ଭିକ୍ଷ ଅବସ୍ଥା ଅତ୍ୟନ୍ତ ଶୋଚନୀୟ ହୋଇପଡ଼ିଥିଲା। ତେଣୁ ଏହି ଦୁଇ ମାସରେ ଅଧିକ ଲୋକ ଉପବାସରେ ପ୍ରାଣ ବିସର୍ଜନ କରିଥିବାର ପ୍ରମାଣ ମିଳିଥାଏ। ଜାନୁଆରୀ ଶେଷବେଳକୁ ଟଙ୍କାରେ ୮ $\frac{୩}{୪}$ ସେର ଚାଉଳ ମିଳୁଥିଲା। ଫେବୃଆରୀ ମାସରେ କଲେରା ବ୍ୟାପିଯିବାରୁ ଅନେକ ଲୋକ ଅକାଳରେ ମୃତ୍ୟୁମୁଖରେ ପଡ଼ିଲେ।(୬୮) ସେତେବେଳେ ରାଜସ୍ୱପର୍ଷଦକୁ ଚାଉଳ ମଗାଇବାରେ ଚାପ ପକାଯାଇ ଥିଲେ ମଧ୍ୟ ସେଥିରେ କୌଣସି ସୁଫଳ ମିଳି ନ ଥିଲା। ଫେବୃୟାରୀ ମାସରେ ବାଲେଶ୍ୱରରେ ମଧ୍ୟ ଅନୁରୂପ ଶୋଚନୀୟ ଅବସ୍ଥା ଦେଖାଯାଇଥିଲା। ବାଲେଶ୍ୱରର ବ୍ୟବସାୟୀମାନଙ୍କ ହସ୍ତରେ କୌଣସି ଗଚ୍ଛିତ ଶସ୍ୟ ନ ଥିଲା। ପୂର୍ବ ବର୍ଷ ବାଲେଶ୍ୱରରୁ ତେଲେଙ୍ଗା ବ୍ୟବସାୟୀମାନେ ଶସ୍ୟ କ୍ରୟ କରି ନେଇଯାଇଥିବାରୁ ଦରଦାମ୍ ଅତର୍କିତ ଭାବରେ ବଢ଼ିବାକୁ ଲାଗିଲା।(୬୯) ଯେଉଁମାନଙ୍କ ପାଖରେ ସାମାନ୍ୟ କିଛି ଗଚ୍ଛିତ ଥିଲା, ତାହା ସେମାନେ ନିଜର ସ୍ୱାର୍ଥ ପାଇଁ ଲୁଚାଇ ଦେବାକୁ ଲାଗିଲେ।

ଲେଫ୍‌ଟନାଣ୍ଟ ଗଭର୍ଣ୍ଣର ସେସିଲ ବେଦୋଁ ୧୮୬୬ ଫେବୃଆରୀ ମାସରେ ଓଡ଼ିଶା ଆସି ୧୭ ଫେବୃଆରୀରେ ଏକ ଦରବାର କଟକଠାରେ ଡକାଇଥିଲେ।

ଶୋଚନୀୟ ପରିସ୍ଥିତି ସମ୍ପର୍କରେ ସେତେବେଳେ ସେ କୌଣସି ବିଶ୍ୱାସ

ଯୋଗ୍ୟ ସୂଚନା ଅଫିସର କିମ୍ବା ଅନ୍ୟ କେଉଁଠାରୁ ପ୍ରାପ୍ତ ହୋଇ ପାରି ନ ଥିଲେ।[୭୦] ତେଣୁ ଏହି ଭୟଙ୍କର ଦୁର୍ଭିକ୍ଷ ପାଇଁ ବୃଷ୍ଟିହୀନତା ଯେତେ ପରିମାଣରେ ଦାୟୀ ନୁହେଁ, ବେଶି ପରିମାଣରେ ଦାୟୀ ତତ୍କାଳୀନ ଉଚ୍ଚ ବଙ୍ଗାଳୀ କର୍ମଚାରୀ ଓ ଅଫିସରମାନେ × × × ଐତିହାସିକମାନଙ୍କ ମତରେ ନ'ଅଙ୍କ ଦୁର୍ଭିକ୍ଷ ମଣିଷ ସୃଷ୍ଟ।[୭୧] କାରଣ ସେତେବେଳେ ଯଦି ବେଦୌଁ ସାହେବଙ୍କୁ ଓଡ଼ିଶାର ପ୍ରକୃତ ଅବସ୍ଥା ସମ୍ପର୍କରେ ସୂଚନା ପ୍ରଦାନ କରାଯାଇଥାନ୍ତା, ତା'ହେଲେ ଓଡ଼ିଶାର ନିରୀହ ଜନସାଧାରଣ ଏପରି ପୋକ ମାଛି ପରି ଝଡ଼ି ପଡ଼ି ନ ଥାନ୍ତେ।

ଏପ୍ରିଲ୍ ମାସରେ ପୁରୀ ଏବଂ ବାଲେଶ୍ୱରରେ ଦୁର୍ଭିକ୍ଷର ଉତ୍କଟ ପରିଣତି ଦୃଷ୍ଟିଗୋଚର ହୋଇଥିଲା। ଏପ୍ରିଲ୍ ପର୍ଯ୍ୟନ୍ତ କୌଣସି ପ୍ରକାର କଟକରେ ଦୁର୍ଭିକ୍ଷର ଭୟାଭୟତା ଦୂର କରାଯାଇ ପାରିଥିଲା। ମାର୍ଚ୍ଚ ଶେଷ ବେଳକୁ ଚାଉଳ କ୍ରମଶଃ ଦୁର୍ମୂଲ୍ୟ ହୋଇ ପଡ଼ିଲା। ଏପ୍ରିଲ ମାସରେ ଟଙ୍କାକୁ ଚାଉଳ ୫$\frac{୧}{୨}$ ସେରରୁ ୬$\frac{୧}{୨}$ ସେର ପର୍ଯ୍ୟନ୍ତ ଥିଲା। ତେଣୁ ଲୋକମାନେ ଚାଉଳ କିଣିବାକୁ ପଇସା ମଧ୍ୟ ପାଇଲେ ନାହିଁ। ଏ ପର୍ଯ୍ୟନ୍ତ ସରକାରଙ୍କ ତରଫରୁ ଜନସାଧାରଣଙ୍କୁ କୌଣସି ସାହାଯ୍ୟ ବ୍ୟବସ୍ଥା ହୋଇ ନ ଥିଲା। ଜଳସେଚନ କମ୍ପାନୀ (Irrigation Company) ପୂର୍ବରୁ ଯେଉଁ ଚାଉଳ ଦେଇ କାର୍ଯ୍ୟ କରାଉଥିଲା, ଏପ୍ରିଲ୍ ମାସ ଶେଷବେଳକୁ ତାଙ୍କ ହସ୍ତରୁ ସମସ୍ତ ଚାଉଳ ନିଃଶେଷ ହୋଇଗଲା ଓ ଏହି କମ୍ପାନୀର କଲୋନେଲ୍ ରୁଣ୍ଡାଲ୍ ଓ ବୁଥିବାଏ ଅଫିସର ଦ୍ୱୟ କଟକ ଜିଲ୍ଲାର ଶୋଚନୀୟ ଅବସ୍ଥା ସମ୍ପର୍କରେ କମିଶନର ଏବଂ କଲେକ୍ଟରଙ୍କୁ ଜଣାଇଥିଲେ ମଧ୍ୟ, ସେମାନେ ତାଙ୍କର ମତାମତ ଉପରେ କୌଣସି ଗୁରୁତ୍ୱ ଆରୋପ କରି ନ ଥିଲେ।[୭୨] ଏପ୍ରିଲ ମାସ ମଧ୍ୟଭାଗକୁ ଓଡ଼ିଶାର ଏହି ତିନୋଟି ଜିଲ୍ଲାର ଶୋଚନୀୟ ଅବସ୍ଥା କ୍ରମଶଃ ଜନସାଧାରଣ ତଥା ଇଉରୋପର ପ୍ରେସ୍‌ମାନଙ୍କରେ ଆଲୋଚନା ହେବାକୁ ଲାଗିଲା। ଜେ.ଏସ୍. ସାଇକ୍‌ସ (J.S. Sykes)ନାମକ କଲିକତାରେ ଜଣେ ବଣିକ ଥିଲେ ଓ ସେ ଓଡ଼ିଶାରେ ଥିବା ମିଶ୍‌ନାରୀମାନଙ୍କ ସହିତ ବାଣିଜ୍ୟିକ ଯୋଗାଯୋଗ ସର୍ବଦା ରକ୍ଷାକରି ଆସୁଥିଲେ। ସେ ହିଁ ପ୍ରଥମେ ଓଡ଼ିଶାକୁ ସୁବିଧାରେ ରିଲିଫ୍ ଦେବାପାଇଁ ମନସ୍ଥ କଲେ। ସେ ଏପ୍ରିଲ୍ ୧୪ରେ 'ଓଡ଼ିଶା ଦୁର୍ଭିକ୍ଷ ପାଣ୍ଠି' (Orissa Famine Fund) ନାମରେ ଏକ ବିଜ୍ଞାପନ ପ୍ରକାଶ କଲେ।[୭୩] ଏପ୍ରିଲ୍ ୨୮ରେ ଆର୍.ବି. ଚାପମ୍ୟାନ୍, ଯେ କି ବୋର୍ଡ଼ର ସେକ୍ରେଟାରୀ ଥିଲେ, ସେ 'English Man'ର ସମ୍ପାଦକଙ୍କ ନିକଟକୁ ଓଡ଼ିଶାର ପ୍ରପୀଡ଼ିତ ଜିଲ୍ଲାମାନଙ୍କ ଦୁରବସ୍ଥା ସମ୍ପର୍କରେ ଲେଖି ଜଣାଇଥିଲେ।[୭୪] ମେ ମାସ ବେଳକୁ ଟଙ୍କାରେ ୪$\frac{୧}{୨}$ ସେର

ଚାଉଳ ମଧ୍ୟ ମିଳିଲା ନାହିଁ। ଜୁନ୍ ମାସ ବେଳକୁ ସମଗ୍ର ଓଡ଼ିଶାରେ ଦୁର୍ଭିକ୍ଷର କରାଳ ଛାୟା ମାଡ଼ିଗଲା।(୭୫)

ଏହି ସମୟରେ ଯେଉଁ ଅଫିସରମାନେ ଓଡ଼ିଶାର ପ୍ରକୃତ ଅବସ୍ଥା ସମ୍ପର୍କରେ ଜାଣିବାକୁ ଆସିଥିଲେ, ସେମାନଙ୍କୁ ବଙ୍ଗାଳୀ କର୍ମଚାରୀମାନେ ଭୁଲ୍ ତଥ୍ୟ ପରିବେଷଣ କରିଥିଲେ। ଏ ସମ୍ପର୍କରେ ଫକୀରମୋହନ ଲେଖିଛନ୍ତି – "ସେ ସମୟରେ ଉତ୍କଳର ପରମ ସହାୟ ରେଭେନ୍ସାସାହେବ ବୋଧକରେ ନୂତନ କମିଶନର ପଦରେ ନିଯୁକ୍ତ ହୋଇ ଆସିଥାନ୍ତି। ସେପ୍ଟେମ୍ବର କି ଅକ୍ଟୋବର ମାସରେ ଗବର୍ଣ୍ଣମେଣ୍ଟରୁ କମିଶନରଙ୍କ ପାଖକୁ ଚିଠି ଆସିଲା – ଅନାବୃଷ୍ଟି ହେତୁରୁ ଓଡ଼ିଶାରେ ଦୁର୍ଭିକ୍ଷ ଉପସ୍ଥିତ ହେବାର ଖୁବ୍ ସମ୍ଭାବନା। 'ପ୍ରଜାମାନଙ୍କ ରକ୍ଷା ନିମନ୍ତେ ଗବର୍ଣ୍ଣମେଣ୍ଟଙ୍କ ପକ୍ଷରୁ କୌଣସି ପ୍ରକାର ଉପାୟ ବିଧାନ କରାଯିବାର ଆବଶ୍ୟକ କି ନା? ଯଦି ପ୍ରୟୋଜନ ହୁଏ କି ପ୍ରକାର ଉପାୟ ବିଧାନ କରାଯାଇପାରେ? ଗବର୍ଣ୍ଣମେଣ୍ଟଙ୍କ ଚିଠିର ଉତ୍ତର ଦେବା ସକାଶେ କମିଶନରସାହେବ କଚେରିର ସମସ୍ତ ଅମଲାଙ୍କୁ ବସାଇ, ପରାମର୍ଶ କରିବାକୁ ଲାଗିଲେ। ସିରସ୍ତାଦ୍ଦାର ଦୁଇଜଣ କହିଲେ, "ଓଡ଼ିଶାରେ ଦୁର୍ଭିକ୍ଷ ପଡ଼ିବ – ପଡୁ; କିଛି ଚିନ୍ତା ନାହିଁ। ମଫସଲର ଜମିଦାର ମହାଜନଙ୍କ ଘରେ ଯଥେଷ୍ଟ ଧାନ ମହଜୁଦ ଅଛି। ସେଥିରେ ବର୍ଷକ ଚଳିଯାଇପାରେ।" ସିରସ୍ତାଦାରମାନେ ଯେ ସ୍ଥଳେ ଏକଥା କହି ସାରିଲେଣି, ସେମାନଙ୍କ ମନୋରଞ୍ଜନ ସକାଶେ ପେସ୍କାରମାନଙ୍କର ତ କିଛି ବଢ଼ାଇ କହିବା ଉଚିତ। କମିଶନରୀ ପେସ୍କାର କହିଲେ – "ଗୋପାଳପୁର ମୌଜାର ଜମିଦାର ଘରେ ଦଶଟା ମରେଇରେ ପଚାଶ ହଜାର ଛେଲା ଧାନ ଖଣି ପଡ଼ିଛି। ଭୀମପୁର ଶାମ ସାହୁ ଘରୁ ନିକୁଛରେ ଚାଳିଶ ହଜାର ଛେଲା ଧାନ ବାହାରିବ। ଏହାଛଡ଼ା ଛୁଟ କୁରିଆ ମହାଜନମାନଙ୍କ ଘରେ ଧାନ ତ ପୂରି ରହିଛି। କେବଳ ଏମାନେ ମରେଇ ଫିଟାଇ ଦେଲେ ଓଡ଼ିଶାକୁ ଦୁଇମାସ ସମ୍ଭାଳି ନେବେ।" ପଲିଟିକେଲ ଇଲାକାର ପେସ୍କାରବାବୁ ପଚାଶ ହଜାର ଛେଲାରୁ ଉଠି, ଲକ୍ଷ ଲକ୍ଷ ଛେଲା ଧାନ ଲୋକମାନଙ୍କ ଘରେ ଥିବାର ହିସାବ ଦେଲେ, ସେଥିରୁ ଜଣାଗଲା, ଓଡ଼ିଶାରେ ଅସୀମ ଧାନ ମହଜୁଦ୍ ଅଛି, ସେଥିରେ ବର୍ଷକ ରକ୍ଷାପାଇପାରେ। କମିଶନର ସାହେବ ଗବର୍ଣ୍ଣମେଣ୍ଟକୁ ଲେଖିଲେ – ଓଡ଼ିଶାରେ ଦୁର୍ଭିକ୍ଷ ପଡ଼ିପାରେ, ମାତ୍ର ଦେଶ ମଧ୍ୟରେ ଅନେକ ଧାନ ମହଜୁଦ୍ ଅଛି, ସେଥିରେ ବର୍ଷକ ଚଳିପାରିବେ।"(୭୬) କର୍ମଚାରୀମାନଙ୍କର ଏହିପରି ତ୍ରୁଟିପୂର୍ଣ୍ଣ ବିବରଣୀ ଯୋଗୁଁ ଓଡ଼ିଶାର ଲକ୍ଷାଧିକ ଲୋକ ଦୁର୍ଭିକ୍ଷର ଶିକାର ହୋଇଥିଲେ। ଏପରି ଏକ ଜାତୀୟ ବିପତ୍ତି ସମଗ୍ର ଭାରତ ବର୍ଷରେ ମଧ୍ୟ ବିରଳ ଥିଲା। ସରକାରଙ୍କ ଉଦାସୀନ ମନୋବୃତ୍ତି ଯୋଗୁଁ ଓଡ଼ିଶାର ସଚେତନ ଶିକ୍ଷିତ ଯୁବକମାନଙ୍କ ମନରେ ଜାତୀୟଭାବ

ସୃଷ୍ଟି ହୋଇଥିଲା। ଏହାରି ପୃଷ୍ଠଭୂମି ଉପରେ ପ୍ରକାଶ ଲାଭ କରିଥିଲା ଓଡ଼ିଆ ପତ୍ରିକା 'ଉତ୍କଳ ଦୀପିକା'।

ସେତେବେଳେ 'ଉତ୍କଳ ଦୀପିକା' ଏହି ନ'ଅଙ୍କ ଦୁର୍ଭିକ୍ଷ ସମ୍ପର୍କରେ ଅନେକ ତଥ୍ୟ ପ୍ରକାଶ କରିଥିଲା। ଦୁର୍ଭିକ୍ଷ ପାଇଁ କେଉଁମାନେ ଦାୟୀ ଓ କେତେ ଲୋକ ଏହାଦ୍ୱାରା ମୃତ୍ୟୁବରଣ କରିଥିଲେ, ସେ ସମ୍ପର୍କରେ 'ଉତ୍କଳ ଦୀପିକା' ଲେଖିଥିଲା – "ଲଣ୍ଡନ ନଗରୀରୁ ଜୁଲାଇ ମାସ ତା୨ରିଖରେ ତାର ଡାକ ଦ୍ୱାରା ଆସିଥିବା ସମ୍ବାଦରୁ ଜଣାଗଲାଯେ, ଓଡ଼ିଶା ଦୁର୍ଭିକ୍ଷ ରିପୋର୍ଟ ପାର୍ଲିଆମେଣ୍ଟ ସଭାରେ ଆଗତ ହୋଇଅଛି ଓ ଆମ୍ଭମାନଙ୍କର ଗବର୍ଣ୍ଣର ଜେନେରାଲ ଶ୍ରୀଯୁକ୍ତ ଲରେନ୍ସସାହେବ ଆପଣାର ଯେଉଁ ମନ୍ତବ୍ୟ ଲିପି ଅତି ବୃହତ୍ ଅଟଇ ଓ ସେଥିରେ ଗବର୍ଣ୍ଣର ଜେନେରାଲସାହେବ ଲେଖିଅଛନ୍ତି ଯେ ଏ ଦୁର୍ଘଟନା ସମ୍ପର୍କରେ ବଙ୍ଗଳାର ଗବର୍ଣ୍ଣମେଣ୍ଟ ସାବଧାନତା, ବିଚକ୍ଷଣତା ଓ ବହୁଦର୍ଶିତାର ଅଭାବ ପ୍ରଦର୍ଶନ କରିଅଛନ୍ତି ଓ ଏ ସମସ୍ତ ଅଭାବର କୌଣସି ଉପଯୁକ୍ତ କାରଣ ନାହିଁ।

ଲଣ୍ଡନ ନଗରର ଟାଇମ୍ସ ନାମକ ପତ୍ରିକା ଏହି ଦିନ ଏକ ପ୍ରସ୍ତାବ ମୁଦ୍ରିତ କରି ସେଥିରେ ଭାରତବର୍ଷୀୟ ଗବର୍ଣ୍ଣମେଣ୍ଟକୁ ଏହି ରୂପ ଦୋଷୀ କରି ଅଛନ୍ତି ଯେ ସେ ଦୁର୍ଭିକ୍ଷ ଆରମ୍ଭରେ କୌଣସି ଉପାୟ ଚେଷ୍ଟା କରି ନାହାନ୍ତି।

ଅତଏବ ଦେଖାଯାଏ ଯେ, ଦୁର୍ଭିକ୍ଷ କମିଶନରମାନେ ସ୍ଥାନୀୟ ଗବର୍ଣ୍ଣମେଣ୍ଟ ଓ କର୍ମଚାରୀମାନଙ୍କୁ ରକ୍ଷା କରିବାରେ ଯେତେ ଚେଷ୍ଟା କରିଅଛନ୍ତି ତାହା କିଛି ସଫଳ ହୋଇ ନାହିଁ, ପାର୍ଲିଆମେଣ୍ଟରେ ଯଥାର୍ଥ ବିଚାର ହେବ ଓ ସେ ଯେଉଁ ପ୍ରକାର କର୍ମ କରିଅଛନ୍ତି ସେ ପରିମାଣରେ ନିନ୍ଦା ବା ପ୍ରଶଂସା ପାଇବେ। ମାତ୍ର ଆଶ୍ଚର୍ଯ୍ୟର ବିଷୟ ଯେ କମିଶନରମାନେ ଆପଣା ରିପୋର୍ଟରେ ଲେଫ୍‌ଟନେଣ୍ଟ ଗବର୍ଣ୍ଣରଙ୍କୁ ନିର୍ଦ୍ଦୋଷ କରିବାର ଚେଷ୍ଟା କରିଅଛନ୍ତି। କିନ୍ତୁ ଗବର୍ଣ୍ଣର ଜେନେରାଲ ସାହେବ ତାହାଙ୍କର ନିନ୍ଦା ରିପୋର୍ଟରେ କରିଅଛନ୍ତି। ଏ ସ୍ଥଳେ କମିଶନରମାନଙ୍କ ମତ ପ୍ରାୟ ଧାର୍ଯ୍ୟ ହେବ ନାହିଁ।

କମିଶନରମାନେ ଆପଣା ରିପୋର୍ଟରେ ଦୁର୍ଭିକ୍ଷ ସଂକ୍ରାନ୍ତ ସମସ୍ତ ବିଷୟ ବାହୁଲ୍ୟ ରୂପେ ଲେଖିଅଛନ୍ତି। ମାତ୍ର ଅପୂର୍ବ କୌଶଳ ଦ୍ୱାରା କୌଣସି ହାକିମଙ୍କୁ ଏଥିରେ ବିଶେଷ ଦୋଷୀ କରି ନାହାନ୍ତି। ଓଡ଼ିଶା ହାକିମମାନଙ୍କ ପକ୍ଷରେ ସାଧାରଣ ରୂପେ ଏହି ରାୟ ଦେଇଅଛନ୍ତି ଯେ ସେମାନଙ୍କର ସାହସ କିଛି ମାତ୍ର ନାହିଁ। କେବଳ ଶ୍ରୀଯୁକ୍ତ ବାର୍ଲୋସାହେବ ପୁରୀ କଲେକ୍ଟରଙ୍କର ପ୍ରଶଂସା କରିଅଛନ୍ତି ଓ ଅପର ସ୍ଥାନର ହାକିମ ମଧ୍ୟରୁ ନଦିୟାର କଲେକ୍ଟର ଓ କମିଶନର ସାହେବଙ୍କର ବିଶେଷ ପ୍ରଶଂସା

ହୋଇଅଛି।[୭୭] ସେହି ସଂଖ୍ୟାରେ କଟକ, ପୁରୀ ଓ ବାଲେଶ୍ୱରରେ କେତେ ଲୋକ ପ୍ରାଣ ହରାଇଥିଲେ ତା'ର ବିବରଣୀ ମଧ୍ୟ ପ୍ରକାଶ ପାଇଛି। ଏହି ବିବରଣୀ ଅନୁଯାୟୀ କଟକରେ ମୃତ୍ୟୁ ସଂଖ୍ୟା ୩୦୮୦୦୯, ପୁରୀର ମୃତ୍ୟୁସଂଖ୍ୟା ୨୧୮୮୫୨, ବାଲେଶ୍ୱର ମୃତ୍ୟୁ ସଂଖ୍ୟା ୨୧୭୬୦୮।[୭୮]

କିନ୍ତୁ ଏକଥା ସ୍ୱୀକାର କରିବାକୁ ପଡ଼ିବ ଯେ, ଏହି ପ୍ରଳୟଙ୍କରୀ ଦୁର୍ଭିକ୍ଷ ଯୋଗୁଁ ଓଡ଼ିଆମାନେ କ୍ରମଶଃ ସଚେତନ ହୋଇ ଉଠିଛନ୍ତି। ସେମାନଙ୍କ ମଧ୍ୟରେ ଜାତୀୟ ଚେତନା ସୃଷ୍ଟି ହୋଇଛି ଓ ଶାସନ କ୍ଷେତ୍ରରେ ତଥା ସାମାଜିକ ଏବଂ ରାଜନୀତିକ ବ୍ୟବସ୍ଥା କ୍ଷେତ୍ରରେ ମଧ୍ୟ ପରିବର୍ତ୍ତନ ଆସିଛି। ଏ ସମ୍ପର୍କରେ ନିବେଦିତା ମହାନ୍ତି କୁହନ୍ତି – "It would be pertinent to examine the role of this natural calamity in arousing a nationalistic sentiment and its importance in bringing in its wake a number of far-reaching adminstrative and socio-political change."[୭୯] ଓଡ଼ିଶାର ଏହି ଦୁର୍ଭିକ୍ଷ ପାଇଁ ଇଂରେଜମାନେ କେତେକାଂଶରେ ଦାୟୀ ରହିଥିବାରୁ ଦୁର୍ଭିକ୍ଷ ପରବର୍ତ୍ତୀ ଓଡ଼ିଶାର ସାମୂହିକ ବିକାଶ ପାଇଁ ସେମାନେ ଆପ୍ରାଣ ଚେଷ୍ଟା କରିଛନ୍ତି। ଓଡ଼ିଶାର ସମସ୍ତ ପ୍ରକାର ବିକାଶ ଯେ କେବଳ ଦୁର୍ଭିକ୍ଷ ପରବର୍ତ୍ତୀ ସମୟରେ ହୋଇପାରିଛି କହିବା ଅନାବଶ୍ୟକ ମାତ୍ର।

## ଭାଷା ସୁରକ୍ଷା ଆନ୍ଦୋଳନ

୧୮୬୮-୬୯ ମସିହାରେ ଓଡ଼ିଆ ଭାଷାକୁ ସମ୍ପୂର୍ଣ୍ଣ ଲୋପ କରି ଦେବାପାଇଁ ବଙ୍ଗାଳୀମାନେ ଚକ୍ରାନ୍ତ କରିଥିଲେ। ନିଜ ଭାଷାର ପ୍ରତିଷ୍ଠା ଓ ଓଡ଼ିଆ ଭାଷାର ବିଲୋପ ପାଇଁ ଊନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ଏମାନେ ଯେପରି ଭାବରେ ପଦକ୍ଷେପ ଗ୍ରହଣ କରିଥିଲେ, କେତେଜଣ ଇଂରେଜୀ ସାହେବଙ୍କର ସହଯୋଗ ମିଳି ନ ଥିଲେ ଓଡ଼ିଶାରେ ବର୍ତ୍ତମାନ ଓଡ଼ିଆ ଭାଷା ପରିବର୍ତ୍ତେ ବଙ୍ଗଳା ଭାଷା ମାଧ୍ୟମରେ ଶିକ୍ଷାଦାନ କରାଯାଉଥାନ୍ତା। ୧୮୬୪ ମସିହାରୁ ବଙ୍ଗାଳୀମାନେ ଓଡ଼ିଶାରେ ଓଡ଼ିଆ ଭାଷା ପରିବର୍ତ୍ତେ ବଙ୍ଗ ଭାଷାର ପ୍ରଚଳନ ନିମିତ୍ତ ଖୁବ୍ ଜୋରସୋର୍‌ରେ ଲାଗି ପଡ଼ିଥିଲେ। ଏହି ୧୮୬୪ରେ କଟକର ଡେପୁଟି ଇନ୍‌ସପେକ୍ଟର ଉମାଚରଣ ହାଲ୍‌ଦାର ଓଡ଼ିଶାରେ ଶିକ୍ଷାର ଅଧୋଗତିର କାରଣ ଦର୍ଶାଇବାକୁ ଯାଇ ଲେଖିଥିଲେ – "ଓଡ଼ିଶାର ବିଦ୍ୟାଳୟମାନଙ୍କରେ ବଙ୍ଗଳା ଓ ଓଡ଼ିଆଭାଷା ଉଭୟର ପ୍ରଚଳନ ଶିକ୍ଷା ଉନ୍ନତିର ପ୍ରଧାନ ଅନ୍ତରାୟ। ଓଡ଼ିଆ ଭାଷାରେ ବ୍ୟାକରଣ ଓ ପାଠ୍ୟପୁସ୍ତକର ଅଭାବ ହେତୁ ଏଠାରେ କେବଳ ବଙ୍ଗଳା ଭାଷାରେ ପାଠ୍ୟପୁସ୍ତକ ମାଧ୍ୟମରେ ଶିକ୍ଷାଦାନ କରାଯିବା ଉଚିତ। ଓଡ଼ିଶାରେ ବଙ୍ଗଳା ଭାଷାକୁ ସରକାରୀ ଭାଷା କରାଯିବା ମଧ୍ୟ ଉଚିତ।[୮୦]

୧୮୬୫ ମସିହାରେ କଟକ ଡିବେଟିଂ ସୋସାଇଟ୍‌ର ଏକ ସଭାରେ ଭାଷଣ ଦେବାବେଳେ ରାଜେନ୍ଦ୍ର ଲାଲ ମିତ୍ର କହିଥିଲେ, "ଯେବେ ଉତ୍କଳରେ ବଙ୍ଗ ଭାଷା ପ୍ରଚଳିତ ହୁଏ, ତେବେ ବଙ୍ଗଭାଷାର ପୁସ୍ତକମାନ ଏଠାରେ ଚଳିବ। ଆଉ ଏଠାଲୋକେ ଅନାୟାସରେ ଉତ୍ତମ ପୁସ୍ତକ ପାଇପାରିବେ।[୮୧] ୧୮୭୦ ମସିହା ମେ ମାସ ୪ ତାରିଖରେ ଜନ୍ ବୀମ୍‌ସ୍ ରୟାଲ୍ ଏସିଆଟିକ୍ ସୋସାଇଟିରେ ଓଡ଼ିଆ ଭାଷାର ମହତ୍ତ୍ୱ ପ୍ରତିପାଦନ କରିବାପରେ ଶ୍ରୀ ମିତ୍ର ପୁନର୍ବାର ଓଡ଼ିଆ ଭାଷା ଉପରେ ଆକ୍ରମଣ କରିବାକୁ ଆସି ଯୁକ୍ତି କଲେ – "ବଙ୍ଗଳାର ଏକ କ୍ଷୁଦ୍ର ଉପଭାଷା ଓଡ଼ିଆ ଭାଷାକୁ ଏକ ସ୍ୱତନ୍ତ୍ର ଭାଷାରେ ପରିଣତ କରିବାପାଇଁ ଓଡ଼ିଆମାନଙ୍କର ଚେଷ୍ଟାହିଁ ଏ ଉପଭାଷାକୁ ବେଶି କ୍ଷତିଗ୍ରସ୍ତ କରୁଛି।"[୮୨] ରାଜେନ୍ଦ୍ର ଲାଲ ମିତ୍ରଙ୍କ ଓଡ଼ିଆ ଭାଷା ବିରୋଧରେ ବକ୍ତବ୍ୟକୁ 'ଉତ୍କଳ ଭାଷାର ଉନ୍ନତି ପ୍ରତି ବ୍ୟାଘାତ' ଶିରୋନାମାରେ 'ଉତ୍କଳ ଦୀପିକା' ଲେଖିଥିଲା – "ବାବୁ ରାଜେନ୍ଦ୍ର ଲାଲ ମିତ୍ର ସେଦିନ ସଭାରେ ବ୍ୟକ୍ତ କଲେଯେ, 'ଉତ୍କଳର ଯଥାର୍ଥ ହିତାକାଂକ୍ଷୀ ଯେ ହେବେ, ସେ ସର୍ବାଗ୍ରେ ଉତ୍କଳ ଭାଷା ଉଠାଇ ଦେଇ ବଙ୍ଗଭାଷା ପ୍ରଚଳନ କରିବାର ଚେଷ୍ଟା କରିବେ। × × × ଆମ୍ଭେମାନେ ଜ୍ଞାନ କରିଥିଲୁ ଯେ ରାଜେନ୍ଦ୍ରବାବୁ ଉତ୍କଳକୁ ଆସି ଏଠାରେ ଅନେକ ବିଷୟ ଅବଗତ ହୋଇଅଛନ୍ତି। କିନ୍ତୁ ଉପର୍ଯ୍ୟୁକ୍ତ କଥାମାନ ଶୁଣି ବିସ୍ମୟ ହେଲୁ। × × × ପ୍ରକୃତରେ ଦେଖାଯାଏ ଯେ ଉତ୍କଳ ଭାଷା ପ୍ରଚଳିତ ଥିବା ଭୂମିଖଣ୍ଡର ଆୟତନ ବଙ୍ଗ ପ୍ରଚଳିତ ଦେଶରୁ ଊଣା ନୁହଇ, ଅତଏବ ଉତ୍କଳ ଭାଷା ଉନ୍ନତି ହେବାର ସମ୍ପୂର୍ଣ୍ଣ ସମ୍ଭାବନା ଅଛି।"[୮୩]

ଫକୀରମୋହନ ସେନାପତି ମଧ୍ୟ ସେତେବେଳେ ଓଡ଼ିଆଭାଷା ଏକ ନିର୍ଜୀବ ଭାଷାର ପ୍ରତ୍ୟୁତ୍ତର ଦେବାକୁ ଯାଇ 'ଉତ୍କଳ ସାହିତ୍ୟ'ରେ ଲେଖିଥିଲେ – "କିଏ ବୋଲେ ଭାଷାଟା ନିର୍ଜୀବ। × × × କେବଳ ଉତ୍କଳ ସାହିତ୍ୟ କଥା କ'ଣ ବୋଲୁଛନ୍ତି ଭାରତୀୟ ସମସ୍ତ ପ୍ରାଦେଶିକ ସାହିତ୍ୟ କେବଳ ଇଂରାଜୀ ସାହିତ୍ୟ ସହାୟତାରେ ଉନ୍ନତି ସ୍ରୋତରେ ଧାବିତ ହେଉଛନ୍ତି। × × × ପ୍ରକୃତ କଥା ଧରିବାକୁ ଗଲେ ସାହିତ୍ୟର ବର୍ତ୍ତମାନ ଯୁଗର ଆରମ୍ଭ କାଳ ପନ୍ଦର କୋଡ଼ିଏ ବର୍ଷରୁ ଅଧିକ ନୁହେଁ। ତତ୍‌ପୂର୍ବେ ଶିକ୍ଷିତ ସମ୍ପ୍ରଦାୟଙ୍କ ଦୃଷ୍ଟି ଏହା ପ୍ରତି ତାଦୃଶ ନ ଥିଲା। ସେ ସମୟ, ସେ ଭାବ ଗତ ହୋଇଅଛି। ବର୍ତ୍ତମାନ ଶିକ୍ଷିତ ସମାଜ ମାତୃଭାଷାର ଉନ୍ନତି କାମନାରେ ଲାଗି ପଡ଼ିଛନ୍ତି। ଏଥକୁ ଏହାର ପ୍ରକୃତ ଉନ୍ନତି ଅବଶ୍ୟମ୍ଭାବୀ।"[୮୪] ପୁଣି ବାଲେଶ୍ୱର ବଙ୍ଗଦେଶର ନିକଟବର୍ତ୍ତୀ ହୋଇଥିବାରୁ, ସେଠାରେ ଓଡ଼ିଆଭାଷାକୁ ବିଲୋପ କରିଦେବାକୁ ବଙ୍ଗାଳୀମାନେ ଆପ୍ରାଣ ଉଦ୍ୟମ କରିଥିଲେ। ସେମାନେ ଓଡ଼ିଆ ଭାଷାରେ ପାଠ୍ୟ ପୁସ୍ତକର ଅଭାବ କାରଣ ଦର୍ଶାଇ ଓଡ଼ିଆ ଭାଷା ଉପରେ ବାରମ୍ବାର ଆକ୍ରମଣ କର

ଚାଲିଥିଲେ। 'ଉତ୍କଳ ଦୀପିକା' ତା'ର ପ୍ରତିବାଦ କରି ଲେଖିଥିଲା – "ଏ ପ୍ରସ୍ତାବରେ ଅସ୍ମଦ୍ଦେଶୀୟ ଲୋକମାନେ କି ପର୍ଯ୍ୟନ୍ତ ବ୍ୟସ୍ତ ଓ ଶଙ୍କାଯୁକ୍ତ ହୋଇ ଅଛନ୍ତି ତାହା ସହଜରେ ଜଣାଯାଉଅଛି। ଗତ ସପ୍ତାହର ଅତିରିକ୍ତ ପତ୍ରିକାରେ ବାଲେଶ୍ୱରର ଜଣେ ପତ୍ର ପ୍ରେରକର ପତ୍ରରୁ ତତ୍ରବ୍ୟ ଲୋକମାନଙ୍କର ଅଭିପ୍ରାୟ ଉତ୍ତମରୂପେ ପ୍ରକାଶ ପାଉଅଛି। ବାଲେଶ୍ୱର ବଙ୍ଗଦେଶର ନିକଟବର୍ତ୍ତୀ ଓ ସେଠାରେ ବଙ୍ଗଭାଷାର ଲିଖନ ପଠନ ଯଥେଷ୍ଟ ପରିମାଣରେ ହୁଅଇ। କିନ୍ତୁ ସେମାନେ ଉତ୍କଳ ଭାଷାକୁ ସ୍ୱତନ୍ତ ଭାଷା ଜ୍ଞାନ କରୁଅଛନ୍ତି ଏବଂ ଏହା ସେମାନଙ୍କର ମାତୃଭାଷା ଥିବାର ତହିଁ ପ୍ରତି ଅତ୍ୟାଚାରର ଉପକ୍ରମ ଦେଖି କାତର ହୋଇ ଅଛନ୍ତି। ସୁତରାଂ ଏ ଦେଶରେ ବଙ୍ଗ ଭାଷାରେ ଶିକ୍ଷା ଦେଲେ ଅର୍ଥବ୍ୟୟ ମାତ୍ର ସାର ହେବ, ଅତ୍ରତ୍ୟ ଲୋକଙ୍କର ଉପକାର ହେବ ନାହିଁ। × × × ଉତ୍କଳ ଭାଷାରେ ବିଦ୍ୟାଳୟର ପାଠୋପଯୁକ୍ତ ପୁସ୍ତକ ନଥିବା ବଙ୍ଗଭାଷା ଚଳାଇବାର କାରଣ ହୋଇଅଛି। ମାତ୍ର ଯେଉଁମାନେ ଏ ରୂପ ଯୁକ୍ତି କରନ୍ତି ସେମାନେ ଦେଶକାଳ ବିବେଚନା କରୁ ନାହାନ୍ତି ଦୁଃଖର ବିଷୟ ଅଟଇ × × × କଟକରେ ଏକ ମୁଦ୍ରାଯନ୍ତ ବସି ଏତେବେଳେ ସେଥିରେ ସୁନ୍ଦର ପାଠୋପଯୋଗୀ ପୁସ୍ତକ ମୁଦ୍ରିତ ହେଉଅଛି ଏବଂ ବାଲେଶ୍ୱରକୁ ମଧ୍ୟ ଏକ ମୁଦ୍ରାଯନ୍ତ ଆସିଲାଣି × × × ଆମ୍ଭେମାନେ ଏତେକାଳ ଶିକ୍ଷାର ଅଭାବ ସହ୍ୟ କଲୁଁ, ଆଉ ଦୁଇ ତିନି ବର୍ଷରେ ଆମ୍ଭମାନଙ୍କର କିଛି କ୍ଷତି ହେବ ନାହିଁ। ତେବେ କି ହେତୁରୁ ଗବର୍ଣ୍ଣମେଣ୍ଟ ଦେଶୀୟ ଲୋକଙ୍କ ଇଚ୍ଛା ବିରୋଧରେ କାର୍ଯ୍ୟକରି ବିଦ୍ୟାଳୟ ପ୍ରତି ମନ୍ଦ ସଂସ୍କାର ଜନ୍ମାଇବେ। ଗବର୍ଣ୍ଣମେଣ୍ଟ ଶିକ୍ଷାବିଭାଗର କର୍ମଚାରୀଙ୍କ ମତାନୁଗାମୀ ହୋଇ ନିତାନ୍ତରେ ଯଦି ବଙ୍ଗ ଭାଷାରେ ଶିକ୍ଷା ଦିଅନ୍ତି ତେବେ ଆମ୍ଭମାନଙ୍କର ଭାଷା ଲୋପ ହୋଇଯିବ ବୋଲି ଆମ୍ଭେମାନେ ଚିନ୍ତିତ ନୋହୁଁ। ମୁସଲମାନଙ୍କ ଶାସନ ବିସ୍ତାର ହେବା ସମୟରେ ଇଂରାଜମାନେ ଏ ଦେଶକୁ ଗ୍ରହଣ କରିବାର ବ୪୦ର୍ଷ ପର୍ଯ୍ୟନ୍ତ ପାରସ୍ୟ ଭାଷାରେ ସରକାରୀ ସମସ୍ତ କାର୍ଯ୍ୟ ହେଉଥିଲା ଏବଂ ଧନ ଉପାର୍ଜନ ଆଶାରେ ବିସ୍ତର ଲୋକ ଆପଣା ପୁତ୍ରାଦିଙ୍କୁ ଉକ୍ତ ଭାଷାରେ ଶିକ୍ଷା ଦେବାର ଯତ୍ନ କରିବାରୁ ଉତ୍କଳ ଭାଷାରେ ହତାଦର ହୋଇଥିଲା। ତଥାପି ତାହା ଲୋପ ହେଲା ନାହିଁ। କିପରି ଅବା ଲୋପ ହେବ? ମାଣିକ୍ୟକୁ ଅନ୍ଧାର ଘରରେ ଲୁଚାଇ ରଖିବାର ଚେଷ୍ଟାକଲେ ତାହା କି ଲୁଚି ରହିପାରିବାର ପଦାର୍ଥ?"[୮୫]

୧୮୬୯-୭୦ ସାଲ ବେଳକୁ ବାଲେଶ୍ୱର ହାଇସ୍କୁଲର ବଙ୍ଗୀୟ ପଣ୍ଡିତ କାନ୍ତିଚନ୍ଦ୍ର ଭଟ୍ଟାଚାର୍ଯ୍ୟ 'ଉଡ଼ିଆ ସ୍ୱତନ୍ତ୍ର ଭାଷା ନହେ' ନାମରେ ଏକ ପୁସ୍ତିକା ପ୍ରକାଶ କରି ଅପପ୍ରଚାର କଲେ। ଏହାର ପ୍ରତିକ୍ରିୟା ପ୍ରକାଶ କରି 'ଉତ୍କଳ ଦୀପିକା' ସମାଲୋଚନାରେ

ଲେଖିଥିଲା – 'ଓଡ଼ିଆ ସ୍ୱତନ୍ତ୍ର ଭାଷାନହେ' ଏହି ନାମରେ ଖଣ୍ଡିଏ ପୁସ୍ତକ ଗ୍ରନ୍ଥକର୍ତ୍ତାଙ୍କଠାରୁ ପାଇଥିବାର କୃତଜ୍ଞତା ପୂର୍ବକ ସ୍ୱୀକାର କରୁଅଛୁ। ଗ୍ରନ୍ଥ କର୍ତ୍ତାଙ୍କ ନାମ ବାବୁ କାନ୍ତିଚନ୍ଦ୍ର ଭଟ୍ଟାଚାର୍ଯ୍ୟ ବାଲେଶ୍ୱର ବିଦ୍ୟାଳୟର ପଣ୍ଡିତ। ଏହା ବଙ୍ଗ ଭାଷାରେ ରଚିତ। × × × ଗ୍ରନ୍ଥାକର୍ତ୍ତା ପୁସ୍ତକର ଆରମ୍ଭରେ ଲେଖନ୍ତି ଯେ ଭାଷତତ୍ତ୍ୱବିତ୍ ପଣ୍ଡିତଙ୍କର ମତାନୁସାରେ ଓଡ଼ିୟା ବଙ୍ଗଳା ହିନ୍ଦି ପ୍ରଭୃତି ଦେଶଭାଷା ଏକ ମୂଳରୁ ଉତ୍ପନ୍ନ ଅର୍ଥାତ୍ ଓଡ଼ିଆ ବଙ୍ଗଳା ଇତ୍ୟାଦି କେହି ସ୍ୱତନ୍ତ୍ର ଭାଷା ନୁହଇ, କିନ୍ତୁ ତଦୁତ୍ତାରୁ ଓଡ଼ିୟାକୁ ବଙ୍ଗଳା ବୋଲି ସିଦ୍ଧାନ୍ତ କରିଅଛନ୍ତି। ଏଥକୁ ତାହାଙ୍କର କେଉଁ କଥା ସତ୍ୟ ବୁଝିବାର କଠିନ × × × କେବଳ କେତେକ ସୁସାଦୃଶ୍ୟ ହେତୁରୁ ଦୁଇ ବା ଅଧିକ ଭାଷାକୁ ଏକ ବୋଲା ଯାଇପାରେ ତେବେ କେହି ଓଡ଼ିଆରୁ ହିନ୍ଦି ଓ ବଙ୍ଗଳା ବାହାରିଥିବାର କହିଲେ ଦୋଷ ହେବ ନାହିଁ। ମାତ୍ର ଓଡ଼ିଆମାନେ ତୁଚ୍ଛାକୁ ଏତେ ଅହଂକାର କରନ୍ତି ନାହିଁ ଅଥଚ ବିଚାର କଲେ ଏହାଙ୍କର ଅହଂକାର କରିବାର ଅନେକ କାରଣ ଅଛି। × × ବିଶେଷରେ ଓଡ଼ିଆରେ ଯେତେ ପ୍ରାଚୀନ ଗ୍ରନ୍ଥ ଅଛି ବଙ୍ଗଳାରେ ତେତେ ନାହିଁ। ମାଗି ଆଣିଲା ତିଉଣରେ କି କୁଟୁମ୍ବ ପୋଷାଯାନ୍ତା × × × ଗ୍ରନ୍ଥକର୍ତ୍ତା ଓଡ଼ିୟା ବଙ୍ଗଳାର ସମତା ଦେଖାଇବା ବିଷୟରେ ପ୍ରକାଶ୍ୟରେ କୌଣସି ଯତ୍ନର ତ୍ରୁଟି କରି ନାହାନ୍ତି × × ସେ ଦୁଇ ଚାରିଟା ବାଲେଶ୍ୱରୀ କଥା ଶୁଣି ଆପଣା ବୁଦ୍ଧିକୁ ଧନ୍ୟବାଦ ଦେଇ ଗ୍ରନ୍ଥ ରଚନାରେ ପ୍ରବୃତ୍ତ ହୋଇଥିବାର ଜଣାଯାଏ। କେଡ଼େ ମୂର୍ଖ ପଣିଆ ! ପୁଣି ତାହା ସଙ୍ଗେ ସାହସ ମଧ କେଡ଼େ ! ସଂସ୍କୃତ, ପାରସୀ ଓ ହିନ୍ଦି ଶବ୍ଦମାନଙ୍କୁ ବଙ୍ଗଳା ବୋଲି ଅନାୟାସରେ ପରିଚୟ ଦେଇଅଛନ୍ତି। ଯେବେ କିଞ୍ଚିତ୍ ଫାରସୀ କିମ୍ବା ହିନ୍ଦି ଜାଣିଥାନ୍ତେ ତେବେ କେଉଁ ଶବ୍ଦ କେଉଁ ଭାଷାରୁ ଜାତ ବାରିନେଇ ପାରନ୍ତେ ଓ ଯେବେ କିଛି ଓଡ଼ିୟା ଶିଖିଥାନ୍ତେ ତେବେ କେତେ ଗୁଡ଼ାଏ ଭ୍ରମରୁ ଉଦ୍ଧାର ହୋଇଥାନ୍ତେ। × ×[୮୬] ଗୋଲଡ଼ବୁରୀ ଓ ଜନ୍‌ବୀମ୍‌ସ ରାଜେନ୍ଦ୍ରଲାଲ ମିତ୍ର ଓ କାନ୍ତିଚନ୍ଦ୍ର ଭଟ୍ଟାଚାର୍ଯ୍ୟଙ୍କ ଓଡ଼ିଆ ଭାଷା ପ୍ରତି ଆକ୍ରମଣକୁ ସମର୍ଥନ କରି ନ ଥିଲେ। ଡଃ ଜେ.ଭି. ବୋଲଟନ୍ ମଧ ସେ ସମୟରେ ବଙ୍ଗାଳୀମାନଙ୍କର ଏହି ଜାତୀୟତାବାଦକୁ ପରବର୍ତ୍ତୀ ସମୟରେ ତୀବ୍ର ବ୍ୟଙ୍ଗୋକ୍ତି କରି ଲେଖିଥିଲେ – "ଯେଉଁ ଜାତୀୟତାବାଦ ବଙ୍ଗଳାରେ ଗତ ଶତାବ୍ଦୀରେ ଗଢ଼ି ଉଠିଲା, ତା'ର ମୂଳ ଉତ୍ସ ହେଲା ଅନେକାଂଶରେ ତୀବ୍ର ଅସହିଷ୍ଣୁତା, ତୀବ୍ର ସାମ୍ପ୍ରଦାୟିକତା ଏବଂ ତୀବ୍ର ରକ୍ଷଣଶୀଳତା।"[୮୭]

କେବଳ ଓଡ଼ିଶାରେ କାହିଁକି, ଆସାମୀ ଭାଷା ପ୍ରଦେଶରେ ମଧ ବଙ୍ଗାଳୀମାନେ ଆସାମୀ ଭାଷା ବିଲୋପ କରିବାକୁ ସମସ୍ତ ପ୍ରକାର ଚକ୍ରାନ୍ତ କରି ସାରିଥିଲେ। କିନ୍ତୁ

ସୁଖର ବିଷୟ ଆମେରିକା ମିଶନାରୀମାନଙ୍କ ଉଦ୍ୟମରୁ ଆସାମୀ ଭାଷା କୌଣସି ପ୍ରକାର ରକ୍ଷା ପାଇ ଯାଇଥିଲା।[୮୮] ବଙ୍ଗାଳୀମାନଙ୍କର ଭାରତର ବିଭିନ୍ନ ପ୍ରାଦେଶିକ ଭାଷା ଉପରେ ଆକ୍ରମଣକୁ ତତ୍କାଳୀନ କେତେଜଣ ବିଜ୍ଞ ଇଂରେଜ ବ୍ୟକ୍ତି ବିରୋଧ କରିଥିଲେ। ଓଡ଼ିଆ ଭାଷା ପ୍ରତି ଆକ୍ରମଣ ଯୋଗୁଁ ଭାଷା ସଚେତନ କେତେଜଣ ଓଡ଼ିଆ ବ୍ୟକ୍ତି କଠୋର ବିରୋଧ କରିବା ଦ୍ୱାରା ଓଡ଼ିଆ ଭାଷା ନିଜର ଇଜ୍ଜତ ବଞ୍ଚାଇବାକୁ କ୍ଷମ ହୋଇପାରିଥିଲା।

ସଂକ୍ଷେପରେ କହିଲେ, ନ'ଅଙ୍କ ଦୁର୍ଭିକ୍ଷର କରାଳ ଗ୍ରାସରୁ ସଦ୍ୟ ଉଠିଥିବା କଙ୍କାଳସାର ଓଡ଼ିଆମାନଙ୍କର ଗୌରବମୟ ମାତୃଭାଷାକୁ ଚିରଦିନ ପାଇଁ ଲୋପ କରିଦେବା ନିମିତ୍ତ ବଙ୍ଗାଳୀମାନଙ୍କର ଏହି ହୀନ ଚକ୍ରାନ୍ତ ଫଳରେ ଓଡ଼ିଆମାନଙ୍କ ମନରେ ଜାତୀୟ ଚେତନାର ନବତରଙ୍ଗ ଖେଳି ଯାଇଥିଲା। ସେତେବେଳେ ସେମାନେ ଠିକ୍ ରୂପେ ହୃଦୟଙ୍ଗମ କରିଥିଲେ, ଗୋଟିଏ ଜାତିର ମାତୃଭାଷା ହେଉଛି ତା'ର ଗର୍ବ ଓ ଗୌରବ। ମାତୃଭାଷାର ମର୍ଯ୍ୟାଦା ଲୁପ୍ତ ହୋଇଗଲେ ଗୋଟିଏ ଜାତିର ପ୍ରାଣ ସ୍ପନ୍ଦନ ଯେ ଚିରଦିନ ଲାଗି ବନ୍ଦ ହୋଇଯିବ, ତାହା ସେମାନେ ମର୍ମେ ମର୍ମେ ଅନୁଭବ କରିପାରିଥିଲେ। ତେଣୁ ମାତୃଭାଷାର ଉନ୍ନତି ଲାଗି କେତେଜଣ ଓଡ଼ିଆ ଓ ଓଡ଼ିଶାରେ ସ୍ଥାୟୀ ଭାବେ ବସବାସ କରୁଥିବା କେତେଜଣ ବଙ୍ଗାଳୀ ଆପ୍ରାଣ ଉଦ୍ୟମ କରିଥିଲେ। ବିଭିନ୍ନ ପତ୍ରପତ୍ରିକା ମାଧ୍ୟମରେ ମାତୃଭାଷାର ସୁରକ୍ଷା ଲାଗି ଆହ୍ୱାନ ଦିଆଯାଇଥିଲା। ସଚେତନ ଓଡ଼ିଆ ନିଜ ଭାଷାର ମହତ୍ତ୍ୱ ପ୍ରତିପାଦନ ନିମିତ୍ତ ଓଡ଼ିଆ ଭାଷାରେ ବିଭିନ୍ନ ପାଠ୍ୟପୁସ୍ତକ ପ୍ରଣୟନ କରିବାକୁ ଲାଗିଲେ। ଓଡ଼ିଆ ଭାଷା ଓ ସାହିତ୍ୟ ଏହିଠାରୁ ହିଁ ଏକ ନୂତନ ମୋଡ଼ନେଇ ଗତି କରିବାକୁ ଆରମ୍ଭ କଲା।

## ପାଠ୍ୟପୁସ୍ତକ ଆନ୍ଦୋଳନ ଓ ଓଡ଼ିଆ ସାହିତ୍ୟର ନବଜନ୍ମ

ଊନବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧ ପର୍ଯ୍ୟନ୍ତ ଓଡ଼ିଶାରେ ଆଶାନୁରୂପ ଶିକ୍ଷାନୁଷ୍ଠାନ ନ ଥିବାରୁ ଓ ଓଡ଼ିଆମାନଙ୍କର ରକ୍ଷଣଶୀଳ ମନୋଭାବ ଯୋଗୁଁ ଭାରତର ଅନ୍ୟାନ୍ୟ ପ୍ରଦେଶ ତୁଳନାରେ ଓଡ଼ିଶା ଶିକ୍ଷା କ୍ଷେତ୍ରରେ ପଛରେ ପଡ଼ିଯାଇଥିଲା। ପଠାଣି ପଟ୍ଟନାୟକ କୁହନ୍ତି, "ଇଂରେଜ ରାଜତ୍ୱର ପ୍ରଥମ ପଚାଶ ବର୍ଷ ଓଡ଼ିଶା ବିଭାଗରେ ବିଶେଷ ଶିକ୍ଷାନୁଷ୍ଠାନ ପ୍ରତିଷ୍ଠିତ ହୋଇ ନ ଥିଲା। ତଦାନୀନ୍ତନ ସରକାର ଏ ଦିଗରେ ବିଶେଷ ଉତ୍ସାହ ପ୍ରଦର୍ଶନ କରି ନ ଥିଲେ। ଯେଉଁ କେତୋଟି ସ୍କୁଲରେ ଇଂରେଜୀ ଶିକ୍ଷାର ବ୍ୟବସ୍ଥା ଥିଲା, ସେଠାରେ ଓଡ଼ିଶାର ଲୋକେ ପଢ଼ିବାପାଇଁ ଆଗ୍ରହ ପ୍ରକାଶ କରୁ ନ ଥିଲେ। ଯେଉଁମାନେ ପଢୁଥିଲେ, ସେମାନେ ବାଧ୍ୟହୋଇ ବଙ୍ଗଳା ଭାଷା ଅଧ୍ୟୟନ

କରୁଥିଲେ। ଓଡ଼ିଆ ଭାଷାରେ ବିଶେଷ ପାଠ୍ୟପୁସ୍ତକ ନ ଥିଲା।[୮୯] ୧୮୨୨ ମସିହାଠାରୁ ୧୮୪୨ ମସିହା ପର୍ଯ୍ୟନ୍ତ ଓଡ଼ିଶାରେ ଯେଉଁ ପାଠ୍ୟ ପୁସ୍ତକ ରଚନା କରାଯାଇଥିଲା, ତା'ର ଉଦ୍ୟକ୍ତା ଥିଲେ ମିଶ୍ନାରୀମାନେ। ସେହିମାନଙ୍କ ଉଦ୍ୟମରେ ଓଡ଼ିଶାରେ ପ୍ରଥମେ ଶିକ୍ଷା ବିସ୍ତାର ଓ ପାଠ୍ୟପୁସ୍ତକ ପ୍ରଣୟନ କରାଯାଇଥିଲା। ଏହି ସମୟ ମଧ୍ୟରେ ସଟନ୍‌ସାହେବଙ୍କ ବିଦ୍ୟାସାଗର, ଇତିହାସ, ନୀତିକଥା, ଭୂଗୋଳ ପାଠ, କଟକ ଇଂରାଜୀ ସ୍କୁଲର ପଣ୍ଡିତ ବିଶ୍ୱମ୍ଭର ବିଦ୍ୟାଭୂଷଣଙ୍କ 'ଓଡ଼ିଆ ବ୍ୟାକରଣ, ଫୋର୍ଟ ଉଇଲିୟମ କଲେଜର ପୁସ୍ତକାଗାର ସଂରକ୍ଷକ ମୋହନ ପ୍ରସାଦ ଠାକୁରଙ୍କର ଇଂରାଜୀ ଓଡ଼ିଆ ଅଭିଧାନ ଇତ୍ୟାଦି ଓଡ଼ିଆ ପାଠ୍ୟପୁସ୍ତକ ପ୍ରକାଶ ଲାଭ କରିଥିଲା।

୧୮୪୨ଠାରୁ ୫୭ ମଧ୍ୟରେ ଓଡ଼ିଶାରେ ଆଉ କେତେକ ଉପାଦେୟ ପାଠ୍ୟପୁସ୍ତକ ରଚନା କରାଯାଇଥିଲା। ସେଗୁଡ଼ିକ ହେଲା ମିଷ୍ଟର ସଟନ୍‌ଙ୍କ ଦ୍ୱାରା ଲିଖିତ ଓ ସମ୍ପାଦିତ ଓଡ଼ିଆ ଅଭିଧାନ, ଓଡ଼ିଶା ଇତିହାସ, ନୀତିକଥା, ହିତୋପଦେଶ, ରେଭେରେଣ୍ଡ ଜେ. ଫିଲିପ୍‌ସଙ୍କର ଓଡ଼ିଆ ଭୂଗୋଳ, ରଚୟିତାଙ୍କ ନାମ ନ ଥିବା ଗଣିତ, ବର୍ଣ୍ଣବୋଧକ ଇତ୍ୟାଦି।[୯୦] ୧୮୫୭ ମସିହାରେ ଡକ୍ଟର ରୋର ଓଡ଼ିଶାର ପ୍ରଥମ ଇନିସ୍‌ପେକ୍ଟର ଭାବରେ ଦାୟିତ୍ୱ ନେବାପରେ ଉଚ୍ଚକୋଟିର ପାଠ୍ୟପୁସ୍ତକ ପ୍ରଣୟନ ଦିଗରେ ମନୋନିବେଶ କରିଥିଲେ। ରେଭେନ୍ସା ସାହେବ ମଧ୍ୟ ନ'ଅଙ୍କ ଦୁର୍ଭିକ୍ଷର ଉପଯୁକ୍ତ ପ୍ରତିକାର କରିପାରି ନ ଥିବାରୁ ଅନୁତପ୍ତ ହୋଇ ଓଡ଼ିଶାରେ ଶିକ୍ଷାର ପ୍ରସାର ନିମନ୍ତେ ଆପ୍ରାଣ ଉଦ୍ୟମ କରିଥିଲେ ଓ ଓଡ଼ିଆଭାଷାରେ ରଚିତ ନୂଆପାଠ୍ୟପୁସ୍ତକ ପ୍ରଣୟନ ପାଇଁ ୧୮୬୬ରେ ପୁରସ୍କାର ଘୋଷଣା କରିଥିଲେ।[୯୧] ୧୮୬୮-୬୯ ମସିହାର ଭାଷା ସୁରକ୍ଷା ଆନ୍ଦୋଳନ ଯୋଗୁଁ କେତେକ ଓଡ଼ିଆ ସଚେତନ ବ୍ୟକ୍ତି ମଧ୍ୟ ପାଠ୍ୟପୁସ୍ତକ ପ୍ରଣୟନ ଦିଗରେ ମନୋନିବେଶ କରିଥିଲେ। ସେମାନଙ୍କ ମଧ୍ୟରେ କପିଳେଶ୍ୱର ବିଦ୍ୟାଭୂଷଣ, ପଣ୍ଡିତ ଗୋବିନ୍ଦ ରଥ, ଫକୀରମୋହନ ସେନାପତି, ରାଧାନାଥ ରାୟ, ମଧୁସୂଦନ ରାଓ, ସୀତାନାଥ, ଦ୍ୱାରିକା ନାଥ, କାଳିପ୍ରସାଦ, ରମାନାଥ, ଚକ୍ରଧର, ଗୋବିନ୍ଦ ରଥ ଓ ବୈକୁଣ୍ଠ ନାଥ ପ୍ରଭୃତିଙ୍କ ନାମ ବିଶେଷ ଭାବରେ ଉଲ୍ଲେଖଯୋଗ୍ୟ।

୧୮୪୪ ମସିହାରେ ଲର୍ଡ଼ ହାର୍ଡ଼ିଞ୍ଜଙ୍କ ଆଦେଶ କ୍ରମେ ଇଂରାଜୀ ଜ୍ଞାନ ସରକାରୀ ଚାକିରି କ୍ଷେତ୍ରରେ ଏକମାତ୍ର ଯୋଗ୍ୟତା ରୂପେ ଗ୍ରହଣ କରାଯିବାରୁ ଚାକିରି ପିପାସୁ ଓଡ଼ିଆ ଯୁବକଗଣ ଆଧୁନିକ ଶିକ୍ଷାପ୍ରତି କ୍ରମଶଃ ଆକୃଷ୍ଟ ହେବାକୁ ଲାଗିଲେ। ଯାହାଦ୍ୱାରା ୧୮୭୦ ମସିହା ବେଳକୁ ଓଡ଼ିଶାରେ ଏକ ଶିକ୍ଷିତ ସମ୍ପ୍ରଦାୟ ମୁଣ୍ଡ ଟେକି ଉଠିଥିଲେ। ସେମାନେ ଆଧୁନିକ ରୁଚି ଓ ପାଶ୍ଚାତ୍ୟ ଭାବଧାରା ଦ୍ୱାରା ଅନୁପ୍ରାଣିତ ହେବା ସଙ୍ଗେ

ସଙ୍ଗେ ସେହିମାନଙ୍କର ଅକ୍ଳାନ୍ତ ପରିଶ୍ରମ ଓ ପ୍ରଗାଢ଼ ଅଧ୍ୟବସାୟ ଫଳରେ ଓଡ଼ିଆ ସାହିତ୍ୟରେ ଆଧୁନିକତାର ଭିତ୍ତି ପ୍ରସ୍ତର ସ୍ଥାପିତ ହୋଇଥିଲା। ଆଧୁନିକ ଇଂରାଜୀ ଶିକ୍ଷାରେ ଶିକ୍ଷିତ ହେବାପରେ ଏହି ଉଚ୍ଚଶିକ୍ଷିତ ଏବଂ ନବ୍ୟଦୀକ୍ଷିତ ଶ୍ରେଣୀ ବିଶେଷତଃ ସରକାରୀ କର୍ମଚାରୀ ସଂପ୍ରଦାୟ ଅର୍ଥାତ୍ ତତ୍କାଳୀନ ସୃଷ୍ଟ ଏକ ଶିକ୍ଷିତ ମଧ୍ୟବିତ୍ତ ଶ୍ରେଣୀ (Educated-middle class) ପୁରାତନକୁ ଫିଙ୍ଗି ନୂତନ ଚିନ୍ତାଧାର ଗ୍ରହଣ ପୂର୍ବକ ନିଜ ସାହିତ୍ୟ ଓ ସଂସ୍କୃତିକୁ ମଧ୍ୟ ସେହି ରୁଚିରେ ଗଢ଼ିବାକୁ ଚେଷ୍ଟାକଲେ। ଫଳରେ ପ୍ରାଚୀନ ମଧ୍ୟଯୁଗୀୟ କାବ୍ୟ ସାହିତ୍ୟ ସେମାନଙ୍କର ନାସିକା କୁଞ୍ଚନର ସାମଗ୍ରୀ ହୋଇ ପଡ଼ିଲା ଏବଂ ନିଜ ସାହିତ୍ୟିକ ଆନନ୍ଦ ଚରିତାର୍ଥ କରିବା ପାଇଁ ସେମାନେ ଏକ ନୂତନ ସାହିତ୍ୟ ସୃଷ୍ଟିକଲେ।"(୯୨)

୧୮୭୦-୮୫ ପର୍ଯ୍ୟନ୍ତ ଏହି ପନ୍ଦର ବର୍ଷ ଥିଲା ଓଡ଼ିଆ ଭାଷା ଓ ସାହିତ୍ୟ ପାଇଁ ଏକ ପ୍ରସ୍ତୁତିର ଯୁଗ। ଏହି ସମୟ ମଧ୍ୟରେ ଓଡ଼ିଆ ସାହିତ୍ୟରେ ଗୀତିକବିତା, ଅନୁବାଦ, ଉପନ୍ୟାସ, ପ୍ରବନ୍ଧ-ସମାଲୋଚନା ଆଦି ପ୍ରକାଶ ପାଇଥିଲା। ରାମଶଙ୍କର ରାୟ ଏହି ସମୟରେ ନାଟକ, ଉପନ୍ୟାସ; ୧୮୭୬, ୧୮୭୮, ୧୮୮୫ରେ ରାଧାନାଥ ଓ ମଧୁସୂଦନଙ୍କ ମିଳିତ ଉଦ୍ୟମରେ ପ୍ରକାଶ ଲାଭ କରିଥିବା 'କବିତାବଳୀ' ଓଡ଼ିଆ ସାହିତ୍ୟରେ ଏକ ନୂତନ ଦିଗ୍‌ବଳୟ ସୃଷ୍ଟି କରିଥିଲା। ଇଂରାଜୀ ସାହିତ୍ୟର ଚତୁର୍ଦ୍ଦଶପଦୀ କବିତା, ଗୀତିକବିତା, ଗାଥାକବିତା ପ୍ରଭୃତିର ଗଠନରୀତି ଓ ଅନ୍ତର୍ନିହିତ ସ୍ୱରକୁ ଓଡ଼ିଆ ସାହିତ୍ୟରେ ଅବିକଳ ଭାବରେ ଗ୍ରହଣ କରାଗଲା। ଫକୀରମୋହନ ଗଳ୍ପ ଓ ଉପନ୍ୟାସ କ୍ଷେତ୍ରରେ, ରାଧାନାଥ କାବ୍ୟ କବିତା କ୍ଷେତ୍ରରେ ଓ ମଧୁସୂଦନ ଗୀତି କବିତା କ୍ଷେତ୍ରରେ ନୂତନ ସରଣୀର ସନ୍ଧାନ ଦେଲେ। ଉଭୟ ଗୁଣାତ୍ମକ ଓ ପରିମାଣାତ୍ମକ ଦିଗରୁ ଓଡ଼ିଆ ସାହିତ୍ୟ କ୍ରମଶଃ ସମୃଦ୍ଧ ହେବାକୁ ଲାଗିଲା। ତେଣୁ "୧୯ଶ ଶତାବ୍ଦୀର ଶେଷ ତ୍ରିଦଶକ ଥିଲା ଆଧୁନିକ ଓଡ଼ିଆ ସାହିତ୍ୟର ସୃଷ୍ଟି, ପ୍ରସ୍ତୁତି ତଥା ପ୍ରତିଷ୍ଠାର ସମୟ। ପ୍ରାଚୀନ ଓଡ଼ିଆ ସାହିତ୍ୟର ବିଷୟ ବସ୍ତୁ ବା ରଚନାରୀତିର ପ୍ରଭାବ ଅତ୍ୟନ୍ତ କ୍ଷୀଣ ହୋଇପଡ଼ିବାରୁ ଏହି ସମୟଠାରୁ ଓଡ଼ିଆ ସାହିତ୍ୟରେ ନବଯୁଗର ସୂତ୍ରପାତ ହୋଇଅଛି ବୋଲି ଧରାଯାଇଥାଏ।"(୯୩) ଏହିପରି ଭାବରେ ନୂତନ ଶିକ୍ଷାର ବିସ୍ତାର ଓ ପାଶ୍ଚାତ୍ୟ ଶିକ୍ଷା ତଥା ଚିନ୍ତାଧାରା ସଂସ୍ପର୍ଶରେ ଆସିବାଦ୍ୱାରା ଓଡ଼ିଆସାହିତ୍ୟ ଏକ ନବଜନ୍ମ ଲାଭକଲା।

## ଓଡ଼ିଆ ସାହିତ୍ୟରେ ରେନେଁସା

ଊନବିଂଶ ଶତକର ଶେଷ ତ୍ରିଦଶକ ବାସ୍ତବିକ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ଏକ ନବଜାଗରଣର ସ୍ୱାକ୍ଷର ବହନ କରିଥିଲା। ଇଂରାଜୀ ଶିକ୍ଷାର ବିସ୍ତାର ସଙ୍ଗେ ସଙ୍ଗେ

ଓଡ଼ିଶାରେ ଯେଉଁ ଉଚ୍ଚଶିକ୍ଷିତ ଗୋଷ୍ଠୀ ମୁଣ୍ଡଟେକି ଉଠିଥିଲେ, ସେହିମାନଙ୍କ ଉଦ୍ୟମରେ ଓଡ଼ିଆ ସାହିତ୍ୟରେ ଏକ ଯୁଗାନ୍ତକାରୀ ପରିବର୍ତ୍ତନର ସୂତ୍ରପାତ ହୋଇଥିଲା। ଏହି ସମୟରେ ଭାରତବର୍ଷରେ କେତେଜଣ ମନୀଷୀଙ୍କ ଦ୍ୱାରା ମାନସରାଜ୍ୟରେ ମଧ୍ୟ ବିପ୍ଳବ ସଂଘଟିତ ହୋଇଥିଲା। ବିଶେଷ ଭାବରେ ଊନବିଂଶ ଶତାବ୍ଦୀରେ ଭାରତବର୍ଷରେ ଯେଉଁ ନବଜାଗରଣ ସୃଷ୍ଟି ହୋଇଥିଲା, ସେଥିରେ ରାମମୋହନ, ଦେବେନ୍ଦ୍ରନାଥ ଓ କେଶବଚନ୍ଦ୍ରଙ୍କ ଦ୍ୱାରା ପ୍ରବର୍ତ୍ତିତ ବ୍ରାହ୍ମଧର୍ମ ଆନ୍ଦୋଳନ ଗଭୀର ପ୍ରଭାବ ପକାଇ ଥିଲା। ରାଜା ରାମମୋହନ ରାୟଙ୍କ ଦ୍ୱାରା ପ୍ରବର୍ତ୍ତିତ ବ୍ରାହ୍ମସମାଜ ଦ୍ୱାରା ପ୍ରଭାବିତ ହୋଇ ଓଡ଼ିଶାର କେତେଜଣ ଉଚ୍ଚଶିକ୍ଷିତ ଏହି ଧର୍ମ ଗ୍ରହଣ କରିବା ସଙ୍ଗେ ସଙ୍ଗେ ଆମ ସମାଜରେ ପ୍ରଚଳିତ କୁସଂସ୍କାର ବିରୋଧରେ ମଧ୍ୟ ସ୍ୱର ଉତ୍ତୋଳନ କରିଥିଲେ।

ପାଶ୍ଚାତ୍ୟ ଶିକ୍ଷା ଓ ଦର୍ଶନର ପ୍ରଭାବରେ ଓଡ଼ିଶାବାସୀଙ୍କ ଦୃଷ୍ଟି କ୍ରମେ ପ୍ରସାର ଲାଭକଲା। ନିଜକୁ ଓ ନିଜର ସାହିତ୍ୟକୁ ଅନ୍ୟ ମାନଙ୍କ ଆଗରେ ପ୍ରତିଷ୍ଠିତ କରିବାକୁ ଏମାନେ ବ୍ୟଗ୍ରହୋଇ ଉଠିଲେ। ନାଟକ, ଉପନ୍ୟାସ, କ୍ଷୁଦ୍ରଗଳ୍ପ, କାବ୍ୟକବିତା ରଚନାକରି ଓଡ଼ିଶାର ଲେଖକ ମାନେ ସାହିତ୍ୟ କ୍ଷେତ୍ରରେ ଏକ ପରିବର୍ତ୍ତନ ଆନୟନ କଲେ। ପ୍ରାଚୀନ ଛନ୍ଦୋବଦ୍ଧ କାବ୍ୟ ପରିବର୍ତ୍ତେ ଆଧୁନିକ ଖଣ୍ଡକାବ୍ୟ ପ୍ରକାଶଲାଭ କଲା। ଗଦ୍ୟ ସାହିତ୍ୟ ଏକ ନିର୍ଦ୍ଦିଷ୍ଟ ରୂପନେଇ ଗତିକରିବାକୁ ଲାଗିଲା।

'ଉତ୍କଳଦର୍ପଣ' ପତ୍ରିକା ପ୍ରକାଶିତ ହୋଇ ସୃଜନଶୀଳ ସାହିତ୍ୟ ସୃଷ୍ଟି କରିବାକୁ ପ୍ରେରଣା ଯୋଗାଇଲା। ରାମଶଙ୍କର, ମଧୁସୂଦନ, ରାଧାନାଥ, ଫକୀରମୋହନ ତଥା ଅନ୍ୟାନ୍ୟ ଲେଖକ ମାନେ ଉକ୍ତ ପତ୍ରିକାରେ ଗୀତିକବିତା, ଅନୁବାଦ, ଉପନ୍ୟାସ, ପ୍ରବନ୍ଧ, ସମାଲୋଚନା ପ୍ରଭୃତି ଲେଖି ଓଡ଼ିଆ ସାହିତ୍ୟକୁ ସମୃଦ୍ଧ କରିବାକୁ ଲାଗିଲେ। ମୁଦ୍ରାଯନ୍ତ୍ର ପ୍ରତିଷ୍ଠା, ୧୮୯୬-୯୭ରେ ରେଲ ଗମନାଗମନ, ରେଭେନ୍ସା କଲେଜ ସ୍ଥାପନ (୧୮୭୧) ନ'ଅଙ୍କ ଦୁର୍ଭିକ୍ଷ ଓ ଭାଷା ସୁରକ୍ଷା ଆନ୍ଦୋଳନ ଯୋଗୁଁ ଓଡ଼ିଆ ଜାତି ଓ ସାହିତ୍ୟର ଜୀବନରେ ଏକ ନବ ଜାଗରଣ ସୃଷ୍ଟି ହୋଇଥିଲା।

## ଆଧୁନିକ କବି ଓ କାବ୍ୟକାର ମାନଙ୍କର ଆବିର୍ଭାବ

ଓଡ଼ିଶାରେ ଆଧୁନିକ ଶିକ୍ଷାର ପ୍ରସାର ସଙ୍ଗେ ସଙ୍ଗେ ଓଡ଼ିଆ ସାହିତ୍ୟରେ ଆଧୁନିକ ଯୁଗର ସୂତ୍ରପାତ ହୋଇଛି। ଆମର ସମୃଦ୍ଧ ପରଂପରାରେ ସଂସ୍କୃତ ସାହିତ୍ୟର ଯେଉଁ ଅତୁଳନୀୟ ପ୍ରଭାବ ଥିଲା, ଆଧୁନିକ ଶିକ୍ଷାଦ୍ୱାରା ମାର୍ଜିତ ଜନମାନସ କ୍ରମଶଃ ସଂସ୍କୃତ ସାହିତ୍ୟ ପରିବର୍ତ୍ତେ ଆଧୁନିକ ବଙ୍ଗଳା ତଥା ଇଂରାଜୀ ସାହିତ୍ୟକୁ ତାର ଆଦର୍ଶ ଭାବରେ ଗ୍ରହଣ କରିବାକୁ ଲାଗିଲା। "ଲୋକେ ଅତୀତ ସାହିତ୍ୟର ରସ ବିଭବକୁ

ପୂର୍ଣ୍ଣତଃ ଉପଭୋଗ କରୁଥିଲେ ହେଁ ସାହିତ୍ୟ-ସୃଷ୍ଟି ଦିଗରେ ସେ ସାହିତ୍ୟର କୌଣସି ଶୈଳ୍ପିକ ଆଦର୍ଶକୁ ଅନୁସରଣ କରିନଥିଲେ। ପାଶ୍ଚାତ୍ୟ ସାହିତ୍ୟ କିମ୍ବା ସେ ସାହିତ୍ୟର ଆଦର୍ଶରେ ଗଢ଼ି ଉଠିଥିବା ପଡ଼ୋଶୀ ଆଧୁନିକ ବଙ୍ଗଳା ସାହିତ୍ୟହିଁ ଆଧୁନିକ ଓଡ଼ିଆ ଲେଖକ୍ ମାନଙ୍କର ପ୍ରଥମେ ପ୍ରଧାନ ଅବଲମ୍ବନ ହୋଇଥିଲା। ନବରୁଚିରେ ଆଧୁନିକ ଶିକ୍ଷା ଲୋକରେ ଉଦ୍‌ଭାସିତ ଓ ନୂତନ ଶିଳ୍ପାଦର୍ଶରେ ଅନୁପ୍ରାଣିତ ଆଧୁନିକ ଲେଖକର ଚିତ୍ତବୃତ୍ତି ପାଶ୍ଚାତ୍ୟ ତଥା ଆଧୁନିକ ବଙ୍ଗଳା ସାହିତ୍ୟର ଅନୁସରଣରେ ଯେଉଁ ନୂତନ ଓଡ଼ିଆ ସାହିତ୍ୟ ସୃଷ୍ଟିକଲା, ତାର ଆଙ୍ଗିକ ରୂପ ବିଭବ ଓ ଆତ୍ମିକ ରସ ସଂପଦ ମଧ୍ୟଯୁଗୀୟ ଓଡ଼ିଆ କାବ୍ୟ ସାହିତ୍ୟର ରୂପ ଓ ରସପ୍ରକାଶ ଠାରୁ ସଂପୂର୍ଣ୍ଣ ସ୍ୱତନ୍ତ୍ର ହୋଇ ପଡ଼ିଲା।"[(୯୪)]

ଆଧୁନିକ ଶିକ୍ଷାରେ ଶିକ୍ଷିତ କବିବର ରାଧାନାଥ ରାୟ ହେଉଛନ୍ତି ପ୍ରକୃତରେ ଆଧୁନିକ ସାହିତ୍ୟର ପ୍ରଥମ ପ୍ରତିନିଧି। ଓଡ଼ିଆ ସାହିତ୍ୟରେ ପାଶ୍ଚାତ୍ୟ ଭାବଧାରାର ଆରୋପର ପ୍ରଥମ ସାର୍ଥକ ଓ ଶ୍ରେଷ୍ଠ ବିନ୍ଧାଣୀ ରାଧାନାଥ ଯେଉଁ ଭିତ୍ତି ସ୍ଥାପନ କରିଥିଲେ ତାରି ଉପରେ ପରବର୍ତ୍ତୀ ସମୟରେ ଗଢ଼ି ଉଠିଥିଲା ଓଡ଼ିଆ ସାହିତ୍ୟର ସୁରମ୍ୟ ଅଟ୍ଟାଳିକା। ରାଧାନାଥଙ୍କୁ ଜାତୀୟତା ବିରୋଧୀ, ଇତିହାସର ବିକୃତ ରୂପକାର ଏବଂ ସାମାଜିକ ଜୀବନକୁ କଳୁଷିତ କରିଦେଇଥିବା ଅପରାଧରେ ଅପରାଧୀ ଭାବେ ସାବ୍ୟସ୍ତ କରାଯାଇଥିଲେ ମଧ୍ୟ, କଳାଦୃଷ୍ଟିରୁ ତାଙ୍କର ପ୍ରତ୍ୟେକ କୃତି ଯେ ସାର୍ଥକତା ଲାଭ କରିଛି, ଏହା ଅସ୍ୱୀକାର କରାଯାଇ ନ ପାରେ। ସେହିପରି ମଧୁସୂଦନ ଉପନିଷଦୀୟ ଚିନ୍ତାଧାରାରେ ଓଡ଼ିଆ ସାହିତ୍ୟରେ ଗୀତ କବିତାର ସ୍ରୋତ ବୁହାଇ ଦେଇଥିଲେ; ଗଙ୍ଗାଧର ପ୍ରାଚ୍ୟ ସାହିତ୍ୟରୁ ଆଦର୍ଶ ସ୍ଥାନୀୟ ଚରିତ୍ର ଗ୍ରହଣ କରି ଭାରତୀୟ ପରଂପରାକୁ ସମ୍ମାନ ପ୍ରଦର୍ଶନ ପୂର୍ବକ କାବ୍ୟକବିତା ରଚନା କଲେ; ନନ୍ଦକିଶୋର ପଲ୍ଲୀର ନିଷ୍କପଟ ଅଭିବ୍ୟକ୍ତିକୁ ପ୍ରକାଶ କଲେ ଓ ଫକୀର ମୋହନ ସାମାଜିକ ଜୀବନର ନିଚ୍ଛକ ସତକଥାଗୁଡ଼ିକୁ ଆମ ଆଗରେ ଟୋକି ଧରିଲେ।

ସେ ଯାହା ହେଉନା କାହିଁକି ରାଧାନାଥ ପ୍ରଥମେ ଯେଉଁ ଆଲୋକ ବର୍ତ୍ତିକା ଧରି ନୂତନ ମାର୍ଗ ନିର୍ଦ୍ଦେଶ କରିଥିଲେ ସେହି ମାର୍ଗ ଅନୁସରଣ କରି ଓଡ଼ିଆ ସାହିତ୍ୟରେ ଏକ ନୂତନ ଦିଗବଳୟର ସୂଚନାପ୍ରଦାନ କରିବାକୁ ଅନେକ ସାହିତ୍ୟରଥୀ ଆବିର୍ଭାବ ଲାଭ କରିଥିଲେ। ସେମାନଙ୍କ ମଧ୍ୟରୁ ମୁଖ୍ୟତଃ ଫକୀରମୋହନ ସେନାପତି, ମଧୁସୂଦନ ରାଓ, ସ୍ୱଭାବ କବି ଗଙ୍ଗାଧର ମେହେର, ପଲ୍ଲୀକବି ନନ୍ଦକିଶୋର ବଳ, ରୁଦ୍ରନାରାୟଣ

ପଟ୍ଟନାୟକ (ଅଙ୍ଗଦ୍ ବିଜୟ କାବ୍ୟ–୧୮୭୯), ଡ଼ାକ୍ତର ରାମକୃଷ୍ଣ ସାହୁ, ବାମଣ୍ଡା ଅଧୀଶ୍ୱର ବାସୁଦେବ ସୁଢ଼ଳଦେବ, ବାସୁଦେବ ମହାପାତ୍ର, ବ୍ରଜବନ୍ଧୁ ମିଶ୍ର, ସାଧୁଚରଣ ରାୟ, ଦାମୋଦର ପଟ୍ଟନାୟକ, ଜମିଦାର ରାଜା ନାରାୟଣ ଦାସ, ଗୋପାଳ ବଲ୍ଲଭ ଦାସ, କାମପାଳ ମିଶ୍ର, ସଚିଦାନନ୍ଦ ତ୍ରିଭୁବନ ଦେବ, ବଡ଼ କୁମାର ବଳଭଦ୍ରଦେବ, କବିଶେଖର ଚିନ୍ତାମଣି ମହାନ୍ତି, ରୁଦ୍ର ନାରାୟଣ ଷଡ଼ଙ୍ଗୀ, ମଣିଚରଣ ମହାମାତ୍ର, ଶ୍ୟାମବନ୍ଧୁ ମିଶ୍ର, ବିଶ୍ୱନାଥ ରଥ, ଭାଗୀରଥି ମହାପାତ୍ର, ଲିଙ୍ଗରାଜ ପାଣିଗ୍ରାହୀ, ମଧୁସୂଦନ ଦାସ, ଜଗଦାନନ୍ଦ ଦାସ, ନୀଳମଣି ଚାନ୍ଦ, ନାରାୟଣ ମିଶ୍ର, ଶ୍ୟାମସୁନ୍ଦର ନନ୍ଦ, ହରିହର ମିଶ୍ର, ହରିହର ମର୍ଦ୍ଦରାଜ, ଶ୍ୟାମସୁନ୍ଦର ମହାନ୍ତି, ରାଧାମୋହନ ରାଜେନ୍ଦ୍ର ଦେବ, ସୁଲୋଚନା ଦେବୀ, ଚକ୍ରଧର ପଟ୍ଟନାୟକ ପ୍ରଭୃତିଙ୍କ ନାମ ଉଲ୍ଲେଖ ଯୋଗ୍ୟ।

ଉକ୍ତ କବି ଓ କାବ୍ୟକାର ମାନଙ୍କ ମଧ୍ୟରୁ ଅନେକ କବିଙ୍କ କବିତାମାନ ନିକୃଷ୍ଟଧରଣର ହୋଇଥିଲେ ମଧ୍ୟ ପରିମାଣାତ୍ମକ ଦୃଷ୍ଟି କୋଣରୁ ତାର ଏକ ସ୍ୱତନ୍ତ୍ର ମର୍ଯ୍ୟାଦା ରହିଛି। ରାଧାନାଥଙ୍କ ସମୟରୁ କାବ୍ୟର ଉଭୟ ଆଙ୍ଗିକ ଓ ଆତ୍ମିକ ବିଭବରେ ଉଲ୍ଲେଖନୀୟ ପରିବର୍ତ୍ତନ ସାଧିତ ହୋଇଛି। କାବ୍ୟର ବିଷୟବସ୍ତୁ, ରସ, ଛନ୍ଦ, ଅଳଙ୍କାର, ଚରିତ୍ର, ପ୍ରକୃତି ବର୍ଣ୍ଣନା ପ୍ରଭୃତି ଅନେକ କ୍ଷେତ୍ରରେ ପ୍ରାଚୀନ କାବ୍ୟ ତୁଳନାରେ ଆଧୁନିକ କାବ୍ୟକବିତାରେ ଆସିଛି ଲକ୍ଷଣୀୟ ପରିବର୍ତ୍ତନ। ଇତିହାସ, କିମ୍ବଦନ୍ତୀ ଓ ପୁରାଣର ଆଖ୍ୟାୟିକାକୁ ନେଇ ମଧ୍ୟ କାବ୍ୟ-କବିତା ରଚନା କରାଯାଇଛି। ପ୍ରକୃତିକୁ ଏକ ସ୍ୱତନ୍ତ୍ର ମର୍ଯ୍ୟାଦା ଦେଇ କାବ୍ୟହୋଇଛି ରସମୟୀ ତଥା ଆନନ୍ଦମୟୀ।

## ଉପସଂହାର

ଊନବିଂଶ ଶତାବ୍ଦୀ ଓଡ଼ିଶାର ଜାତୀୟ, ସାମାଜିକ ତଥା ସାହିତ୍ୟ ଜୀବନ ପାଇଁ ଥିଲା ଏକ ପରୀକ୍ଷାର ଯୁଗ। ନ'ଅଙ୍କ ଦୁର୍ଭିକ୍ଷ ତଥା ଭାଷାସୁରକ୍ଷା ଆନ୍ଦୋଳନ ଯେପରି ତୀବ୍ର ରୂପ ଧାରଣ କରିଥିଲା ସେହିପରି ଶିକ୍ଷାର ସଂସ୍କାର ତଥା ନୂତନ ଶିକ୍ଷାର ପ୍ରସାରରେ ମଧ୍ୟ ଉଲ୍ଲେଖନୀୟ ପରିବର୍ତ୍ତନ ସାଧିତ ହୋଇଥିଲା। ରକ୍ଷଣଶୀଳ ହେଲେ ମଧ୍ୟ ଏ ଜାତି ଯେପରି ଦୁର୍ଭିକ୍ଷର କରାଳ ଗ୍ରାସରେ ସଂପୂର୍ଣ୍ଣ ନିଃଶେଷ ହୋଇଯାଇନାହିଁ, ସେହିପରି ନୂତନ ଶିକ୍ଷାନୀତି ଠାରୁ ଅଧିକ ଦୂରେଇ ମଧ୍ୟ ରହି ପାରି ନାହିଁ। ବିଳମ୍ବରେ ହେଲେ ମଧ୍ୟ ପରିବର୍ତ୍ତନକୁ ସ୍ୱୀକାର କରିଛି, ତାକୁ ଆପଣାର କରି ନେଇଛି। ପ୍ରାଦେଶିକ ସାହିତ୍ୟର ଉନ୍ନତି ଲକ୍ଷ୍ୟ କରି ତା' ସହିତ ପାଦ ମିଳାଇ ଚାଲିବାକୁ ଉଦ୍ୟମ କରିଛି। ପତ୍ରପତ୍ରିକାର ପ୍ରକାଶ, ପାଠ୍ୟପୁସ୍ତକ ରଚନା, ସାହିତ୍ୟ ସୃଷ୍ଟି, ଛାପାକଳ ପ୍ରତିଷ୍ଠା, ନୂତନ

ମହାବିଦ୍ୟାଳୟ, ତଥା ବିଦ୍ୟାଳୟ ପ୍ରତିଷ୍ଠା, ପାଶ୍ଚାତ୍ୟ ଜ୍ଞାନ-ବିଜ୍ଞାନର ପ୍ରସାର ଦ୍ୱାରା ଊନବିଂଶ ଶତାବ୍ଦୀ ଓଡ଼ିଶା ଇତିହାସରେ ଏକ ଯୁଗାନ୍ତକାରୀ ପରିବର୍ତ୍ତନ ଆଣିଛି। ନୂତନ ଶିକ୍ଷିତ ମାନସଙ୍କର ଆବିର୍ଭାବ ଦ୍ୱାରା ଓଡ଼ିଆମାନଙ୍କର ଭାବ ରାଜ୍ୟରେ ଆସିଛି ପରିବର୍ତ୍ତନ। ଦୀର୍ଘଦିନ ଧରି ଚଳିଆସୁଥିବା ପ୍ରାଚୀନ ତଥା ମଧ୍ୟଯୁଗୀୟ ସାହିତ୍ୟ ପରିବର୍ତ୍ତେ ସେ ସୃଷ୍ଟିକରିଛି ଆଧୁନିକ ସାହିତ୍ୟ। ସାହିତ୍ୟରେ ରୂପପାଇଛି ମଣିଷ, ତାଂ'ର ପରିବେଶ ତଥା ସମାଜ। ସାମାଜିକ ପରିବର୍ତ୍ତନ କ୍ଷେତ୍ରରେ ଏହି ସାହିତ୍ୟ ନେଇଛି ମୁଖ୍ୟ ଭୂମିକା। ତେଣୁ ଊନବିଂଶ ଶତାବ୍ଦୀର ଓଡ଼ିଶା, ଓଡ଼ିଆ ଜାତିର ଇତିହାସରେ ଏକ ସ୍ମରଣୀୟ ଶତାବ୍ଦୀ କହିଲେ ଅତ୍ୟୁକ୍ତି ହେବ ନାହିଁ।



# ସହାୟକ ସୂଚୀ

୧. In Dec. 1803 the commissioner gave necessary instruction to James Hunter, the acting collector at Jagannath (Puri) on the revenue system to be followed.

History of Orissa - Dr. N.K. Sahoo, Dr. P. K. Mishra.

Dr. J. K. Sahoo, P-390, 1st Edition - 1979.

Nalanda Publication- Cuttack-2.

୨. A History of Orissa - W. W. Hunter, Andrew sterling, John Beams and N. K. Sahoo, P-33.

Vol-I-1980, Bharatiya Publishing House, Jawaharnagar, Delhi.

3. Land Revenue Administration in Orissa during the Nineteenth Century - By Krushna Chandra Jena, P-65, 1st Ed. 1968. S. Chand & Company, Madras.

4. The sale law, a necessary concomitant of the cornwalis system led to the displacement of the original zamidars, all local people by the rich men of Bengal, who were able to invest their money in land in the province.

Foundation of British Orissa - By B. C. Ray. Introduction-III, By B. Prasad. Ed. 1960. New Students Store, Cuttack.

୫. ଓଡ଼ିଆ ସାହିତ୍ୟର ଇତିହାସ - (୧୮୦୩-୧୯୨୦) ଡଃ ନଟବର ସାମନ୍ତରାୟ ପୃ. ୯-୧୦, ୨ୟ ପ୍ରକାଶ-୧୯୮୩ । କଳିଙ୍ଗ ମୁଦ୍ରଣୀ, ନିମଚଉଡ଼ି କଟକ, ପ୍ରକାଶକ-ଡଃ ନଟବର ସାମନ୍ତରାୟ - ବାଣୀଭବନ, ସାମନ୍ତରାପୁର, ଭୁବନେଶ୍ୱର ।

୬. Side lights on History and culture of Orissa - Ed. by M. N. Das, Chapter 7 1st Ed. P-208. Vidyapuri, Balubazar, Cuttack.

୭. History of Orissa - By N. K. Sahoo, P. K. Mishra & J.K. Sahoo, P-394, 1st Ed. 1979. Nalanda Publishers, Cuttack-2.

୮. ଓଡ଼ିଆ ସାହିତ୍ୟରେ ଇତିହାସ (୧୮୦୩-୧୯୨୦) ଡଃ ନଟବର ସାମନ୍ତରାୟ ପୃ-୧୧. ୨ୟ ସଂ. ୧୯୮୩, କଳିଙ୍ଗ ମୁଦ୍ରଣୀ, ନିମଚଉଡ଼ି, କଟକ, ପ୍ରକାଶକ ଡଃ ନଟବର ସାମନ୍ତରାୟ ।

୯. ହିନ୍ଦୀ ସାହିତ୍ୟ କା ଇତିହାସ - ସଂ. ଡଃ ନଗେନ୍ଦ୍ର, ପୃ-୪୪୧-୪୨। ୧୯୮୦, ନେସନାଲ ପବ୍ଲିଶିଂ ହାଉସ୍, ଦରିୟାଗଞ୍ଜ, ନୂଆଦିଲ୍ଲୀ।

୧୦. ଆଧୁନିକ ଓଡ଼ିଆ କାବ୍ୟଧାରା - (ଆଦିଯୁଗ) ଡଃ ନରେନ୍ଦ୍ରନାଥ ମିଶ୍ର, ପୃ-୫୯, ୧ମ ପ୍ର-୧୯୬୪, ବିଶ୍ୱଭାରତୀ, ଶାନ୍ତି ନିକେତନ।

୧୧. History of Orissa - By R. D. Banerji, Vol.-II P-284, Pub.-1980, Bharatiya Publishing House, Jawaharnagar Delhi.

୧୨. Orissa under the British Crown - By Dr. J. K. Samal. Chap-VII, P-237, Ed.-1977. S. Chand and Company Ltd. New Delhi.

୧୩. History of Orissa - By R. D. Banerji Vol. II, P-291, 1980. Bharatiya Publishing House, Delhi.

୧୪. Orissa - W. W. Hunter-Vol.II, P-162, London 1872.

୧୫. Bengal Review Proc. December-1865. Barlow, Collector Puri to the commr. No. 272; 27 Nov. 1865 and Demi Official 27 Nov. 1865.

୧୬. Land Revenue Administration in Orissa during the Nineteenth Century. By Krishna Chandra Jena, P-6, 1st Ed. 1968. S. Chand and Company, Madras.

୧୭. ଆଧୁନିକ ଓଡ଼ିଆ ସାହିତ୍ୟ - ବୈଷ୍ଣବ ଚରଣ ବଳ, ପୃ – ୬୩-୬୪ ୧୯୬୫। ପ୍ରକାଶକ – ସୋମନାଥ ତ୍ରିପାଠୀ।

୧୮. Orissa – A Sterling P. 126 2nd Edition. Bharatiya Publishing House.

୧୯. ଉପରୋକ୍ତ ଉଦ୍ଧୃତାଂଶଟି ଡଃ ନଟବର ସାମନ୍ତରାୟଙ୍କ ଓଡ଼ିଆ ସାହିତ୍ୟର ଇତିହାସ (୧୮୦୩-୧୯୨୦) ପୃ-୨୫ ରୁ ଉଦ୍ଧାର କରାଯାଇଛି। ୨ୟ ସଂ-୧୯୮୩। କଳିଙ୍ଗ ମୁଦ୍ରଣୀ, ନିମଚଉଡ଼ି, କଟକ। ପ୍ରକାଶକ - ଡଃ ନଟବର ସାମନ୍ତରାୟ, ବାଣୀ ଭବନ, ସାମନ୍ତରାପୁର, ଭୁବନେଶ୍ୱର।

୨୦. The Ascendancy of the British Raj in Orissa – By K.C. Jena. P-109. 1st Pub – 1982. Punthi Pustak, Calcutta.

୨୧. ହିନ୍ଦୀ ସାହିତ୍ୟକା ଇତିହାସ – ସଂ. ଡଃ ନଗେନ୍ଦ୍ର, ପୃ-୪୪୬, ପ୍ର-୧୯୮୦। ନେସ୍‌ନାଲ ପବ୍ଲିଶିଂହାଉସ ଦରିୟାଗଞ୍ଜ, ନୂଆଦିଲ୍ଲୀ।

୨୨. ଓଡ଼ିଆ ସାହିତ୍ୟର ଇତିହାସ – ଅଧ୍ୟାପକ ପଠାଣି ପଟ୍ଟନାୟକ। ପୃ-୪୦୦। ୧ମ ସଂ- ୧୯୭୮। ନାଳନ୍ଦା, ବିନୋଦବିହାରୀ, କଟକ।

୨୩. ଆତ୍ମଜୀବନ ଚରିତ – ଫକୀର ମୋହନ ସେନାପତି, ପୃ-୫୨, ପ୍ର-୧୯୬୧, କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର।

୨୪. The Evolution of Oriya Language and Script – Dr. K.B. Tripathy, 1st Ed. p-222, Utkal University.

୨୫. Bengal District Gazetters, Balasore - 1907, p- 46-47.

୨୬. Ibid, p-180, W.W. Hunter.

୨୭. On the Sanskrit and Pracrit Language – Asiatic Researchers. Vol-VI, 1801, p-225. By - H.T. Cole brook.

୨୮. ସମ୍ବାଦପତ୍ରେ ସେ କାଲେର କଥା – ବଙ୍ଗୀୟ ସାହିତ୍ୟ ପରିଷଦ, ୧ମ ସଂ- ପୃ- ୨୨୦-୨୧।

୨୯. S.B.R. Vol 76, p-9-10. Letter issued by Mr. Mills, Orissa Commissioner, dtd. 3.2.1841.

୩୦. In 1848-49 the collector of Cuttack had approved Bengali as the official language for use in the Court in place of Oriya. In 1851 Henery Rickets the commissioner of Orissa. Division felt inclined to use Hindi as the official language. An idea began to circulate among the high officials that oriya as language was not separate from Bengali. It was a derivative of the Bengali Language. Umacharan Haldar a Bengali Deputy Inspector of schools advocated the necessity of using Bengali as the medium of instruction in the school.

History of Orissa – Dr. N.K. Sahoo, P.K. Mishra & J.K. Sahoo. P-439-40. 1st Ed. 1979, Nalanda Publication, cuttack-2.

୩୧. Report of the Council of Education – 1848-49, p-336-37.

୩୨. Report of the Council of Education – 1842-43, p-31-35.

୩୩. Report of the Council of Education – 1848-49, p-336.

୩୪. × × × But till 1935 the Oriya Speaking People had to remain under different Provincial administration.

History of Orissa – Vol II (upto 1960 AD) – Dr. Harekrushna Mahatab.

P-449. 1st Ed-1960. Prajatantra Prachar Samittee, Cuttack.

୩୫. ସମ୍ବାଦପତ୍ରେ ଊନବିଂଶ ଶତାବ୍ଦୀର ଓଡ଼ିଶା- ଡଃ ଗୋପାଳ ଚନ୍ଦ୍ର ମିଶ୍ର, ପୃ-୧, ୧ମ ପ୍ର- ୧୯୭୨। ଜେ.ମହାପାତ୍ର ଏଣ୍ଡ କୋ ଛାତ୍ରସାଥୀ ଅଫିସ୍, କଟକ-୨

୩୬. ହିନ୍ଦୀ ସାହିତ୍ୟକା ଇତିହାସ- ସଂ. ଡଃ ନଗେନ୍ଦ୍ର। ପୃ-୪୪୬, ୧୯୮୦ ନେସ୍ନାଲ ପବ୍ଲିଶିଂ ହାଉସ, ଦରିୟାଗଞ୍ଜ, ନୂଆଦିଲ୍ଲୀ।

୩୭. ସମ୍ବାଦପତ୍ରରୁ ଓଡ଼ିଶାର କଥା– ସଂ. ସୁଧାକର ପଟ୍ଟନାୟକ। ପୃ-୨-୩, ୧ମ ଖଣ୍ଡ (୧୫୫୬-୧୮୮୧) ୧ମ ପ୍ର-୧୯୭୨। ଗ୍ରନ୍ଥମନ୍ଦିର, କଟକ।

୩୮. Here and there indeed a Pandit taught a few lads Sanskrit in Corner of Some rich land holders, mansion and the larger villages had a sort of hedge school, where half a dozen boys squatted with the master on the ground forming the alphabet in the dust and repeating the multiplication table in a parrot like sing song. Anyone who could write a Sentence or two on a palm leaf passed for a man of letters.

Orissa – W. W. Hunter, Vol-II, P-145, London-1872.

୩୯. ୧୮୬୬ ଉତ୍କଳଦୀପିକା- ସଂ. ଡଃ. ବଂଶୀଧର ମହାନ୍ତି, ୧ମ ସଂ- ୧୯୭୮, ପୃ-୯। ମୁଖବନ୍ଧର ପାଦଟୀକା ଦ୍ରଷ୍ଟବ୍ୟ। ଫ୍ରେଣ୍ଡସ୍ ପବ୍ଲିଶର୍ସ, କଟକ।

୪୦. ସମ୍ବାଦପତ୍ରେ ଊନବିଂଶ ଶତାବ୍ଦୀର ଓଡ଼ିଶା- ସଂ. ଡଃ ଗୋପାଳ ଚନ୍ଦ୍ର ମିଶ୍ର। ମୁଖବନ୍ଧ, ପୃ-୩୦, ୧ମ ପ୍ର- ୧୯୭୨। ଜେ. ମହାପାତ୍ର ଏଣ୍ଡ କୋ, ଛାତ୍ରସାଥୀ ଅଫିସ୍, କଟକ-୨।

୪୧. ୧୮୬୬ ଉତ୍କଳ ଦୀପିକା- ସଂ-ଡଃ. ବଂଶୀଧର ମହାନ୍ତି, ମୁଖବନ୍ଧ ପୃ-୧୦।

୪୨. ସାହିତ୍ୟ ସଂହତି ସଂସ୍କୃତି - ଅଧ୍ୟାପକ ପଠାଣି ପଟ୍ଟନାୟକ, ପୃ-୯୪, ୧ମ ପ୍ର-୧୯୭୨। ଫ୍ରେଣ୍ଡସ୍ ପବ୍ଲିଶର୍ସ, ବିନୋଦ ବିହାରୀ, କଟକ।

୪୩. ନବସମ୍ବାଦ- ୨/୬/୧୮୮୭।

୪୪. ଏକନ୍ନ – ୬/୨/୧୮୮୭ ।

୪୫. ସମ୍ବାଦପତ୍ରେ ଊନବିଂଶ ଶତାବ୍ଦୀର ଓଡ଼ିଶା- ଡଃ ଗୋପାଳ ଚନ୍ଦ୍ର ମିଶ୍ର, ପୃ-୩୭ । ୧ମ ପ୍ର-୧୯୭୨, ପ୍ରକାଶକ- ଜେ. ମହାପାତ୍ର ଏଣ୍ଡକୋ ଛାତ୍ରସାଥୀ ଅଫିସ୍, କଟକ-୨

୪୬. ଉତ୍କଳର ନବ ଜାଗରଣ ଓ ସଂବାଦ ସାହିତ୍ୟ– ଡଃ. ରେଣୁବାଳା ଶତପଥୀ । ପୃ-୮ । ସହକାର-ଦ୍ୱାଦଶବର୍ଷ ୧ମ ସଂଖ୍ୟା ୧୯୮୭ ।

୪୭. Bengali Literature – By J.C. Ghosh, P-98, Oxford University Press, London-1948.

୪୮. A Literary History of India – By. R. W. Frazer, p-387-88, 3rd Ed- 1915, London.

୪୯. Board of Revenue Archives, Cuttack-vol-26, p-192, Dt-12.9.1837.

୫୦. ବାଂଲା ଇତିହାସ – ଶ୍ରୀ ପ୍ରଭାସ ଚନ୍ଦ୍ର ସେନ୍, ପୃ-୪୮୫ । ୧ମ ପ୍ର-ବୈଶାଖ ୧୩୦୨ ସାଲ । କଥାଶିଳ୍ପ ପ୍ରକାଶ, ଶ୍ୟାମାଚରଣ ଷ୍ଟ୍ରୀଟ୍-କଲିକତା-୧୨ ।

୫୧. Every resonable encouragement by holding out to those who have taken advantage of the opportunity of instruction afforded to them a fair prospect of employment in the Public Service and there by not only to reward individual merit, but to enable the State to Profit as largely and as early as possible by the result of the measures adopted of late years for the instruction of the people.

Selections from Educational Records – J.A. Richey p-90, Part-II- 1840-59. Resolution of the Govt. of India, Dated the 10th Oct. 1844.

୫୨. The languages employed in the communication of vernacular instruction are chiefly Bengali in Bengala and Hindi in Bihar district. In Burdwan Bengali and in South Bihar Hindi are exclusively used but in Midnapur Oriya is largely employed as well as Bengali.

Report on Vernacular Education in Bengal and Bihar- W.Adam. P-36-39. First Report- Section III.

୫୩. ଆଧୁନିକ ଓଡ଼ିଆ କାବ୍ୟଧାରା (ଆଦିପର୍ବ) ଡଃ. ନରେନ୍ଦ୍ର ନାଥ ମିଶ୍ର। ପୃ-୬୧। ୧ମ ପ୍ର- ୧୯୬୪, ବିଶ୍ୱଭାରତୀ ଶାନ୍ତି ନିକେତନ।

୫୪. Orissa – W.W. Hunter-Vol-II- P-145. London-1872.

୫୫. General Report on Public Instruction in the lower Provinces of the Bengal Presidency- 1869-70. P-101.

୫୬. Ricketes, Commissioner to Sudder Board of Revenue 7 December 1837. B.R.A. Volume Nov-Dec 1837-No.2955.

୫୭. ଓଡ଼ିଆ ସାହିତ୍ୟର ସଂକ୍ଷିପ୍ତ ପରିଚୟ – ବୃନ୍ଦାବନ ଚନ୍ଦ୍ର ଆଚାର୍ଯ୍ୟ। ପୃ-୧୯୫ ୧ମ ସଂ- ୧୯୭୫। ଗ୍ରନ୍ଥ ମନ୍ଦିର, ବିନୋଦ ବିହାରୀ କଟକ।

୫୮. ଉତ୍କଳଦୀପିକା, ଜାନୁଆରୀ ୯. ୧୮୬୯।

୫୯. General Report on Public Instruction in Bengal 1873-74. Page-41.

୬୦. ଯୁଗଜ୍ୟୋତି ରାଧାନାଥ – ଦେବେନ୍ଦ୍ର ମହାନ୍ତି। ପୃ-୨୦। ୨ୟ ପ୍ରକାଶ- ୧୯୮୦। ଫ୍ରେଣ୍ଡସ୍ ପବ୍ଲିଶର୍ସ, କଟକ।

୬୧. History of Orissa – By N.K. Sahoo, P.K. Mishra & J.K. Sahoo, Page-427, 1st Ed. 1979, Nalanda Publication, Cuttack-2

୬୨. The Famine and Some aspects a the British Economy Policy in Orissa 1866-1905. By Gora Chand Patnaik. P-16, 1st Ed-1980. Vidyapuri, Balubazar, Cuttack.

୬୩. ଆତ୍ମଜୀବନ ଚରିତ ପୃ-୪୨-୪୩, ୬ଷ୍ଠ ମୁଦ୍ରଣ-୧୯୬୧, କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର।

୬୪. Report of the Orissa Famine Commission (1866) Vol-I, Part-I, Para-47.

୬୫. T.E.R Commr. to Sec. B.R.L.P No - 249, 30 October 1865. Bengal Rev. Proc. Nov – 1865.

୬୬. Report of the Orissa Famine Commission (1866) Vol-I, Part-I, Para-I.

୬୭. Another factor which contributed to the famine was the total absence of importation into Orissa of food from outside.

There was no active trading class in Orissa and the Province was isolated under these conditions, the only effectual way to relieve distress would have been a large importation of rice into the Province by the Govt. But unfortunately, the officers were ignorant of the conditions of orissa and character of the famines. Thus timely measures were not taken.

The Famine and some aspects of the British Economy Policy in Orissa- 1866-1905. By Gorachand Patnaik. P-18. 1st Ed. 1980. Vidyapuri, Balu Bazar, Cuttak.

୬୮. Hindu Patriot – 19 February 1866.

୬୯. Bengal Rev. Proc – April 1866. H. Muspratt, Magistrate Balasore to Commr. No-107, 2 April-1866

୭୦. Hindu Patriot – 5 March 1866.

୭୧. Rise and fulfilment of British rule in India- Garatt & Thompson- 1st Edition – p-483. Central Book Depot. Allahabad.

୭୨. T.E.R. Commr. to sec B.R.L. P No-523, 29 July 1867, Bengal Review, Proc. Sept-1867.

୭୩. Friends of India – 14 April 1866.

୭୪. R.B. Chapman. Sec to B.R.L.P to the Editor, English Man 28 April 1866.

୭୫. Report of the Orissa Famine Commission (1866), Vol I, Para 299, Part-I.

୭୬. ଆତ୍ମଜୀବନ ଚରିତ – ବ୍ୟାସକବି ଫକୀରମୋହନ ସେନାପତି, ପୃ-୪୫-୪୬। ୬ଷ୍ଠ ମୁଦ୍ରଣ-୧୯୬୧, କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର।

୭୭. ଉତ୍କଳ ଦୀପିକା-୨ୟ ଭାଗ, ୨୦/୭/୧୮୬୬, ସଂଖ୍ୟା ୨୯।

୭୮. ଏଜନ୍।

୭୯. Oriya Nationalism – Nivedita Mohanty, p-18, 1st Publication-1982, Monohar Punthi Pustak.

୮୦. G.R. P.I, 1864-65, Page-250.

୮୧. ଓଡ଼ିଆ ସାହିତ୍ୟରେ ଅନ୍ଧକାର ଯୁଗ- ସୁରେନ୍ଦ୍ର ମହାନ୍ତି। ଡଗର ୧୬ଶ ଭାଗ, ୧ମ ସଂଖ୍ୟା।

୮୨. J.A.S.B. – 1870-Part-II, Page- 201

୮୩. ଉତ୍କଳ ଦୀପିକା- ୪ର୍ଥ ଭାଗ, ସଂଖ୍ୟା '୧୧। ୧୩-୩-୧୮୬୯।

୮୪. ଉତ୍କଳ ସାହିତ୍ୟ- ୨୦ଶ ଭାଗ, ୨ୟ ସଂଖ୍ୟା, ଜ୍ୟେଷ୍ଠ ୧୩୨୩ ସାଲ।

୮୫. ଉତ୍କଳ ଦୀପିକା- ୩ୟ ଭାଗ ୧/୨/୧୮୬୮, ସଂଖ୍ୟା ୫।

୮୬. ଏଜନ୍, ୫ମ ଭାଗ ୨୬/୨/୧୮୭୦, ସଂଖ୍ୟା ୯।

୮୭. ଦେଶ, କାଳ, ପାତ୍ର ଓ ମନୀଷୀ ଫକୀରମୋହନ – ଡଃ ଜେ.ଭି. ବୋଲ୍‌ଟନ, ପୃ-୫, ଓଡ଼ିଆ ସାହିତ୍ୟ ଏକାଡେମୀ ୧୯୭୬।

୮୮. To the Credit of the American Baptist Missionaries it must be said that they whole heartedly advocated the use of Assamese in place of Bengali in schools and courts.

Assamese Literature – By Hem Barua, p-125, National Book Trust-1965.

୮୯. ଓଡ଼ିଆ ସାହିତ୍ୟର ଇତିହାସ- ଅଧ୍ୟାପକ ପଠାଣି ପଟ୍ଟନାୟକ। ପୃ-୪୦୫, ୧ମ ସଂ- ୧୯୭୮। ନାଲନ୍ଦା, ବିନୋଦବିହାରୀ, କଟକ।

୯୦. General Report on Public Instruction- 1857-58, P-116-18.

୯୧. ଦେଶ, କାଳ, ପାତ୍ର ଓ ମନୀଷୀ ଫକୀରମୋହନ - ଡଃ. ଜେ.ଭି. ବୋଲ୍‌ଟନ୍। ପୃ-୭। ଓଡ଼ିଆ ସାହିତ୍ୟ ଏକାଡେମୀ-୧୯୭୬।

୯୨. ଓଡ଼ିଆ ସାହିତ୍ୟରେ ପାଶ୍ଚାତ୍ୟ ପ୍ରଭାବ- ଅଧ୍ୟାପକ ଉମାଚରଣ ପୂଜାରୀ, ପୃ-୫। ଗୀତା ପ୍ରକାଶନୀ-୧୯୭୧।

୯୩. ଓଡ଼ିଆ ସାହିତ୍ୟ ପରିକ୍ରମା- ଡଃ. ଜାନକୀ ବଲ୍ଲଭ ମହାନ୍ତି, ପୃ-୭୩-୭୪, ଗ୍ରନ୍ଥ ମନ୍ଦିର, କଟକ- ୧୯୭୬।

୯୪. ଓଡ଼ିଆ ସାହିତ୍ୟର ଇତିହାସ- ଡଃ. ନଟବର ସାମନ୍ତରାୟ (୧୮୦୩-୧୯୨୦) ପୃ-୨୫୭, ୨ୟ ସଂ- ୧୯୮୩। କଳିଙ୍ଗ ମୁଦ୍ରଣୀ, ନିମଚଉରୀ, କଟକ ପ୍ରକାଶକ ଡଃ. ନଟବର ସାମନ୍ତରାୟ-ବାଣୀଭବନ, ସାମନ୍ତରାପୁର, ଭୁବନେଶ୍ୱର।

# ତୃତୀୟ ପରିଚ୍ଛେଦ

## ଆଧୁନିକ ସାହିତ୍ୟ ସୃଷ୍ଟିରେ ଫକୀରମୋହନ

ଊନବିଂଶ ଶତାବ୍ଦୀ ଯଥାର୍ଥରେ ଓଡ଼ିଆ ଜାତି, ଓଡ଼ିଆ ଭାଷା, ସର୍ବୋପରି ସମଗ୍ର ଓଡ଼ିଶାପାଇଁ ଥିଲା ଏକ ସଂଗ୍ରାମର ଶତାବ୍ଦୀ। ସଚେତନ ଓଡ଼ିଆ ଜାତି ଏହି ସମୟରେ ଆତ୍ମନିରୀକ୍ଷା ଓ ଆତ୍ମ ସମୀକ୍ଷା କରିବା ନିମିତ୍ତ ପ୍ରେରଣା ପାଇଛି। ନ'ଅଙ୍କ ଦୁର୍ଭିକ୍ଷ ଏ ଜାତିର ଆର୍ଥିକ ମେରୁଦଣ୍ଡ ଭାଙ୍ଗି ଦେଇଥିଲେ ମଧ୍ୟ ଏହାର ପରିଣାମ ସ୍ୱରୂପ ସମଗ୍ର ଓଡ଼ିଶାରେ ଜାତୀୟ ଚେତନା ସୃଷ୍ଟି ହୋଇଛି। ଭାଷା ସୁରକ୍ଷା ଆନ୍ଦୋଳନ ଏ ଜାତିକୁ ଶିଖାଇଛି ଆତ୍ମମର୍ଯ୍ୟାଦା ପ୍ରତିଷ୍ଠା କରିବା ପାଇଁ। ଆଧୁନିକ ଶିକ୍ଷା ଓ ପାଠ୍ୟପୁସ୍ତକ ଆନ୍ଦୋଳନ ଯୋଗୁଁ ଓଡ଼ିଶାରେ ଗତ ଶତାବ୍ଦୀରେ ସୃଷ୍ଟି ହୋଇଥିଲା ଏକ ମଧ୍ୟବିତ୍ତ ଶିକ୍ଷିତ ଶ୍ରେଣୀ, ଯେଉଁମାନେ ନିଜର ଭାଷା ଓ ସାହିତ୍ୟକୁ ରକ୍ଷା କରିବା ପାଇଁ ଆପ୍ରାଣ ଉଦ୍ୟମ କରି ସଫଳ ହୋଇଥିଲେ।

ଆଧୁନିକ ଶିକ୍ଷାର ପ୍ରସାର ଦ୍ୱାରା ଓ ନୂତନ ରୁଚି ଏବଂ ଜୀବନାଦର୍ଶ ପ୍ରଭାବରେ ଆଧୁନିକ ଓଡ଼ିଆ ସାହିତ୍ୟ ଜନ୍ମଲାଭକଲା। ଏହି ଆଧୁନିକ ସାହିତ୍ୟକୁ ଯେଉଁ କେତେଜଣ ମୁଷ୍ଟିମେୟ ସାଧକ ସମୃଦ୍ଧିଶାଳୀ କରିଛନ୍ତି, ଫକୀରମୋହନ ତନ୍ମଧ୍ୟରୁ ଅନ୍ୟତମ। ଗଦ୍ୟ ସାହିତ୍ୟ କ୍ଷେତ୍ରରେ ଫକୀରମୋହନ ଏକ ଅପ୍ରତିଦ୍ୱନ୍ଦ୍ୱୀ ସ୍ରଷ୍ଟା ଭାବରେ ସମ୍ମାନଦାବୀ କରୁଥିଲେ ମଧ୍ୟ "ଲେଖକ ଜୀବନର ପ୍ରଥମ ପର୍ଯ୍ୟାୟରେ ଫକୀର ମୋହନ ମୁଖ୍ୟତଃ ପଦ୍ୟ ସାହିତ୍ୟ ରଚନାରେ ମନୋନିବେଶ କରିଥିଲେ।"[୧] ତାଙ୍କର ସାହିତ୍ୟ ସୃଷ୍ଟିର ଆରମ୍ଭ ହିଁ ପଦ୍ୟରୁ। ଗୀତିକବିତା, ଖଣ୍ଡକାବ୍ୟ ଏବଂ କାବ୍ୟ ରଚୟିତା ଭାବରେ ସେ ନିଜକୁ ପ୍ରତିଷ୍ଠା କରିଯାଇଛନ୍ତି। ଆଧୁନିକ ସାହିତ୍ୟକୁ ବିଭିନ୍ନ ଦିଗରୁ ସମୃଦ୍ଧ କରିବାରେ ଊନବିଂଶ ଶତାବ୍ଦୀର ଅନ୍ୟାନ୍ୟ ସାହିତ୍ୟ ଶିଳ୍ପୀଙ୍କ ତୁଳନାରେ ଫକୀରମୋହନ ଅଗ୍ରଜ। ଆଧୁନିକ ସାହିତ୍ୟାଲୋଚନା ସମୟରେ ତାଙ୍କର କୃତିରାଜି ଆଲୋଚନା କରିବା ସର୍ବାଦୌ ଆବଶ୍ୟକ।

## ଜନ୍ମ, ଜୀବନୀ ଓ ଅଭିଜ୍ଞତା

୧୮୪୩ ମସିହା ଜାନୁଆରୀ ୧୩ ତାରିଖ ଦିନ ଫକୀରମୋହନ ସେନାପତି ବାଲେଶ୍ୱର ଜିଲ୍ଲାର ମଲ୍ଲିକାଶପୁରଠାରେ ଜନ୍ମ ଗ୍ରହଣ କରିଥିଲେ। ତାଙ୍କ ପିତାଙ୍କ ନାମ ଥିଲା ଲକ୍ଷ୍ମଣ ଚରଣ ସେନାପତି ଓ ମାତାଙ୍କର ନାମ ତୁଳସୀ ଦେଈ। ଫକୀରମୋହନଙ୍କୁ ଏକବର୍ଷ ପାଞ୍ଚ ମାସ ବେଳେ ତାଙ୍କର ପିତା ଜଗନ୍ନାଥଙ୍କ ରଥଯାତ୍ରା ଦର୍ଶନ କରି ଫେରିବା ସମୟରେ ଭୁବନେଶ୍ୱରଠାରେ ଓଲାଉଠା ରୋଗରେ ପ୍ରାଣ ତ୍ୟାଗ କରିଥିଲେ। ପିତାଙ୍କ ମୃତ୍ୟୁ ସମ୍ବାଦ ଶୁଣିବାର ଚଉଦମାସ ପରେ ମାତା ତୁଳସୀ ଦେଈ ମଧ୍ୟ ଇହଲୀଳା ସମ୍ବରଣ କରିଥିଲେ। ପିତାମାତା ହୀନ ଏହି ଅନାଥ ବାଳକଟିର ସମସ୍ତ ଦାୟିତ୍ୱ ଗ୍ରହଣକରି ପିତାମହୀ କୁଚିଲା ଦେଈ ସମସ୍ତ ପ୍ରକାର ପ୍ରତିକୂଳ ପରିବେଶ ମଧ୍ୟରେ ଲାଳନ ପାଳନ କରିଥିଲେ।(୨)

୧୮୫୨ ମସିହାରେ ୯ ବର୍ଷ ସମୟରେ ଫକୀରମୋହନଙ୍କର ବିଦ୍ୟାରମ୍ଭ ହୋଇଥିଲା। ସେ ସମୟରେ ସ୍କୁଲମାନଙ୍କର ଅବସ୍ଥା କିପରି ଥିଲା ଓ ଛାତ୍ରମାନଙ୍କୁ କିପରି ଶିକ୍ଷା ପ୍ରଦାନ କରାଯାଉଥିଲା, ସେ ସମ୍ପର୍କରେ ଫକୀରମୋହନ ଅତି ଚମତ୍କାର ଭାବରେ ତାଙ୍କର 'ଆତ୍ମଜୀବନ ଚରିତ'ରେ ଉଲ୍ଲେଖ କରିଛନ୍ତି। ପ୍ରତିକୂଳ ପରିବେଶ ମଧ୍ୟରେ ବଢ଼ି ଥିବାରୁ ଫକୀରମୋହନ ଉଚ୍ଚଶିକ୍ଷା ଲାଭରୁ ବଞ୍ଚିତ ହୋଇଥିଲେ। ତାଙ୍କର ବଡ଼ବାପା ପୁରୁଷୋତ୍ତମ ସେନାପତି ତାଙ୍କ ପ୍ରତି ଅତ୍ୟନ୍ତ ନିଷ୍ଠୁର ଥିଲେ। ଫକୀରମୋହନ ତାଙ୍କ ବଡ଼ବାପାଙ୍କ ସମ୍ପର୍କରେ ପାଠପଢ଼ା ବିଷୟରେ ଗୋଟିଏ ସୁନ୍ଦର ବ୍ୟାଖ୍ୟା ତାଙ୍କ 'ଆତ୍ମଜୀବନ ଚରିତ'ରେ ଦେଇଛନ୍ତି। ମାସ ଶେଷ ବେଳକୁ ଅବଧାନ ଦରମା ମାଗିବାକୁ ଗଲେ ବଡ଼ବାପା କହନ୍ତି, "ତୁମ୍ଭେ ତ ଫକୀରକୁ ପାଠ ପଢ଼ାଉ ନାହିଁ, ଦରମା ମାଗୁଛ କ'ଣ?" ଅବଧାନେ ଜବାବ ଦିଅନ୍ତି, "ମୁଁ ତ ଦିନରାତି ତାହାକୁ ପାଖରେ ବସାଇଛି, ଦଣ୍ଡେ ହେଲେ ଖେଳିବାକୁ ବୁଲିବାକୁ ଛାଡୁ ନାହିଁ।" ବଡ଼ବାପା କହନ୍ତି, "କାହିଁ ତା' ପିଠିରେ ତ ଚିହ୍ନ ନାହିଁ।" ଅବଧାନେ ବଡ଼ବାପାଙ୍କ ମନକଥା ଭଲକରି ବୁଝିଥିଲେ, ଚାହାଳୀରେ ମୁଁ ବସିଥିଲି, ଅକାରଣେ ବେତଟା ଧରି ମୋ ପିଠିରେ ଦଶବାର ପାହାର ବାଡ଼େଇ ଦେଲେ।"(୩) ଏହିପରି ଏକ ଛୋଟ ଶିଶୁକୁ ନିର୍ଯ୍ୟାତନା ଦେବାପରେ ମଧ୍ୟ ତାଙ୍କ ବଡ଼ବାପାଙ୍କ ମନସାଧ ମେଣ୍ଟି ନଥିଲା। ଶେଷରେ ତାଙ୍କର ପାଠପଢ଼ା ବନ୍ଦ କରାଇ ଅଝାଲ ସିଲାଇ ନିମକ ମାହାଲରେ କାର୍ଯ୍ୟ କରିବାକୁ ପଠାଇ ଥିଲେ।

## ଜୀବିକା ଉପାର୍ଜନ

ଫକୀରମୋହନଙ୍କ ବଡ଼ବାପା ଅଧିକାଂଶ ଜାହାଜର ଠିକାଦାର ଥିଲେ। ତାଙ୍କୁ ଗୋମାସ୍ତା ଅଧୀନରେ କାର୍ଯ୍ୟ ଶିଖିବା ନିମିତ୍ତ ବଡ଼ବାପା ନିର୍ଦ୍ଦେଶ ଦେବାରୁ ସେ

ଗୋମାସ୍ତାମେଟ୍ ରୂପେ କାର୍ଯ୍ୟ କରିବାକୁ ଲାଗିଲେ। ମେଟ୍ କାର୍ଯ୍ୟ କରିବା ସଙ୍ଗେ ସଙ୍ଗେ ଫକୀରମୋହନ ଅଝାଲ ସିଲାଇ କାର୍ଯ୍ୟ ମଧ୍ୟ କରୁଥିଲେ। ଜାହାଜାତି କାର୍ଯ୍ୟ ବନ୍ଦ ହୋଇଯିବା ପରେ ତାଙ୍କ ବଡ଼ବାପା ଭୂଇଁସାହି ଗ୍ରାମ ନିବାସୀ ନିମକ୍ ମାହାଲାର ସେରେସ୍ତାଦାରବାବୁ ବିଶ୍ୱନାଥ ଦାସଙ୍କ ନିକଟରେ ନିମକ୍ ମାହାଲର କାର୍ଯ୍ୟ ଶିଖିବାକୁ ଛାଡ଼ି ଦେଇଥିଲେ।(୪)

## ପୁନରାୟ ଅଧ୍ୟୟନ

ସଦରରୁ ହୁକୁମ ଆସିବାଦ୍ୱାରା ହଠାତ୍ ନିମକ ମାହାଲ ଉଠିଯିବାରୁ ଫକୀରମୋହନ ବାରବାଟି ସ୍କୁଲରେ ପଢ଼ିବାକୁ ଆରମ୍ଭ କଲେ। ବର୍ଷ ଶେଷ ପରୀକ୍ଷାରେ ସର୍ବୋତ୍କୃଷ୍ଟ ନମ୍ବର ରଖି ପ୍ରଥମ ସ୍ଥାନ ଅଧିକାର କରି ପରବର୍ତ୍ତୀ ଶ୍ରେଣୀକୁ ଉତ୍ତୀର୍ଣ୍ଣ ହୋଇଥିଲେ ମଧ୍ୟ ମାତ୍ର ୪/୫ ମାସ ପଢ଼ିବା ପରେ ସ୍କୁଲର ଦରମା ମାସିକ ଚାରିଅଣା ତାଙ୍କ ବଡ଼ବାପା ନ ଦେବା ଯୋଗୁଁ ପାଠ ପଢ଼ାରେ ଡୋରି ବନ୍ଧାଗଲା।

## କର୍ମମୟ ଜୀବନର ଆରମ୍ଭ – ସ୍କୁଲରେ ଅଧ୍ୟାପନା

ଫକୀରମୋହନ ଜଣେ ମେଧାବୀ ଛାତ୍ର ଥିବାରୁ ବାରବାଟି ସ୍କୁଲର ସମ୍ପାଦକ ଶିବଚନ୍ଦ୍ର ସୋମ ତାଙ୍କୁ ସେହି ସ୍କୁଲର ତୃତୀୟ ଶିକ୍ଷକ ଭାବରେ ନିଯୁକ୍ତି ପ୍ରଦାନ କରିଥିଲେ ମାସିକ ଅଢ଼େଇ ଟଙ୍କା ବେତନରେ। ତାଙ୍କର ନିଯୁକ୍ତି ଖବର ଶୁଣି ପିତାମହୀ କୁଟିଳା ଦେଇ ଆନନ୍ଦରେ ଅଧୀରା ହୋଇ ପଡ଼ିଥିଲେ। ଫକୀରମୋହନ ନିଜେ ଏ ସମ୍ପର୍କରେ କୁହନ୍ତି – "ଠାକୁର ମା' ମୋର ଚାକିରି କଥା ଶୁଣି, ଆନନ୍ଦରେ ଅସ୍ଥିର ହୋଇ ଚତୁର୍ଦ୍ଦିଗରେ ଧାଇଁବାକୁ ଲାଗିଲେ।"(୫) ୧୮୬୪ ମସିହାରେ ସେ ବାଲେଶ୍ୱର ମିସନ୍ ସ୍କୁଲର ପ୍ରଧାନ ଶିକ୍ଷକ ଭାବରେ ନିଯୁକ୍ତି ପାଇଥିଲେ ମାସିକ ଦଶଟଙ୍କା ବେତନରେ। ଏହି ବାଲେଶ୍ୱର ମିସନ୍ ସ୍କୁଲରେ ଥିବା ସମୟରେ ସେ ରେଭେରେଣ୍ଡ ହାଲମ୍, ଜନ୍ ବିମ୍ସ ପ୍ରଭୃତି ବିଦ୍ୱାନଙ୍କ ସମ୍ପର୍କରେ ଆସିବାର ସୁଯୋଗ ଲାଭ କରିଥିଲେ।

## ନ'ଅଙ୍କ ଦୁର୍ଭିକ୍ଷର ଅନୁଭୂତି

୧୮୬୫-୬୬ ମସିହାରେ ଓଡ଼ିଶାରେ ଦେଖା ଦେଇଥିବା ନ'ଅଙ୍କ ଦୁର୍ଭିକ୍ଷର ପ୍ରତ୍ୟକ୍ଷ ବିବରଣୀ ଫକୀରମୋହନ ତାଙ୍କ 'ଆତ୍ମଜୀବନ ଚରିତ'ରେ ଉଲ୍ଲେଖ କରିଛନ୍ତି। ନ'ଅଙ୍କ ଦୁର୍ଭିକ୍ଷର କରାଳ ବିଭୀଷିକା ଦରଦୀପ୍ରାଣ ଫକୀରମୋହନଙ୍କୁ ବ୍ୟଥିତ କରି ଦେଇଥିଲା। ନିଜର ଅନୁଭୂତି ବର୍ଣ୍ଣନା କରି ସେ ଲେଖିଛନ୍ତି, "ମୋ ଘରଠାରୁ ଅର୍ଦ୍ଧମାଇଲ ଦକ୍ଷିଣକୁ ବାଲେଶ୍ୱର ସହର ଲୋକବସତି ଶେଷ। ସେହିଠାରୁ ଦିଗ୍‌ବଳୟ ସୀମା ପର୍ଯ୍ୟନ୍ତ

ନିରବଚ୍ଛିନ୍ନ ଧାନ୍ୟ କ୍ଷେତ୍ର। ମଧ୍ୟରେ ମଧ୍ୟରେ ସମୁଦ୍ର ମଧ୍ୟଗତ ଦ୍ୱୀପ ସ୍ୱରୂପ ଗୋଟିଏ ଗୋଟିଏ ପୃଥକ୍ ପୃଥକ୍ ଗ୍ରାମ। ସେହି ସମୟରେ ପ୍ରତିଦିନ ପୂର୍ବାହ୍ନ ନଅଘଣ୍ଟା ସମୟରେ ସ୍ନାନ କରି ଖଣ୍ଡିଏ କମ୍ବଳାସନ କାଖରେ ଯାକି, ଏକାକୀ ଧାନ ବିଲକୁ ଯାଏ। ବିଲ ମଧ୍ୟରେ ଆସନ ପାରି ବସି, ଈଶ୍ୱରଙ୍କଠାରେ ଲୋକମାନଙ୍କ ରକ୍ଷା ସକାଶେ ପ୍ରାର୍ଥନା କରେ।"[୬] ଏହି ଦୁର୍ଭିକ୍ଷର ମୁକାବିଲା ପାଇଁ ସେ ତତ୍‌କାଳୀନ ଓଡ଼ିଶାରେ ଅବସ୍ଥାପିତ ଇଂରେଜ ଅଫିସରମାନଙ୍କୁ ସମସ୍ତ ବିଷୟ ଅବଗତ କରାଇ ଥିବାର ଜଣାଯାଇଥାଏ।

## ପ୍ରଥମ ବିବାହର ତିକ୍ତ ଅନୁଭୂତି

ଫକୀରମୋହନଙ୍କର ତେରବର୍ଷ ବୟସରେ ପ୍ରଥମ ବିବାହ ଲୀଳାବତୀ ଦେବୀଙ୍କ ସହିତ ଅନୁଷ୍ଠିତ ହୋଇଥିଲା। ତାଙ୍କର ପ୍ରଥମା ସ୍ତ୍ରୀ ବିବାହର ଷୋଳବର୍ଷ ପର୍ଯ୍ୟନ୍ତ ଜୀବିତା ଥିଲେ। ଏହି ଷୋଳ ବର୍ଷ ଫକୀରମୋହନଙ୍କ ଜୀବନ କଟିଥିଲା ଅତ୍ୟନ୍ତ ମାନସିକ ଯନ୍ତ୍ରଣାରେ। କାରଣ ପ୍ରଥମାସ୍ତ୍ରୀ ଥିଲେ ନିଷ୍ଠୁରା, ଦାମ୍ଭିକା, କର୍କଶ ଭାଷିଣୀ ଓ ସ୍ୱାମୀଙ୍କର ବିରୋଧାଚାରିଣୀ। ସ୍ୱାମୀ, ସ୍ତ୍ରୀଙ୍କ ମଧ୍ୟରେ ପ୍ରାଚୀର ଠିଆ କରିବାକୁ ତାଙ୍କ ଜେଠାଈମା' ଷଡ଼୍‌ଯନ୍ତ୍ର କରି ସଫଳକାମ ମଧ୍ୟ ହୋଇ ପାରିଥିଲେ। କେବଳ ଠାକୁର ମା'ଙ୍କ ଆଶ୍ୱାସନା ଯୋଗୁଁ ସେ କୌଣସି ପ୍ରକାରେ ଗୃହବାସ କରିବାକୁ ସମର୍ଥ ହୋଇ ପାରିଥିଲେ। କିଛିଦିନ ପରେ ତାଙ୍କ ସ୍ତ୍ରୀ ଦୁରାରୋଗ୍ୟ ରୋଗ ଯୋଗୁଁ ଇହଲୀଳା ସମ୍ବରଣ କରିବାରୁ ସେ ମାନସିକ ଦୁଷ୍ଚିନ୍ତାରୁ ମୁକ୍ତି ପାଇଥିଲେ।[୭] ତେଣୁ ଫକୀରମୋହନଙ୍କ ପ୍ରଥମ ବିବାହ ବିଫଳତାରେ ପର୍ଯ୍ୟବସିତ ହୋଇଥିଲା।

## ଜୀବନର ପଟ୍ଟପରିବର୍ତ୍ତନ : ଦ୍ୱିତୀୟ ସ୍ତ୍ରୀ କୃଷ୍ଣାକୁମାରୀ

ପ୍ରଥମା ପତ୍ନୀଙ୍କର କର୍କଶ ବ୍ୟବହାର ଯୋଗୁଁ ଯେଉଁ ଫକୀରମୋହନ ମାନସିକ ଭାରସାମ୍ୟ ହରାଇ ବସିଥିଲେ, ଦ୍ୱିତୀୟା ପତ୍ନୀ କୃଷ୍ଣାକୁମାରୀଙ୍କର ମଧୁର ସ୍ୱଭାବ ତାଙ୍କ ଜୀବନର ଗତିକୁ ମଧୁମୟ କରି ତୋଳିଥିଲା। ନିଜେ ଫକୀରମୋହନ ସ୍ୱୀକାର କରିଛନ୍ତି – "ସାଂସାରିକ ସମସ୍ତ ପ୍ରକାର ଦୁଃଖ ଦୁର୍ଦ୍ଦଶା ମୋଚନ, ସୌଭାଗ୍ୟ-ସୁଖ-ସମ୍ପତ୍ତି ବର୍ଦ୍ଧନ ନିମନ୍ତେ ଦୟାମୟ ପରମେଶ୍ୱର କୃଷ୍ଣାକୁମାରୀଙ୍କୁ ଭାର୍ଯ୍ୟାରୂପେ ମୋହ ନିକଟକୁ ପଠାଇଥିଲେ। ସତ୍ୟନିଷ୍ଠା, ପତିପରାୟଣତା, ଧାର୍ମିକତା, ସମସ୍ତ ପ୍ରକାର ସଦ୍‌ଗୁଣ ତାଙ୍କଠାରେ ପୂର୍ଣ୍ଣ ମାତ୍ରାରେ ବିଦ୍ୟମାନ ଥିଲା। ମୋର ସେବା-ଶୁଶ୍ରୂଷା କରିବା, ମୋର ଆଜ୍ଞାନୁବର୍ତ୍ତିନୀ ହୋଇ ରହିବା, ସେ ତାଙ୍କର ପରମ କର୍ତ୍ତବ୍ୟ ମଣୁଥିଲେ। × × ୧୮୯୪ ମସିହାରେ ଗୋଟିଏ ପୁତ୍ର ଏବଂ ଗୋଟିଏ କନ୍ୟା ରଖି, ସେ ଯେତେବେଳେ

ଇହଧାମ ପରିତ୍ୟାଗ କରି ଚାଲିଗଲେ, ସେହିଦିନଠାରୁ ପୃଥିବୀରୁ ମୋହର ସହାନୁଭୂତି-ପ୍ରାପ୍ତି ଶେଷ ହୋଇଅଛି।[୮] ଏହି ଦ୍ୱିତୀୟ ସ୍ତ୍ରୀଙ୍କ ଯୋଗୁଁ ଆଜି ଆମେ ସାହିତ୍ୟିକ ଫକୀରମୋହନଙ୍କୁ ଆମ ନିକଟରେ ପାଇବାକୁ କ୍ଷମ ହୋଇ ପାରିଛୁ।

## ଦେବାନଗିରି

ଫକୀରମୋହନଙ୍କ କର୍ମମୟ ଜୀବନର ଦ୍ୱିତୀୟ ପର୍ଯ୍ୟାୟ ଆରମ୍ଭ ହୁଏ ନୀଳଗିରିରେ ଦେବାନୀ କାର୍ଯ୍ୟଠାରୁ। ଶିକ୍ଷକତା ପରେ ହଠାତ୍ ଅନ୍ୟ ଏକ କାର୍ଯ୍ୟକୁ ସ୍ଥାନାନ୍ତରିତ ହୋଇ ସେ ଯେପରି ନିଜର ପ୍ରତ୍ୟୁତ୍ପନ୍ନମତିତା ପ୍ରକାଶ କରିଅଛନ୍ତି, ବାସ୍ତବରେ ତାହା ବିସ୍ମୟଜନକ। ୧୮୭୧-୭୫ ଏହି ଚାରିବର୍ଷ ନୀଳଗିରିରେ ଦେବାନଗିରି କାର୍ଯ୍ୟରେ ନିଜର ବିଚକ୍ଷଣ ବୁଦ୍ଧିମତାର ପରିଚୟ ସେ ପ୍ରଦାନ କରିଅଛନ୍ତି। ତତ୍ପରେ ୧୮୭୬-୭୭ ଏକବର୍ଷ ପାଇଁ ଡୋମପଡ଼ାରେ ଦେବାନ ଭାବରେ, ୧୮୭୭-୮୩ ଛଅବର୍ଷ ଢେଙ୍କାନାଳରେ ଏସିଷ୍ଟେଣ୍ଟ ମେନେଜରୀ, ୧୮୮୪-୮୬ ଦୁଇବର୍ଷ ଦଶପଲ୍ଲାରେ ଦେବାନଗିରି, ୧୮୮୬-୮୭ ଏକ ବର୍ଷ ପାଲଲହଡ଼ାରେ ଦେବାନୀ, ୧୮୮୭-୯୨ ପାଞ୍ଚବର୍ଷ କେନ୍ଦୁଝରରେ ମ୍ୟାନେଜର, ୧୮୯୪-୯୬ ପୁନର୍ବାର ଡୋମପଡ଼ାରେ ଦେବାନୀ ଏବଂ ୧୮୯୯ ମସିହାରେ କିଛିଦିନ ପାଇଁ କେନ୍ଦ୍ରାପଡ଼ାରେ କାର୍ଯ୍ୟ କରି ଅନେକ ତିକ୍ତ ମଧୁର ଅଭିଜ୍ଞତା ହାସଲ କରିଥିଲେ।

## ଫକୀରମୋହନଙ୍କ ବ୍ୟକ୍ତିବୃତ୍ତ ଓ ସାମାଜିକ ବୃତ୍ତ

ଫକୀରମୋହନଙ୍କ ଜୀବନ ବିବିଧ ପ୍ରକାର ତିକ୍ତମଧୁର ଅନୁଭୂତିରେ ପରିପୂର୍ଣ୍ଣ ଏକ ବିଚିତ୍ର ଜୀବନ। ପିଲାଦିନ୍ରୁ ପିତାମାତା ହରାଇ ଥିବା ଏହି ମଣିଷଟି ଜୀବନରେ ଯେ କେତେ ଅନୁଭୂତିର ପଥ ଅତିକ୍ରମ କରିଛନ୍ତି, ତାହା ତାଙ୍କର ଆତ୍ମଜୀବନ ପାଠ କଲେ ଜଣାଯାଇଥାଏ। ପିଲାଦିନର ପାଠପଢ଼ାଠାରୁ ଆରମ୍ଭକରି ନିମକ ମାହାଲରେ କାର୍ଯ୍ୟ ଓ ସ୍କୁଲର ଶିକ୍ଷକତା ପର୍ଯ୍ୟନ୍ତ ସମୟକୁ ଫକୀରମୋହନଙ୍କ ବ୍ୟକ୍ତିବୃତ୍ତ ମଧ୍ୟରେ ଅନ୍ତର୍ଭୁକ୍ତ କରାଯାଇପାରେ। କାରଣ ଏ ପର୍ଯ୍ୟନ୍ତ ସେ ସମାଜର ବିଶେଷ ସମସ୍ୟା ସହିତ ଜଡ଼ିତ ନ ଥିଲେ କିମ୍ବା ବିଭିନ୍ନ ସାମାଜିକ ସମସ୍ୟା ଦୂରୀକରଣ ନିମିତ୍ତ ସେପରି କିଛି ଉଲ୍ଲେଖନୀୟ କାର୍ଯ୍ୟ କରିପାରି ନଥିଲେ। ଏ ପର୍ଯ୍ୟନ୍ତ ସେ ନିଜର ବ୍ୟକ୍ତିଗତ କାର୍ଯ୍ୟ ସାଧନରେ ବ୍ରତୀ ଥିଲେ। ସମାଜ ଜୀବନର ବିଭିନ୍ନ ଅନୁଭୂତି ସହିତ ଓ ସମାଜର ଅନ୍ୟାନ୍ୟ ସମସ୍ୟା ସହିତ ସେ ବିଶେଷ ଭାବରେ ଜଡ଼ିତ ହୋଇଛନ୍ତି, ଯେତେବେଳେ ସେ ସ୍କୁଲର ଶିକ୍ଷକତା କାର୍ଯ୍ୟ ପରିତ୍ୟାଗ କରି ଶାସକ ଜୀବନକୁ ଓହ୍ଲାଇ ଆସିଛନ୍ତି।

ସେହି ଜୀବନର ତୀବ୍ର ଅନୁଭୂତି ତାଙ୍କୁ ପ୍ରେରଣା ଦେଇଛି ସାହିତ୍ୟ ସୃଷ୍ଟି କରିବାକୁ । ସମାଜ ଜୀବନର ବିଭିନ୍ନ ସମସ୍ୟା ସହିତ ଜଡ଼ିତ ହୋଇଛନ୍ତି ସେ ଶାସକ ଜୀବନରେ । ତେଣୁ ଫକୀରମୋହନଙ୍କ ସାମାଜିକ ବୃତ୍ତର ଆରମ୍ଭ ଶାସକ ଜୀବନରୁ ହୋଇଛି କହିଲେ ଅତ୍ୟୁକ୍ତି ହେବ ନାହିଁ। ବାସ୍ତବରେ ଫକୀରମୋହନଙ୍କ ଏହି ସାଧନାମୟ ଜୀବନକୁ ଲକ୍ଷ୍ୟ କରି ସମାଲୋଚକ ଡଃ ଶ୍ରୀନିବାସ ମିଶ୍ର ଯଥାର୍ଥରେ ଲେଖିଛନ୍ତି – "ଓଡ଼ିଶାର ସଂସ୍କୃତି, ଜାତୀୟତା ଓ ଭାଷା-ସଚେତନ ଏହି ଜୀବନବାଦୀ ସାହିତ୍ୟ ସାଧକ ବାସ୍ତବିକ ଓଡ଼ିଶାର ଓ ଓଡ଼ିଆ ସାହିତ୍ୟର ଦୁର୍ଦ୍ଦିନରେ ଥିଲେ ଆଶା, ଉଦ୍ଦୀପନା, ଉତ୍ସାହ ଓ ପ୍ରେରଣାର ଏକ ଶେଷହୀନ ପ୍ରାଣବନ୍ତ ଉତ୍ସ ଓ ଉଚ୍ଛ୍ୱାସ। ଓଡ଼ିଶା ଇତିହାସର ଏକ ସନ୍ଧିକାଳରେ ତାଙ୍କର ଆବିର୍ଭାବ। ଏ ଯୁଗସନ୍ଧି ଏକ କ୍ଷୟଶୀଳ ପ୍ରାଚୀନ ସମାଜ ଓ ଅନ୍ୟ ଏକ ଉଦୟଶୀଳ ନବୀନ ସମାଜର ସଂଘର୍ଷମୟ ଯୁଗସନ୍ଧି।"[୯] ବ୍ୟକ୍ତିଗତ ଜୀବନର ଅନୁଭୂତି, ସମାଜ ଜୀବନର ଅନୁଭୂତି ତାଙ୍କୁ ପ୍ରେରଣା ଦେଇଛି ସାହିତ୍ୟ ସାଧନା କ ିବାକୁ। ଏହି ଯୁଗପୁରୁଷଙ୍କର ଜୀବନ ଓଡ଼ିଆ ସାହିତ୍ୟରେ ଏକ ବିଶିଷ୍ଟ ପରମ୍ପରା ସୃଷ୍ଟି କରିଛି। ତାଙ୍କର ବିପୁଳ ସାହିତ୍ୟ କୃତି ତଥା ଅନୁଭୂତି ପରିପୂର୍ଣ୍ଣ ଜୀବନକୁ ଲକ୍ଷ୍ୟକଲେ ବିସ୍ମୟରେ କହିବାକୁ ପଡ଼ିଥାଏ, ଏହା କ'ଣ କେବେ ଜଣେ ବ୍ୟକ୍ତିର ସାଧନା ହୋଇପାରେ? ଆଲୋଚନାର ସୁବିଧା ପାଇଁ ତାଙ୍କର ସାଧନା ଓ ସଂଘର୍ଷମୟ ଜୀବନକୁ ନିମ୍ନ ପ୍ରକାରେ ଆଲୋଚନା କରାଯାଇପାରେ।

## ପାଠ୍ୟପୁସ୍ତକ ଲେଖକ

ତତ୍‌କାଳୀନ ବଙ୍ଗାଳୀମାନେ ଓଡ଼ିଆ ଭାଷା ବିଲୋପ ନିମିତ୍ତ ଯେଉଁ ଦୁଇଟି କାରଣ ଉପରେ ବିଶେଷ ଗୁରୁତ୍ୱ ଆରୋପ କରିଥିଲେ ତାହା ହେଲା, ୧. ଓଡ଼ିଆଭାଷା ବଙ୍ଗଳା ଭାଷାର ଏକ ଉପଭାଷା, ୨. ଓଡ଼ିଆ ଭାଷାରେ ଲିଖିତ ଉପଯୁକ୍ତ ପାଠ୍ୟପୁସ୍ତକର ଅଭାବ । ସେଇଥିପାଇଁ ୧୮୬୪ ମସିହାରେ ବଙ୍ଗର ଡେପୁଟି ଇନ୍‌ସପେକ୍ଟର ଉମାଚରଣ ହାଲ୍‌ଦାର ଓଡ଼ିଶାରେ ଶିକ୍ଷାର ଅଧୋଗତିର କାରଣ ଦର୍ଶାଇବାକୁ ଯାଇ କହିଥିଲେ, "ଓଡ଼ିଶାର ବିଦ୍ୟାଳୟମାନଙ୍କରେ ବଙ୍ଗଳା ଓ ଓଡ଼ିଆ ଉଭୟ ଭାଷାର ପ୍ରଚଳନ ଶିକ୍ଷା ଉନ୍ନତିର ପ୍ରଧାନ ଅନ୍ତରାୟ। ଓଡ଼ିଆ ଭାଷାରେ ବ୍ୟାକରଣ ଓ ପାଠ୍ୟପୁସ୍ତକର ଅଭାବ ହେତୁ ଏଠାରେ କେବଳ ବଙ୍ଗଳା ଭାଷାରେ ବଙ୍ଗଳା ପାଠ୍ୟପୁସ୍ତକ ମାଧ୍ୟମରେ ଶିକ୍ଷା ଦିଆଯିବା ଉଚିତ।"[୧୦] ଇନିସ୍‌ପେକ୍ଟର ହାରିସନ୍ (N.S. Harison) ମଧ୍ୟ ଓଡ଼ିଆ ଭାଷାରେ ଉପଯୁକ୍ତ ପାଠ୍ୟପୁସ୍ତକର ଅଭାବ ଅନୁଭବ କରି ବଙ୍ଗଳାଭାଷା ଚଳାଇବା ସପକ୍ଷରେ ମତଦାନ କରିବା ସଙ୍ଗେ ସଙ୍ଗେ ଆହୁରି କହିଥିଲେ ଯେ ଯଦି ବଙ୍ଗଳାଭାଷାର

ପ୍ରବର୍ତ୍ତନ ନ ହୁଏ, ତେବେ ଓଡ଼ିଆ ଭାଷାର ଅନୁଶୀଳନ ତଥା ଅଭିବୃଦ୍ଧି ସହିତ ଉପଯୁକ୍ତ ବ୍ୟାକରଣ, ଅଭିଧାନ ଏବଂ ଅନ୍ୟାନ୍ୟ ପାଠ୍ୟପୁସ୍ତକ ରଚନା ଦିଗରେ ମନୋନିବେଶ କରିବା ପାଇଁ ବର୍ତ୍ତମାନ ଉପଯୁକ୍ତ ସମୟ ଆସିଛି।[୧୧] ବଙ୍ଗାଳୀମାନଙ୍କର ଚକ୍ରାନ୍ତ ସତ୍ତ୍ୱେ ଓଡ଼ିଶାରେ ବଙ୍ଗଳା ଭାଷା ପରିବର୍ତ୍ତେ ଓଡ଼ିଆ ଭାଷାର ପ୍ରଚଳନ ହେଲା। କିନ୍ତୁ ଉପଯୁକ୍ତ ପୁସ୍ତକର ଅଭାବ ଲକ୍ଷ୍ୟକରି ସେ ସମୟରେ 'ଉତ୍କଳ ପୁତ୍ର' ଲେଖିଥିଲା "ବଙ୍ଗଳା ଉଠିଗଲା ଭଲ ହେଲା। ଭଲ ହେଲା ସତ, ମାତ୍ର ଓଡ଼ିଆର ଭାବୀ ଉନ୍ନତି ଓ ସ୍ଥାୟିତ୍ୱ ସାଧନରେ ଯେ ଉପାୟ ଅବଲମ୍ବନ କରିବାର ବିହିତ (ଓ ସେ ଉପାୟରେ ଇଷ୍ଟସିଦ୍ଧ ହେବାର ସମ୍ଭାବନା) ତାହା ଯାହା ଗବର୍ଣ୍ଣମେଣ୍ଟ କରୁ ନାହାନ୍ତି। × × ଯେ ପୁରାତନ ପୁସ୍ତକ ଅଛି ତହିଁରେ ଆମ୍ଭମାନଙ୍କର ଆସ୍ଥା ନାହିଁ। ଉପେନ୍ଦ୍ରଙ୍କ ଯମକ, ଦୀନକୃଷ୍ଣଙ୍କ ଅନୁପ୍ରାସ ଓ ଅଭିମନ୍ୟୁଙ୍କ ରାସକ୍ରୀଡ଼ା ଆମ୍ଭମାନଙ୍କ ରୁଚିକୁ ଭଲ ଲାଗୁ ନାହିଁ। ବସ୍ତୁତଃ ଏପରି ରସାତ୍ମକ ପୁସ୍ତକମାନ ପାଠ୍ୟପୁସ୍ତକ କରି ସୁକୁମାର ମତି ବାଳକମାନଙ୍କ ହସ୍ତରେ ଦେବାକୁ ଆମ୍ଭମାନଙ୍କୁ ଲଜ୍ଜା ହେଉଅଛି। ବର୍ତ୍ତମାନ ସରଳ ପଦ୍ୟ ଓ ପ୍ରଶସ୍ତ ପଦ୍ୟପୁସ୍ତକ ନିତାନ୍ତ ପ୍ରୟୋଜନୀୟ।"[୧୨]

ଏହିପରି ଭାଷା ସୁରକ୍ଷା ଆନ୍ଦୋଳନ ବେଳକୁ ଓ ପାଠ୍ୟ ପୁସ୍ତକରେ ଅଭାବ ଅନୁଭୂତି ହେଉଥିବା ସମୟକୁ ଫକୀରମୋହନ ୨୬ ବର୍ଷ ଯୁବକ। ଭାଷା ଆନ୍ଦୋଳନ ଯୋଗୁଁ ବଙ୍ଗାଳୀମାନଙ୍କ ବିରୋଧରେ ବିଭିନ୍ନ ସଭାସମିତିରେ ବକ୍ତୃତା ଦେବାଦ୍ୱାରା ଓ 'ସମ୍ବାଦବାହିକା'ରେ ଲେଖାଲେଖି କରି ପ୍ରକାଶ୍ୟରେ ତର୍କ ବିତର୍କ କରିବାରୁ ବଙ୍ଗାଳୀମାନଙ୍କ ନିକଟରେ ଫକୀରମୋହନ ଘୃଣାର ପାତ୍ର ହୋଇଯାଇଥିଲେ। ସେମାନେ ତାଙ୍କର ନାମ ନ ଧରି ତାଙ୍କୁ ଶାଳା ରିଂଲିଡ଼ର ବୋଲି ଡାକୁଥିଲେ।[୧୩] ଓଡ଼ିଶାରେ ଓଡ଼ିଆ ଭାଷାରେ ଉପଯୁକ୍ତ ପାଠ୍ୟପୁସ୍ତକ ଅଭାବ ଅନୁଭବ କରି ଫକୀରମୋହନ ପ୍ରଥମେ ପାଠ୍ୟପୁସ୍ତକ ପ୍ରଣୟନରେ ଲେଖନୀ ଚାଳନା କରିଥିଲେ। ମିସନ୍ ସ୍କୁଲରେ ଶିକ୍ଷକତା କରୁଥିବା ସମୟରେ ସେ ହାଲମ୍‌ସାହେବଙ୍କୁ ଓଡ଼ିଆ ବ୍ୟାକରଣ ରଚନାରେ ସାହାଯ୍ୟ କରିଥିଲେ। ସେହି ସ୍କୁଲ୍‌ରେ କାର୍ଯ୍ୟ କରୁଥିବା ସମୟରେ ଫକୀରମୋହନ ନିଜେ ଖଣ୍ଡିଏ ଛୋଟିଆ ଓଡ଼ିଆ ବ୍ୟାକରଣ ଏବଂ ଅଙ୍କ ପୁସ୍ତକ ଲେଖି ପ୍ରକାଶ କରିଥିଲେ। ୧୮୬୭ ମସିହାରେ ଈଶ୍ୱରଚନ୍ଦ୍ର ବିଦ୍ୟାସାଗରଙ୍କର ଜୀବନ ଚରିତ ବଙ୍ଗଳା ପୁସ୍ତକରୁ ଅନୁବାଦ କରିଥିଲେ ଓ ତାହା ପାଠ୍ୟପୁସ୍ତକ ଭାବରେ କିଛିଦିନ ସ୍କୁଲରେ ପ୍ରଚଳିତ ହୋଇଥିଲା। ୧୮୬୯ ସାଲରେ ଭାରତ ବର୍ଷର ଇତିହାସ ୧ମ ଭାଗ ଲେଖି ପ୍ରକାଶ କରିଥିଲେ। ୧୮୭୦ ସାଲରେ 'ଭାରତବର୍ଷର ଇତିହାସ' ୨ୟ ଭାଗ

ପ୍ରକାଶିତ ହୋଇଥିଲା। ଏହି ଭାରତବର୍ଷର ଇତିହାସ' ପୁସ୍ତକ ଯୋଗୁଁ ତତ୍କାଳୀନ ସ୍କୁଲ ଇନ୍‌ସପେକ୍ଟର ସାତଶହ ଟଙ୍କା ଓ କମିଶନର ରେଭେନ୍ସାହେବ ତାଙ୍କୁ ତିନିଶହ ଟଙ୍କା ପୁରସ୍କାର ଦେଇଥିବାର ଜଣାଯାଇଥାଏ। ସେହି ପୁସ୍ତକଟି ଛାତ୍ରବୃତ୍ତି ପରୀକ୍ଷାରେ ପାଠ୍ୟପୁସ୍ତକ ଭାବରେ ମଧ୍ୟ ନିରୂପିତ ହୋଇଥିଲା।[୧୪] ଏହି ସମୟ ମଧ୍ୟରେ ସେ ଯେଉଁ ସମସ୍ତ ପାଠ୍ୟପୁସ୍ତକ ପ୍ରଣୟନ କରିଥିଲେ, ତାହା ଶ୍ରେଣୀ ଗୃହରେ ପାଠ୍ୟପୁସ୍ତକର ମର୍ଯ୍ୟାଦା ପାଇଥିଲା। ୧୮୬୩-୭୧ ଏହି ଆଠବର୍ଷ ଶିକ୍ଷକତା ମଧ୍ୟରେ ଫକୀରମୋହନ ଅନେକ ବିଦ୍ୱାନ୍‌ମାନଙ୍କ ସଂସ୍ପର୍ଶରେ ଆସିବାର ସୁଯୋଗ ମଧ୍ୟ ପାଇଥିଲେ।

## ଛାପାକଳ ପ୍ରତିଷ୍ଠା ଓ ପତ୍ରିକା ସମ୍ପାଦନ

ଫକୀରମୋହନ ଅନୁଭବ କରିଥିଲେ ଗୋଟିଏ ଛାପାକଳ ପ୍ରତିଷ୍ଠା ହୋଇ ନ ପାରିଲେ ଓଡ଼ିଆ ସାହିତ୍ୟର ବିକାଶ ନିଶ୍ଚୟ ବାଧାପ୍ରାପ୍ତ ହେବ। ଫକୀରମୋହନ ଜାଣିଥିଲେ ୧୮୨୨ ମସିହାରେ ରେଭେରେଣ୍ଡ କ୍ୟାମ୍ପବୋନ୍ ଓଡ଼ିଶା ଆସି ମୁଦ୍ରାଯନ୍ତ୍ର ପ୍ରତିଷ୍ଠା କରି ତା' ମାଧ୍ୟମରେ ଖ୍ରୀଷ୍ଟଧର୍ମ ପ୍ରଚାର କରିବାକୁ ଉଦ୍ୟମ କରିଥିଲେ ମଧ୍ୟ ସେ ପର୍ଯ୍ୟନ୍ତ ଓଡ଼ିଶାରେ ଆଶାନୁରୂପ ଛାପାକଳ ପ୍ରତିଷ୍ଠା ହୋଇପାରି ନ ଥିଲା। ସେ ଠିକ୍ ଜାଣିଥିଲେ ଛାପାପୁସ୍ତକ ପ୍ରକାଶିତ ନ ହେଲେ ମାତୃଭାଷାର ଉନ୍ନତି ହେବା ସମ୍ପୂର୍ଣ୍ଣ ଅସମ୍ଭବ। ସେ ପ୍ରାଚୀନ ଓଡ଼ିଆ ସାହିତ୍ୟର ଜନପ୍ରିୟ ଛାନ୍ଦ ପୋଥିଗୁଡ଼ିକୁ ଛପାଇ ଲୋକମାନଙ୍କ ମଧ୍ୟରେ ବିତରଣ କରିବାକୁ ଚାହିଁଲେ। ତେଣୁ ସେତେବେଳେ ଗୋଟିଏ କମିଟି ଗଠନ କରାଯାଇଥିଲା, ଯେଉଁଥିରେ ବାବୁ ଜୟକୃଷ୍ଣ ଚୌଧୁରୀ, ଭୋଳାନାଥ ସାମନ୍ତରାୟ, ଗୋବିନ୍ଦ ପ୍ରସାଦ ଦାସ, ଦାମୋଦର ପ୍ରସାଦ ଦାସ (ସମ୍ପାଦକ ଏବଂ କୋଷାଧ୍ୟକ୍ଷ), ଫକୀରମୋହନ ସେନାପତି ଓ ରାଧାନାଥ ରାୟ ସଭ୍ୟ ଥିଲେ। ଏହି କମିଟିର ମତାନୁଯାୟୀ ଚାନ୍ଦା ଆଦାୟ ହେଲା। ତତ୍ପରେ ନିଷ୍ପତ୍ତି ନିଆଗଲା ଦୀନକୃଷ୍ଣଙ୍କ 'ରସକଲ୍ଲୋଳ' ଛାପିବା ନିମିତ୍ତ। ଯେତିକି ଚାନ୍ଦା ଆଦାୟ ହୋଇଥିଲା, ସେଥିରେ ହୁଏତ ରସକଲ୍ଲୋଳ ପୁସ୍ତକ ଛପାଯାଇ ପାରେ। କିନ୍ତୁ ତା'ପରେ ଅନ୍ୟାନ୍ୟ ପୁସ୍ତକ? ତେଣୁ ନିଷ୍ପତ୍ତି ନିଆଗଲା ଗୋଟିଏ ପ୍ରେସ୍ କମ୍ପାନୀ ବାଲେଶ୍ୱରରେ ସ୍ଥାପନ କରାଯିବ। ସେହି ଅର୍ଥ ଦାମୋଦର ପ୍ରସାଦ ଦାସଙ୍କ ନିକଟରେ ଗଚ୍ଛିତ ଥିଲା। ମାତ୍ର ହଠାତ୍ ସେ ଟଙ୍କା କୁଆଡ଼େ ଉଭାଇ ଗଲା। ତା'ପରେ ଫକୀରମୋହନ ଏକାକୀ ଲାଗିପଡ଼ିଲେ। ତାଙ୍କ ନେତୃତ୍ୱରେ ୪ଜଣ କମିଟି ସଦସ୍ୟ ଚାନ୍ଦା ଆଦାୟ କରିବାକୁ ଲାଗିଲେ। ଚାନ୍ଦା ଆଦାୟପରେ ଫକୀରମୋହନ ଜଗନ୍ନାଥ ନାମରେ ତାଙ୍କର ଜଣେ ମାମୁପୁଅ ଭାଇଙ୍କୁ ନିଜ ଖର୍ଚ୍ଚରେ ପ୍ରେସ୍ ପରିଚାଳନା ଅଭିଜ୍ଞତା ପାଇଁ କଲିକତା ପଠାଇଲେ। କିନ୍ତୁ ସେ

ଅକୃତକାର୍ଯ୍ୟ ହେବାରୁ ଫକୀରମୋହନ ନିଜେ ଟଙ୍କା କରଜ କରି କଲିକତାରୁ ପ୍ରେସ୍ ଆଣିଲେ। ସେହି କମ୍ପାନୀର ନାମ ହେଲା ପି.ଏମ୍. ସେନାପତି ଏଣ୍ଡକୋ ପ୍ରେସ୍। ଫକୀରମୋହନ ଥିଲେ ଏହି ପ୍ରେସ୍‌ର ମୁଖ୍ୟ ଉଦ୍ୟକ୍ତା। ତାଙ୍କରି ପରିଶ୍ରମ ଯୋଗୁଁ ବାଲେଶ୍ୱରରେ ଏକ ପ୍ରେସ୍ ସ୍ଥାପନ ହେବା ସମ୍ଭବ ହୋଇପାରିଲା। ତାଙ୍କର ଏହି ସାଧୁ ଉଦ୍ୟମ ଯୋଗୁଁ ବାଲେଶ୍ୱରର ତତ୍କାଳୀନ କଲେକ୍ଟର ବିଗ୍‌ନୋଲ୍‌ଡ଼ ସାହେବ ତାଙ୍କୁ ଖୁବ୍ ଆନନ୍ଦ ମନରେ ଧନ୍ୟବାଦ ଦେବା ସଙ୍ଗେ ସଙ୍ଗେ ଉତ୍ସାହ ବର୍ଦ୍ଧନ ପାଇଁ କଚେରିରୁ ଅନେକ ଗୁଡ଼ିଏ ଫାରମ୍ ଛପାଇବାକୁ ଦେଇଥିଲେ ବୋଲି ସେ ନିଜେ ସ୍ୱୀକାର କରନ୍ତି। ୧୮୬୮ ମସିହାରେ ଏହି ପ୍ରେସ୍‌ଟି ସ୍ଥାପନ ହୋଇଥିଲା। ଅନ୍ୟମାନଙ୍କ ମଧ୍ୟରେ ଜନ୍ ବୀମ୍‌ସ ଓ ଟି. ରେଭେନ୍ସା ସାହେବ ପ୍ରଭୃତି ମଧ୍ୟ ଏ ଦିଗରେ ଫକୀରମୋହନଙ୍କୁ ଉତ୍ସାହିତ କରିଥିଲେ।[(୧୫)]

ଏହି ପ୍ରେସ୍ ସ୍ଥାପନ ଦ୍ୱାରା ଫକୀରମୋହନଙ୍କ ଖ୍ୟାତି ଚତୁର୍ଦ୍ଦିଗରେ ବ୍ୟାପିଯାଇଥିଲା। ପ୍ରେସ୍ କାର୍ଯ୍ୟ ଆଶାନୁରୂପ ହେଉଥିବାର ଦେଖି ଫକୀରମୋହନ ଉକ୍ତ ପ୍ରେସ୍‌ରୁ ଏକ ପତ୍ରିକା ପ୍ରକାଶ କରିବା ନିମିତ୍ତ ମନସ୍ଥ କଲେ। ପତ୍ରିକା ଜାତିର ମୁଖପତ୍ର; ଅସହାୟର ସହାୟ ଓ ଜନସାଧାରଣଙ୍କ ଦୃଷ୍ଟିଭଙ୍ଗୀକୁ ପ୍ରସାରିତ କରିବାରେ ସାହାଯ୍ୟ କରିଥାଏ। ଏହାପୂର୍ବରୁ 'କଟକ ପ୍ରିଣ୍ଟିଂ କମ୍ପାନୀ' 'ଉତ୍କଳ ଦୀପିକା' ନାମରେ ଏକ ସାପ୍ତାହିକ ପତ୍ରିକା ପ୍ରକାଶ କରୁଥିଲେ। ସେତେବେଳେ 'ଉତ୍କଳ ଦୀପିକା' ନ'ଅଙ୍କ ଦୁର୍ଭିକ୍ଷ ଓ ଭାଷା ସୁରକ୍ଷା ଆନ୍ଦୋଳନ କ୍ଷେତ୍ରରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲା। ଫକୀରମୋହନ ସେହି ଆଦର୍ଶରେ ଗୋଟିଏ ପତ୍ରିକା ପ୍ରକାଶ କରିବାକୁ ମନସ୍ଥ କଲେ। ସେ ନିଜେ ଏ ସମ୍ପର୍କରେ କୁହନ୍ତି – "ଆମ୍ଭମାନଙ୍କ ପ୍ରେସ୍‌ରୁ ଗୋଟିଏ ପାକ୍ଷିକ ପତ୍ରିକା ବାହାର କରାଯିବା ସକାଶେ କୋମ୍ପାନୀର କାର୍ଯ୍ୟନିର୍ବାହିକା ସମିତି ପ୍ରସ୍ତାବ ଏବଂ ସ୍ଥିର କଲେ। ପତ୍ରିକାର ନାମ ହେଲା – "ବୋଧଦାୟିନୀ ଏବଂ ବାଲେଶ୍ୱର ସମ୍ବାଦ ବାହିକା। "ବୋଧ ଦାୟିନୀ' ଅଂଶ ସାହିତ୍ୟ-ବିଷୟକ ଏବଂ 'ସମ୍ବାଦ ବାହିକା', 'ଅଂଶ ସମ୍ବାଦ-ବିଷୟକ'। ପତ୍ରିକା ବାହାରିଲା; ମାତ୍ର ଲେଖକଙ୍କର ଅଭାବ, ମୁଁ ଦିନଯାକ ସ୍କୁଲ ଓ ପ୍ରେସ୍ କାର୍ଯ୍ୟ କରି ଥକିପଡ଼େ। ରାତିରେ ବିଶେଷ କିଛି କାର୍ଯ୍ୟ କରିବାକୁ ବଳ ଅଣ୍ଟେ ନାହିଁ। ସେଥିପାଇଁ ପତ୍ରିକା ଅନିୟମିତ ରୂପେ ବାହାରେ। ପ୍ରାୟ ଚାଳିଶ ପଚାଶ ଜଣ ପତ୍ରିକାର ଗ୍ରାହକ ଥିଲେ। ଆଠଦଶ ଜଣଙ୍କଠାରୁ ମୂଲ୍ୟ ଆଦାୟ ହେଉଥିଲା।"[(୧୬)]

ଜଣେ ବ୍ୟକ୍ତି ପ୍ରେସ୍ ପରିଚାଳନାଠାରୁ ଆରମ୍ଭ କରି ପତ୍ରିକାର ସମସ୍ତ ବିଷୟ ଲେଖାଲେଖି କରିବା କେତେବଡ଼ କଷ୍ଟସାଧ୍ୟ ବ୍ୟାପାର ତାହା ଅନୁଭବୀ ବ୍ୟତୀତ

ଅନ୍ୟ କେହି ଜାଣିପାରିବେ ନାହିଁ। ଫକୀରମୋହନଙ୍କ ତତ୍ତ୍ୱାବଧାନରେ ପରିଚାଳିତ ପ୍ରେସ୍ ଓ ପତ୍ରିକା ଦିନେ ସମଗ୍ର ଉତ୍କଳରେ ଚାଞ୍ଚଲ୍ୟ ସୃଷ୍ଟି କରିପାରିଥିଲା। ଅଳ୍ପାୟୁଷ ହେଲେ ମଧ୍ୟ, ତା'ର ସୁବାସ ତତ୍କାଳୀନ ଉତ୍କଳର ଚତୁର୍ଦ୍ଦିଗକୁ ଆମୋଦିତ କରିପାରିଥିଲା, କହିବା ବାହୁଲ୍ୟ ମାତ୍ର।

## ଶିକ୍ଷକରୁ ଶାସକ

ଶିକ୍ଷକ ଭାବରେ ଅଶେଷ ଖ୍ୟାତିର ଅଧିକାରୀ ହେବାପରେ ଫକୀରମୋହନ ଓହ୍ଲାଇ ଆସିଛନ୍ତି ସାଧାରଣ ଜନଜୀବନ ନିକଟକୁ। ତାଙ୍କର ତ୍ୟାଗ, ସାଧନା ଓ କର୍ମଠ ଜୀବନ ତାଙ୍କୁ ପରିଣତ କରିପାରିଥିଲା ଏକ ସୁଶାସକ ଭାବରେ 'ଏ ସମ୍ପର୍କରେ ଡଃ ନଟବର ସାମନ୍ତରାୟ କୁହନ୍ତି – "ସ୍କୁଲ ମାଷ୍ଟରର ଷ୍ଟେଟ ଆଡ୍‌ମିନିଷ୍ଟ୍ରେଟରରେ ରୂପାନ୍ତର ଆଦୌ ଆକସ୍ମିକ କିମ୍ବା ଆଶ୍ଚର୍ଯ୍ୟଜନକ ନୁହେଁ। ପ୍ରଥମ ଜୀବନର ତ୍ୟାଗ, ସଂଗ୍ରାମ ଓ ସାଧନାହିଁ ଏଥିପାଇଁ ଦାୟୀ। ଏ ସଂଗ୍ରାମ ଓ ସାଧନାରେ ଯୋଗୀ ହୁଏ ବ୍ରହ୍ମର୍ଷି, ଜ୍ଞାନୀ ହୁଏ ମୁକ୍ତି ଭିକ୍ଷୁ; କିନ୍ତୁ ଏଥିରେ ଫକୀରମୋହନ ହୋଇଛନ୍ତି 'ବେଟା ରିଙ୍ଗ୍ ଲିଡ଼ର' ।। ୧୮୭୧-୯୬ ସାଲ ଭିତରେ ନୀଳଗିରି, ଡମପଡ଼ା, ଢେଙ୍କାନାଳ, ଦଶପଲ୍ଲା, ପାଲଲହଡ଼ା ଓ କେନ୍ଦୁଝରର ଶାସକ ଫକୀରମୋହନ ଜନତାର ପ୍ରତ୍ୟକ୍ଷ ସଂସ୍ପର୍ଶରେ ଆସି ମଣିଷର ବିଚିତ୍ର ଜୀବନଧାରା ଓ ପ୍ରାଣ ପ୍ରବାହକୁ ନିବିଡ଼ଭାବେ ଅଧ୍ୟୟନ କରିବାର ସୌଭାଗ୍ୟ ଲାଭ କରିଥିଲେ। ଜୀବନର ଏ ବାସ୍ତବ ଓ ପ୍ରତ୍ୟକ୍ଷ ଅନୁଭୂତି ପ୍ରଥମ ଜୀବନର ସାଧନା ଓ ସଂଗ୍ରାମର ଏକ ସ୍ୱାଭାବିକ ପରିଣତି ମାତ୍ର।"(୧୭)

ନୀଳଗିରିରେ ୧୮୭୧-୭୫ ପର୍ଯ୍ୟନ୍ତ ଦେବାନ୍ ଥିବା ସମୟରେ ତତ୍‌କାଳୀନ ରାଜା କୃଷ୍ଣଚନ୍ଦ୍ର ମର୍ଦ୍ଦରାଜ ହରିଚନ୍ଦନଙ୍କ ପୋଷ୍ୟପୁତ୍ର ଗ୍ରହଣ ସମ୍ପର୍କୀୟ ବାଦାନୁବାଦ ଓ ମନାନ୍ତର ଯୋଗୁଁ ଫକୀରମୋହନ ସେ କାର୍ଯ୍ୟ ପରିତ୍ୟାଗ କରି ଚାଲି ଆସିଥିଲେ।(୧୮) ଏହି ଚାରିବର୍ଷ ମଧ୍ୟରେ ଫକୀର-ମୋହନ ରାସ୍ତା ନିର୍ମାଣ, ହାଟ ସ୍ଥାପନ, ବିଭିନ୍ନ ପ୍ରକାର ନୂତନ ଧରଣର ଚାଷ, ଟୋଲ ସ୍ଥାପନ ଓ ବିଭିନ୍ନ ଆନ୍ଦୋଳନ ସମାଧାନ କରିବା କ୍ଷେତ୍ରରେ ନିଜର ପାରଦର୍ଶିତା ପ୍ରଦର୍ଶନ କରିଯାଇଛନ୍ତି। ଏହି ସମୟରେ ବିଭିନ୍ନ ପ୍ରକାର ମାନବଜୀବନ ସମ୍ପର୍କରେ ଆସିବାର ପ୍ରତ୍ୟକ୍ଷ ସୁଯୋଗ ପାଇ ମାନବ ଜୀବନକୁ ଅଧ୍ୟୟନ କରିବାର ସୁଯୋଗ ମଧ୍ୟ ପାଇଛନ୍ତି। ୧୮୭୬-୭୭ ପର୍ଯ୍ୟନ୍ତ ଡୋମପଡ଼ାରେ ଦେବାନ୍ ଭାବେ କାର୍ଯ୍ୟ କରିଥିଲେ। ଡୋମପଡ଼ାର ପ୍ରଜାମେଳିକୁ ନିଜର ପ୍ରତ୍ୟୁତ୍ପନ୍ନମତିତା ଯୋଗୁଁ ଅତି ସହଜରେ ସମାଧାନ କରି ପ୍ରଜାମାନଙ୍କର ହିତ ସାଧନ କରିଥିଲେ। ଏହିଠାରେ ସେ ଲୋକମାନଙ୍କର ଯାତାୟାତର ସୁବିଧା ନିମିତ୍ତ ରାସ୍ତା ନିର୍ମାଣ କରିବା,

ଜମିଜମାର ଉପଯୁକ୍ତ ପଟ୍ଟା ପ୍ରସ୍ତୁତ କରିବା ପ୍ରଭୃତି କେତେକ କାର୍ଯ୍ୟ ସାଧନ କରିଥିଲେ। କିନ୍ତୁ ଡୋମପଡ଼ାରେ ସେ ରାଜାଙ୍କ ପକ୍ଷ ନେଇ ଯେପରି ପ୍ରଜାମାନଙ୍କୁ ଏକ ଚକ୍ରାନ୍ତର ଜାଲରେ ଆବଦ୍ଧ କରିଥିଲେ, ତାହା ତାଙ୍କ ବୁଦ୍ଧିମତ୍ତାର କାର୍ଯ୍ୟ ହେଲେ ମଧ୍ୟ; ସ୍ୱାଗତ ଯୋଗ୍ୟ ନୁହେଁ। ଅବଶ୍ୟ ଏପରି କାର୍ଯ୍ୟ କରିଥିବା ଯୋଗୁଁ ସେ ଅନୁତପ୍ତ ହୋଇଥିଲେ।[୧୯] ୧୮୭୭-୮୩ ପର୍ଯ୍ୟନ୍ତ ଫକୀରମୋହନ ଢେଙ୍କାନାଳରେ ଆସିଷ୍ଟାଣ୍ଟ ମ୍ୟାନେଜର ଭାବରେ କାର୍ଯ୍ୟ କରିଥିଲେ। ଏହିଠାରେ କାର୍ଯ୍ୟକରୁଥିବା ସମୟରେ ତାଙ୍କର ଶିଶୁପୁତ୍ରଟିର ଅକାଳ ବିୟୋଗରେ ମ୍ରିୟମାଣା ପତ୍ନୀଙ୍କୁ ସାନ୍ତ୍ୱନା ଦେବା ସକାଶେ ରାମାୟଣ ଅନୁବାଦ କାର୍ଯ୍ୟରେ ହାତ ଦେଇଥିଲେ। କେତେଜଣ ଈର୍ଷାପରାୟଣ ବ୍ୟକ୍ତି ଫକୀରମୋହନଙ୍କୁ ବିରୋଧ କରି ତାଙ୍କ ବିପକ୍ଷରେ ଦରଖାସ୍ତ ଦେବାରୁ ସେ ବାଧ ହୋଇ ସେହି କାର୍ଯ୍ୟଟିକୁ ପରିତ୍ୟାଗ କରିଥିଲେ। ଏହି ସମୟରେ ତାଙ୍କର ଶରୀର ମଧ୍ୟ ଅସୁସ୍ଥ ହୋଇ ପଡ଼ିଥିବାର ଆମେ ତାଙ୍କ ଆତ୍ମଜୀବନ ଚରିତରୁ ଜାଣିଥାଉ।[୨୦]

ଢେଙ୍କାନାଳର କାର୍ଯ୍ୟ ତ୍ୟାଗ ପରେ ସେ ଆର୍ଥିକ ଅଭାବ ମଧ୍ୟ ଦେଇ ଗତିକରିବାରୁ ୧୮୮୪ରେ ଦଶପଲ୍ଲାରେ ଦେବାନ ରୂପେ ନିଯୁକ୍ତ ହେଲେ। ଏଠାରେ ୧୮୮୪-୮୬ ପର୍ଯ୍ୟନ୍ତ ଦୁଇବର୍ଷ କାର୍ଯ୍ୟକରି ପ୍ରଶଂସା ଭାଜନ ହୋଇପାରିଥିଲେ। ଏହି ସମୟରେ ଯୋରମ ଗ୍ରାମ ଓ ଅନୁଗୁଳର ସୀମାରେଖା ନିର୍ଦ୍ଧାରଣ କରି ସେ ଉଲ୍ଲେଖଯୋଗ୍ୟ ସଫଳତା ହାସଲ କରିଥିଲେ। ଯୋରମ ମହାନଦୀ ପ୍ରବଳ ବନ୍ୟାଦ୍ୱାରା କ୍ଷତିଗ୍ରସ୍ତ ହେଉଥିବାରୁ ସେଠାରେ ସେ ଏକ ପଥରବନ୍ଧ ନିର୍ମାଣ କରି ନିରୀହ ଗ୍ରାମବାସୀମାନଙ୍କୁ ବନ୍ୟାଦାଉରୁ ରକ୍ଷା କରିପାରିଥିଲେ। ଦଶପଲ୍ଲାରେ ଥିବା ସମୟରେ ସଡ଼କ ନିର୍ମାଣ, ବିଭିନ୍ନ ନୂତନ ଧରଣର ଚାଷ ବ୍ୟବସ୍ଥା ପ୍ରଚଳନ କରି ଜନସାଧାରଣଙ୍କର ଆର୍ଥିକ ଅବସ୍ଥାରେ ଉନ୍ନତି ସାଧନ କରିପାରିଥିଲେ। ରାଜାଙ୍କ ସହ ମନାନ୍ତର ଘଟିବାରୁ ଫକୀରମୋହନ ସେ କାର୍ଯ୍ୟ ପରିତ୍ୟାଗ କରିଥିଲେ।[୨୧] ୧୮୮୬-୮୭ ଏକ ବର୍ଷ ପାଲଲହଡ଼ାରେ ଦେବାନ୍ ଭାବରେ କାର୍ଯ୍ୟ କରିଥିଲେ। ୧୮୮୭-୯୨ ପର୍ଯ୍ୟନ୍ତ କେନ୍ଦୁଝରରେ ମ୍ୟାନେଜର ଥିବା ସମୟରେ ଅନେକ ତିକ୍ତ ମଧୁର ଅଭିଜ୍ଞତା ହାସଲ କରିଥିଲେ। କେନ୍ଦୁଝର ପ୍ରଜାବିଦ୍ରୋହରେ ଫକୀରମୋହନ ସକ୍ରିୟ ଅଂଶ ଗ୍ରହଣ କରି ନିଜର ପ୍ରତ୍ୟୁତ୍ପନ୍ନମତିତା ଦ୍ୱାରା ଯେପରି ଆନ୍ଦୋଳନକୁ ବିଫଳ କରିପାରିଥିଲେ, ତାହା ବାସ୍ତବରେ ବିସ୍ମୟକର। ଭୂୟାଁ ସର୍ଦ୍ଦାର ଧରଣୀଧରଙ୍କୁ ନିଜର ଚତୁରତାରେ ବଶୀଭୂତ କରାଇ କାର୍ଯ୍ୟ ହାସଲ କରିଥିଲେ।[୨୨] ପୁନର୍ବାର ଫକୀରମୋହନ ୧୮୯୪-୯୬ ପର୍ଯ୍ୟନ୍ତ ଡୋମପଡ଼ାରେ ଦ୍ୱିତୀୟଥର ଦେବାନ ଭାବରେ କାର୍ଯ୍ୟ କରି ବିଭିନ୍ନ ଲୋକ

ସମ୍ପର୍କରେ ଆସିବାଦ୍ୱାରା, ସମାଜ ଜୀବନରେ ଅନେକ ଅଭିଜ୍ଞତା ହାସଲ କରିଥିଲେ। ୧୮୯୯ ମସିହାରେ କେନ୍ଦ୍ରାପଡ଼ାରେ କିଛିଦିନ କାର୍ଯ୍ୟ କରିଥିଲେ ମଧ୍ୟ ସେପରି କିଛି ଉଲ୍ଲେଖଯୋଗ୍ୟ ସଫଳତା ହାସଲ କରିବାର ପ୍ରମାଣ ନାହିଁ।

୧୮୭୧-୯୬ ଦୀର୍ଘ ପଚିଶ ବର୍ଷ ଶାସକ ଜୀବନର ଅନୁଭୂତି ପରବର୍ତ୍ତୀ ସମୟରେ ତାଙ୍କୁ ଏକ ପ୍ରଥମ ଶ୍ରେଣୀର ସ୍ରଷ୍ଟା ଆସନରେ ପ୍ରତିଷ୍ଠିତ କରିପାରିଥିଲା। ଜନଜୀବନର ପ୍ରତ୍ୟକ୍ଷ ସମ୍ପର୍କରେ ଆସିବା ଦ୍ୱାରା ସେ ଯେଉଁ ବିପୁଳ ଅନୁଭୂତିର ଅଧିକାରୀ ହୋଇଥିଲେ, ସେହି ଅନୁଭୂତିକୁ କଳାତ୍ମକ ରୂପରେ ପ୍ରକାଶ କରି ସେ ହେଲେ ଓଡ଼ିଆ ସାହିତ୍ୟର ଅଦ୍ୱିତୀୟ ସ୍ରଷ୍ଟା; ଯାହା ବର୍ତ୍ତମାନ ପର୍ଯ୍ୟନ୍ତ ବି ଓଡ଼ିଆ ସାହିତ୍ୟରେ ଅନତିକ୍ରମଣୀୟ ହୋଇ ରହିପାରିଛି।

## ଅନୁବାଦକ ଫକୀରମୋହନ

ଫକୀରମୋହନ ଜଣେ କେବଳ ସାର୍ଥକ ସାହିତ୍ୟ ସ୍ରଷ୍ଟା ନ ଥିଲେ, ପରନ୍ତୁ ଥିଲେ ମଧ୍ୟ ଏକ ସଫଳ ଅନୁବାଦକ। ୧୮୬୬ ସାଲରେ ଓଡ଼ିଶାରେ ପାଠ୍ୟପୁସ୍ତକର ଅଭାବ ଦେଖି ସେ ଈଶ୍ୱରଚନ୍ଦ୍ର ବିଦ୍ୟାସାଗରଙ୍କ ଜୀବନ ଚରିତ ବଙ୍ଗଳା ପୁସ୍ତକରୁ ଅନୁବାଦ କରିଥିଲେ ଓ ତାହା ପାଠ୍ୟପୁସ୍ତକ ଭାବରେ ପ୍ରଚଳନ କରାଯାଇଥିଲା।

ଫକୀରମୋହନଙ୍କ ସାହିତ୍ୟ ସାଧନା ଓ ଅନୁବାଦ କ୍ଷେତ୍ରରେ ତାଙ୍କ ଦ୍ୱିତୀୟାପତ୍ନୀ କୃଷ୍ଣାକୁମାରୀଙ୍କ ଅବଦାନର ତୁଳନା ନାହିଁ। ଫକୀରମୋହନ ନିଜେ ସ୍ୱୀକାର କରିଛନ୍ତି – "ଢେଙ୍କାନାଳରେ ଥିବା ସମୟରେ ମୋର ଜ୍ୟେଷ୍ଠ ପୁତ୍ରଟି ମରିଯିବାରୁ ମୋର ସ୍ତ୍ରୀକୁ ସାନ୍ତ୍ୱନା ଦେବାପାଇଁ ରାମାୟଣ, ମହାଭାରତ ଅନୁବାଦ କଲି।"[୨୩] ଫକୀରମୋହନ ୧୮୭୭ରୁ ୧୮୮୩ ପର୍ଯ୍ୟନ୍ତ ଢେଙ୍କାନାଳରେ ଆସିଷ୍ଟାଣ୍ଟ ମ୍ୟାନେଜର ରୂପେ କାର୍ଯ୍ୟ କରିଥିଲେ। ତେଣୁ ତାଙ୍କର ରାମାୟଣ ଓ ମହାଭାରତର ଅନୁବାଦ ଏହି ସମୟ ମଧ୍ୟରେ ଆରମ୍ଭ ହୋଇଛି। ଡଃ ନଟବର ସାମନ୍ତରାୟ ତାଙ୍କର 'ବ୍ୟାସକବି ଫକୀରମୋହନ' ସମାଲୋଚନା ପୁସ୍ତକର ପରିଶିଷ୍ଟରେ ଫକୀରମୋହନଙ୍କ ରଚନାର ପ୍ରକାଶ ସମୟ ଉଲ୍ଲେଖ କରିଛନ୍ତି। ସେଥିରୁ ଜଣାଯାଏ –

(କ) ରାମାୟଣ ଆଦିକାଣ୍ଡ ବା ବାଳକାଣ୍ଡ – ୧୮୭୯ ସାଲ ଅଗଷ୍ଟ ମାସରେ ଯନ୍ତ୍ରସ୍ଥ।

(ଖ) ଅରଣ୍ୟ କାଣ୍ଡ – ୧୮୮୪ ସାଲରେ ପ୍ରକାଶିତ।

(ଗ) ଅଯୋଧ୍ୟା କାଣ୍ଡ – ୧୮୮୧ ସାଲରେ ମୁଦ୍ରିତ।

(ଘ) କିଷ୍କିନ୍ଧ୍ୟା କାଣ୍ଡ – ୧୮୮୫।
(ଙ) ସୁନ୍ଦରା କାଣ୍ଡ – ୧୮୮୬ ସେପ୍ଟେମ୍ବର।
(ଚ) ଲଙ୍କା କାଣ୍ଡ – ୧୮୯୦ ଡିସେମ୍ବର।
(ଛ) ଉତ୍ତରା କାଣ୍ଡ – ୧୮୯୫।[୨୪]

ଫକୀରମୋହନଙ୍କ ଦ୍ୱିତୀୟ ପୁତ୍ର ଜନ୍ମ ବର୍ଷରେ ଅର୍ଥାତ୍ ୧୮୮୧ରେ ମହାଭାରତ ଅନୁବାଦ କାର୍ଯ୍ୟ ଆରମ୍ଭ କରନ୍ତି ଓ ୧୯୦୨ରେ ଶେଷ କରନ୍ତି ବୋଲି ସେ ନିଜେ ଉଲ୍ଲେଖ କରିଛନ୍ତି।[୨୫] କିନ୍ତୁ ଏହାର ପ୍ରକାଶ ସମୟ ହେଉଛି –

(କ) ଆଦିପର୍ବ – ୧୮୮୬
(ଖ) ସଭାପର୍ବ – ୧୮୮୭
(ଗ) ବନପର୍ବ – ୧୯୦୪
(ଘ) ବିରାଟପର୍ବ – ୧୯୦୫

ଅନ୍ୟଗୁଡ଼ିକର ପ୍ରକାଶ ସମୟ ହେଲା –

ଶ୍ରୀମଦ୍ଭାଗବତ ଗୀତା – ୧୮୮୫
ଖିଳ ହରିବଂଶ – ୧୯୦୨
ଉପନିଷଦ ସଂଗ୍ରହ – ୧୯୦୫
ଛାନ୍ଦୋଗ୍ୟ ଉପନିଷଦ – ୧୯୧୬

ଉପନିଷଦ ସଂଗ୍ରହ – ସାହିତ୍ୟ ୮ମ ଭାଗ ୩ୟ ସଂଖ୍ୟାଠାରୁ ୬ଷ୍ଠ ସଂଖ୍ୟା ପର୍ଯ୍ୟନ୍ତ ଆଷାଢ଼ ୧୩୧୧ (ଜୁନ୍, ୧୯୦୪)

ମେଘଦୂତ ବଙ୍ଗାନୁବାଦ – ମୁକୁର ୩/୮ ମାର୍ଗଶିର ନଭେମ୍ବର୧୯୦୮। ଯାଜ୍ଞବଲ୍କ୍ୟ ମୈତ୍ରେୟୀ ସମ୍ବାଦ – ମୁକୁର ୭/୩ ଆଷାଢ଼ ୧୩୧୯ (ଜୁନ୍ ୧୯୧୨)।[୨୬]

ଫକୀରମୋନହଙ୍କ ଅନୁବାଦ ସାହିତ୍ୟ ବିପୁଳକାୟ। ଏ ସମସ୍ତ ଯେ ଏକକ ସୃଷ୍ଟି, ବିଶ୍ୱାସ କରିହୁଏନା। କେତେ ଧୈର୍ଯ୍ୟ ଓ ନିଷ୍ଠା ଏପରି ବିଶାଳ ଅନୁବାଦ ସାହିତ୍ୟ ସୃଷ୍ଟି କରିପାରେ, ତାହା କେବଳ ଅନୁଭବୀମାନେହିଁ କହିପାରିବେ।

**ଉତ୍କଳ ଭ୍ରମଣଂ**

୧୮୯୧ ମସିହା ମେ ମାସ ୧୪ ତାରିଖରେ ଫକୀରମୋହନ କେନ୍ଦୁଝରର ଭୂୟାଁମାନଙ୍କ ଆୟତ୍ତକୁ ଚାଲିଯାଇଥିଲେ। ୨୩ ତାରିଖ ଦିନ ସେ ବନ୍ଧୁକଧାରୀ

ସିପାହୀମାନଙ୍କ ଦ୍ୱାରା ମୁକ୍ତି ଲାଭ କରନ୍ତି। ଜୀବନର ଏହି ଚରମ ବିଫଳତା ଓ ପରମ ସଫଳତାରେ ସେ ମ୍ରିୟମାଣ ହୋଇ ପଡ଼ନ୍ତି। ଜୀବିକା ଉପାର୍ଜନର ଉପାୟ କ୍ରମଶଃ କ୍ଷୀଣ ହୋଇ ଆସୁଛି। ସେଦିନ ଭଦ୍ରକରୁ ସମସ୍ତ କାର୍ଯ୍ୟ ସମାପ୍ତି କରି ଆନନ୍ଦପୁରକୁ ଫେରି ଆସୁଥାନ୍ତି ଫକୀରମୋହନ। ମୁଣ୍ଡରେ ଅନେକ ଚିନ୍ତାର ବୋଝ, ହଠାତ୍ ମନରେ ଏକ ଅଦ୍‌ଭୁତ ଖିଆଲ୍ ସୃଷ୍ଟି ହୁଏ। "ବର୍ତ୍ତମାନ ଉତ୍କଳରେ ଯେତେ ସାହିତ୍ୟିକ ଏବଂ ପ୍ରଧାନ ଲୋକ ଅଛନ୍ତି, ସେମାନଙ୍କ ନାମ ସାହିତ୍ୟ ମଧ୍ୟରେ ଲିଖିତ ରହିବା ଉଚିତ। ପରେ ମନେକଲି, କେବଳ ନାମମାଳା ଗୁନ୍ଥି ରଖିଲେ ଲୋକେ ପଢ଼ିବାକୁ ସୁଖ ପାଇବେ ନାହିଁ। ନାମ ସହିତ ସେମାନଙ୍କ ଗୁଣାବଳୀ ଲିପିବଦ୍ଧ କରିବାପାଇଁ ମୋର ଇଚ୍ଛା ହେଲା। ହାତୀ ଉପରେ ବସିଥାଏ। ପକେଟ୍‌ରୁ ପକେଟ୍ ବହି ଓ ପେନ୍‌ସିଲ୍ ବାହାର କରି ପଦ୍ୟ ଲେଖିବାକୁ ଆରମ୍ଭ କଲି। ଆନନ୍ଦପୁରରେ ପହଞ୍ଚିବା ସମୟରେ ଅଧାଅଧି ଲେଖା ହୋଇ ଯାଇଥିଲା। ସେଠାରେ ହାତୀରୁ ଓହ୍ଲାଇବାମାତ୍ରେ କମ୍ପୋଜିଟରକୁ ଡାକି କମ୍ପୋଜ କରିବାକୁ ଦେଲି। କିଛିକ୍ଷଣ ବିଶ୍ରାମ କରି ପୁଣି ଲେଖିବାକୁ ଆରମ୍ଭ କଲି। × × ରାତ୍ର ନଅଦଶ ଘଣ୍ଟା ସରିକି ଲେଖା ସମାପ୍ତ ହେଲା।"(୨୭) ମାତ୍ର ଦୁଇଦିନରେ ପୁସ୍ତକ କାର୍ଯ୍ୟ ଶେଷ ହୋଇ ବିତରଣ କରାଗଲା।

ଭଦ୍ରକରୁ ଆନନ୍ଦପୁରକୁ ହସ୍ତୀ ପୃଷ୍ଠରେ ଯିବା ସମୟରେ 'ଉତ୍କଳ ଭ୍ରମଣଂ'ର ସୃଷ୍ଟି ପରିକଳ୍ପନା ଓ ଆନନ୍ଦପୁରରେ ପହଞ୍ଚିବା ପରେ ଏହାର ପରିସମାପ୍ତି। ମାତ୍ର କେତୋଟି ଘଣ୍ଟା ମଧ୍ୟରେ ତତ୍କାଳୀନ ଉତ୍କଳର ବିଶିଷ୍ଟ ବ୍ୟକ୍ତିମାନଙ୍କ ନାମ ଓ କାର୍ଯ୍ୟ ସ୍ମରଣ କରି ଏକ ବ୍ୟଙ୍ଗ କାବ୍ୟ ରଚନା କରିବା ଦୁରୂହ ବ୍ୟାପାର ନିଶ୍ଚୟ। ସେପରି ସାଧନା ଓ ଅଭିଜ୍ଞତା ନ ଥିଲେ ଜଣେ କେବେ ଏପରି କାର୍ଯ୍ୟ ହସ୍ତକୁ ନେବାକୁ ସାହସ କରି ନ ପାରେ। ଫକୀରମୋହନ ୧୮୯୧ ମସିହା ପୂର୍ବରୁ ଓଡ଼ିଶାର ବହୁସ୍ଥାନ ଭ୍ରମଣ କରିଛନ୍ତି ଓ ବହୁବିଧ ବ୍ୟକ୍ତି ବିଶେଷଙ୍କ ସଂସ୍ପର୍ଶରେ ଆସିବାର ସୁଯୋଗ ପାଇଛନ୍ତି, ନିଜେ ସେନାପତିର ଭୂମିକା ନେଇ ସାମାଜିକ ସମସ୍ୟା ବିରୋଧରେ ଅନବରତ ସଂଗ୍ରାମ କରିଛନ୍ତି। ଦୀର୍ଘଦିନ ଧରି ସମାଜ ଜୀବନ ଓ ବ୍ୟକ୍ତିଜୀବନର ନିକଟତର ସମ୍ପର୍କରେ ଆସିବାଦ୍ୱାରା ଅନେକ ଅଭିଜ୍ଞତା ଓ ଅନୁଭୂତି ହାସଲ କରିଛନ୍ତି। ଜୀବନର ସେହି ବାସ୍ତବ ଅନୁଭୂତିକୁ କଳାତ୍ମକ ରୂପଦେଇ ପ୍ରକାଶ କରିଛନ୍ତି 'ଉତ୍କଳ ଭ୍ରମଣଂ'ରେ। ବିଶିଷ୍ଟ ବ୍ୟକ୍ତିଙ୍କ ଜୀବନ ସଂପର୍କରେ ଆଲୋକପାତ କରିବାର ପ୍ରଥମ ଉଦ୍ୟମ ଆରମ୍ଭ କରିଛନ୍ତି ଫକୀରମୋହନ। ଏହାଦ୍ୱାରା ସେ ଓଡ଼ିଆ ସାହିତ୍ୟରେ ଏକ ନୂତନ ପରମ୍ପରା ସୃଷ୍ଟି କରିଯାଇଛନ୍ତି।

ଫକୀରମୋହନଙ୍କ ସମ୍ପର୍କରେ ଜଣେ ସମାଲୋଚକ ମତ ଦେଇ କୁହନ୍ତି, "ଏକ କ୍ଷୟିଷ୍ଣୁ ଅଭିଜାତ ପରିବାରର ନିଃସହାୟ ଦରିଦ୍ର ଶିଶୁ ଭାବରେ ପ୍ରାଚୀନ ଅବଧାନିଆ ଚାହାଳୀ ଓ ମଦ୍ରାସାର ଅର୍ଦ୍ଧଶିକ୍ଷିତ ଶିକ୍ଷକର ଛାତ୍ରଭାବରେ, ଉତ୍କଳୀୟ ନୌବାଣିଜ୍ୟର ଅନ୍ତିମ ଅବସ୍ଥାର କର୍ମଚାରୀ ଭାବରେ ଓଡ଼ିଆ ସ୍ୱତନ୍ତ୍ର ଭାଷା ନୁହେଁ– ଆନ୍ଦୋଳନର ବିରୋଧୀ ସଂଗ୍ରାମର ସେନାପତି ଭାବରେ ଶିକ୍ଷକ, ସମ୍ପାଦକ, ପାଠ୍ୟପୁସ୍ତକ ଲେଖକ ଏବଂ ସର୍ବୋପରି ରାଜ୍ୟଶାସକ ଦେବାନ ଭାବରେ ଦୀର୍ଘ ପଚାଶ ବର୍ଷ ଧରି ସଂଗ୍ରାମ କରି ଓଡ଼ିଆ ସମାଜ ଓ ବ୍ୟକ୍ତି ଚରିତ୍ର ସମ୍ପର୍କରେ ଯେଉଁ ବିପୁଳ ଅଭିଜ୍ଞତା ସେ ସଂଗ୍ରହ କରିଥିଲେ ତାକୁହିଁ ପୁଞ୍ଜିକରି ପରବର୍ତ୍ତୀ ଅବସର ସମୟରେ ସୃଷ୍ଟି କରିଗଲେ ସେନାପତି ସାହିତ୍ୟ।"(୨୮) ତାଙ୍କର ଏହି ବିପୁଳ ଅଭିଜ୍ଞତାରୁ ଜନ୍ମ ନେଇଛି 'ଉତ୍କଳ ଭ୍ରମଣଂ' ବ୍ୟଙ୍ଗ କାବ୍ୟ। ପରବର୍ତ୍ତୀ ପର୍ଯ୍ୟାୟରେ 'ଉତ୍କଳ ଭ୍ରମଣଂ' ଉପରେ ଏକ ସ୍ୱତନ୍ତ୍ର ଆଲୋଚନା ଦିଆଯାଉଥିବାରୁ ଏଠାରେ ତା'ର ସବିଶେଷ ଆଲୋଚନା କରାଗଲା ନାହିଁ।

## ପୁତ୍ରବିୟୋଗ ଓ କବିତା

କବିତା ରଚନା କରିବା ଏକ ସହଜସାଧ୍ୟ ବ୍ୟାପାର ନୁହେଁ। ଜୀବନ, ଜୀବନର ଅଭିଜ୍ଞତା, ପରିବେଶ ଓ ପରିସ୍ଥିତି ଅନେକ ସମୟରେ କବିତା ରଚନାର ଏକ ପ୍ରେରଣା ଭାବରେ କବିଙ୍କୁ ଉଦ୍‌ବୁଦ୍ଧ କରିଥାଏ। ଫକୀରମୋହନଙ୍କ କାବ୍ୟ କବିତା ଆଲୋଚନା ସମୟରେ ଏହି ପରିବେଶ ଓ ପରିସ୍ଥିତିର ପ୍ରଭାବ ସ୍ୱତଃ ଆମ ଚକ୍ଷୁ ସମ୍ମୁଖରେ ଉଦ୍‌ଭାସିତ ହୋଇଉଠେ। ଫକୀରମୋହନ ଯେଉଁ କବିତାମାନ ରଚନା କରିଛନ୍ତି, ସେଗୁଡ଼ିକ ଚାରୋଟି କବିତା ସଂକଳନ ଓ ଗ୍ରନ୍ଥାବଳୀର ପରିଶିଷ୍ଟରେ ସନ୍ନିବେଶିତ କରାଯାଇଛି। ତଥାପି ଫକୀରମୋହନଙ୍କ ସମସ୍ତ କବିତାଯେ ସଂଗ୍ରହ କରାଯାଇ ପାରିଛି, ତାହା ସଠିକ୍ ଭାବରେ କୁହାଯାଇ ନ ପାରେ। 'ଅବସର ବାସରେ', 'ପୁଷ୍ପମାଳା', 'ପୂଜାଫୁଲ' ଓ 'ଧୂଳି' ହେଉଛି ତାଙ୍କ କବିତା ସଂକଳନ ପୁସ୍ତକ। ସହସ୍ରାଧିକ କବିତା ଏଥିରେ ଏବଂ ପରବର୍ତ୍ତୀ ସମୟରେ ସଂଗୃହୀତ କବିତାଗୁଡ଼ିକୁ ପରିଶିଷ୍ଟରେ ସଂଯୁକ୍ତ କରାଯାଇଛି। ଏହି କବିତାଗୁଡ଼ିକ ବିଭିନ୍ନ ସମୟରେ ବିଭିନ୍ନ ଭାବାବେଗକୁ ନେଇ ରଚିତ। ଜୀବନରେ ସେ ଯେଉଁ ବିଭିନ୍ନ ଅନୁଭୂତିର ଅଧିକାରୀ ହୋଇଥିଲେ, ତା'ର ନିଛକ ପ୍ରକାଶ ଏହି କବିତାଗୁଡ଼ିକ। ତେଣୁ ବ୍ୟକ୍ତି ଫକରୀମୋହନଙ୍କୁ ଯଥାର୍ଥ ଭାବରେ ଅନୁଭବ କରିବାକୁ ହେଲେ, ତାଙ୍କ କବିତାବଳୀର ଆଲୋଚନା ଅପରିହାର୍ଯ୍ୟ ହୋଇଉଠେ। ଯଥାର୍ଥରେ ଚିତ୍ତରଞ୍ଜନ ଦାସ କୁହନ୍ତି – "ମାତ୍ର ବେଳେ ବେଳେ

ମନେହୁଏ, ତାଙ୍କର ପଦ୍ୟ ଭିତର ଦେଇ ଫକୀରମୋହନଙ୍କ ସନ୍ନିକଟ ହେବାକୁ ଚେଷ୍ଟାକଲେ ଆମେ ତାଙ୍କର ଅଧିକତର ପରିଚୟ ପାଇଥାଉ।"(୨୯) ଏହି ପରିଚୟ ଫକୀରମୋହନଙ୍କ ବ୍ୟକ୍ତିଗତ ଜୀବନ ତଥା ସାମୂହିକ ଜୀବନର ନିଛକ ପ୍ରତିଫଳନ।

କବି ଢେଙ୍କାନାଳରେ ଆସିଷ୍ଟାଣ୍ଟ ମ୍ୟାନେଜର ଭାବରେ କାର୍ଯ୍ୟ କରୁଥିବା ସମୟରେ ତାଙ୍କର ଦ୍ୱିତୀୟାପତ୍ନୀ କୃଷ୍ଣାକୁମାରୀଙ୍କ ଗର୍ଭରୁ ଏକ ପୁତ୍ର ସନ୍ତାନ ଜନ୍ମଲାଭ କରିଥିଲା। ମାତ୍ର ଛଅମାସ ପରେ ପୁତ୍ରଟି ମୃତ୍ୟୁବରଣ କଲା। ଏହି ଆଘାତ କବି କିମ୍ବା କବିପତ୍ନୀଙ୍କ ପକ୍ଷରେ ଥିଲା ନିତାନ୍ତ ଅସହ୍ୟ। ନିଜେ ଫକୀରମୋହନ କୁହନ୍ତି – "ଶିଶୁଟି ଛଅମାସ ମାତ୍ର ବଞ୍ଚି ସାମାନ୍ୟ ଗୋଟିଏ ରୋଗରେ ମରିଗଲା। ତାହାର ନାମ ଦେଇଥିଲି ମନମୋହନ। ସୁଗଠିତ ମୁଖଟି – ଆଜିପର୍ଯ୍ୟନ୍ତ ହୃଦୟରେ ଚିତ୍ରିତ ରହିଅଛି। ପୁତ୍ରଟି ମରିଯିବାରୁ ଜଗତ୍ ସଂସାରଟା ମୋତେ ଅନ୍ଧକାରମୟ ଜଣାଗଲା।"(୩୦) ଫକୀରମୋହନଙ୍କ ଅନେକ ଆଶା ଓ ଆକାଂକ୍ଷାର ପ୍ରତୀକ ଥିଲା ଅଳ୍ପାୟୁଷ ମନମୋହନ। ତା'ର ମୁଖ ଚାହିଁ ନିଜ ଜୀବନର ସମସ୍ତ ଦୈନ୍ୟ ଓ ଶୋକ ଭୁଲିଯିବାକୁ ସେ ଆଶା ପ୍ରକାଶ କରିଥିଲେ। ବୋଧହୁଏ ମାନବର ଆଶା ଓ ଉଲ୍ଲାସକୁ ଈଶ୍ୱର ସହ୍ୟକରି ପାରନ୍ତି ନାହିଁ। ତେଣୁ ପିତାମାତାଙ୍କ ସମସ୍ତ ଆନନ୍ଦ ତଥା ଆଶାକୁ ଚୂର୍ଣ୍ଣ କରି ବିଧାତା ସେହି ଶିଶୁଟିକୁ ତାଙ୍କ ନିକଟକୁ ପୁନର୍ବାର ଫେରାଇ ନେଲେ। ବୃଦ୍ଧ ବୟସରେ ଏକମାତ୍ର ଭରସାର ପୁତ୍ରଟି ଚାଲିଯିବାପରେ କବି ଦାରୁଣ ବ୍ୟଥା ଅନୁଭବ କରିଛନ୍ତି। ମନ ମଧ୍ୟରେ ଅଭିମାନ ସେହି ନିଷ୍ଠୁର ଈଶ୍ୱରଙ୍କ ପ୍ରତି।

ହିନ୍ଦୁ ପରମ୍ପରା ଅନୁଯାୟୀ ଜ୍ୟେଷ୍ଠପୁତ୍ର ପିତାମାତାଙ୍କୁ ପିଣ୍ଡ ଦାନ କରିଥାଏ। ଯାହାଠାରୁ ପିଣ୍ଡ ପାଇବା ନିମିତ୍ତ କବି ଆଶା କରିଥିଲେ, ସେ ବିଦ୍ୟୁତ୍ ଝଲକ ପରି ପୁଣି ଶୂନ୍ୟରେ ମିଳାଇଗଲା। ବ୍ୟାଧିଗ୍ରସ୍ତ ଜୀବନରେ ଯା'ର ହସ୍ତସ୍ପର୍ଶ ପାଇ ସେ ଆରୋଗ୍ୟ ଲାଭ କରିଥାନ୍ତେ, ସେ କିନ୍ତୁ ଚିରଦିନ ପାଇଁ ତାଙ୍କଠାରୁ ଖୁବ୍ ଦୂରକୁ ଚାଲିଗଲା। କବିଙ୍କ ଅଧୀର ଆବେଗ ପ୍ରକାଶ ପାଇଛି ଏହିପରି –

ଅନାୟାସେ ପଡ଼ିଥିଲେ ମୁଁ ରୋଗ ଶଯ୍ୟାରେ
ସାନ୍ତ୍ୱନା ଦିଅନ୍ତୁ ବାପ ବସି ମୋହଠାରେ
ବୁଲାଇଲେ ମୋହ ଦେହେ ହସ୍ତ ବାରବାର
ଶରୀରରେ ହୋଇଥାନ୍ତା ଅମିୟ ସଞ୍ଚାର।(୩୧)

(ମୃତ ପୁତ୍ର ମନୋମୋହନ)

ବୃଦ୍ଧବୟସରେ ନିଃସଙ୍ଗ ଜୀବନ ଖୋଜୁଛି ପୁତ୍ର ମନମୋହନକୁ। ନିଜର ସନ୍ତାନ ଯେପରି ପିତାମାତାଙ୍କ ଦୁଃଖ ଉପଲବ୍ଧି କରି ସେବା କରିପାରେ, ଅନ୍ୟଲୋକ ସେପରି ସମବେଦନା ପ୍ରକାଶ କରି ଦୁଃଖ ମୋଚନ କରିପାରେ ନାହିଁ। ହୁଏତ କବି ଦ୍ୱିତୀୟ ପୁତ୍ରଙ୍କ କାର୍ଯ୍ୟକଳାପରେ କ୍ଷୁବ୍ଧ ହୋଇ ପ୍ରଥମ ପୁତ୍ରର ଅଭାବ ମର୍ମେ ମର୍ମେ ଅନୁଭବ କରିଛନ୍ତି। ଯେଉଁ ବିଧାତା ତାଙ୍କ ପ୍ରତି ନିଷ୍ଠୁର ହୋଇ ଅମୂଲ୍ୟ ରତ୍ନଟିକୁ ଛଡ଼ାଇ ନେଇଛନ୍ତି, ତାଙ୍କୁ ଲକ୍ଷ୍ୟକରି ଅଭିମାନ ଓ କରୁଣ ଭାବରେ ପଚାରିଛନ୍ତି –

ବିଧାତାଙ୍କ ଗନ୍ତାଘରେ କିବାରତ୍ନ ନାହିଁ
ମୋ କ୍ଷୁଦ୍ର ରତ୍ନଟି ନେଲେ ଛଡ଼ାଇ କିମ୍ପାଇଁ ?
ଗୋଟିଏ ନକ୍ଷତ୍ର ଊଣା ଥିଲା କି ଆକାଶେ
ମୋ ଜୀବନ ତାରା ଘେନି ଗଲେ ସେ ସକାଶେ
ଅବା କେଉଁ ଦେଶେ ଥିଲା ଅଭାବ ସୁମନ
ଘେନିଗଲେ ସେ [illegible]କୁ ମୋ ମନୋମୋହନ।(୩୨)

(ମୃତପୁତ୍ର ମନୋମୋହନ)

ପୁତ୍ର ବିୟୋଗଜନିତ ଦାରୁଣ ଦୁଃଖରେ 'ମୃତ ଶିଶୁପୁତ୍ର ମନୋମୋହନ' କବିତାଟି ସଜଳ ହୋଇ ଉଠିଛି। ପିତୃ ହୃଦୟର ବାତ୍ସଲ୍ୟ ମମତା ସରଳ ତରଳ ଭାବରେ ଆତ୍ମପ୍ରକାଶ କରିଛି ଏହି କବିତାଟିରେ। କବିତାଟିର ଅନ୍ତର୍ନିହିତ ସ୍ୱର, କରୁଣ ରସ। ବ୍ୟକ୍ତି ହୃଦୟର ଶୋକ ବହୁ ହୃଦୟରେ ପ୍ରତିଧ୍ୱନିତ ହୋଇ ଏକ କରୁଣମୟ ପରିବେଶ ସୃଷ୍ଟି କରିଛି। ଏହି ଶୋକ ଗୀତିକାଟି ମଧ୍ୟରେ କେବଳ ଫକୀରମୋହନଙ୍କର ନୁହେଁ, ନିଖିଳ ପିତାମାତାଙ୍କର ଆକୁଳ ହୃଦୟର ଚରମ ବ୍ୟାକୁଳତା ପ୍ରକାଶ ପାଇଛି। ତେଣୁ କବିତାଟି ହୋଇ ପାରିଛି କାଳାତୀତ।

## ପିତାମହୀ ବିୟୋଗ ଓ କବିତା

ପିଲାଟି ଦିନରୁ ପିତାମାତାଙ୍କୁ ହରାଇ ଫକୀରମୋହନ ନିରାଶ୍ରୟ ହୋଇପଡ଼ିଥିଲେ। କିନ୍ତୁ ଠିକ୍ ସେତିକିବେଳେ ପିତାମହୀ କୋଚିଲା ଦେଈ ଜୀବନର ସମସ୍ତ ସୁଖ ବିସର୍ଜନ ଦେଇ କୋଳକୁ ଟେକି ନେଇଥିଲେ ଏହି ଅନାଥ ଶିଶୁଟିକୁ। ତାଙ୍କର ସ୍ନେହ ଓ ଯତ୍ନ ଫକୀରମୋହନଙ୍କୁ ପିତାମାତା ଶୋକ ଭୁଲାଇ ଦେଇଥିଲା। ଫକୀରମୋହନ ନିଜେ ସ୍ୱୀକାର କରିଛନ୍ତି – "ମୋ ଜୀବନ ରକ୍ଷା ପାଇଁ ସେ ଯେଉଁ କଷ୍ଟ ଭୋଗ କରିଯାଇଛନ୍ତି ତାହା ବର୍ତ୍ତମାନ ସ୍ମରଣ କଲେ, ପ୍ରାଣରେ ଦାରୁଣ ଯନ୍ତଣା ଜାତ ହୁଏ। ମୋ ପୀଡ଼ା ସମୟରେ ଦିନ ଉତ୍ତାରେ ଦିନ, ମାସ ଉତ୍ତାରେ ମାସ, କେତେ ଦିନ, କେତେ ରାତ୍ରି

ତାଙ୍କର ସମୟ ଅତିବାହିତ ହୋଇଛି। ଗାଈ ପଡ଼ିଆରେ ଚରୁଥିବା ସମୟରେ ଆପଣା ବାଛୁରୀ ପ୍ରତି ଯେମନ୍ତ ଦୃଷ୍ଟି ରଖିଥାଏ, ସେହିପରି ଠାକୁରମା' ଯେକୌଣସି କାର୍ଯ୍ୟରେ ନିଯୁକ୍ତ ଥାଉନ୍ତୁ ପଛକେ, ମୋ ପ୍ରତି ତାଙ୍କର ଦୃଷ୍ଟି ରହିଥାଏ।"(୩୩) ଏହି ଠାକୁରମା' ନ ଥିଲେ ଫକୀରମୋହନଙ୍କ ଜୀବନର ଗତି କେଉଁଆଡ଼େ ଯାଇଥାନ୍ତା, ତାହା କିଏ କହି ପାରିଥାନ୍ତା ! ଯେତେବେଳେ ପରିଜନମାନେ ଫକୀରମୋହନଙ୍କୁ ବିଦ୍ୱେଷ ନେତ୍ରରେ ଦେଖୁଥିଲେ, ସେତେବେଳେ ସେ ଜୀବନର ସମସ୍ତ ସୁଖସ୍ୱାଚ୍ଛନ୍ଦ୍ୟକୁ ପାଦରେ ଦଳି ଦେଇ ଏକ ଦୟାମୟୀ, କରୁଣାମୟୀ ରୂପ ନେଇ ଆବିର୍ଭାବ ହୋଇଥିଲେ ଫକୀରମୋହନଙ୍କ ଆଗରେ। ଫକୀରମୋହନ ରୋଗ, ଯନ୍ତ୍ରଣାରେ ପଡ଼ିଥିବା ସମୟରେ ଅଶ୍ରୁଳ ଆଖିରେ ଠାକୁରମା' କୁଚିଳାଦେଈ ସମସ୍ତ ରାତି ଅନିଦ୍ରା ରହି ଯମରାଜଙ୍କ ସହିତ ଅନାଥ ବାଳକଟିକୁ ବଞ୍ଚାଇବାକୁ ପ୍ରାଣପାତ ସଂଗ୍ରାମ କରୁଥିଲେ। ସାରା ଜୀବନ ଦୁଃଖରେ ବିତାଇ ନିଜ ପୁତ୍ରର ବିୟୋଗ ଭୁଲି ଫକୀରମୋହନଙ୍କୁ ନିଜର ପଣତ ତଳେ ବଞ୍ଚାଇବାକୁ ଅବିରାମ ସଂଗ୍ରାମ କରିଥିଲେ। ଆଜି ଜୀବନର ସାୟାହ୍ନରେ ଫକୀରମୋହନଙ୍କ ସ୍ମୃତି ଫେରିଯାଇଛି ସେହି ବିଗତ ଅତୀତକୁ। ମନରେ ଦାରୁଣ ଅବଶୋଷ, ଯେଉଁ ଲୋକଟି ପରପାଇଁ ଜଳି ଜଳି ନିଃଶେଷ ହେଇଗଲା, ତା' ପାଇଁ ଫକୀରମୋହନ ସାମାନ୍ୟ ଟିକେ ମାତ୍ର ସେବାଦାନ କରିପାରିଲେ ନାହିଁ।(୩୪) ଜୀବନର ଶେଷ ସମୟ ପର୍ଯ୍ୟନ୍ତ ଫକୀରମୋହନ ପିତାମହୀ କୋଚିଳାଦେଈଙ୍କୁ ଭୁଲିପାରି ନ ଥିଲେ।

## ପତ୍ନୀବିୟୋଗ ଓ କବିତା

୧୮୯୪ ମସିହାରେ କବିଙ୍କର ଦ୍ୱିତୀୟାପତ୍ନୀ କୃଷ୍ଣାକୁମାରୀଙ୍କର ବିୟୋଗ ଘଟେ। ପତ୍ନୀବିୟୋଗଜନିତ ଦାରୁଣ ବିଚ୍ଛେଦର ସାମୟିକ ସାନ୍ତ୍ୱନାପାଇଁ ସେ କବିତା ରଚନା କରନ୍ତି। ଫକୀରମୋହନ ନିଜେ କୁହନ୍ତି – "ମୁଁ ଯେ କବିତା ଲେଖିବାକୁ ଶିଖିଛି, ସେଥିର ଅନ୍ୟତମ କାରଣ ମୋ ସ୍ତ୍ରୀ। ସେ ମୋ କବିତା ଶୁଣିବାକୁ ବଡ଼ ଭଲ ପାଉଥିଲେ। ପ୍ରଥମେ ତାଙ୍କ ମନୋରଞ୍ଜନ ସକାଶେ ମୁଁ କବିତା ଲେଖୁଥିଲି। ତାଙ୍କର ମୃତ୍ୟୁପରେ ମୋ ମନର ବ୍ୟାକୁଳତା ନିବାରଣ ନିମନ୍ତେ ମୁଁ କବିତା ଲେଖେ। ମୋର ଅଧିକାଂଶ କବିତା ଦାରୁଣ ପୀଡ଼ା, ବିପଦ ଓ ମନର ଅସ୍ଥିରତା ସମୟର ଲେଖା।"(୩୫)

'ଅବସରବାସରେ'ର ଅଧିକାଂଶ କବିତା କବି ନିଜର ସ୍ୱର୍ଗତା ପ୍ରିୟା ପତ୍ନୀଙ୍କ ଉଦ୍ଦେଶ୍ୟରେ ରଚନା କରିଛନ୍ତି। ପତ୍ନୀଙ୍କ ବିରହରୁ ତାଙ୍କ ଲେଖନୀରୁ ଯେଉଁ କବିତା ସୃଷ୍ଟିଲାଭ କରିଛି, ଚିରନ୍ତନ ଆବେଦନରେ ତାହା ଚିର ଭାସ୍ୱର ହୋଇ ଉଠିଛି। ବିରହରେ ପ୍ରେମର ଦ୍ୟୁତି ଫୁଟି ଉଠେ। ତେଣୁ "ବିରହର ଅଶ୍ରୁ କୋଳରେ କେବଳ

ପ୍ରେମର ନୁହେଁ, କାବ୍ୟର ରୂପ ବି ଶୁଭ୍ର ଓ ସୁନ୍ଦର। ମିଳନର ଭାବାବେଶରେ ହୃଦୟରେ ଭାବବୈଚିତ୍ର୍ୟ ଫୁଟିବାର ଅବକାଶ କ୍ଷୀଣ। କିନ୍ତୁ ବିରହ ଦଶାରେ ବ୍ୟଥା ଓ ବେଦନାର ଆଶ୍ୱସ୍ତ ଜ୍ୱାଳାରେ ତଥା ଆଶା ଓ ଆଶଙ୍କାର ସଂଘର୍ଷ ଲୀଳାରେ ହୃଦୟର ପ୍ରତ୍ୟେକଟି ତନ୍ତ୍ରୀ ମୂର୍ଚ୍ଛିତ ହୋଇ ଉଠେ। ସ୍ୱର ବୈଚିତ୍ର୍ୟର ଐଶ୍ୱର୍ଯ୍ୟରେ ହୃଦୟର ଏହି ସର୍ବାଧିକ ଭାବମୟୀ ମୁହୂର୍ତ୍ତଟି କବିଙ୍କ ନିକଟରେ ତେଣୁ ଏକାନ୍ତ ଲୋଭନୀୟ।"(୩୬) ବିରହ ପ୍ରେମକୁ କରେ ସୁନ୍ଦରତର ଓ ପବିତ୍ରତର। ବିରହର କଷଟି ପଥରରେ ପ୍ରେମର ଔଜ୍ଜଲ୍ୟ ଫୁଟି ଉଠେ କମନୀୟ ଅଭିବ୍ୟକ୍ତି ନେଇ। ହୃଦୟର ବ୍ୟାକୁଳତା, ମନର ଆର୍ତ୍ତି ଓ ଭାବର ପରାକାଷ୍ଠା ପ୍ରତିପାଦିତ ହୁଏ ବିରହର ଜ୍ୱାଳାରେ। ପ୍ରେମର ନୂତନ ଅନୁଭବ ସୃଷ୍ଟି ହୁଏ ବିରହ ଭାବନାରୁ।

ଜୀବନର ଅନୁଭୂତି କବିଙ୍କୁ ସୃଷ୍ଟିଶୀଳ କରାଏ। ଏହାର ଅନ୍ତରାଳରେ ଲୁକ୍କାୟିତ ଥାଏ ବ୍ୟକ୍ତିଗତ ଭାବନା ଓ ସମୂହ ଚେତନା। କିନ୍ତୁ କବି ଫକୀରମୋହନଙ୍କ ସୃଷ୍ଟିର ପୃଷ୍ଠଭୂମିରେ ଅଛି ନିଜର ବ୍ୟକ୍ତିଗତ ଅଭାବ ଓ ଖେଦ। "ସାହିତ୍ୟ ଜଗତରୁ ନିଜକୁ ପୃଥକ୍ ରଖିବାକୁ ସେ ବାଧ ହୋଇଥିଲେ ସୁଦ୍ଧା ଜୀବନର ତିନୋଟି ଅନୁଭୂତି ତାଙ୍କୁ ସୃଷ୍ଟି ଦିଗକୁ ଆକର୍ଷଣ କରି ଆଣିଥିଲା। ଯଥା – (କ) ପୁତ୍ର ବିୟୋଗ, (ଖ) ଶାସକ ଜୀବନର ଅନୁଭୂତି ଓ (ଗ) ପତ୍ନୀବିୟୋଗ।"(୩୭)

ଫକୀରମୋହନ ଥିଲେ ସ୍ୱକୀୟା ପ୍ରେମର ଉପାସକ। ଭୋଗରେ ନୁହେଁ, ତ୍ୟାଗରେହିଁ ଏହି ପ୍ରେମର ବୈଶିଷ୍ଟ୍ୟ ପରିସ୍ଫୁଟିତ। ସାମାଜିକ ଜୀବନକୁ ଏହା ଶୃଙ୍ଖଳିତ ଓ ସଂଯତ କରିଥାଏ। କବିଙ୍କର ପତ୍ନୀ ବିରହ ଜନିତ କବିତାଗୁଡ଼ିକରେ ଏହି ଭାବ ପ୍ରତିଫଳିତ। ପତ୍ନୀଙ୍କ ପ୍ରତି ଥିବା ବିମଳ ପ୍ରେମର ପରିପ୍ରକାଶ ଘଟିଛି ଅଭିନବ କଳାତ୍ମକ ରୂପନେଇ ଏହି କବିତାଗୁଡ଼ିକରେ। ସେଇଥିପାଇଁ ଏହି "କବିତା ଓ ପଦ୍ୟଗୁଡ଼ିକର ଭାଷାଶୈଳୀ ସ୍ୱତଃସ୍ଫୂର୍ତ୍ତ ଓ ରୀତି ଅଯତ୍ନ ବିନ୍ୟସ୍ତ ହେଲେ ହେଁ ଏକ ଗଭୀର ଆବେଗ, ଆନ୍ତରିକତା ଓ ଅନୁଭବ ଏହି କବିତାଗୁଡ଼ିକୁ ମର୍ମସ୍ପର୍ଶୀ କରିପାରିଅଛି। ତାହାହିଁ ସମ୍ଭବତଃ ପ୍ରତ୍ୟେକ ସାର୍ଥକ କବିତାର ଲକ୍ଷଣ।"(୩୮) 'ଅବସରବାସରେ', 'ପୂଜାଫୁଲ' ଓ 'ପୁଷ୍ପମାଳା' କବିତା ସଂକଳନର ଅନେକ କବିତା ସ୍ୱର୍ଗତା ପତ୍ନୀଙ୍କ ଉଦ୍ଦେଶ୍ୟରେ ରଚିତ। ତନ୍ମଧ୍ୟରୁ 'କାହିଁଛନ୍ତି ବନ୍ଧୁ ମୋର କିଏ ଦେବ କହି', 'ପୁଣି କି ଦେଖିବି ସେହି ସହାସ୍ୟ ବଦନ', 'ଚକୁଆ ଚକୋଇ କଥା', 'ହସି ହସି ଗଲା ମୋତେ କନ୍ଦାଇ କନ୍ଦାଇ', 'ପାସୋରିବା', 'ଲାବଣ୍ୟମୟୀ', 'ଦୀପ ନିର୍ବାଣ', 'ମୋ କ୍ଷୁଦ୍ର ତାରା', 'ସାହାଡ଼ା ଗଛର କ୍ରନ୍ଦନ', 'ମାତୃହୀନ ଦୁଇଗୋଟି ଶିଶୁ', 'ଯୁଗ୍ମ କୁସୁମ', 'ମେଲାଣି',

'ଗଲା', 'ଅବସାଦ', 'ସ୍ମୃତିର ଛାୟା', 'ଦୟାବତୀ', 'ଚାଲିଗଲା', 'କପୋତ ସଙ୍ଗୀତ', 'ଅଭାବ', 'ଦୂରେ', 'ଶେଷ ମିଳନ', 'ଦୃଢ଼ ବିଶ୍ୱାସ', 'ମୃତ୍ୟୁର କରାଳ ମୂର୍ତ୍ତି', ପୁନର୍ମିଳନ', 'ସେହି ନାମ', 'ବିରହୀ ହଳଦୀ ବସନ୍ତ', 'ବଞ୍ଚି ମୁଁ ରହିବି ଆଉ କେଉଁ ସୁଖ ଆଶେ', 'ଭୁଲିବାର', 'କପୋତ ଦମ୍ପତ୍ତି', 'ମହାଧାମରେ ମିଳନ' ଇତ୍ୟାଦି କବିତାଗୁଡ଼ିକରେ ପତ୍ନୀସ୍ମୃତିର ରୋମନ୍ଥନ କରାଯାଇଛି। କବିତାଗୁଡ଼ିକ ଏକ ବ୍ୟକ୍ତି ହୃଦୟରୁ ସୃଷ୍ଟିଲାଭ କରିଥିଲେ ମଧ୍ୟ ତାର କମନୀୟ ଅଭିବ୍ୟକ୍ତି ଓ ଆବେଦନ ଦୃଷ୍ଟିରୁ ହୋଇପାରିଛି ସାର୍ବଜନୀନ। ତାଙ୍କ ବ୍ୟକ୍ତିଗତ ଜୀବନର ହସ-କାନ୍ଦ, ସୁଖ-ଦୁଃଖ, ଚମତ୍କାର ରୂପନେଇ କବିତାଗୁଡ଼ିକୁ ଗୀତିକବିତାର ମର୍ଯ୍ୟାଦା ଦାନ କରିବାରେ କ୍ଷମ ହୋଇପାରିଛି।

ଯେଉଁଠାରେ ପ୍ରେମ ଯେତେ ନିବିଡ଼, ତା'ର ବିଚ୍ଛେଦ ସେହି ପରିମାଣରେ କଷ୍ଟଦାୟକ। ଧ୍ରୁବତାରା ସଦୃଶ ଯେଉଁ ପତ୍ନୀଙ୍କୁ ପଥପ୍ରଦର୍ଶକ ଭାବେ କବି ଆଖିଆଗରେ ରଖି ପଥ ଚାଲିଥିଲେ, ସେ ଆଜି ଅନେକ ଦୂରରେ। ପ୍ରବାସରେ ଥିବା ସମୟରେ ପତ୍ନୀଙ୍କ କଥା ଭାବିଲେ, ସାନ୍ତ୍ୱନା ମିଳୁଥିଲା, ପୁଣି ଗୃହରେ ମିଳନ ହେବ। ସେତେବେଳେ ପ୍ରବାସର ସମସ୍ତ ଦୁଃଖ ହାସ୍ୟମୟୀ ମୁଖ ଦର୍ଶନରେ ଦୂରୀଭୂତ ହୋଇଯିବ।[୩୯] ହୃଦୟରେ ଖେଳିଯିବ ପ୍ଳାବନ ଆନନ୍ଦର, ମଧୁର ବାକ୍ୟ ଶ୍ରବଣରେ ଚିତ୍ତ ପ୍ରସନ୍ନ ହୋଇଯିବ। ସେ ଥିଲେ ସ୍ୱାମୀ ଦୁଃଖରେ ଦୁଃଖିନୀ, ବିପଦରେ ମନ୍ତ୍ରୀପରି ପରାମର୍ଶ ଦାତ୍ରୀ ଓ ସାନ୍ତ୍ୱନାଦାୟିନୀ, ସୁଖରେ ଚିତ୍ତବିନୋଦିନୀ, ପବିତ୍ରା, ଧାର୍ମିକା। ସେହି ପ୍ରାଣପ୍ରିୟାଙ୍କ ବିଚ୍ଛେଦରେ କବି କିଂକର୍ତ୍ତବ୍ୟବିମୂଢ଼। ଦୀର୍ଘ କୋଡ଼ିଏ ବର୍ଷର ସୁଖମୟ ଦାମ୍ପତ୍ୟଜୀବନର ସହାୟିକା ଆଜି ସୁଦୂର ପଥଗାମୀ। ଜୀବନର ଏତେ ଅନୁଭୂତି ଓ ଅଭିଜ୍ଞତାର ସାଥୀଙ୍କୁ କ'ଣ ଏତେ ଶୀଘ୍ର ଭୁଲିଯାଇ ହୁଏ।[୪୦]

କର୍ପୂର ଉଡ଼ିଯାଇଥିଲେବି କନା ପଡ଼ି ରହିଛି। ସେହି ଛିଣ୍ଡା କନା ଆଘ୍ରାଣରେ କର୍ପୂରବାସ ପୂର୍ଣ୍ଣ ରୂପେ ନ ହେଲେ ମଧ୍ୟ କିଛି ମାତ୍ରାରେ ତା'ର ଉପସ୍ଥିତି ଅବଗତ କରାଇ ଦେଇଥାଏ। କାରଣ ପ୍ରେମର ପୁଷ୍ପ ସମୟର ପବନରେ ଏତେ ଶୀଘ୍ର ଗନ୍ଧହୀନ ହେବାର ନୁହେଁ। ବୃନ୍ତଚ୍ୟୁତ ପୁଷ୍ପର ସୌରଭରେ ଏବେବି କବି ମନ ଆମୋଦିତ। ଅସ୍ତମିତ ଚନ୍ଦ୍ରର ଶୁଭ୍ର ରଶ୍ମିରାଜି ବିଶାଳ ଗଗନ ବକ୍ଷରେ ହଜି ଯାଇଥିଲେବି ତା'ର ଗୌରବ ରହିଯାଇଛି ମନ ଅଙ୍ଗନରେ। ନିଶବ୍ଦ ସଙ୍ଗୀତର ମଧୁର ମୂର୍ଚ୍ଛନାରେ ଏବେବି କବି ହୃଦୟ ଝଙ୍କୃତ। ପଞ୍ଚଭୂତରେ ପଞ୍ଚଭୂତର ମିଳନ ଘଟିଛି। କିନ୍ତୁ ତା' ପୂର୍ବରୁ ସେହି ପବିତ୍ର ଆତ୍ମାର ଆଶୀର୍ବାଦ ସ୍ୱରୂପ ଯେଉଁ ଦୁଇଟି ନିଷ୍ପାପ ଶିଶୁ ଅନ୍ୟ ଆତ୍ମା ନିକଟରେ ଗଚ୍ଛିତ

ରହିଯାଇଛି, ସେହିମାନଙ୍କ ମଧ୍ୟରେ ଏକ ଆତ୍ମା କଳ୍ପନା କରିଛି ଅନ୍ୟ ଆତ୍ମାର ଅସ୍ତିତ୍ୱ ଓ ସେହି ଭାବର ପରିପ୍ରକାଶ ଘଟିଛି 'ପୁଣି କି ଦେଖିବି ସେହି ସହାସ ବଦନ କବିତାରେ'।

ସ୍ମୃତି ଫିଙ୍ଗିଦେବା ଭୀଷଣ କଷ୍ଟଦାୟକ। ଅମାନିଆ ମନକୁ ସାମୟିକ ଶାନ୍ତି ଦେବାକୁ ଯେତେ ଦୂରକୁ ଉଡ଼ିଗଲେବି ସ୍ମୃତିର ଡେଣା କେବେ ପିଛା ଛାଡ଼େ ନାହିଁ। ତା'ର ଲାଞ୍ଜ ଏତେ ଲମ୍ବ ଯେ, ପୃଥିବୀର ଯେକୌଣସି ସ୍ଥାନରେ ସେହି ଲାଞ୍ଜର ସାମାନ୍ୟ ଅଂଶ ବି ଦୃଷ୍ଟି ପଥାରୂଢ଼ ହୁଏ। ଅସ୍ତାଚଳ ଶିରେ ଲୁଚି ଯାଇଥିବା ପତ୍ନୀଙ୍କର ଆବିର୍ଭାବ ବିଜୁଳି ପରି କ୍ଷଣକ ମାତ୍ର ଦେଖାଦେଇ ମଧୁମୟୀ ହାସ୍ୟମୁଖୀ ପ୍ରେମଲତା ମଣିକୁ ପୁଣି ସୂଚାଇ ଦେଉଛି। ସ୍ନେହ ବାରିପାନରେ ଅଭ୍ୟସ୍ତ କବିଙ୍କ ଚିତ୍ତଚାତକ କେବଳ ଶୂନ୍ୟାକାଶକୁ ଚାହିଁ ବାରିଦକୁ ଆକୁଳ ନୟନ ମେଲି ଅନାଇ ରହିଛି। ହୃଦୟ ସାଗର ତରୀ ଆଜି ବାୟୁ ତରଙ୍ଗରେ ମିଶି ଯାଇଛି କେବଳ କ୍ରନ୍ଦନକୁ ଉପଜୀବ୍ୟ କରି।[୪୧]

ପ୍ରେମ ସୁନ୍ଦର ହୁଏ ମନର ପବିତ୍ର ମିଳନରେ, ହୃଦୟର ଗଭୀର ଆବେଗରେ ଓ ପରସ୍ପର ପ୍ରତି ସୁକୋମଳ ସହାନୁଭୂତି ପୋଷଣରେ। ଏକର ସୁଖ-ଦୁଃଖ ଅନ୍ୟ ହୃଦୟକୁ ପ୍ରସାର ଲାଭ କରେ ଗଭୀର ଆକର୍ଷଣରେ। ବେଦରୁ ଗାୟତ୍ରୀ ମନ୍ତ୍ର ଲିଭାଇ ଦେଲେ, ତାହା ଯେପରି ମୂଲ୍ୟହୀନ ହେଇ ଉଠେ ସେହିପରି ଏକର ବିଚ୍ଛେଦରେ ଅନ୍ୟର ଜୀବନ ମୂଲ୍ୟହୀନ ହୋଇଉଠେ, ଯେଉଁଠାରେ ଥାଏ ସ୍ୱାର୍ଥହୀନ ପ୍ରୀତିର ଚରମ ଆକର୍ଷଣ। କିନ୍ତୁ କବି ଅନୁଭବ କରିଛନ୍ତି କାଳସ୍ରୋତରେ ତାଙ୍କର ସମସ୍ତ ସାର ପଦାର୍ଥ ଆଜି ବିଗତ ପ୍ରାୟ। ଅସହାୟ କବି ଉପାୟ ଖୋଜି ପାଉ ନ ଥିବା ସମୟରେ ହୃଦୟରୁ ଭାସି ଆସୁଛି ନିର୍ଦ୍ଦେଶନାମା –

କେବେ ଭାସି ଭାସି ମୁଁ ଯିବି ବନ୍ଧୁ ଅଛି ଯେଠାରେ
ଜୀବନ ଚରମ ସ୍ଥାନକୁ ଶେଷ ଘୋର ଅନ୍ଧାରେ।[୪୨]

(ଦୀପନିର୍ବାଣ)

ଏହି ବିଚ୍ଛେଦ ବା ବିରହ ସ୍ଥାନ ଅତୀନ୍ଦ୍ରିୟ ଭାବଲୋକରେ। "ଅଶ୍ରୁମୟ ସେହି ଜଗତରେ ପ୍ରେମର ପ୍ରକୃତ ସ୍ୱରୂପ ଝଲସେ। ନରନାରୀ ପରସ୍ପରର ଅଭାବରେ ହୃଦୟର ସକଳ ଆର୍ତ୍ତି ଓ ଔତ୍ସୁକ୍ୟ ଘେନି ନିଜକୁ ପରସ୍ପରର ପଦପ୍ରାନ୍ତରେ ଉତ୍ସର୍ଗ କରିଦିଅନ୍ତି। ହୃଦୟ ଯେ କେତେ ଭଲ ପାଇପାରେ, ଏକର ଅଭାବରେ ଅପରର ଦେହ, ମନ ଓ ପ୍ରାଣରେ ବ୍ୟାକୁଳତା ଯେ କେତେ ଚାଞ୍ଚଲ୍ୟ ତୋଳିପାରେ, ସେ ସବୁର ଏକ ପ୍ରମାଣପତ୍ର

ଏହି ବିରହ।'(୪୩) ବିରହରେ ସ୍ନେହର ପ୍ରଗାଢ଼ତା ଅନୁମେୟ। ଫକୀରମୋହନଙ୍କର ଗୋଟିଏ ପଦ ଦେଖନ୍ତୁ –

ତାରାହାଟ ତାରାନାଟ ବସିଛି ଗଗନେ
ସେପରି ତାରାତ ଆଉ ନ ଦେଖେଁ ନୟନେ।
ଥାଉନ୍ତୁ ପଛକେ ତାରା କୋଟିଏ କୋଟିଏ
ମାତ୍ର ମୋର ବୋଲିବାକୁ ନାହିଁତ ଗୋଟିଏ।(୪୪)

'ସାହାଡ଼ା ଗଛର କ୍ରନ୍ଦନ' କବିତାରେ କବି ପୂର୍ବ ସ୍ମୃତିର ରୋମନ୍ଥନ କରିଛନ୍ତି। ଗୋଟିଏ ପୁତ୍ର ଓ ଗୋଟିଏ କନ୍ୟା କବିଙ୍କ ନିକଟରେ ଛାଡ଼ି ଦେଇ କବିପତ୍ନୀ ବିଦାୟ ନେଇ ଚାଲିଯାଇଛନ୍ତି। ସେହି କଥାକୁ କବି ଉକ୍ତ କବିତାରେ ପ୍ରକାଶ କରିଛନ୍ତି।(୪୫) ସେ ଯେଉଁ ଲାଜକୁଳୀ ଲତାଟି ବିଷୟରେ କହିଛନ୍ତି ସେ କୃଷ୍ଣାକୁମାରୀଙ୍କ ବ୍ୟତୀତ ଅନ୍ୟ କେହି ନୁହନ୍ତି। ବୃଦ୍ଧ ବୟସରେ ସବୁଦେଖି ଅନୁଭବ କରିପାରୁଥିବା ଅଥଚ କିଛି କରିପାରୁ ନ ଥିବା କବି ନିଜକୁ ସାହାଡ଼ାଗଛ ସହିତ ତୁଳନା କରିଛନ୍ତି। ବୈରାଗୀଚରଣ ଜେନା କୁହନ୍ତି – "ଜୀବନ ବଲ୍ଲଭା ପ୍ରାଣପ୍ରିୟା ସହଚରୀ, କୁଟୀର ରାଣୀ କୃଷ୍ଣାକୁମାରୀଙ୍କ ବିଚ୍ଛେଦରେ ସାହାଡ଼ାଗଛ ଫକୀରମୋହନଙ୍କ ଆକୁଳ ଅଶ୍ରୁଜିଜ୍ଞାସା ଏଇ କବିତାରେ ରୂପ ପାଇଚି। × × × ଯେଉଁ ପୁରୁଷ ପୁଙ୍ଗବ ପ୍ରିୟା-ବିରହିତ ହୋଇ ଚବିଶବର୍ଷ ଏକକ ଜୀବନଯାପନ କରି ନିଜର ଶାନ୍ତିକାନନରେ କାୟ-ଗ୍ରୀବ-ଶିରଝୁଙ୍କି ବୀଣାପାଣିର ଆରାଧନାରେ ରତ ଥିଲେ, କେବଳ ପତ୍ନୀର ଅମର ଆତ୍ମା ଉଦ୍ଦେଶ୍ୟରେ ପ୍ରୀତି ଅର୍ଘ୍ୟ ଜଣାଇବା ପାଇଁ ସେ ପ୍ରେମିକ ନୁହନ୍ତିତ ଆଉ କିଏ।"(୪୬)

ଧୈର୍ଯ୍ୟ ଓ ସହିଷ୍ଣୁତାରେ ପ୍ରେମର ମହତ୍ତ୍ୱ ପ୍ରକାଶିତ ହୁଏ। ତେଣୁ କବି ଦେହର ମିଳନକୁ ଅସ୍ୱୀକାର କରିଛନ୍ତି। କାରଣ ଦେହର ମିଳନ କେବଳ ଇନ୍ଦ୍ରିୟ କାମ ଲାଳସାର ଉପଶମ ପାଇଁ। କିନ୍ତୁ ତାଙ୍କ ମନ ମଧ୍ୟରେ ଯେଉଁ ମିଳନ ସଂଘଟିତ ହୋଇଛି, ତାହା ଚିର ଅବିଚ୍ଛିନ୍ନ। ସେମାନଙ୍କ ଆତ୍ମା ଅକ୍ଷୟ, ଅମର। ପ୍ରିୟା କେବଳ ଅନିତ୍ୟ ପାର୍ଥିବ ମାୟା ପରିତ୍ୟାଗ କରିଛନ୍ତି ମାତ୍ର। ଜଣେ ଇହଲୋକରେ ଓ ଅନ୍ୟ ଜଣେ ପରଲୋକରେ। ଅନନ୍ତ ସ୍ରୋତରେ ଭାସିଯାଉଥିଲେ ମଧ୍ୟ ଜ୍ୟୋତିର୍ମୟ ରୂପୀ ଯେଉଁ ମହାନ୍ ଦୁଇ ଆତ୍ମାର ମିଳନ ଘଟିଛି, ତାକୁ କେହି ପୃଥକ କରିଦେଇ ପାରିବେ ନାହିଁ।

ଜ୍ୟୋତିର୍ମୟରୂପୀ ଆତ୍ମା ମହାନ ମିଳନ
କେଭାଙ୍ଗିବ କେ କରିବ ଅଛେଦ୍ୟ ଛେଦନ।(୪୭)

(ମେଲାଣି)

ମୃତ୍ୟୁ ଚିରନ୍ତନ ସତ୍ୟ ଜାଣି ମଧ୍ୟ ପ୍ରିୟଜନର ମୃତ୍ୟୁକୁ ମାନବ ସହଜ ଭାବରେ ଗ୍ରହଣ କରିପାରେନା। ତାକୁ ଭୁଲିବାକୁ ଯାଇ ସ୍ୱପ୍ନରେ ପୁଣି ମିଳିତ ହୁଏ। ହଜିଯାଇଥିବା ସ୍ମୃତିକୁ ପୁଣି ଚେତାଇ ଦିଏ। ଚିତାଗ୍ନିରେ ଭସ୍ମ ହେବାର ପ୍ରତ୍ୟକ୍ଷ କରିବି ସେ ବିଶ୍ୱାସ କରିପାରେନା। ଗଗନରେ ତାରାମେଳରେ ହଜି ଯାଇଥିବା ତାରାକୁ ଖୋଜିବସେ। ଉପବନରେ ପ୍ରସ୍ଫୁଟିତ ପୁଷ୍ପର ସୁଗନ୍ଧରେ ପୂର୍ବ ସୁଗନ୍ଧକୁ ପାଗଳ ମନ ନେଇ ଖୋଜି ଚାଲେ। ତଥାପି ସେ ନିରାଶ ନ ହୋଇ ଅଦେହୀ ସହିତ ପୁନର୍ମିଳିତ ହେବାର ଆଶା ପୋଷଣ କରେ। ସେହି ଜନମାନସ ଅଗୋଚରରେ ଥିବା ତାରାଟିର ମହତ୍ତ୍ୱ ଅନ୍ୟ କେହି ଉପଲବ୍ଧି କରି ନ ପାରୁଥିଲେ ମଧ, ପ୍ରତି ମୁହୂର୍ତ୍ତରେ କବି ତା'ର ମହତ୍ତ୍ୱ ଅନୁଭବ କରିପାରୁଥିଲେ। କବି ୱାର୍ଡ଼ସୱାର୍ଥଙ୍କ 'She dwelt among the untrodden ways' କବିତା ସହିତ କେତେକାଂଶରେ ଫକୀରମୋହନଙ୍କ 'ମୋ କ୍ଷୁଦ୍ର ତାରା' କବିତାର ଭାବସାମ୍ୟ ପରିଲକ୍ଷିତ ହୋଇଥାଏ। ଯେପରି ୱାର୍ଡ଼ସ୍‌ୱାର୍ଥ ଲେଖିଛନ୍ତି –

She dwelt among the untrodden ways
Beside the springs of Dove
A maid whom there were none to praise
And very few to love.

ଫକୀରମୋହନ ଲେଖିଛନ୍ତି –

ସେ କ୍ଷୁଦ୍ର ତାରାଟି ଥିଲା ଲୋକ ଅଗୋଚରେ
ନ ଥିଲା ପ୍ରଖର ଜ୍ୟୋତି ବିସ୍ତାରି ଗଗନେ
କେ କିମ୍ୱା ଦେଖନ୍ତା ତାକୁ ଚକିତ ନୟନେ।

ଫକୀରମୋହନ ଯେ ୱାର୍ଡ଼ସୱାର୍ଥଙ୍କ ଏହି କବିତାଟି ପାଠକରି ତାଦ୍ୱାରା ପ୍ରଭାବିତ ହୋଇଛନ୍ତି ତାହା କୁହାଯାଇ ନ ପାରେ। ଅନେକ ସମୟରେ କବିମାନଙ୍କ ମଧ୍ୟରେ ଭାବଗତ ଐକ୍ୟ ପ୍ରତିଷ୍ଠା ହେଲେ, ଏପରି ଭାବସାମ୍ୟ ପରିଲକ୍ଷିତ ହୋଇଥାଏ। ସେ ଯାହା ହେଉନା କାହିଁକି, ଏହି କବିତାଗୁଡ଼ିକରେ ପତ୍ନୀଙ୍କ ପ୍ରତି ଥିବା ବିମଳ ପ୍ରେମର ପରିପ୍ରକାଶ ଘଟିଛି। ଡଃ ଶତପଥୀ କୁହନ୍ତି – "ଯାହାପାଇଁ କବି ଫକୀରମୋହନ, ରାମାୟଣ, ମହାଭାରତ ଆଦିର ଅନୁବାଦ କରିଥିଲେ, ତାଙ୍କର ବିୟୋଗ ଏହି ବ୍ୟାପକ ପ୍ରତିଭା ପାଇଁ ଏକ ସ୍ୱର୍ଗିକ ଆଶୀର୍ବାଦ। ଉତ୍କୃଷ୍ଟ କବିତାର ସୃଷ୍ଟି ମଣିଷର ଗଭୀର ଅନୁଭବରୁ ହୁଏ। ସ୍ପନ୍ଦନ ସ୍ନେହି ଅନୁଭୂତି ଯେତେ ନିବିଡ଼, ଯେତେ ବିଜଡ଼ିତ ହୁଏ, କବିତା ଭାବ ପ୍ରବଣତାର ସ୍ୱର ବହନ କରି ସେତିକି ସୁନ୍ଦର ବିହିତ ଓ ସାବଲୀଳ

ହୁଏ।"(୪୮) ତାଙ୍କର ସମଗ୍ର କବିତା ରାଜ୍ୟରେ ଯଦି କେଉଁ ବିଭାଗଟି ବିଶେଷ ଆକର୍ଷଣୀୟ ମନେ ହୋଇଥାଏ, ତାହା ହେଉଛି ତାଙ୍କ ପତ୍ନୀଙ୍କ ଉଦ୍ଦେଶ୍ୟରେ ରଚିତ କବିତାବଳୀ।

କବି ଫକୀରମୋହନ ନିଜର ବିରହ ଭାବନାକୁ ସଂଯତ ଓ ସରଳ ଭାବରେ ପ୍ରେମାଗୀତିରେ ରୂପ ଦେଇଛନ୍ତି। ପ୍ରଣୟୀ ହୃଦୟର ଭାବାବେଗ ଉକ୍ତ କବିତାଗୁଡ଼ିକରେ ଚମତ୍କାର ଭାବରେ ପ୍ରକାଶ ଲାଭ କରିଛି। ଏଥିରେ ଶୃଙ୍ଗାରିକତା ନାହିଁ, ବରଂ ଜୀବନର ପବିତ୍ରତା, ଶାଳୀନତା ମଧ୍ୟରେ ସେ ତାଙ୍କର ପ୍ରିୟାକୁ ଲାଭ କରିବାକୁ ଚାହିଁଛନ୍ତି। ସମାଲୋଚକ ମିଶ୍ରଙ୍କ ମତରେ, "ନିଜ ଜୀବନର ଘଟିତ ପ୍ରଣୟ ବିଚ୍ଛେଦର ଏହି ଅନୁଭୂତି ନିରାବରଣ ଭାବରେ ପ୍ରକାଶ କରି ଫକୀରମୋହନ କେବଳ କାବ୍ୟର ବିଷୟବସ୍ତୁରେ ନୂତନତା ଆଣିଛନ୍ତି, ତାହା ନୁହେଁ, ଆମର ସାମାଜିକ ଚିନ୍ତାରେ ପ୍ରଣୟ ଚେତନାର ନୂତନ ଦୃଷ୍ଟିକୋଣ ଫିଟାଇଛନ୍ତି।"(୪୯) ଏହି କବିତାଗୁଡ଼ିକରେ ଜୀବନକୁ ଦେଖି ଦେଖାଇବାର ପ୍ରୟାସ ଅଧିକ। କବିତା କ୍ଷୁଦ୍ର ହେଲେ ମଧ୍ୟ ଏହା ମଧ୍ୟରେ ନିହିତ ଅଛି ଏକ ବିରାଟ ସତ୍ତା। ଏହି ସତ୍ତା ମଧ୍ୟରେ ଆମେ ଖୋଜିଲେ ପାଇବା ବ୍ୟକ୍ତି ଫକୀରମୋହନଙ୍କୁ, ପ୍ରେମିକ ଫକୀରମୋହନଙ୍କୁ ଓ ଆଦର୍ଶବାଦୀ ଫକୀରମୋହନଙ୍କୁ। ଯଥାର୍ଥରେ ମାୟାଧର ମାନସିଂ କୁହନ୍ତି – "ସେନାପତିଙ୍କ ଏହି କବିତାବଳୀର ବିଚିତ୍ର ମେଣ୍ଟ ଭିତରେ କ୍ଷୁଦ୍ର ଗୋଟିଏ କାବ୍ୟ କିନ୍ତୁ ଏକ ଅନୁରକ୍ତ ଓ ବିରହୀ କବି ସ୍ୱାମୀର ଉଷ୍ଣ ଅଶ୍ରୁରେ ଅଭିଷିକ୍ତ ହୋଇ ବିରାଟ ହୋଇ ଉଠିଛି।"(୫୦) ଏଥିରେ ଦେଖାଇ ହେବାର ଅତ୍ୟଧିକ ପ୍ରୟାସ ନାହିଁ ବରଂ ଅଛି କ୍ଷୁଦ୍ର କବିତାବଳୀ ମଧ୍ୟରେ ଏକ ବିରହୀ କବିର ସକରୁଣ ଆତ୍ମଲିପି।

**ବାର୍ଦ୍ଧକ୍ୟର ନିଃସଙ୍ଗତା ଓ କବିତା**

ଯୌବନର ଚଳଚଞ୍ଚଳତା ବାର୍ଦ୍ଧକ୍ୟରେ ପାଦ ଦେଲା ମାତ୍ରେ କ୍ରମଶଃ ଶିଥିଳ ହୋଇଉଠେ। ସେତେବେଳେ ଯୌବନର ଉଦ୍ଦୀପନା ପରିବର୍ତ୍ତେ ଦୃଷ୍ଟି ସମ୍ମୁଖରେ ଉଦ୍‌ଭାସିତ ହୋଇଉଠେ ବାର୍ଦ୍ଧକ୍ୟର ନିଃସଙ୍ଗତା ଓ ଜୀବନ ନାଟକର ଶେଷ ଦୃଶ୍ୟ। କିନ୍ତୁ ବାର୍ଦ୍ଧକ୍ୟ ସମୟ ଆନନ୍ଦ ମୁଖରିତ ହୋଇ ଉଠେ ଯେଉଁଠାରେ ଥାଏ ପତ୍ନୀର ଅନାବିଳ ପ୍ରେମ ଓ ଆତ୍ମୀୟ ସ୍ୱଜନଙ୍କର ଆନ୍ତରିକ ସ୍ନେହ। କିନ୍ତୁ ଫକୀରମୋହନଙ୍କର ଶେଷ ଜୀବନ ଅତିବାହିତ ହୋଇଥିଲା ଘୋର ମାନସିକ ପୀଡ଼ା ତଥା ନିଃସଙ୍ଗ ଅବସ୍ଥାନରେ। ତାଙ୍କ ଆତ୍ମଜୀବନରୁ ଜଣାଯାଇଥାଏ, ଶେଷାବସ୍ଥାରେ ପୁତ୍ର ତଥା ପୁତ୍ରବଧୂଙ୍କଠାରୁ ବିଛିନ୍ନ ହୋଇ ନିଃସଙ୍ଗ ଜୀବନଯାପନ କରିଥିଲେ। ତାଙ୍କ ଭାଷାରେ,

"ଚିରଦିନ ଏକାକୀ ରହିବା ମୋ ଭାଗ୍ୟଲିପିରେ ଲେଖାଅଛି। ବାଲ୍ୟକାଳରେ ପିତୃମାତୃହୀନ ଥିଲି। ଯୌବନରେ ପତ୍ନୀ ବିରହିତ ହୋଇ ଦୂର ଦେଶରେ ଥିଲି। ଏବେ ବାର୍ଦ୍ଧକ୍ୟରେ ସୁଦ୍ଧା ସନ୍ତାନଠାରୁ ବିଚ୍ଛିନ୍ନ ହୋଇ ନିର୍ଜନବାସ କରୁଅଛି।"(୫୧) ଏହି ବାର୍ଦ୍ଧକ୍ୟଜନିତ ଯନ୍ତ୍ରଣାରୁ ସାମୟିକ ପ୍ରଶାନ୍ତି ପାଇଁ ସେ କବିତା ରଚନାରେ ହାତ ଦେଇଥିଲେ। ତେଣୁ ଶେଷ ସମୟରେ ରଚିତ ଅନେକ କବିତାରେ ବାର୍ଦ୍ଧକ୍ୟଜନିତ ନିଃସଙ୍ଗତାବୋଧ ପରିଲକ୍ଷିତ ହୋଇଥାଏ। ଏ ସମୟରେ ସେ ଯେଉଁ କବିତାବଳୀ ରଚନା କରିଥିଲେ, ତାହା 'ଅବସର ବାସରେ'ର କବିତା ସଂକଳନରେ ସ୍ଥାନ ପାଇଛି। ଏଥିରେ ଯୌବନର ତାରୁଣ୍ୟ ପରିବର୍ତ୍ତେ ଦାର୍ଶନିକ ଦୃଷ୍ଟିଭଙ୍ଗୀ ପ୍ରକାଶ ପାଇଛି। ସମାଲୋଚକଙ୍କ ଭାଷାରେ, "ବ୍ୟାସକବି ଜୀବନର ଏକ ମର୍ମାନ୍ତିକ ପରିସ୍ଥିତିରେ ହୁଏ 'ଅବସରବାସରେ'ର ପରିକଳ୍ପନା। କବିଙ୍କ ପରିଣତ ବୟସର ସୃଷ୍ଟି। ଜୀବନ ଓ ଜଗତର ବିଚିତ୍ର ଅନୁଭୂତିରେ ସେ ଯେତେବେଳେ ଅଭିଜ୍ଞ, ପ୍ରଜ୍ଞାର ବିକାଶ ଓ ବିସ୍ତୃତି ପ୍ରତି ସେ ଯେତେବେଳେ ସଜ୍ଞାନ ଓ ବୟସର ପରିପକ୍ୱତାରେ ସେ ଯେତେବେଳେ ସଚେତନ, ସେତେବେଳେ 'ଅବସରବାସରେ'ର ସଂଯୋଜନା। ତେଣୁ ସେଠି ଯୌବନର ଜୀବନ ନାହିଁ, ତାରୁଣ୍ୟର ତନିମା ନାହିଁ, ଆବେଗ ଉଚ୍ଛ୍ୱାସର ବିଳାସ ନାହିଁ – ଅଛି ଶିଥିଳ ଜୀବନର ଏକ ମାର୍ମିକ ପ୍ରକାଶ ଓ ଦାର୍ଶନିକ ଦୃଷ୍ଟିଭଙ୍ଗୀ।"(୫୨) ସେ ଜୀବନକୁ ଏକ ଗୂଢ଼ ଦାର୍ଶନିକ ଦୃଷ୍ଟିଭଙ୍ଗୀ ନେଇ ନିରୀକ୍ଷଣ କରିଛନ୍ତି। ଜୀବନର ଗତି ପ୍ରବାହକୁ ସ୍ଥିର ଦୃଷ୍ଟି ନେଇ ଲକ୍ଷ୍ୟ କରିଛନ୍ତି।

ସବୁ ମଣିଷ ଜୀବନକୁ ଠିକ୍ ଭାବେ ଉପଲବ୍ଧ କରି ପାରନ୍ତି ନାହିଁ। ଯେ ଜୀବନର ଉତ୍‌ଥାନ ପତନରେ ନିସ୍ପୃହ, ଅନେକ ଅଭିଜ୍ଞତାରେ ଯା'ର ଜୀବନ ପରିପୂର୍ଣ୍ଣ ସେ କେବଳ ମାନବ ଜୀବନକୁ ଠିକ୍ ଭାବେ ଅନୁଧ୍ୟାନ କରିପାରେ। ଫକୀରମୋହନଙ୍କ ଦୀର୍ଘ ଜୀବନକୁ ଲକ୍ଷ୍ୟକଲେ ଏହା ପ୍ରମାଣିତ ହୋଇଥାଏ। ଗଭୀର ଜୀବନାନୁଭୂତି, ଅଭିଜ୍ଞତା ଓ ଦୃଷ୍ଟିଭଙ୍ଗୀର ନୂତନତା ତାଙ୍କର କବିତାଗୁଡ଼ିକୁ ବାସ୍ତବମୁଖୀ କରି ତୋଳିଛି। କବିଙ୍କର ଅନେକ କବିତାରେ ଏହିପରି ଦାର୍ଶନିକ ଦୃଷ୍ଟିଭଙ୍ଗୀ ପ୍ରତିଫଳିତ ହୋଇଛି। ତନ୍ମଧ୍ୟରୁ 'ପୁଷ୍ପମାଳା' କବିତା ସଂକଳନର 'ପିଞ୍ଜରପକ୍ଷୀ', 'ଜୀବନ ନଦୀ', 'ବାସୀଫୁଲ', 'ପୃଥିବୀ ତ ନୁହେଁ ସୁଖର ସ୍ଥାନ', 'ନିଶୀଥ ସଙ୍ଗୀତ', 'ଅବସର ବାସରେ'ର 'କପୋତ ସଙ୍ଗୀତ', 'କ୍ଷଣିକ ପାନ୍ଥ', 'ଅନନ୍ତ ମିଳନ', 'ପଶାଖେଳ', 'ଜୀବନତରୀ', 'ଜୀବନର ଗତି', 'ଅଜ୍ଞେୟ ଜୀବନ ଗତି', 'ଚରମ ଚିନ୍ତା', 'ଅନନ୍ତ ବିଶ୍ରାମ', 'ନିତ୍ୟଧାମ ଆଗେ', ଧୂଳି ସଂକଳନର 'ଜୀବନ ରଙ୍ଗାଳୟ', 'ନିୟତି', 'ଚରମ ଚିନ୍ତା', ପୂଜାଫୁଲ ସଂକଳନର 'ଭାବନା' ଓ 'ପରିଶିଷ୍ଟ କବିତାବଳୀର ଚିନ୍ତ ଚିନ୍ତା',

'ନିଶୀଥ ଧ୍ୟାନ', 'ଅନନ୍ତ ମିଳନ' ପ୍ରଭୃତି କବିତାଗୁଡ଼ିକରେ ଏହି ଦୃଷ୍ଟିଭଙ୍ଗୀର ପରିଚୟ ମିଳିଥାଏ।

ସେକ୍‌ସପିୟର 'As you like it'ରେ ପୃଥିବୀକୁ ଏକ ରଙ୍ଗମଞ୍ଚ ଭାବରେ ପରିକଳ୍ପନା କରି ମାନବକୁ ଏକ ଏକ କଳାକାର ଭାବରେ ବର୍ଣ୍ଣନା କରିଛନ୍ତି। ଅନୁରୂପ ଭାବରେ କବି ଫକୀରମୋହନ ବ୍ରହ୍ମାଣ୍ଡକୁ ଏକ ନାଟ୍ୟଶାଳା ଭାବରେ ବର୍ଣ୍ଣନା କରିଛନ୍ତି। ପାନ୍ଥଶାଳାରେ ରହୁଥିବା ପାନ୍ଥମାନଙ୍କ ମଧ୍ୟରେ କୌଣସି ପରିଚୟ ନ ଥାଏ। ଦୀର୍ଘ ପଥ ଅତିକ୍ରମ କରି କ୍ଳାନ୍ତ ଅବସ୍ଥାରେ ପାନ୍ଥ ପାନ୍ଥଶାଳାରେ ଆଶ୍ରୟ ନେଇଥାଏ। ଏଠାରେ ଆଶ୍ରୟ ନେଇଥିବା ଅନ୍ୟାନ୍ୟ ମାନବକୁ ସେ ରାତିଟିଏ ପାଇଁ ଆପଣାର ସଙ୍ଗୀ ଭାବରେ ସ୍ୱୀକାର କରିନେଇଥାଏ। ତତ୍ ପରଦିନ ସ୍ୱକାର୍ଯ୍ୟ ଉପଲକ୍ଷେ ପ୍ରତ୍ୟେକ ପ୍ରତ୍ୟେକଙ୍କୁ ତ୍ୟାଗକରି ସ୍ୱପଥରେ ଚାଲିଯିବାରେ ଏକାକୀ ପାନ୍ଥ ନିଜର ତ୍ରୁଟି ଉପଲବ୍ଧ କରେ। ଆମର ଏହି ସମାଜ ଏକ ପାନ୍ଥଶାଳା ସଦୃଶ ଓ ଏହା ମଧ୍ୟରେ ଜନ୍ମଗ୍ରହଣ କରିଥିବା ପ୍ରତ୍ୟେକ ବ୍ୟକ୍ତି ଏକ ଏକ ପାନ୍ଥ। ଏଠାରେ ସମସ୍ତେ ନିଜ ନିଜ କାର୍ଯ୍ୟରେ ବ୍ୟସ୍ତ। କାର୍ଯ୍ୟ ସମୟରେ ସମସ୍ତେ ସମସ୍ତଙ୍କର ଆତ୍ମୀୟ ଓ ବନ୍ଧୁ ଭାବରେ ଚମତ୍କାର ଅଭିନୟ ପ୍ରଦର୍ଶନ କରିଥାନ୍ତି। କିନ୍ତୁ କାର୍ଯ୍ୟ ସମାପ୍ତ ପରେ ପ୍ରତ୍ୟେକ ବ୍ୟକ୍ତି ସ୍ୱପଥ ନିର୍ଦ୍ଦେଶ ପୂର୍ବକ ବିଦାୟ ନିଏ। କବିଙ୍କ ଜୀବନରେ ଏହିପରି ଅନେକ ପାନ୍ଥ ଆସିଛନ୍ତି କାର୍ଯ୍ୟ ଉପଲକ୍ଷେ। ତହିଁରେ ପ୍ରତ୍ୟେକ ବିଦାୟ ନେବାପରେ କବି ଜୀବନକୁ ଚମତ୍କାର ଦାର୍ଶନିକ ଦୃଷ୍ଟିଭଙ୍ଗୀ ନେଇ ବିଶ୍ଳେଷଣ କରିଛନ୍ତି।[୫୩] ଜୀବନ ରଙ୍ଗାଳୟରେ ପ୍ରତ୍ୟେକ ଦିନ ନୂତନ ଦୃଶ୍ୟର ଅବତାରଣା ଚାଲିଥାଏ। କେତେବେଳେ ଜୀବନ ଉଲ୍ଲାସ-ଆନନ୍ଦମୟତ ଆଉ କେତେବେଳେ ଜୀବନ ନାଟକରେ କରୁଣ ଦୃଶ୍ୟ ସଂଘଟିତ ହୋଇଥାଏ। ନାଟକର ସୂତ୍ରଧର ନେପଥ୍ୟେ ରହି ପ୍ରତ୍ୟେକ କାର୍ଯ୍ୟକଳାପକୁ ନିୟନ୍ତ୍ରଣ କରିବା ପରି ଜଣେ ସର୍ବଶକ୍ତିମାନ, ସର୍ବବିଦ୍ୟମାନ ମାନବ ଜୀବନର ଗତିପଥକୁ ନିୟନ୍ତ୍ରଣ କରିଥାଏ। ଏହି ରଙ୍ଗାଳୟରେ କେହି ଜଣେ ମାତ୍ର ଅମର କଳାକାର ନୁହନ୍ତି।[୫୪]

କବି ମାନବ ଜୀବନର ରହସ୍ୟମୟ ପ୍ରକୃତି ଉପଲବ୍ଧ କରି ଆଶ୍ଚର୍ଯ୍ୟାନ୍ୱିତ ହୋଇଛନ୍ତି। ଆମେ ମୃତ୍ୟୁପରେ ବ୍ୟକ୍ତିଙ୍କୁ ଉପାସନାକରୁ, ଶବାଧାରରେ ଫୁଲତୋଡ଼ା ଉପହାର ଦେଉ। ମାତ୍ର ଜୀବିତାବସ୍ଥାରେ ପଦେ ମାତ୍ର ସ୍ନେହପୂର୍ଣ୍ଣ ବାକ୍ୟ କିମ୍ବା ସାମାନ୍ୟ ସେବା ଶୁଶ୍ରୂଷା ମଧ୍ୟ କରୁନା। ଏ ପ୍ରକାର ବ୍ୟବହାର କବିଙ୍କ ପକ୍ଷେ ସମ୍ପୂର୍ଣ୍ଣ ଅସହ୍ୟ। କବିଙ୍କ ଶେଷାବସ୍ଥାରେ ବନ୍ଧୁମାନଙ୍କ ଉପଚାର ତାଙ୍କୁ ମ୍ରିୟମାଣ କରିଛି। ତାଙ୍କ ମତରେ ମୃତ୍ୟୁ ସମୟରେ ପଙ୍କ ଓ ଚନ୍ଦନ ମଧ୍ୟରେ କୌଣସି ପାର୍ଥକ୍ୟ ନାହିଁ।[୫୫] ସଂସାରର

କପଟପୂର୍ଣ୍ଣ ଅଭିନୟ ସନ୍ଦର୍ଶନରେ ସେ ଅତିଷ୍ଠ ହୋଇ ମୃତ୍ୟୁକୁ ଆବାହନୀ ଜଣାଇଛନ୍ତି। ଏ ସଂସାରରେ କୁଟିଳତା ପ୍ରତି ତାଙ୍କର ଅଶେଷ ଘୃଣା ଜାତ ହୋଇଛି। ସ୍ୱଗୃହ ତାଙ୍କୁ ବୋଧ ହୋଇଛି ପିଞ୍ଜରା ସଦୃଶ। ମୁକ୍ତ ଆକାଶରେ ମୁକ୍ତିପାଇ ଉଡ଼ି ବୁଲିବାକୁ ତାଙ୍କର ବର୍ତ୍ତମାନ ପ୍ରବଳ ଆଗ୍ରହ। କାରଣ ଦୁର୍ବଳ ଶରୀରରେ ଜ୍ଞାତି ପରିବାରମାନଙ୍କର ହତାଦର ଭାବନେଇ ବଞ୍ଚି ରହିବାର ଅନ୍ୟନାମ ଯନ୍ତ୍ରଣା ବ୍ୟତୀତ ଅନ୍ୟ କ'ଣ ହୋଇପାରେ?

ଐଶ୍ୱର୍ଯ୍ୟର ଆଶା ସୁଖର ପିପାସା
କ୍ରମେ ହେଉଛି ତ କ୍ଷୀଣ
ଜ୍ଞାତି ପରିବାର କ୍ରମେ ହତାଦର
କରୁଛନ୍ତି ଦିନୁ ଦିନ। (ଶେଷ ପ୍ରାର୍ଥନା)

ଏକ ବାସୀଫୁଲର ଅନୁଭବ କେତେ ମର୍ମନ୍ତୁଦ ତାହା ଅନୁଭବୀ ବ୍ୟତୀତ ଅନ୍ୟ କେହି ଅନୁଭବ କରି ନପାରେ। କଢ଼ିରୁ ପୁଷ୍ପଟି ଜାତ ହେବା ମାତ୍ରେ ସେ ହୋଇଥାଏ ସମସ୍ତଙ୍କର ଆଦରର ଧନ, ପ୍ରିୟବସ୍ତୁ। ତାର ଭୁରୁଭୁରୁ ବାସ ସମସ୍ତଙ୍କୁ ଆହ୍ଲାଦିତ କରେ, ଦେବତା ମସ୍ତକରେ ଭକ୍ତ ଆନନ୍ଦରେ ଭେଟିଦିଏ। ମାତ୍ର ପୁଷ୍ପଟି ତାର କାନ୍ତି ହରାଇ ବାସହୀନ ହୋଇଗଲେ ସେ ହୋଇଉଠେ ସମସ୍ତଙ୍କର ଅନାଦରର ବସ୍ତୁ। ସେ ଶୁଖି ଧୂଳିରେ ଝଡ଼ିପଡ଼େ, କେହି ତାକୁ ସହାନୁଭୂତିର ଚକ୍ଷୁମେଲି ଚାହେଁ ନାହିଁ। ମାନବ ଜୀବନ ଅନୁରୂପ ଏକ ବାସୀଫୁଲ ସଦୃଶ। ଧନ ଉପାର୍ଜନ ସମୟରେ ସେ ଥାଏ ପରିବାରର ଆଦରଣୀୟ ତଥା ପ୍ରତାପଶାଳୀ ବ୍ୟକ୍ତି। କିନ୍ତୁ ସେ ଯେତେବେଳେ ନିଜର ଶକ୍ତି ହରାଇ ଉପାର୍ଜନ କ୍ଷମତା ହରାଇ ବସେ, ହଠାତ୍ ସେ ହୋଇଉଠେ ସମଗ୍ର ପରିବାର ପ୍ରତି ଏକ ଅଲୋଡ଼ା ଦ୍ରବ୍ୟ, ମୂଲ୍ୟହୀନ ବୋଝ। ଏହି ଜୀବନ୍ତ ସତ୍ୟଟି ପ୍ରକାଶ ପାଇଛି 'ବାସୀଫୁଲ' କବିତାରେ। ଯାହା ଚିରନ୍ତନ ସତ୍ୟ ସେହି ନିଶୀଥ ସଙ୍ଗୀତର ମୋହରେ କବି ଭାବାବିଷ୍ଟ ହୋଇଛନ୍ତି। ଅନ୍ୟମାନଙ୍କ ଦ୍ୱାରା ଘୃଣିତ ବାସୀଫୁଲର ଜୀବନ ନେଇ ବଞ୍ଚି ରହିବା ଅପେକ୍ଷା ସେହି ନିଶୀଥ ସଙ୍ଗୀତର ବିଚିତ୍ର ସ୍ୱରରେ ଆକୃଷ୍ଟ ହୋଇ ବରଂ ତା ସହିତ ମିଶିଯିବା ଅନେକ ଭଲ। ସେହି ସଙ୍ଗୀତର ମୋହିନୀ ଶକ୍ତିରେ ସେ ନିଜେ ଜାଗ୍ରତ କିମ୍ବା ସ୍ୱପ୍ନର ମାୟାପୁରୀରେ ବିଚରଣରତ ତାହା ନିଜେ ଅନୁଭବ କରି ପାରୁ ନାହାନ୍ତି।(୫୬) କାରଣ ତାହା ଅନୁଭବ ଗମ୍ୟ ଓ ଲୌକିକ ଜଗତ ଠାରୁ ତାର ସ୍ଥାନ ବହୁ ଊର୍ଦ୍ଧ୍ୱରେ।

ପୁଣି ସେ ମାନବଜୀବନକୁ ଏକ ପଶାଖେଳ ସହିତ ତୁଳନା କରିଛନ୍ତି। ଅନେକ ସମୟରେ ଚତୁର ତଥା ଧୂରନ୍ଧର ବ୍ୟକ୍ତିର ମଧ୍ୟ ଏହି ଖେଳରେ ପରାଜୟ ଘଟିଥାଏ।

ପଶାକାଠି ତା ଡ଼ାକର କୌଣସି ମୂଲ୍ୟ ଦିଏ ନାହିଁ। ବାରମ୍ବାର ପରାଜୟର ଗ୍ଲାନିରେ ସେ ହତୋତ୍ସାହ ହୋଇପଡ଼େ। କିନ୍ତୁ ସେ କେବେ ଅନୁଭବ କରିପାରେ ନାହିଁ ଯେ ସମସ୍ତଙ୍କ ଊର୍ଦ୍ଧ୍ୱରେ ଜଣେ ଅଛନ୍ତି, ଯେ କି ଖେଳର ଗତିକୁ ସର୍ବଦା ନିୟନ୍ତ୍ରଣ କରିଥାନ୍ତି। ମାନବର ପାରିଲାପଣକୁ ବାରମ୍ବାର ଉପହାସ କରନ୍ତି। ପଶାଖେଳର ଜୟପରାଜୟ ପରି ଜୀବନ ଯୁଦ୍ଧରେ ମଧ୍ୟ ଜୟପରାଜୟ ଲାଗିରହିଛି। ସମୟ ଆସେ ଯେତେବେଳେ ମାନବ ବାରମ୍ବାର ପରାଜିତ ହୋଇ କ୍ଳାନ୍ତ ମନ ନେଇ ଘରକୁ ଫେରିଆସେ। ସେହିପରି ଜୀବନର ସୁଦୀର୍ଘ ପଥ ଅତିକ୍ରମ କରିବା ସମୟରେ ଅନେକ ଥର ଦୌଡ଼ ପ୍ରତିଯୋଗିତାରେ ଶୋଚନୀୟ ପରାସ୍ତ ହୋଇ ମାନବ ନିଜର ପାରିଲା ଶକ୍ତି ପ୍ରତି ସଂପୂର୍ଣ୍ଣ ବିଶ୍ୱାସ ହରାଇଥାଏ।[୫୭] ଶେଷରେ ସେ ପ୍ରତ୍ୟେକ କାର୍ଯ୍ୟରେ ଏକ ଅଚିନ୍ତ୍ୟ ଓ ସର୍ବ ଶକ୍ତିମୟୀ ଶକ୍ତିର ଅନୁଭବ କରେ। ନିଜ ହୃଦୟ ମଧ୍ୟରେ ଏକ ସଙ୍ଗୀତର ମୂର୍ଚ୍ଛନା ସେ ଶୁଣିବାକୁ ପାଇ ତଦ୍ୱାରା ପୁଲକିତ ହୋଇଉଠେ। ମଙ୍ଗୁଆଳ ଯେପରି ମଙ୍ଗ ରକ୍ଷାକରି ତରଣୀକୁ ଏକ ନିର୍ଦ୍ଦିଷ୍ଟ ମାର୍ଗରେ ଗତି କରାଇଥାଏ ଠିକ ସେହିପରି ମାନବ ଜୀବନ-ତରଣୀକୁ ପରମ କାରୁଣିକ ଈଶ୍ୱର ଉଚିତ ମାର୍ଗରେ ପରିଚାଳିତ କରୁଛନ୍ତି ବୋଲି ସଚେତନ ମାନବ ଅନୁଭବ କରିଥାଏ।

ବିଭିନ୍ନ ଦ୍ରବ୍ୟଗୁଣ ଓ କର୍ମର ସମବାୟରେ ମାନବ ଶରୀର ନିର୍ମିତ। ତାହା ଚିର ପରିବର୍ତ୍ତନଶୀଳ ଓ ଚିର ପ୍ରବହଣଶୀଳ। ପ୍ରକୃତି ଓ କର୍ମ ପରସ୍ପର ସମ୍ବନ୍ଧାନ୍ୱିତ। ଏହି ପ୍ରକୃତି ଓ କର୍ମରୂପକ ସୂତ୍ରରେ ଜୀବଜଗତ ନିତ୍ୟଆବଦ୍ଧ। ତାର ଆକର୍ଷଣ ଓ ବିକର୍ଷଣରେ ମାନବର ଊର୍ଦ୍ଧ୍ୱ ଓ ନିମ୍ନଗତି ନିରୂପିତ।[୫୮]

ଏହିପରି ଭାବରେ ଆଲୋଚନା କଲେ ଆମେ ଦେଖିବାକୁ ପାଇବା ଫକୀର ମୋହନଙ୍କର ଜୀବନପ୍ରତି ବାସ୍ତବବାଦୀ ଦୃଷ୍ଟିକୋଣର ପରିଚୟ। ତାଙ୍କର ଗଦ୍ୟ ସାହିତ୍ୟ ଅପେକ୍ଷା ପଦ୍ୟ ସାହିତ୍ୟରେ ବ୍ୟକ୍ତି ଫକୀରମୋହନଙ୍କର ଅଧିକ ପରିଚୟ ସୁଲଭ୍ୟ। କାରଣ ଗଦ୍ୟ ଅପେକ୍ଷା ପଦ୍ୟ ମାଧ୍ୟମରେ ଜୀବନର ପ୍ରତ୍ୟେକ ରହସ୍ୟ ପ୍ରକାଶ କରିବା ସହଜସାଧ୍ୟ। ଅନୁଭବର ପ୍ରତୁଳତା, ଜୀବନର ବିଚିତ୍ର ଅନୁଭୂତି କବିତାକୁ ଗତିମୁଖର କରେ। ଫକୀରମୋହନଙ୍କର ସାହିତ୍ୟିକ ପ୍ରତିଭାର ଆରମ୍ଭ କବିତାରୁ। ଜୀବନର ପ୍ରତ୍ୟେକଟି ଦିଗ ତାଙ୍କ କବିତାରେ ପ୍ରକାଶ ଲାଭକରିଛି। ବିଶେଷ ଭାବରେ ବାର୍ଦ୍ଧକ୍ୟ ଅବସ୍ଥାରେ ତାଙ୍କ ନିଃସଙ୍ଗ ଜୀବନର ଚିତ୍ର ଯେଉଁ କବିତାମାନଙ୍କରେ ପ୍ରକାଶିତ ହୋଇଛି, ସେଗୁଡ଼ିକ ଅଧିକ ବାସ୍ତବମୁଖୀ ହୋଇପାରିଛି।

## ଆଧ୍ୟାତ୍ମିକ ବିମଳ ଆନନ୍ଦ ଓ କବିତା

ମାନବ ବାର୍ଦ୍ଧକ୍ୟରେ ପାଦଦେଲା ମାତ୍ରେ, ସେ ନିଜକୁ ଅସହାୟ ମନେକରେ। ଯୌବନର ଗତିମୁଖର ଜୀବନ ହଠାତ୍ ତା ନିକଟରେ ଗତିହୀନ ହୋଇପଡ଼େ। ଲୌକିକ ଜଗତ ବ୍ୟତୀତ ଅନ୍ୟ ଏକ ଜଗତ ତା ପାଇଁ ହୋଇଉଠେ ଲୋଭନୀୟ; ଯେଉଁଠି ସେ ଶାନ୍ତିରେ ନିଃଶ୍ୱାସ ନେଇ ପାରିବ। ନିଜକୁ ଶକ୍ତିହୀନ ମନେକରି ସେ ଚାହେଁ ଅନ୍ୟର ଆଶ୍ରୟ; ଯିଏ ତାକୁ ଏକ ଅନିର୍ବଚନୀୟ ଆନନ୍ଦ ପ୍ରଦାନ କରିପାରିବ। ସେତେବେଳେ ତା ମନରେ ବୈଷୟିକ ଚିନ୍ତା ପରିବର୍ତ୍ତେ ଜାଗ୍ରତ ହୁଏ ବିଭୁଚିନ୍ତା। ସେ ସେହି ସର୍ବଶକ୍ତିମାନ ସୃଷ୍ଟିକର୍ତ୍ତାଙ୍କ ପ୍ରତି ଆପେ ଆପେ ଆକୃଷ୍ଟ ହୋଇ ପଡ଼େ। ଯନ୍ତ୍ରଣା ଜର୍ଜ୍ଜରିତ ଜୀବନରେ ଆଶ୍ରାକରେ ସେ ପରମପଦକୁ। ସେହିଥିରୁ ସେ ପାଇଥାଏ ଆନନ୍ଦ ଓ ଅମୃତର ସ୍ୱାଦ।

ଫକୀରମୋହନଙ୍କର କର୍ମମୁଖର ଜୀବନ ଯେତେବେଳେ ତରଙ୍ଗହୀନ ପୁତ୍ରଠାରୁ ଦୂରରେ ରହି ଜୀବନ ଏକାନ୍ତ ଏକାକୀ, ନିଃସଙ୍ଗ, ସେତେବେଳେ ସେ ସେହି ସର୍ବଶକ୍ତିମାନ ଈଶ୍ୱରଙ୍କ ପାଦତଳେ ନିଜକୁ ସମର୍ପଣ କରିଦେବାକୁ ଉଚିତ୍ ମନେକଲେ। ସେତେବେଳେ ତାଙ୍କ ମନରେ ଜାତ ହୋଇଥିବା ଅପୂର୍ବ ଭାବନାରାଶିକୁ ସେ ରୂପଦେଲେ କେତେଗୁଡ଼ିଏ ଭକ୍ତିରସାତ୍ମକ କବିତାରେ। ବିଶେଷଭାବରେ ଅବସର ବାସରେ'ର 'ଶରଣ', 'ଗୋଟିଏ ପାର୍ଥନା', 'ଶାନ୍ତିଃ ଶାନ୍ତିଃ ଶାନ୍ତିଃ', 'ପ୍ରାଣେଶ', 'ଭସ୍ମମୁଷ୍ଟି', 'ମୋ କ୍ଷୁଦ୍ର ଶକ୍ତି', 'ହରିସର୍ବସ୍ୱ', 'କାହିଁକି ଯିବି ? 'ଦିଅ ଦରଶନ', 'କରନ୍ତୁ କଲ୍ୟାଣ', 'କୃପା ନିଧାନ', 'ସଞ୍ଜିବନୀ ସୁଧା ସ୍ୱରୂପ', ପୁଷ୍ପମାଳା ସଂକଳନର 'ଏ କି ଲୀଳା', ପୂଜାଫୁଲର 'ସ୍ତୋତ୍ର', ତୁମ୍ଭପଦେ ସ୍ଥାନ', 'ନିବେଦନ', 'ଭାବନା', ଧୂଳି ସଂକଳନର, 'ପ୍ରାର୍ଥନା', 'ଦିଅଦେଖା', 'ବିଷ୍ଣୁ ଚତୁର୍ଭୁଜ' ଇତ୍ୟାଦି କବିତା ଗୁଡ଼ିକରେ ତାଙ୍କର ଆଧ୍ୟାତ୍ମିକ ଭାବନା ରୂପଲାଭ କରିଛି। ଈଶ୍ୱରଙ୍କୁ ସେ ଗଭୀର ଭାବରେ ବିଶ୍ୱାସ କରୁଥିଲେ ଓ ପ୍ରତ୍ୟେକ କାର୍ଯ୍ୟ ଈଶ୍ୱରଙ୍କ ବିନା ଇଙ୍ଗିତରେ ସାଧନ ହୋଇ ନପାରେ ବୋଲି ସେ ବିଶ୍ୱାସ କରୁଥିଲେ। ସମାଲୋଚକ ସର୍ବେଶ୍ୱର ଦାସ କୁହନ୍ତି' ଫକୀରମୋହନ ଥିଲେ ପରମ ଧାର୍ମିକ, ଗଭୀର ଈଶ୍ୱର ବିଶ୍ୱାସୀ, ତୁଙ୍ଗ ଆଧ୍ୟାତ୍ମ୍ୟବାଦୀ ଓ ଭଗବାନଙ୍କର ବିନୀତ ଭକ୍ତ। ତାଙ୍କର ଅସଂଖ୍ୟ କବିତାରୁ ତାଙ୍କର ଉଦାର ଧର୍ମତତ୍ତ୍ୱ, ଅଦୃଷ୍ଟବାଦିତା, କର୍ମବାଦ ଓ ପରଲୋକରେ ବିଶ୍ୱାସ ଏବଂ ଅଟଳ ଧର୍ମ ନିଷ୍ଠାର ପରିଚୟ ମିଳେ।[୫୧] ସେ କୌଣସିଠାରେ ନାସ୍ତିକତାର ପରିଚୟ ଦେଇ ନାହାନ୍ତି। ମାତ୍ର ଯେଉଁଠାରେ

ଧର୍ମନାମରେ କୁସଂସ୍କାର ଓ ଅନ୍ୟାଚାର ଅନୁଭବ କରିଛନ୍ତି ସେଠାରେ ଧର୍ମକୁ ନୁହେଁ ଧର୍ମନାମରେ ପ୍ରଚାର କରୁଥିବା ଧର୍ମଧ୍ୱଜାଧାରୀଙ୍କୁ ସେ ସମାଲୋଚନା କରିଛନ୍ତି।

ଫକୀରମୋହନ ଥିଲେ ସରଳ ଧର୍ମବିଶ୍ୱାସୀ। ଯେଉଁ ସମୟରେ ସେ ନିଜକୁ ଅସହାୟ ମନେକରିଛନ୍ତି, ସେତେବେଳେ ସେହି ବିରାଟ 'ଭୂମା'ର ଆକର୍ଷଣ ତାଙ୍କୁ ପାଗଳ କରିଦେଇଛି। "ଦୈନ୍ୟ ଦୁଃଖ ଦୁର୍ଦ୍ଦଶାର ଅନ୍ଧାରୀ ଗହ୍ୱରରେ ଆଶାର ପ୍ରଦୀପ ଜାଳି ସେ ବିଭୁପାଦ ତଳେ ଅନ୍ତରର ନୈବେଦ୍ୟ ଜାଳିଛନ୍ତି। ପାର୍ଥନାକରିଛନ୍ତି ପ୍ରେମ ପ୍ରୀତି, ମାୟାମମତା, ସ୍ନେହଶ୍ରଦ୍ଧା, କର୍ତ୍ତବ୍ୟନିଷ୍ଠା, ପରୋପକାର, ଦୟା କ୍ଷମା ପ୍ରଭୃତି ମାନବଜୀବନର ଶାଶ୍ୱତ ଗୁଣର ବିକାଶପାଇଁ। ମନୁଷ୍ୟର ଦୈନନ୍ଦିନ ଜୀବନରେ, ଆଚରଣରେ, କର୍ମରେ ଧର୍ମଭାବ ଓ କର୍ମନିଷ୍ଠାର ପବିତ୍ରତା ଫୁଟୁ – ଏହାହିଁ ଫକୀର-ମୋହନଙ୍କ କବିମାନସରେ ଝଙ୍କୃତ ହେଉଥିଲା। ସତ୍ୟ, ନ୍ୟାୟ ଓ ଆଧ୍ୟାତ୍ମିକ ଆଦର୍ଶରେ ପରିଚାଳିତ ମଣିଷ ସର୍ବଦା ସମାଜ ସେବାରେ ଆତ୍ମ ନିୟୋଗକରୁ, ତ୍ୟାଗ ଓ କର୍ତ୍ତବ୍ୟନିଷ୍ଠା ମଧ୍ୟ ଦେଇ ଜୀବନକୁ ସାର୍ଥକ କରୁ ଏହାହିଁ ଥିଲା ତାଙ୍କର କବି ମାନସର ଅମୃତ ବାଣୀ।"(୬୦) ମାନବ ପ୍ରତ୍ୟେକ କାର୍ଯ୍ୟରେ ସେହି ଈଶ୍ୱରଙ୍କ ଅସ୍ତିତ୍ୱ ଅନୁଭବ କଲେ ଜଗତର ସମସ୍ତ ଦୁଃଖ ଅକ୍ଲେଶରେ ଦୂରୀଭୂତ ହୋଇ ପାରିବ ବୋଲି ତାଙ୍କର ଥିଲା ଦୃଢ଼ ବିଶ୍ୱାସ। ସେଇଥିପାଇଁ ସେ ଈଶ୍ୱରଙ୍କ ପାଦତଳେ ନିଜକୁ ସଂପୂର୍ଣ୍ଣ ଭାବରେ ଉତ୍ସର୍ଗ କରିଦେଇଛନ୍ତି।(୬୧)

ଭଗବାନଙ୍କ ପ୍ରତି ଯା'ର ଅଟଳ ଭକ୍ତି ଥାଏ, ଯେପ୍ରକୃତ ଭକ୍ତ ସେ ଭଗବନାଙ୍କ ଉପରେ ଅଭିମାନ କରିପାରେ, ତାଙ୍କ ନିନ୍ଦା କରିପାରେ। କବିସୂର୍ଯ୍ୟ ଯେପରି 'ଜଗନ୍ନାଥ ଜଣାଣ' ଓ 'ସର୍ପଜଣାଣ' ରେ ଜଗନ୍ନାଥଙ୍କୁ ଗାଳିଦେଇଛନ୍ତି, ଫକୀରମୋହନ ମଧ୍ୟ ସେହିପରି ତାଙ୍କ ଉପରେ ଦୋଷାରୋପ କରିଛନ୍ତି। ଯେଉଁଠାରେ ବନ୍ଧନ ଯେତେ ନିବିଡ଼, ପ୍ରେମ ଯେତେ ଗଭୀର, ସେଠାରେ ଅଭିମାନ ସେତେ ଉତ୍କଟ। ସ୍ୱୟଂ ଭଗବାନ କରୁଣାସାଗର ହୋଇଥିଲେ ମଧ୍ୟ କରୁଣା ନିଃଶେଷ ହୋଇଯିବା ଭୟରେ ସାମାନ୍ୟ ସାମାନ୍ୟ ବଣ୍ଟନ କରୁଛନ୍ତି। କାହାକୁ ଠ କରିଦେଉଛନ୍ତି ତ କାହାକୁ କରିଦେଉଛନ୍ତି ଫକୀର। ଭଗବାନଙ୍କର ଏ ଅନ୍ୟାୟ ନୀତି କାହିଁକି ? ସେ ଜଗତର ମୂଳାଧାର ଓ ସୃଷ୍ଟିକର୍ତ୍ତା ହୋଇ ତାଙ୍କର ଏ ପକ୍ଷପାତ ନୀତି ସଂପୂର୍ଣ୍ଣ ଅନୈତିକ। କୌଣସି ମାନବ ସ୍ୱଇଚ୍ଛାରେ କଦାପି ଅନ୍ୟାୟ କରେ ନାହିଁ। ଭଗବାନ ମାନବ ସମାଜ ମଧ୍ୟରେ ଯେଉଁ ଅନ୍ୟାୟ ବଣ୍ଟନ କରିଛନ୍ତି, ତାର ବଶବର୍ତ୍ତୀ ହୋଇ ମାନବ ଅନ୍ୟାୟ ପଥରେ ପାଦଦିଏ, ପାପ କାର୍ଯ୍ୟକରେ। ଏ ଦୋଷ ମଣିଷର ନୁହେଁ। କାରଣ ସର୍ବବିଦ୍ୟମାନ

ଈଶ୍ୱର ଯଦି ମାନବର ଅନ୍ୟାୟ ଅଚରଣ ସମୟରେ ପ୍ରତିରୋଧ କରୁଥାନ୍ତେ, ତାଙ୍କୁ ଚେତେଇ ଦେଉଥାନ୍ତେ, ତେବେ ମାନବ କୌଣସି ଅନ୍ୟାୟ କରିବାକୁ ସାହାସ କରନ୍ତା ନାହିଁ। ମାନବ ମନରେ ଆଶାର ସଞ୍ଚାର କରି ସେହି ପରମେଶ୍ୱର ଭଗବାନ ପୁଣି ତାକୁ ନିରାଶ କରିଥାନ୍ତି। ସେଥିପାଇଁ କବି ଅଭିମାନ କରି କହିଛନ୍ତି –

ସତ ଅଟେ ଜାତ ମନେ ଅନନ୍ତ ବାସନା
କାହିଁ ପୂର୍ଣ୍ଣ କଲ ନାହିଁ ଦିନେତ କାମନା ?
ନ କରିବ ପୂର୍ଣ୍ଣ ଯେବେ ଇଚ୍ଛା ଥିଲା ମନେ
କିଂପା ପୋଡୁଅଛ ପ୍ରାଣ କାମନା-ଦହନେ ?

(ଏକିଲୀଳା–ପୁଷ୍ପମାଳା)

ତଥାପି ଆତ୍ମସଚେତନ କବି ଭଗବାନଙ୍କର ଏ ଅନ୍ୟାୟ ନୀତି ଯୋଗୁଁ ତାଙ୍କ ନିକଟରୁ ଦୂରେଇ ଯାଇ ନାହାନ୍ତି। ନିଜର କର୍ତ୍ତବ୍ୟ ପାଳନ କରିବାକୁ ସେ ଦୃଢ଼ ପ୍ରତିଜ୍ଞ। ସେ ଜାଣନ୍ତି ଜଗତର ସବୁ କିଛି ଅଳୀକ, କ୍ଷଣସ୍ଥାୟୀ; ମାତ୍ର ପରମେଶ୍ୱରହିଁ ଚିରନ୍ତନ। ଜୀବନର ପ୍ରତ୍ୟେକ ସ୍ତରରେ ପ୍ରତ୍ୟେକ କ୍ଷେତ୍ରରେ ସେ ଯେପରି ତାଙ୍କୁ ବିସ୍ମରଣ କରି ନପାରନ୍ତି, ସେଥିପାଇଁ ସେ ଭଗବନାଙ୍କୁ ଅନୁରୋଧ କରିଛନ୍ତି 'ଶରଣ' କବିତାରେ।

ମାନବ ଜୀବନ ମାୟାପୂର୍ଣ୍ଣ। ସେ ସର୍ବଦା ମାୟାରେ ଆଚ୍ଛନ ଥିବାରୁ ଭଲମନ୍ଦ ଅନୁଭବ କରିବାର କ୍ଷମତା ତାର ନାହିଁ। ଅନ୍ଧକାରରେ ସେ ଆତ୍ମହରା ହୋଇ ବ୍ୟାକୁଳ ହୋଇଉଠେ। ସେଇଥିପାଇଁ ସେ ପ୍ରାର୍ଥନା କରେ 'ଗୋଟିଏ ପାର୍ଥନା' କବିତାରେ ଭଗବାନଙ୍କର ଦର୍ଶନ ପାଇଁ।[୬୨] ତାଙ୍କର ଶେଷ ଅନୁରୋଧ, ନିଜେ ଭଗବାନ ତାଙ୍କ କର୍ମର ଫଳାଫଳ ବିଚାର ପୂର୍ବକ ଦଣ୍ଡପ୍ରଦାନ କରନ୍ତୁ। କବି ସ୍ୱାର୍ଥପର ନୁହନ୍ତି, ସେ କେବଳ ନିଜର ମୁକ୍ତିପାଇଁ ଭଗବାନଙ୍କୁ ପାର୍ଥନା କରି ନାହାନ୍ତି, ପରନ୍ତୁ ନିଜରପରିଜନ ଓ ଅନ୍ୟମାନଙ୍କ କୁଶଳ ପାଇଁ ସେ ଆକୁଳ ହୃଦୟରେ ନିବେଦନ କରିଛନ୍ତି 'ଶାନ୍ତିଃ ଶାନ୍ତିଃ ଶାନ୍ତିଃ' କବିତାରେ।

ଜୀବନ ସ୍ରୋତ ଅବିରାମ ଗତିରେ ସତତ ପ୍ରବହଶୀଳ। ସେହି ପ୍ରଖର ସ୍ରୋତ ମଧ୍ୟରେ ମାନବ ସମାଜ କେତେବେଳେ ବିଲୀନ ହୋଇଯିବ, ତାର ଇୟତ୍ତା ନାହିଁ। ଏହି ସ୍ରୋତରୁ ଉଦ୍ଧାର କରିବାର କ୍ଷମତା କେବଳ ସେହି ପରମେଶ୍ୱରଙ୍କ ଅଛି। ସେଥିପାଇଁ କବି ନିଜକୁ ସଂପୂର୍ଣ୍ଣ ରୂପେ ତାଙ୍କ ପାଦ ତଳେ ସମର୍ପଣ କରି ଦେଇଛନ୍ତି। ଫଣୀ ନିଜର ମଣି ହରାଇଲେ ଯେପରି ଅନ୍ଧ ହୋଇଯାଏ ଅନୁରୂପ ଭାବେ କବି ଈଶ୍ୱରଙ୍କ ଅଦର୍ଶନରେ ନିଜକୁ ଅନ୍ଧ ପ୍ରାୟ ଅନୁଭବ କରିଛନ୍ତି–

ମଣି ହରିଗଲା ଫଣୀ ପରି
ପ୍ରାଣ ଆକୁଳରେ ଭ୍ରମେ ହରି !
ଜୀବ ମୃତବତ ମଣୁଛି ସନ୍ତତ
ତୁମ୍ଭବିନା ବଞ୍ଚିବି କିପରି ହେ
ପ୍ରାଣେଶ ! (ପ୍ରାଣେଶ)

ଈଶ୍ୱରଙ୍କ ବିନା ନିର୍ଦ୍ଦେଶରେ ବୃକ୍ଷର ପତ୍ର ମଧ୍ୟ କଂପିତ ହୁଏ ନାହିଁ। ଗ୍ରହ, ନକ୍ଷତ୍ର ପୁଞ୍ଜ ତାଙ୍କର ନିର୍ଦ୍ଦେଶରେ ପରିଚାଳିତ ହୋଇଥାନ୍ତି। ତାଙ୍କର ଆଦେଶରେ ମନ୍ଦ ସମୀରଣ ପ୍ରବାହିତ ହୁଏ, ଆକାଶରୁ ବୃଷ୍ଟିପାତ ହୁଏ। ପଞ୍ଚଭୂତର ସମଷ୍ଟିରେ ଗଠିତ ସୁନ୍ଦର ତନୁଶ୍ରୀ ଦିନେ ଭସ୍ମରେ ପରିଣତ ହେବ। କିନ୍ତୁ ଏହି ଭସ୍ମୀଭୂତ ଶରୀରରେ ଥରେ ମାତ୍ର ଦୟାମୟଙ୍କ ସ୍ପର୍ଶ ବାଜିଲେ ତାହା ନୂତନ ଜୀବନ ଲାଭ କରିପାରିବ। ଥରେ ମାତ୍ର ତାଙ୍କର ଆଶୀର୍ବାଦ ଲାଭ କଲେ ବିଷୟ ବାସନାରେ ମତିଭ୍ରମ ହୋଇଥିବା ମାନବ ଚିରଶାନ୍ତି ଲାଭ କରିପାରିବ। କିନ୍ତୁ ସେହି ମାୟାବୀଙ୍କ ମାୟା ଉନ୍ମୋଚନ କରିବାର ଶକ୍ତି ଏହି କ୍ଷୁଦ୍ର ମାନବର ନାହିଁ। ନେପଥ୍ୟେ ରହି ସୂତ୍ରଧର ପରି ନିର୍ଦ୍ଦେଶ ଦେବା ମାତ୍ରେ ଶ୍ରୀରାମ ଭୂମିକାରେ ଅଭିନୟ କରୁଥିବା ବ୍ୟକ୍ତି ହଠାତ୍ ବେଶ ପରିବର୍ତ୍ତନ କରି ହନୁମାନ ରୂପ ଧରି ମଧ୍ୟ ନୃତ୍ୟ କରିପାରେ।[୬୩]

ସେହି ଭଗବାନ ହେଉଛନ୍ତି ଜ୍ୟୋତିଃ ସ୍ୱରୂପ ବିଶ୍ୱବନ୍ଦନୀୟ ଧ୍ରୁବ, ଶିବ, ସତ୍ୟ, ନିତ୍ୟ ନିରଞ୍ଜନ ଓ ଏକମେବ ଅଦ୍ୱିତୀୟ। ତାଙ୍କର ପ୍ରତି ଲୋମକୂପରେ କୋଟି କୋଟି ବିଶ୍ୱବ୍ରହ୍ମାଣ୍ଡ ବିରାଜମାନ। ସେ ପୁଣି ସର୍ବଦା ଚରାଚରରେ ବ୍ୟାପ୍ତ ଓ ଆତ୍ମାରୂପେ ପଞ୍ଚଭୂତରେ ବିଦ୍ୟମାନ। ସେ ଅରୂପ ହେଲେ ମଧ୍ୟ ପ୍ରତ୍ୟେକ ସ୍ଥଳରେ ବିଦ୍ୟମାନ। କବି ସେହି ଜଗତଜୀବନ, ଚରାଚର ମୂଳାଧାର ଜଗତ୍ ପିତାଙ୍କୁ ନମସ୍କାର କରିଛନ୍ତି, ତାଙ୍କର ଏହି ରହସ୍ୟମୟ ସୃଷ୍ଟିପାଇଁ 'ଜ୍ୟୋତିଃ ସ୍ୱରୂପ' କବିତାରେ।[୬୪] କବି ସେହି ରୂପହୀନ ବିଶ୍ୱବିଧାତାଙ୍କୁ କେବେ ଦେଖିନାହାନ୍ତି କିମ୍ବା ତାଙ୍କର ଆଶ୍ରୟସ୍ଥଳ କେଉଁଠାରେ ଜାଣି ନାହାନ୍ତି ମଧ୍ୟ। ତଥାପି ଏକାଗ୍ର ଚିତ୍ତରେ ତାଙ୍କ ମନ ସେହି ଅରୂପଙ୍କୁ ଧ୍ୟାନ କରୁଛି।

ଦେଖିନାହିଁ ଶୁଣିନାହିଁ ତୁମ୍ଭେ ଅଛ କାହିଁ
ନିୟତ ମୋ ଚିତ୍ତ ତୁମ୍ଭ ପାଶେ ଅଛି ଧାଇଁ।
(ତୁମ୍ଭଙ୍କୁ ଅନାଇ-ଅବସର ବାସରେ)

କବି ଶେଷରେ ସେହି ପରମ କାରୁଣିକଙ୍କ ନିକଟରେ ଆତ୍ମ-ସମର୍ପଣ କରିଛନ୍ତି। ଦୟାମୟଙ୍କୁ ପ୍ରାର୍ଥନା କରିଛନ୍ତି ତାଙ୍କର ସଞ୍ଜୀବନୀ ସୁଧାଧାରା କବିଙ୍କ ଶୁଷ୍କ ହୃଦୟରେ

ଢାଳି ଦେବାପାଇଁ। ସେହି ପରଶମଣି ସ୍ପର୍ଶରେ ତାଙ୍କର ପାଷାଣ ଶରୀର କାଞ୍ଚନ ରୂପ ନେବ। ତାଙ୍କର ଇଚ୍ଛାହିଁ କବିଙ୍କ ଇଚ୍ଛା ଓ ତାଙ୍କରି ନିର୍ଦ୍ଦେଶିତ ମାର୍ଗରେ ସେ ଗତି କରିବାକୁ ବଦ୍ଧପରିକର। କବି ନିଜକୁ ସଂପୂର୍ଣ୍ଣରୂପେ ସେହି ଇଚ୍ଛାମୟଙ୍କ ପାଦତଳେ ଢାଳି ଦେଇ ନିଜର ଅସ୍ତିତ୍ୱ ଭୁଲି ଯାଇଛନ୍ତି। ଯେଣୁ ସେ ନିଜେ ସ୍ୱୟଂ ବିଧାତାଙ୍କର ଦାସ, ତେଣୁ ତାଙ୍କର ନିଜ ପାଇଁ କୌଣସି ବ୍ୟାକୁଳ ଭାବ ନାହିଁ।(୬୫) ଜୀବନର ଶେଷ ମୁହୂର୍ତ୍ତରେ ସେହି କରୁଣାମୟଙ୍କ କରୁଣାକୁ ପାଥେୟ କରି ଶେଷ ନିଃଶ୍ୱାସ ତ୍ୟାଗ କରିବାକୁ ଇଚ୍ଛା ପ୍ରକାଶ କରିଛନ୍ତି।

କବି ଫକୀରମୋହନଙ୍କର ହିନ୍ଦୁଧର୍ମ ପ୍ରତି ଗଭୀର ବିଶ୍ୱାସ ଥିଲା। ତାଙ୍କର ଏହି ଉଦାର ଦୃଷ୍ଟିଭଙ୍ଗୀ କବିତାଗୁଡ଼ିକରେ ପ୍ରତିଫଳିତ। "ଫକୀରମୋହନଙ୍କର ଉଦାର ମାନବିକତା ସଙ୍ଗେ ଯୁକ୍ତ ଥିଲା ତାଙ୍କ ଧର୍ମପରାୟଣତା ଓ ଧର୍ମଭାବ। କିନ୍ତୁ ଧର୍ମକ୍ଷେତ୍ରରେ ଏବଂ ବ୍ୟକ୍ତିଗତ ଧର୍ମବିଶ୍ୱାସରେ ମଧ ସେ ସେହି ଉଦାରନୀତି ଦ୍ୱାରା ପ୍ରଭାବିତ ହୋଇଥିଲେ। ସନାତନ ହିନ୍ଦୁଧର୍ମ ପ୍ରତି ତାଙ୍କର ପ୍ରଗାଢ଼ ଭକ୍ତି ଥିଲା।(୬୬) ସେ ଥିଲେ ଏକେଶ୍ୱରବାଦର ଉପାସକ ଓ ପରଂବ୍ରହ୍ମଙ୍କ ନିକଟରେ ଆତ୍ମସମର୍ପଣରେ ମାନବର ଚିରମୁକ୍ତି ହୁଏ ବୋଲି ସେ ବିଶ୍ୱାସ କରୁଥିଲେ। ତେଣୁ ଫକୀରମୋହନ ସାହିତ୍ୟିକଶୈଳୀରେ ସ୍ୱକୃତ ଅପରାଧ ପାଇଁ ନାଜର ନଟବରଙ୍କୁ ସେହି ପରମେଶ୍ୱରଙ୍କ ନିକଟରେ ଆତ୍ମ ସମର୍ପଣ କରିବା ପାଇଁ ବାଧ କରିଛନ୍ତି।(୬୭) ମଙ୍ଗରାଜଙ୍କ ପରି ନରପିଶାଚ ବ୍ୟକ୍ତି-ସ୍ୱାର୍ଥବାଦୀକୁ ମୃତ୍ୟୁପୂର୍ବରୁ ତୁଳସୀ ଚଉଁରା ତଳେ ଈଶ୍ୱରଙ୍କ ନାମ ସ୍ମରଣ କରାଇଛନ୍ତି।(୬୮)

ଫକୀରମୋହନଙ୍କ ସୃଷ୍ଟିକୁ ଆଲୋଚନା କଲେ ଅନେକ ସ୍ଥଳରେ ତାଙ୍କର ଧର୍ମପ୍ରତି ଥିବା ଉଦାର ଦୃଷ୍ଟିକୋଣର ପରିଚୟ ମିଳିଥାଏ। ଜୀବନର ଶେଷାବସ୍ଥାରେ ପରମେଶ୍ୱରଙ୍କୁ ପାଇବାର ଅଦମ୍ୟ ଲାଳସା ତାଙ୍କୁ ଏକ ଭକ୍ତକବି ଭାବରେ ପରିଚିତ କରାଇପାରିଛି। ତାଙ୍କର ଆଧାତ୍ମିକ ଭାବନା ସମ୍ବଳିତ କବିତାରାଜି ଏକ ଅସହାୟ ମାନବର କରୁଣ ଆତ୍ମଲିପିରେ ପର୍ଯ୍ୟବସିତ।

## ଫକୀରମୋହନଙ୍କ କାବ୍ୟ ଜଗତର ସ୍ଥୂଳ ପରିଚୟ

ଫକୀରମୋହନ ପ୍ରଥମେ ଅନୁବାଦ କାର୍ଯ୍ୟରେ ହାତ ଦେଇ ମହାଭାରତ, ରାମାୟଣ ପ୍ରଭୃତି ଅନୁବାଦ କରିଥିଲେ ବୋଲି ପୂର୍ବବର୍ତ୍ତୀ ପରିଚ୍ଛେଦରେ ଆଲୋଚନା କରାଯାଇଛି। ସେଗୁଡ଼ିକ ତାଙ୍କ ମୌଳିକ ସୃଷ୍ଟି ହୋଇନଥିବାରୁ ସେ ସଂପର୍କରେ ବିସ୍ତୃତ ଆଲୋଚନା କରିବାର କୌଣସି ଆବଶ୍ୟକ ନାହିଁ। ଫକୀରମୋହନ ମୁଖ୍ୟତଃ ଯେଉଁ

କବିତାଗୁଡ଼ିକ ରଚନା କରିଛନ୍ତି, ତାହା ୧. ପୁଷ୍ପମାଳା, ୨. ଅବସରବାସରେ, ୩. ପୂଜାଫୁଲ, ୪. ଧୂଳି ଓ ପରିଶିଷ୍ଟ କବିତାବଳୀରେ ସ୍ଥାନ ପାଇଛି। ପ୍ରକାଶିତ ଓ ବର୍ତ୍ତମାନ ସୁଦ୍ଧା ସଂଗୃହୀତ ହୋଇଥିବା କବିତାଗୁଡ଼ିକର ସଂଖ୍ୟା ହେଲା ତିନିଶତ ଛପନ। ତନ୍ମଧ୍ୟରୁ 'ପୁଷ୍ପମାଳା'ରେ ପଞ୍ଚାବନଟି କବିତା, 'ଅବସରବାସରେ'ରେ ଏକ ଶତ ଛୟାନବେଟି କବିତା 'ପୂଜାଫୁଲ'ରେ ଛବିଶଟି କବିତା, 'ଧୂଳି'ରେ ତେତିଶଟି କବିତା ଓ ପରିଶିଷ୍ଟ କବିତାବଳୀରେ ଛୟାଳିଶଟି କବିତା ସ୍ଥାନ ପାଇଛି।

'ପୁଷ୍ପମାଳା' ପ୍ରଥମେ ପ୍ରକାଶ ପାଏ ୧୮୯୪ ମସିହାରେ ଓ 'ଉପହାର' ୧୮୯୫ ମସିହାରେ। ପରବର୍ତ୍ତୀ ସମୟରେ ଶ୍ରୀ ମୋହିନୀମୋହନ ସେନାପତି 'ପୁଷ୍ପମାଳା' ଓ 'ଉପହାର'କୁ ଏକତ୍ରିତ କରି 'ପୁଷ୍ପମାଳା' ନାମରେ ୧୯୨୫ ମସିହାରେ ପ୍ରକାଶ କରନ୍ତି। 'ଅବସରବାସରେ' ପ୍ରଥମେ ୧୯୦୮ ମସିହାରେ ପ୍ରକାଶ ପାଏ ଓ ପରବର୍ତ୍ତୀ ସମୟରେ ଏକାଧିକ ସଂସ୍କରଣ ହୋଇଅଛି। 'ପୂଜାଫୁଲ'ର ୧ମ ସଂସ୍କରଣ ହୁଏ ୧୯୧୨ ରେ ଓ ସେହି ବର୍ଷ 'ଧୂଳି' ସଂକଳନ ପ୍ରକାଶ ପାଏ। ଏହି ସଂକଳନ ଓ ପରିଶିଷ୍ଟ କବିତାବଳୀରେ ଫକୀରମୋହନଙ୍କ ଆଉ କେତୋଟି କବିତା ସ୍ଥାନ ପାଇନାହିଁ ବୋଲି ଗବେଷକ ଡଃ ନଟବର ସାମନ୍ତରାୟ ତାଙ୍କର 'ବ୍ୟାସକବି ଫକୀରମୋହନ' ଗ୍ରନ୍ଥରେ ପ୍ରକାଶ କରିଅଛନ୍ତି।[୬୯] 'ବଡ଼ସାନ' ଓ 'ଧୋବା' କବିତା ଦୁଇଟି ଫକୀରମୋହନଙ୍କ ଗ୍ରନ୍ଥାବଳୀରେ ସ୍ଥାନ ପାଇନାହିଁ। ଏହି କବିତା ଦୁଇଟି ଯଥାକ୍ରମେ ମୁକୁର ୧୨/୧ ଏପ୍ରିଲ ୧୯୧୭ ଓ ମୁକୁର ୧୧/୬ ସେପ୍ଟେମ୍ବର ୧୯୧୬ରେ ପ୍ରକାଶ ପାଇଥିଲା।

ଏହାବ୍ୟତୀତ ଫକୀରମୋହନଙ୍କ 'ଉତ୍କଳ ଭ୍ରମଣଂ'ର ପହିଲା ଗସ୍ତ- ୧୮୯୨ ମାର୍ଚ୍ଚ, ଦୁସରା ଗସ୍ତ ୧୮୯୨ ଜୁଲାଇ : ତିସରାଗସ୍ତ ୧୯୧୬ ଡିସେମ୍ବରରେ ପ୍ରକାଶ ପାଇଥିଲା। ବୁଦ୍ଧଦେବଙ୍କ ଜୀବନଚରିତ ଅବଲମ୍ବନରେ ରଚିତ 'ବୌଦ୍ଧାବତାର କାବ୍ୟ' ୧୯୦୯ ମସିହାରେ ପ୍ରକାଶିତ ହୋଇଥିଲା। ଏହା ଏକ ଅନୁବାଦ କାବ୍ୟ ହେଲେ ମଧ୍ୟ ଫକୀରମୋହନଙ୍କ କବି ପ୍ରତିଭାର ଉଜ୍ଜ୍ୱଳ ଦୃଷ୍ଟାନ୍ତ ଏଥିରେ ନିହିତ।

ଫକୀରମୋହନଙ୍କ କାବ୍ୟଜଗତ ବିଭିନ୍ନ ସ୍ୱାଦର ଏକ ବିଚିତ୍ର ସୃଷ୍ଟି। ଗଦ୍ୟସାହିତ୍ୟରେ ଅପ୍ରତିଦ୍ୱନ୍ଦୀ ସ୍ରଷ୍ଟା କାବ୍ୟ କବିତା ରଚନା କ୍ଷେତ୍ରରେ ଯେ ଏକ ବିଶିଷ୍ଟ ସ୍ଥାନ ଅଧିକାର କରିପାରିଛନ୍ତି କହିବା ବାହୁଲ୍ୟ ମାତ୍ର। ତତ୍‌କାଳୀନ ସମାଜର ସୂକ୍ଷ୍ମାତିସୂକ୍ଷ୍ମ ପଦାର୍ଥ ତାଙ୍କ କବିଦୃଷ୍ଟିର ଅନ୍ତରାଳରେ ରହିପାରି ନାହିଁ। ଗଦ୍ୟ ସାହିତ୍ୟ ସୃଷ୍ଟିରେ ସେ ଯେପରି ଗ୍ରାମ ସ୍ତ୍ରୀ ଲୋକମାନଙ୍କର ପୋଖରୀ ତୁଠର ଆଳାପ ଆଲୋଚନାଠାରୁ ଆରମ୍ଭ କରି ଅତୀତ

ଇତିହାସ ପର୍ଯ୍ୟନ୍ତ ସମସ୍ତ ବିଷୟ ତନ୍ନ ତନ୍ନ କରି ଅନ୍ୱେଷଣ କରିଛନ୍ତି, ଅନୁରୂପ ଭାବରେ ତାଙ୍କର କବିତା ଦିଗ୍‌ବଳୟ ପ୍ରସାରିତ ହୋଇଯାଇଛି ସମାଜର ପ୍ରତ୍ୟେକ ଦିଗକୁ। ଉଭୟ ଗୁଣାତ୍ମକ ଓ ପରିମାଣାତ୍ମକ ଦୃଷ୍ଟିକୋଣରୁ ତାଙ୍କର କାବ୍ୟଜଗତ ବିଚିତ୍ର ବର୍ଣ୍ଣବିଭାରେ ବିଭାସିତ।

## ସରସ୍ୱତୀ ଉପାଧିପ୍ରାପ୍ତି

୧୯୧୬ ମସିହାରେ ସୁରତରଙ୍ଗିଣୀ ସାରସ୍ୱତ ସମିତି ତରଫରୁ ବାମଣ୍ଡାରେ ଏକ ସଭା ଅନୁଷ୍ଠିତ ହୋଇଥିଲା। ଏହି ସଭାରେ ଫକୀରମୋହନଙ୍କ ପ୍ରତିଭାକୁ ସମ୍ମାନ କରିବାକୁ ଯାଇ ତାଙ୍କୁ ସରସ୍ୱତୀ ଉପାଧି ପ୍ରଦାନ କରାଯାଇଥିଲା। ଫକୀରମୋହନ ନିଜେ ଲେଖିଛନ୍ତି– "୧୯୧୬ ଖ୍ରୀଷ୍ଟାବ୍ଦରେ ମୁଁ ବାମଣ୍ଡାରୁ 'ସରସ୍ୱତୀ' ଉପାଧି ପାଇଅଛି। 'ସୁରତରଙ୍ଗିଣୀ ସାରସ୍ୱତ ସମିତି' ମୋତେ ଏହି ଉପାଧିରେ ଭୂଷିତ କରିଅଛନ୍ତି। ରାଜା ସଚ୍ଚିଦାନନ୍ଦ ତ୍ରିଭୁବନ ଦେବ ଏହି ସଭାର ସଭାପତି ଥିଲେ।"[୭୦] ସେ ଉପାଧି ପାଇଁ ଲାଳାୟିତ ନଥିଲେ ମଧ୍ୟ ଅନେକ ଉପାଧି ତାଙ୍କ ପଛରେ ଯୋଡ଼ି ହୋଇଯାଉଥିଲା।

## ବ୍ୟାସକବି ଉପାଧିର ତାତ୍ପର୍ଯ୍ୟ

ଫକୀରମୋହନଙ୍କୁ କିଏ ଓ କେବେ ବ୍ୟାସକବି ଉପାଧିରେ ଭୂଷିତ କଲା ତାର ପ୍ରମାଣ ଆମ ପାଖରେ ନାହିଁ କିମ୍ବା ଫକୀରମୋହନ ତାଙ୍କ ଆତ୍ମଜୀବନ ଚରିତରେ କିଛି ଉଲ୍ଲେଖ କରିନାହାନ୍ତି। ମାତ୍ର ବ୍ୟାସଦେବ ଯେପରି ମହାଭାରତ ରଚନା କରିଥିଲେ ଫକୀରମୋହନ ସେହିପରି ମହାଭାରତ ଆଦି ଅନୁବାଦ କରିଥିବାରୁ ତାଙ୍କୁ ଏହି ଉପାଧି ଆପେ ଆପେ ମିଳିଯାଇଛି ବୋଲି ବିଶ୍ୱାସ। ମାୟାଧର ମାନସିଂ କୁହନ୍ତି– "ଯଦିଓ ଏକା ଏକା ରାମାୟଣ ଓ ମହାଭାରତ ଅନୁବାଦ କରିପାରିଥିବାରୁ ହିଁ (ଏବଂ ଯାହା ଜଣେ ଲୋକ ପକ୍ଷରେ ଯେ ଏକ ଅସାଧାରଣ ସାହିତ୍ୟିକ ସିଦ୍ଧି, ଏଥିରେ ସନ୍ଦେହ ନାହିଁ) ଦେଶବାସୀ କବିଙ୍କୁ ବୃଦ୍ଧ ବୟସରେ ବ୍ୟାସକବି ରୂପକ ଲୋଭନୀୟ ପଦବୀରେ ତାଙ୍କୁ ସମ୍ବୋଧିତ କରିବାକୁ ଲାଗିଲେ।[୭୧]

## ଉପସଂହାର

ବ୍ୟାସକବି ଫକୀରମୋହନଙ୍କର ଜୀବନ ଏକ ସଂଗ୍ରାମମୟ ଜୀବନ। ଅନେକ ଉତ୍‌ଥାନ ପତନ ଦେଇ ଗତି କରିଥିଲେ ମଧ୍ୟ ଶେଷପର୍ଯ୍ୟନ୍ତ ସେ ଲେଖନୀ ଚାଳନାରୁ ବିରତ ନଥିଲେ। ପିତୃମାତୃହୀନ ଅନାଥ ଶିଶୁ ପିଲାଟି ଦିନରୁ ଉଚ୍ଚଶିକ୍ଷାରୁ ବଞ୍ଚିତ ହୋଇ ସଂଗ୍ରାମ କ୍ଷେତ୍ରକୁ ଓହ୍ଲାଇ ଯାଇଥିଲେ। ଅଝାଳସିଲାଇ କାର୍ଯ୍ୟଠାରୁ ଆରମ୍ଭକରି ଶାସକ

ଜୀବନ ପର୍ଯ୍ୟନ୍ତ ସେ ଅନେକ ଅନୁଭୂତିର ଅଧିକାରୀ ହୋଇଥିଲେ। ଶାସକ ଜୀବନରେ ସେ ଯେପରି ଥିଲେ ଜଣେ ସୁଶାସକ, ଶିକ୍ଷକତ ଜୀବନରେ ମଧ୍ୟ ସେ ଥିଲେ ଅନୁରୂପ ଭାବରେ ଜଣେ ସୁଶିକ୍ଷକ। ଓଡ଼ିଆ ଭାଷା ଓ ସାହିତ୍ୟର ଉନ୍ନତି ପାଇଁ ଛାପାକଳ ପ୍ରତିଷ୍ଠା, ପତ୍ରିକା ପ୍ରକାଶ ଓ ପାଠ୍ୟପୁସ୍ତକ ପ୍ରଣୟନ କରି ମାତୃଭାଷା ପ୍ରତି ନିଜର ପ୍ରତିବଦ୍ଧତା ପ୍ରକାଶ କରିଛନ୍ତି। ଜୀବନର ତିକ୍ତ ମଧୁର ଅନୁଭୂତି ତାଙ୍କୁ ସାହିତ୍ୟ ସୃଷ୍ଟିପାଇଁ ପ୍ରେରଣା ଯୋଗାଇଛି। ଅବସର ପରେ ସେ ସୃଷ୍ଟି କରିଯାଇଛନ୍ତି ରାଶି ରାଶି କବିତା ଓ ସମୃଦ୍ଧ ଗଦ୍ୟସାହିତ୍ୟ। ଓଡ଼ିଆ ସାହିତ୍ୟର ଇତିହାସରେ ଫକୀରମୋହନ ଏକ କାଳଜୟୀ ସ୍ରଷ୍ଟା ଭାବରେ ନିଜକୁ ପ୍ରତିଷ୍ଠିତ କରିଯାଇପାରିଛନ୍ତି।



## ସହାୟକ ସୂଚୀ


୧. ଓଡ଼ିଆ ଉପନ୍ୟାସ - ଡଃ. କୃଷ୍ଣଚରଣ ବେହେରା, ପୃ-୧୮୧, ୨ୟ ସଂ-୧୯୮୧, ଫ୍ରେଣ୍ଡସ୍ ପବ୍ଲିଶର୍ସ, ବିନୋଦବିହାରୀ, କଟକ।

୨. ଆତ୍ମଜୀବନ ଚରିତ – ଫକୀରମୋହନ ସେନାପତି ପୃ-୬-୭। ୬ଷ୍ଠ ମୁଦ୍ରଣ-୧୯୬୧। କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର।

୩. ଏଜନ୍- ପୃ-୧୫

୪. ଏଜନ୍- ପୃ-୧୯-୨୦

୫. ଏଜନ୍- ପୃ-୨୪

୬. ଏଜନ୍- ପୃ-୪୪

୭. ଏଜନ୍- ପୃ-୭୦-୭୧

୮. ଏଜନ୍- ପୃ-୭୧

୯. ଆଧୁନିକ ଓଡ଼ିଆ ଗଦ୍ୟ ସାହିତ୍ୟ – ଶ୍ରୀନିବାସ ମିଶ୍ର, ପୃ-୧୩୭, ୧ମ ପ୍ରକାଶ -୧୯୭୮, ବିଦ୍ୟାପୁରୀ, କଟକ

୧୦. General Report on Public Instruction with lower Provinces of Bengal Presidency- 1864-65, Page-250.

୧୧. IbId– p-250

୧୨. ଉତ୍କଳ ପୁତ୍ର - ୧/୭ ସଂଖ୍ୟା ୧୬/୭/୭୩।

୧୩. ଆତ୍ମଜୀବନ ଚରିତ – ଫକୀରମୋହନ ସେନାପତି- ପୃ-୬୬, ୬ଷ୍ଠ ମୁଦ୍ରଣ-୧୯୬୧, କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର।

୧୪. ଏଜନ୍- ପୃ-୬୭

୧୫. ଏଜନ୍- ପୃ-୫୬-୫୭

୧୬. ଏଜନ୍- ପୃ-୫୮

୧୭. ଓଡ଼ିଆ ସାହିତ୍ୟର ଇତିହାସ (୧୮୦୩-୧୯୨୦) ଡଃ ନଟବର ସାମନ୍ତରାୟ, ପୃ-୩୭୬। ୨ୟ ସଂ- ୧୯୮୩, କଳିଙ୍ଗ ମୁଦ୍ରଣୀ, ନିମଚଉଡ଼ି, କଟକ, ପ୍ରକାଶକ- ଡଃ ନଟବର ସାମନ୍ତରାୟ, ବାଣୀଭବନ, ସାମନ୍ତରାପୁର, ଭୁବନେଶ୍ୱର।

୧୮. ଆତ୍ମଜୀବନ ଚରିତ-'ଫକୀର ମୋହନ ସେନାପତି' ପୃ-୭୯, ୬ଷ୍ଠ ମୁଦ୍ରଣ-୧୯୬୧, କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର।

୧୯. ଏଜନ୍, ପୃ- ୯୩-୯୪
୨୦. ଏଜନ୍, ପୃ- ୧୧୬
୨୧. ଏଜନ୍, ପୃ- ୧୩୮
୨୨. ଏଜନ୍, ପୃ- ୧୭୪-୭୫
୨୩. ଏଜନ୍, ପୃ- ୨୧୨-୧୩
୨୪. ଉପରୋକ୍ତ ସମୟଗୁଡ଼ିକ ଡଃ. ନଟବର ସାମନ୍ତରାୟଙ୍କ 'ବ୍ୟାସକବି ଫକୀର ମୋହନ' ପୁସ୍ତକର ପୃ- ୧୭୮-୭୯ରୁ ଉଦ୍ଧୃତ। ୨ୟ ସଂ- ୧୯୭୨। ପ୍ରକାଶକ-ପ୍ରତାପରୁଦ୍ର ଦେବ, ଲାବଣ୍ୟଭବନ, ଭୁବନେଶ୍ୱର-୨।
୨୫. ଆତ୍ମଜୀବନ ଚରିତ, 'ଫକୀରମୋହନ ସେନାପତି' ପୃ-୨୧୩, ୬ଷ୍ଠ ମୁଦ୍ରଣ-୧୯୬୧, କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର।
୨୬. ଏହି ସମୟଗୁଡ଼ିକ 'ବ୍ୟାସକବି ଫକୀର ମୋହନ'- ଡଃ. ନଟବର ସାମନ୍ତରାୟ ପୃ- ୧୭୯-୧୮୮ ମଧ୍ୟରୁ ଉଦ୍ଧୃତ। ପ୍ରକାଶକ- ପ୍ରତାପରୁଦ୍ର ଦେବ, ଲାବଣ୍ୟଭବନ, ଭୁବନେଶ୍ୱର-୨।
୨୭. ଆତ୍ମଜୀବନ ଚରିତ- ଫକୀରମୋହନ ସେନାପତି, ପୃ-୧୮୫, ୬ଷ୍ଠ ମୁଦ୍ରଣ-୧୯୬୧। କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର।
୨୮. ସମାଲୋଚନାର ଦିଗଦିଗନ୍ତ- ଡଃ ଖଗେଶ୍ୱର ମହାପାତ୍ର, ପୃ-୧୫୬-୫୭, ୧ମ ପ୍ରକାଶ- ୧୯୭୨। ଫ୍ରେଣ୍ଡସ୍ ପବ୍ଲିଶର୍ସ, ବିନୋଦବିହାରୀ, କଟକ।
୨୯. ଓଡ଼ିଆ ସାହିତ୍ୟର ସାଂସ୍କୃତିକ ବିକାଶଧାରା- ଚିତ୍ତରଞ୍ଜନ ଦାସ, ପୃ-୨୩୦, ୧ମ ସଂ- ୧୯୮୧। ଓଡ଼ିଶା ରାଜ୍ୟ ପାଠ୍ୟପୁସ୍ତକ ପ୍ରଣୟନ ଓ ପ୍ରକାଶନ ସଂସ୍ଥା, ଭୁବନେଶ୍ୱର।
୩୦. ଆତ୍ମଜୀବନ ଚରିତ– ଫକୀରମୋହନ ସେନାପତି 'ପୃ-୧୧୨', ୬ଷ୍ଠ ସଂ-୧୯୬୧, କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର।
୩୧. ଫକୀରମୋହନ ଗ୍ରନ୍ଥାବଳୀ– ପୃ-୩୩୬, ୨ୟ ସଂ- ୧୯୬୩, ୧ମ ଖଣ୍ଡ, କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର, ବାଲୁବଜାର, କଟକ।
୩୨. ଏଜନ୍, ପୃ-୩୩୬।
୩୩. ଆତ୍ମଜୀବନ ଚରିତ- ଫକୀରମୋହନ ସେନାପତି, ପୃ-୬୧, ୬ଷ୍ଠ ମୁଦ୍ରଣ-୧୯୬୧, କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର।

୩୪. କାଟିଛି ମୁଁ ବାଲ୍ୟକାଳ ରୋଗ ଭୋଗି ଭୋଗି
ଅନାହାରେ ଅନିଦ୍ରାରେ ବସିଥାଅ ଜଗି
ରୋଗ ଯନ୍ତଣାରେ ଯେବେ ହୁଏ ମୁଁ ଅସ୍ଥିର
ବହି ଯାଉଥାଏ ତୁମ୍ଭ ନେତ୍ରୁଁ ଅଶ୍ରୁନୀର

× × ×

ଜୀବନଟା ଯାକ ଭୁଞ୍ଜିଥିଲ ନାନା ଦୁଃଖ
ବିଶେଷରେ ଭୋଗିଥିଲ କଷ୍ଟପୁତ୍ର ଶୋକ।
ଦିନେ ହେଲେ ମୁଁ ତୁମ୍ଭର ସେବା କରିନାହିଁ
କରିବି ବିଳାପ ଆଜୀବନ ସେଥିପାଇଁ। (ପିତାମହୀ)
ଫ. ମୋ. ଗ୍ରନ୍ଥାବଳୀ – ୧ମ ଖଣ୍ଡ, ପୃ-୩୪୧, ୨ୟ ସଂ- ୧୯୬୩।

୩୫. ଆତ୍ମଜୀବନ ଚରିତ- ଫକୀରମୋହନ ସେନାପତି, ପୃ-୧୯୪-୯୫

୩୬. କାବ୍ୟ ସମ୍ବାଦ- ଅଧ୍ୟାପକ ଦାଶରଥି ଦାସ, ପୃ-୧୬୩। ୧ମ ପ୍ରକାଶ- ୧୯୭୩, ଫ୍ରେଣ୍ଡସ୍ ପବ୍ଲିଶର୍ସ, ବିନୋଦ ବିହାରୀ, କଟକ

୩୭. ଓଡ଼ିଆ ସାହିତ୍ୟର ଇତିହାସ (୧୮୦୩-୧୯୨୦) ଡଃ ନଟବର ସାମନ୍ତରାୟ, ପୃ-୩୭୭, ୨ୟ ସଂ- ୧୯୮୩। ପ୍ରକାଶକ- ଡଃ ନଟବର ସାମନ୍ତରାୟ, ବାଣୀଭବନ ସାମନ୍ତରାପୁର, ଭୁବନେଶ୍ୱର।

୩୮. ଫକୀରମୋହନ ସମୀକ୍ଷା- ସୁରେନ୍ଦ୍ର ମହାନ୍ତି, ପୃ-୨୧୨, ନିଉ ଷ୍ଟୁଡେଣ୍ଟସ୍ ଷ୍ଟୋର, କଟକ-୧୯୭୨।

୩୯. ଛାୟାପରି ପାଶେ ପାଶେ ଥିଲା ଅନୁସରି
ନିମେଷ ବିଚ୍ଛେଦ ମଣୁଥିଲି ଯୁଗ ସରି
କର୍ମ ବଶେ ବିଦେଶକୁ
ଗଲେ ବୁଝାଏ ମନକୁ
ବାହୁଡିବି ଦେଶେ ପୁଣି ହେବ ସମ୍ମିଳନ
ଘରେ ଯାଇ ଦେଖିବି ଯେ ସେ ହାସ୍ୟ ବଦନ
(ପୁଣି କି ଦେଖିବି ସେହି ସହାସ୍ୟ ବଦନ)
ଫ.ମୋ. ଗ୍ରନ୍ଥାବଳୀ – ୧ମ ଭାଗ, ପୃ-୨୪୯, ୨ୟ ସଂ- ୧୯୬୩, କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର, ବାଲୁବଜାର, କଟକ।

୪୦. ସଞ୍ଜିବନୀ ମନ୍ତ୍ର ଯିବି କିପରି ପାଶୋରି
ସହଜେ କି ଛିଡ଼େ ସ୍ନେହ-ବନ୍ଧନର ଡୋରି
ନଥିଲା ସେ ଜଳଛାୟା
ଦର୍ପଣର ପ୍ରତିକାୟା
ମାତ୍ର ଛାୟା ଚିତ୍ର-ଯନ୍ତ୍ରେ ସ୍ୱରୂପ ଅଙ୍କନ
ହୃଦୟେ ଅଙ୍କିତ ଅଛି ସେ ହାସ୍ୟ ବଦନ।
(ପୁଣି କି ଦେଖିବି ସେହି ସହାସ୍ୟ ବଦନ)

ଫ.ମୋ.ଗ୍ର (୧ମ), ପୃ-୨୫୦

୪୧. ହୃଦୟ ସାଗରେ ଭାସୁଥିଲା ପ୍ରେମତରୀ
ନୃତ୍ୟ କରୁଥିଲା ମେଲି ଆନନ୍ଦ ଲହରୀ
କାହିଁ ଘେନିଗଲା ବାୟୁ ତରଙ୍ଗେ ଭସାଇ
ହସି ହସି ଗଲା ମୋତେ କନ୍ଦାଇ କନ୍ଦାଇ
(ହସି ହସି ଗଲା ମୋତେ କନ୍ଦାଇ କନ୍ଦାଇ)

ଫ.ମୋ.ଗ୍ର (୧ମ ଭାଗ)– ପୃ-୨୫୨

୪୨. ଏଜନ୍-ପୃ-୨୫୯

୪୩. କାବ୍ୟ ସମ୍ବାଦ- ଅଧ୍ୟାପକ ଦାଶରଥି ଦାସ, ପୃ-୧୬୪
୧ମ ପ୍ର- ୧୯୭୩। ଫ୍ରେଣ୍ଡସ୍ ପବ୍ଲିଶର୍ସ, ବିନୋଦ ବିହାରୀ, କଟକ

୪୪. ଫ.ମୋ.ଗ୍ରନ୍ଥାବଳୀ-୧ମ ଭାଗ, 'ମୋ କ୍ଷୁଦ୍ରତାରା'- ପୃ-୨୬୦।

୪୫. ରାତିବେଳେ ଜନଶୂନ୍ୟ ହେଲେ ଉପବନ
କେତେ ରୂପ ସୋହାଗ ସେ କରେ ଫେଡ଼ି ମନ।
ପ୍ରବଳ ପବନ ବେଗେ ଗଲା କାହିଁ ଉଡ଼ି
ସାନ ସାନ ଫୁଲ ଦୁଇ ଛନ୍ତି ତଳେ ପଡ଼ି
(ସାହାଡ଼ା ଗଛର କ୍ରନ୍ଦନ)

ଫ.ମୋ.ଗ୍ରନ୍ଥାବଳୀ-୧ମଭାଗ-ପୃ-୨୬୨। ୨ୟ ସଂ-୧୯୬୩। କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର, ବାଲୁବଜାର କଟକ।

୪୬. ଓଡ଼ିଆ ସାହିତ୍ୟ ଓ ସମାଲୋଚନାର ବିକାଶ ଧାରା –. ବୈରାଗୀ ଚରଣ ଜେନା। ପୃ-୮୬-୮୭। ୧ମ ପ୍ର- ୧୯୭୬। ବିଜୟ ବୁକ୍ ଷ୍ଟୋର, ବ୍ରହ୍ମପୁର-୧।

୪୭. ଫ.ମୋ.ଗ୍ରନ୍ଥାବଳୀ ୧ମ ଭାଗ- ପୃ-୩୩୨।

୪୮. କବିତା ଯୁଗେ ଯୁଗେ- ଡଃ ନିତ୍ୟାନନ୍ଦ ଶତପଥୀ। ପୃ-୧୨୫। ୧ମ ସଂ- ୧୯୭୪। ଗ୍ରନ୍ଥମନ୍ଦିର, ବିନୋଦବିହାରୀ, କଟକ
୪୯. ଆଧୁନିକ ଓଡ଼ିଆ କାବ୍ୟଧାରା (ଆଦିପର୍ବ) ଡଃ ନରେନ୍ଦ୍ରନାଥ ମିଶ୍ର, ପୃ-୨୦୭-୦୮ ୧ମ ସଂ- ୧୯୬୪। ବିଶ୍ୱଭାରତୀ, ଶାନ୍ତିନିକେତନ।
୫୦. ଓଡ଼ିଆ ସାହିତ୍ୟର ଇତିହାସ – ଡଃ. ମାୟାଧର ମାନସିଂ ପୃ-୨୪୬, ୧ମ ସଂ – ଗ୍ରନ୍ଥମନ୍ଦିର, କଟକ।
୫୧. ଆତ୍ମଜୀବନ ଚରିତ – ଫକୀରମୋହନ ସେନାପତି, ପୃ-୨୧୫। ୬ଷ୍ଠ ମୁଦ୍ରଣ- ୧୯୬୧ 'କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର'
୫୨. ସାହିତ୍ୟିକ ଦୀକ୍ଷା ଓ ନିରୀକ୍ଷା- ଅଧ୍ୟାପକ କ୍ଷେତ୍ରବାସୀ ନାୟକ, ପୃ-୫୩, ୧ମ ପ୍ର-୧୯୭୦, ଫ୍ରେଣ୍ଡସ୍ ପବ୍ଲିଶର୍ସ, ବିନୋଦ ବିହାରୀ କଟକ।
୫୩. ଛନ୍ତି ଯେତେ ଲୋକ ତୁମ୍ଭ ସଙ୍ଗରେ
ଯିବେ ତ ସମସ୍ତେ ଆଗ ପଛରେ
× ×
ଯାହାକୁ ଧରିଛ ଆପଣା ଜ୍ଞାନେ
କାହିଁ ଛାଡ଼ି ଚାଲିଯିବେ ସେମାନେ (ପାନ୍ଥ)
ଫ.ମୋ. ଗ୍ରନ୍ଥାବଳୀ-୧ମ ଭାଗ, ୨ୟ ସଂ-୧୯୬୩, ପୃ-୩୮୭।
୫୪. ଉଲ୍ଲାସ ବିଳାସ ସୁଖ ବିବିଧ ପ୍ରକାର
ବିଳାପ ସନ୍ତାପ କେଉଁଦିନ ହାହାକାର
× × × ×
କେଉଁ ସୂତ୍ରଧର ଛନ୍ତି କେଉଁ ନେପଥ୍ୟରେ
କରାଉ ଅଛନ୍ତି ଅଭିନୟ ହୃଦୟରେ (ଜୀବନ ରଙ୍ଗାଳୟ), ଫ.ମୋ.ଗ୍ର-୧ମ ଭାଗ, ପୃ- ୫୫୮।
୫୫. ଏ କି ବନ୍ଧୁଙ୍କ ବେଭାର ଦେଇ ପୁଷ୍ପ ଉପହାର
ସଜାଇ ପ୍ରତିମା କୀର ଆଣିଛନ୍ତି ମୋତେ
ମୋହ ପକ୍ଷେ ବର୍ତ୍ତମାନ ପଙ୍କ ଚନ୍ଦନ ସମାନ
ସମମାନ ଅପମାନ ନ କରେ ପରତେ (ମୃତ୍ୟୁଶଯ୍ୟାରେ)
ଫ.ମୋ.ଗ୍ରନ୍ଥାବଳୀ-୧ମ ଭାଗ, ପୃ-୪୨୯।
୫୬. କି ଥିଲା କି ଯାଉଅଛି କି ଲୋଡୁଛି ମନ
ବାରିପାରୁ ନାହିଁ ଜାଗରଣ ବା ସ୍ୱପନ :
ଏତେ କିପାଇଁ ଚିନ୍ତିତ
ଉଦାସୀ ହତାଶ ମନ ଆତ୍ମ ପ୍ରତାରିତ (ନିଶୀଥ ସଙ୍ଗୀତ)
ଫ.ମୋ.ଗ୍ରନ୍ଥାବଳୀ- ୧ମ ଭାଗ, ପୃ-୨୬୧

୫୭. ଜୀବନଟାଯାକ ଖେଳିଲି ପଶା
ଜିଣିବି ସର୍ବଦା ଥିଲା ଭରସା
ହାରି ଜିଣି ଗଲା ସମସ୍ତ ଦିନ
ହାରିବା ଜିଣିବା ଦୈବ ଅଧୀନ
ଖେଳିବାକୁ ଆଉ ସାମର୍ଥ୍ୟ ନାହିଁ
ଯାଉଛି ଘରକୁ ଶୋଇବା ପାଇଁ
ଫ.ମୋ.ଗ୍ରନ୍ଥାବଳୀ-୧ମ ଭାଗ- ପୃ-୩୯୫।

୫୮. ଦ୍ରବ୍ୟ ଗୁଣ କର୍ମ ସମବାୟରେ ଶରୀର
ନିତ୍ୟ ପରିବର୍ତ୍ତନଶୀଳ ନୁହେଁ ମଧ୍ୟ ଚିର

× × × ×

ପ୍ରକୃତି ସହିତ କିବା କର୍ମର ସମ୍ବନ୍ଧ
ଉଭୟ ସୂତ୍ରରେ ଜୀବ ଯଥା ନିତ୍ୟ ବଦ୍ଧ
ଅବିରାମ ଆକର୍ଷଣ ଊର୍ଦ୍ଧ୍ୱତନ ଗତି
ନିମ୍ନରୁ ଉତ୍‌ଥିତ ମଧ୍ୟ ନିୟମ ନିୟତି (ଜୀବନର ଗତି)
ଫ.ମୋ.ଗ୍ରନ୍ଥାବଳୀ-୧ମ ଭାଗ, ପୃ-୪୦୪, ୨ୟ ସଂ- ୧୯୬୩, କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର, ବାଲୁବଜାର, କଟକ।

୫୯. ଯୁଗସ୍ରଷ୍ଟା ଫକୀରମୋହନ – ସର୍ବେଶ୍ୱର ଦାସ, ପୃ-୧୨୯, ୭ମ ସଂ- ୧୯୭୨। ଗ୍ରନ୍ଥମନ୍ଦିର, କଟକ।

୬୦. ଫକୀରମୋହନଙ୍କ ସାହିତ୍ୟରେ ନୀତିବୋଧ- ଅନନ୍ତ କୁମାର ପରିଡ଼ା (ପିଏଚ୍.ଡି. ଉପାଧି ୧୯୮୩ ପାଇଁ ନିର୍ମିତ ସନ୍ଦର୍ଭ। ଉତ୍କଳ ବିଶ୍ୱବିଦ୍ୟାଳୟ ଗ୍ରନ୍ଥାଗାରରେ ସଂରକ୍ଷିତ) ପୃ-୨୨୭।

୬୧. ଆହେ ପ୍ରଭୋ ଥିଲେ ମୁହିଁ ଯେଉଁ ଅବସ୍ଥାରେ
ସ୍ଥିର ହୋଇ ରହିଥିବ ଚିତ୍ତ ତୁମ୍ଭଠାରେ

× × × ×

ସଙ୍କଟ ବା ବିପଦରୁ ଉଦ୍ଧାର କାରଣେ
ପିତଃ ପିତଃ ଡାକି ଯେହ୍ନେ ପଡ଼ିବି ଚରଣେ। (ପ୍ରାର୍ଥନା)
ଫ.ମୋ.ଗ୍ରନ୍ଥାବଳୀ-୧ମ ଭାଗ, ପୃ-୨୨୬।

୬୨. ମହାପ୍ରଭୋ! ବେଳେ ମାତ୍ର ଦେଉନ୍ତୁ ଦର୍ଶନ
ଅନ୍ଧକାରେ ହେଉଛିତ ବ୍ୟାକୁଳ ମୋ ମନ

ଯେ ରୂପ ଦେଖିଲେ ପ୍ରଭୋ ! ଲଭିବି ସାନ୍ତ୍ୱନା
ଦେଖାଅ ସେ ରୂପ ମୋତେ, ନକର ବଞ୍ଚନା (ଗୋଟିଏ ପ୍ରାର୍ଥନା)
ଫ.ମୋ.ଗ୍ର – ୧ମ ଭାଗ, ପୃ – ୩୨୩

୬୩. ଆହେ ସୂତ୍ରଧର କାହିଁ ଅଛ ଅନ୍ତରାଳେ ?
ଲଗାଇଛ କେତେ ଲୀଳା ପୃଥ୍ୱୀ-ନାଟ୍ୟଶାଳେ

× × × ×

ଯାହା ବେଶ ଥିଲା କାଲି ଶ୍ରୀରାମ ସମାନ
ଆଜି ସେ ନାଚୁଛି ବେଶ ଧରି ହନୁମାନ (ମାନବ ଅବସ୍ଥା)
ଫ.ମୋ.ଗ୍ରନ୍ଥାବଳୀ – ୧ମ ଭାଗ, ପୃ-୩୩୧

୬୪. 'ଜ୍ୟୋତିଃ' ସ୍ୱରୂପ' – ଫ. ମୋ. ଗ୍ରନ୍ଥାବଳୀ, ୧ମ ଭାଗ, ୨ୟ ସଂ-୧୯୬୩। କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର, ବାଲୁବଜାର, କଟକ। ପୃ-୩୩୧।

୬୫. ତୁମ୍ଭେତ ବିଧାତା ମୋର କରି ଏକଥା ପରତେ
ତେବେ ଆପଣାର ପାଇଁ କିପାଁ ବ୍ୟାକୁଳ ସନ୍ତତେ (ସଞ୍ଜୀବନୀ ସୁଧା)
ଫ.ମୋ.ଗ୍ରନ୍ଥାବଳୀ-୧ମ ଭାଗ, ପୃ-୩୩୦, ୨ୟ ସଂ-୧୯୬୩, କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର, ବାଲୁବଜାର, କଟକ।

୬୬. ସାହିତ୍ୟ-ସଂପାଦନା. କୋଶଳ ସାହିତ୍ୟ ସମାଜ, ସମ୍ବଲପୁର, ପୃ-୬୫, ୧ମ ପ୍ରକାଶ-୧୯୭୨।

୬୭. ମାମୁ-ଫ.ମୋ.ଗ୍ରନ୍ଥାବଳୀ-୨ୟ ଭାଗ, ପୃ-୨୬୮, ୨ୟ ସଂ-କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର, ବାଲୁବଜାର, କଟକ।

୬୮. ଛମାଣ ଆଠଗୁଣ୍ଠ- ଫ.ମୋ. ଗ୍ରନ୍ଥାବଳୀ, ୨ୟ ଭାଗ, ପୃ-୯୪

୬୯. ବ୍ୟାସକବି ଫକୀରମୋହନ- ଡଃ. ନଟବର ସାମନ୍ତରାୟ, ୨ୟ ସଂ- ୧୯୭୨। ଦ୍ରଷ୍ଟବ୍ୟ-ପରିଶିଷ୍ଟ ଫକୀରମୋହନଙ୍କ ରଚନାର ପ୍ରକାଶ ସମୟ ପୃ- ୧୭୮-୯୦। ପ୍ରକାଶକ- ପ୍ରତାପରୁଦ୍ର ଦେବ, ଲାବଣ୍ୟ ଭବନ, ଭୁବନେଶ୍ୱର-୨।

୭୦. ଆତ୍ମଜୀବନ ଚରିତ- ଫକୀରମୋହନ ସେନାପତି, ପୃ-୨୨୦, ୬ଷ୍ଠ ମୁଦ୍ରଣ-୧୯୬୧। କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର।

୭୧. ସରସ୍ୱତୀ ଫକୀରମୋହନ - ଡଃ. ମାୟାଧର ମାନସିଂହ, ପୃ-୧୬୦, ପୁନର୍ମୁଦ୍ରଣ-୧୯୮୧, ଗ୍ରନ୍ଥମନ୍ଦିର, କଟକ-୨

# ଚତୁର୍ଥ ପରିଚ୍ଛେଦ

## ଫକୀରମୋହନ ଓ ତାଙ୍କ କାବ୍ୟ କୃତି

ଫକୀରମୋହନ ମୁଖ୍ୟତଃ ଦୁଇଟି କାବ୍ୟ ରଚନା କରିଛନ୍ତି । ଗୋଟିଏ ହେଉଛି 'ଉତ୍କଳ ଭ୍ରମଣଂ' ଓ ଅନ୍ୟଟି 'ବୌଦ୍ଧାବତାର କାବ୍ୟ' । ଏଠାରେ କାବ୍ୟଦ୍ୱୟର ଆତ୍ମିକ ଓ ଆଙ୍ଗିକ ଦିଗ ସଂପର୍କରେ ଆଲୋଚନା କରାଯାଉଛି ।

### ବ୍ୟାସକବିଙ୍କ ବ୍ୟଙ୍ଗ କାବ୍ୟ 'ଉତ୍କଳ ଭ୍ରମଣଂ'ର ବୃତ୍ତ ଓ ଭାବଭାବନା

ପୂର୍ବରୁ ଆଲୋଚନା ପ୍ରସଙ୍ଗରେ କୁହାଯାଇଛି ଭଦ୍ରକରୁ ଆନନ୍ଦପୁରକୁ ହସ୍ତୀପୃଷ୍ଠରେ ଆସିବା ସମୟରେ 'ଉତ୍କଳ ଭ୍ରମଣଂ'ର ପରିକଳ୍ପନା ଓ ପରିସମାପ୍ତି । ମାତ୍ର କେତୋଟି ଘଣ୍ଟାର ବ୍ୟବଧାନରେ ଲେଖାର ପରିସମାପ୍ତି ଘଟିଥିଲେ ମଧ୍ୟ ତାର ଅନ୍ତରାଳରେ ରହିଛି ଦୀର୍ଘ ପଚାଶ ବର୍ଷ ଅଭିଜ୍ଞତାର ଚରମ ଫସଲ । ଉତ୍କଳର ପ୍ରସିଦ୍ଧ ବ୍ୟକ୍ତି ତଥା ସାହିତ୍ୟିକମାନଙ୍କ ଜୀବନ ଓ କାର୍ଯ୍ୟାବଳୀ ସମ୍ପର୍କରେ ଲିଖିତ ଆକାରରେ ଏକ ସାହିତ୍ୟ ସୃଷ୍ଟି କରିବା ଫକୀରମୋହନଙ୍କର ଇଚ୍ଛା ବୋଲି ସେ ନିଜର 'ଆତ୍ମଜୀବନ ଚରିତ'ରେ ଉଲ୍ଲେଖ କରିଥିଲେ ମଧ୍ୟ ଏହାର ଅନ୍ତର୍ନିହିତ ସ୍ୱର କବିଙ୍କ ବ୍ୟକ୍ତିଗତ ଅନୁଭୂତିର ପରିପ୍ରକାଶ ମାତ୍ର ।

ପ୍ରତ୍ୟେକ କବି ବା ସାହିତ୍ୟିକଙ୍କ କୃତିରେ ତାର ଲକ୍ଷ୍ୟରେ ହେଉ ବା ଅଲକ୍ଷ୍ୟରେ ହେଉ ସମକାଳୀନ ସମାଜର ଅନେକ ଘଟଣା ଫୁଟି ଉଠିଥାଏ । ସମାଲୋଚକ ଅସିତ କବି 'ଉତ୍କଳ ଭ୍ରମଣଂ' ଉପରେ ସେଥିପାଇଁ ମତାମତ ଦେବାକୁ ଯାଇ କହିଛନ୍ତି– "ଏଥିରେ କିନ୍ତୁ କବିଙ୍କ ସମକାଳୀନ ଉତ୍କଳର ରାଜନୈତିକ, ଅର୍ଥନୈତିକ, ସାମାଜିକ, ସାଂସ୍କୃତିକ ଓ ଜାତୀୟ ଜୀବନର ବହୁ ଅବିସ୍ମରଣୀୟ ଚିତ୍ର ପ୍ରତିଫଳିତ ହୋଇଛି । ଏହା ଏକ ଅଭିନବ୍ ଭ୍ରମଣ ବୃତ୍ତାନ୍ତ– କାବ୍ୟିକ ତନୁଶ୍ରୀରେ ଯା'ର ଆତ୍ମପ୍ରକାଶ । ଏଥିରେ କବିଙ୍କ ଦୃଷ୍ଟିଭଙ୍ଗୀ ଅଭିନବ । ଜନଜୀବନକୁ ଯେଉଁମାନଙ୍କର ଅବଦାନ ରହିଛି; ସେମାନଙ୍କ ମଧ୍ୟରୁ କବି କାହାକୁ ସଲାମ, କାହା ସହିତ କର ମର୍ଦ୍ଦନ କରିଛନ୍ତି । କାହାର ପ୍ରତିଭାର

ବନ୍ଦନା-ଗୀତିରେ ସେ ମୁଖରିତ ହେଲାବେଳେ କାହାର ଦୁଷ୍କୃତିକୁ ବ୍ୟଙ୍ଗ କରିଛନ୍ତି। ଗୋଟିଏ ଗୋଟିଏ ଚରିତ୍ରକୁ କେନ୍ଦ୍ରକରି କବି ତାତ୍କାଳିକ ଉତ୍କଳର ପ୍ରାଣବୀଣାର ଗୋଟିଏ ଗୋଟିଏ ଝଙ୍କାର ସହ ଆମକୁ ପରିଚିତ କରିଛନ୍ତି। ଏ ଝଙ୍କାରରେ କେଉଁଠି ଆଲୋକର ମହିମା ପ୍ରକଟିତ, କେଉଁଠି ବା ଅନ୍ଧକାରର ବିଭୀଷିକା ଆଭାସିତ।[୧]

ଉତ୍କଳରେ କବିତା ମାଧ୍ୟମରେ ସାମସମୟିକ ବ୍ୟକ୍ତି ଓ ସାହିତ୍ୟିକଙ୍କ ନାମ ସଂକଳନ କରିବାର ପ୍ରଥମ ପ୍ରୟାସ ହୋଇଛି 'ଉତ୍କଳ ଭ୍ରମଣଂ'ରେ। ଉତ୍ତରରୁ କବି ତାଙ୍କର ଗ୍ରନ୍ଥ ଆରମ୍ଭ କରି ଦକ୍ଷିଣରେ ପରିସମାପ୍ତି କରିଛନ୍ତି ଓ ସେହି ସମୟସୀମା ମଧ୍ୟରେ ସେ ଜାଣିଥିବା ମହାନ୍ ବ୍ୟକ୍ତିମାନଙ୍କର ଗୁଣାବଳୀ ଆଲୋଚନା କରିଛନ୍ତି। ଏଥିରେ ପାନବାଲୀ ପାର୍ବତୀ ମାଆଠୁଁ ଆରମ୍ଭ କରି ପାରଳା ମହାରାଜାଙ୍କ ପର୍ଯ୍ୟନ୍ତ ବହୁ ବ୍ୟକ୍ତିଙ୍କର ନାମୋଲ୍ଲେଖ ଦେଖିବାକୁ ମିଳେ।"[୨] କେବଳ ମହାନ୍ ବ୍ୟକ୍ତିଙ୍କ ଗୁଣାବଳୀରେ ଏହା ପ୍ରଶଂସା ମୁଖର ନୁହେଁ; ପରନ୍ତୁ ଅବିବେକୀ ଏବଂ ତତ୍‌କାଳୀନ ସମାଜର ସମାଜ-ବିରୋଧୀ ବ୍ୟକ୍ତିଙ୍କ କୁତ୍ସାରଚନାରେ ମଧ୍ୟ ଏହା ବିଭାସିତ। 'ଉତ୍କଳ ଭ୍ରମଣଂ'ର ଆଲୋଚନା ସମୟରେ ଏହାର ଚାରୋଟି ଦିଗ ମୁଖ୍ୟତଃ ଆକର୍ଷଣର କେନ୍ଦ୍ରବିନ୍ଦୁ ହୋଇଥାଏ। ସେଗୁଡ଼ିକ ହେଲା– ୧. ଚରିତ୍ର, ୨. ସ୍ଥାନ ଓ ପରିବେଶ, ୩. ଇଂରାଜୀ ଶିକ୍ଷା ଅନ୍ଧାନୁସରଣପ୍ରତି ପ୍ରତିକ୍ରିୟା ଓ ୪. ଶୈଳୀ ଓ ଭାଷା।

**ଚରିତ୍ର :**

ଫକୀରମୋହନଙ୍କର ପ୍ରତ୍ୟେକ କୃତି ଗୋଟିଏ ଗୋଟିଏ ଚରିତ୍ର ଚିତ୍ରଶାଳା। କବିଙ୍କ ଶାସକ ଜୀବନର ଅନୁଭୂତି ବିଭିନ୍ନ ଚରିତ୍ରମାନଙ୍କୁ ବିଶ୍ଳେଷଣ କରିବାରେ ସାହାଯ୍ୟ କରିଥିଲା। ଜୀବନ ସଂପର୍କରେ ଗଭୀର ଅନୁଭୂତି ନ ଆସିଲେ କୌଣସି ଚରିତ୍ରକୁ ସମାଲୋଚନା କରିବାର ସାହସ ଜଣେ କରି ନପାରେ। ଯା'ର ଅନୁଭୂତି ଯେତେ ଗଭୀର ତା'ର ଚରିତ୍ର ଚିତ୍ରଣ ସେହି ପରିମାଣରେ ହୃଦୟସ୍ପର୍ଶୀ ଓ ଯୁକ୍ତିଯୁକ୍ତ। ସେଥିପାଇଁ ଜୀବନର ଶେଷ ସମୟ ପର୍ଯ୍ୟନ୍ତ ବିଭିନ୍ନ ଚରିତ୍ର ଅନୁଧ୍ୟାନ କରିବାର ସେ ଯେଉଁ ସୁଯୋଗ ଲାଭ କରିଥିଲେ, ତା'ର ଉପଯୁକ୍ତ ପରିବେଷଣ କରିଛନ୍ତି ତାଙ୍କ କାବ୍ୟ, କବିତା ଓ ଗଳ୍ପ ଉପନ୍ୟାସମାନଙ୍କରେ। କବିଙ୍କର ଗ୍ରନ୍ଥ ଆରମ୍ଭ ଉତ୍ତରରୁ ଓ ପରିସମାପ୍ତି ଘଟିଛି ଦକ୍ଷିଣରେ। ସମଗ୍ର ଉତ୍କଳ ଭ୍ରମଣ କରିବା ସମୟରେ ତାଙ୍କର ଦୃଷ୍ଟିପଥକୁ ଯେଉଁ ଯେଉଁ ବ୍ୟକ୍ତିମାନେ ଆସିଛନ୍ତି, ସେ ସେମାନଙ୍କର ନାମୋଲ୍ଲେଖ ସଙ୍ଗେ ସଙ୍ଗେ ଗୁଣାବଳୀର ଆଲୋଚନା କରିଛନ୍ତି। 'ଆଦୌ ଆଶୀର୍ନମସ୍କ୍ରିୟା'

ଅନୁସରଣରେ ପ୍ରଥମେ କବି ସାରଳା ବନ୍ଦନା କରିଥିଲେ ମଧ୍ୟ ପାରଂପରିକ ଶୈଳୀ ଓ ବିଷୟବସ୍ତୁ ପରିହାରପୂର୍ବକ ହାସ୍ୟରସାତ୍ମକ ଶୈଳୀରେ ବନ୍ଦନା କରିଛନ୍ତି ଯାହା ଓଡ଼ିଆ ସାହିତ୍ୟରେ ପ୍ରଥମ ସାଟାୟରର ଗୌରବ ଦାବୀ କରେ। ବର୍ଣ୍ଣନା ପ୍ରସଙ୍ଗରେ ଓଡ଼ିଶା ଇତିହାସର ପର୍ଯ୍ୟାଲୋଚନା କ୍ରମେ ଓଡ଼ିଶାର ଗୌରବ ଓ କୀର୍ତ୍ତିକଳାପ ସଂପର୍କରେ ସୂଚନା ପ୍ରଦାନ କରି ନିର୍ଦ୍ଦିଷ୍ଟ ବିଷୟବସ୍ତୁ ଦିଗରେ ଅଗ୍ରସର ହୋଇଛନ୍ତି। ଊନବିଂଶ ଶତାବ୍ଦୀର ଶେଷାର୍ଦ୍ଧବେଳକୁ ଓଡ଼ିଶାର ଭୌଗୋଳିକ ସୀମା କିପରି ଅନ୍ୟାନ୍ୟ ପ୍ରାଦେଶିକ ରାଜ୍ୟ ଦ୍ୱାରା ସଂକୁଚିତ ହୋଇଯାଇଥିଲା, ତାର ସାମାନ୍ୟ ସୂଚନା ମଧ୍ୟ ଦେଇଛନ୍ତି।

ପ୍ରଥମେ କବି 'ଉଡ୍‌ବରନ' ସାହେବଙ୍କ ସଂପର୍କରେ ଆଲୋଚନା ପ୍ରସଙ୍ଗରେ ଓଡ଼ିଶା ପ୍ରତି ତାଙ୍କର କୌଣସି ଅବଦାନ ନଥିବା କଥା କହିଛନ୍ତି। ମହାରାଜା ରାମଚନ୍ଦ୍ରଦେବ ଇଂରାଜୀ ଶିକ୍ଷିତ ହେଲେ ମଧ୍ୟ ଓଡ଼ିଆ ଓ ସଂସ୍କୃତ ଭାଷା ପ୍ରତି ଥିଲା ତାଙ୍କର ଗଭୀର ମମତା। ତାଙ୍କର ପ୍ରେରଣା ଓ ଅନୁଦାନରେ ବାଲେଶ୍ୱରଠାରେ ରାମଚନ୍ଦ୍ରଟୋଲ ପ୍ରତିଷ୍ଠିତ ହୋଇ ଅସଂଖ୍ୟ ଓଡ଼ିଆଙ୍କୁ ବହୁବିଧ ସାହାଯ୍ୟ କରିଥିଲା। ରାଜା ବୈକୁଣ୍ଠ ନାଥ ଦେ ବାହାଦୂର ଓଡ଼ିଆ ଭାଷା ଓ ଦେଶପାଇଁ ଯେପରି ଆତ୍ମୋତ୍ସର୍ଗ କରିଥିଲେ, କବି ତା'ର ଭୂରି ଭୂରି ପ୍ରଶଂସାଗାନ କରିଛନ୍ତି। ରାଜାରାମ, ଗଙ୍ଗ ନାରାୟଣ ଦୁଇଜଣ ମାରୱାଡ଼ି ଥିଲେ ମଧ୍ୟ ସୁନହଟ ଠାରେ ଅତିଥିମାନଙ୍କ ପାଇଁ ଯେପରି ଅବାରିତ ଅନ୍ନଛତ୍ର ଖୋଲି ପଥିକମାନଙ୍କୁ ସାହାଯ୍ୟ କରୁଥିଲେ, ତାର ପ୍ରଶଂସାଗାନ 'ଉତ୍କଳ ଭ୍ରମଣଂ'ରେ କରାଯାଇଛି। ପ୍ରସଙ୍ଗକ୍ରମେ ଭଗବାନ ଦାସ, ଚୈତନ୍ୟ ଚରଣ ଦେ, ହରୀଶ ସର୍କାର, ଫକ ବାବୁ (ଶ୍ରୀଯୁକ୍ତ ବାବୁ ରାଧାଚରଣ ଦାସ)ଙ୍କ ଗୁଣାବଳୀ ବିଷୟରେ ଆଲୋଚନା କରାଯାଇଛି। "ସମ୍ବାଦବାହିକା"ରେ ଧାରାବାହିକ ଲେଖାଲେଖି କରୁଥିବା ଗୋବିନ୍ଦ ଚନ୍ଦ୍ର ପଟ୍ଟନାୟକଙ୍କର ବୃଦ୍ଧାବସ୍ଥାରେ ମଧ୍ୟ ମାତୃଭାଷା ପ୍ରତି ପ୍ରଗାଢ଼ ମମତା ଲକ୍ଷ୍ୟକରି ଫକୀରମୋହନ ବିସ୍ମିତ ହୋଇଛନ୍ତି। ସେ ସମୟରେ ଓଡ଼ିଆ ପାଠ୍ୟପୁସ୍ତକ ରଚୟିତା ଭାବେ ଖ୍ୟାତିଲାଭ କରିଥିବା ଶିବନାରାୟଣ ନାୟକ ହଠାତ୍ ଲେଖାଲେଖି ବନ୍ଦ କରିଦେବାରୁ କବି କ୍ଷୋଭ ପ୍ରକାଶ କରିଛନ୍ତି। ଚନ୍ଦ୍ର ମହାରଣା ଓ ହରିଦାସେ ଜାତି ଓ ଭାଷାର ସ୍ୱାର୍ଥ ଅପେକ୍ଷା ନିଜ ସ୍ୱାର୍ଥ ପ୍ରତି ଅଧିକ ସଚେତନ ଥିବାରୁ ସେ ତାଙ୍କର ସମାଲୋଚନା କରିବାକୁ ପଛାଇ ନାହାନ୍ତି। ସୋର ଗ୍ରାମର ଆର୍ତ୍ତତ୍ରାଣ ସଦାଶିବ ନନ୍ଦ, ରାଧାନାଥ, ଗଣପତି ଓ ଭୋଳାନାଥଙ୍କ ସଂପର୍କରେ କବି ସାମାନ୍ୟ ଆଲୋକପାତ କରି ଗତିପଥ ପରିବର୍ତ୍ତନପୂର୍ବକ ବାଲେଶ୍ୱରଠାରୁ ଯାଜପୁର ଦିଗକୁ ଯାଇଛନ୍ତି।

ଯାଜପୁରଠାରେ ବ୍ରାହ୍ମଣମାନଙ୍କର ଅର୍ଥପ୍ରତି ତୀବ୍ର ଆସକ୍ତି ଲକ୍ଷ୍ୟ କରି ଫେରି ଆସୁଥିବା ସମୟରେ ପାନବାଲୀ ପାର୍ବତୀ ମା'କଥା ତାଙ୍କର ସ୍ମରଣକୁ ଆସିଛି। ସେ

ଆବିଷ୍କାର କରିଥିବା ଗୁଣ୍ଡିକୁ ଗାଲିଲିଓ, ନିଉଟନ୍‌ଙ୍କ ଦ୍ୱାରା ଆବିଷ୍କୃତ ବିଜ୍ଞାନ ଜଗତର ନୂତନ ତଥ୍ୟଠାରୁ କୌଣସି ଗୁଣରେ ନ୍ୟୂନ ବୋଲି ମନେ କରିନାହାନ୍ତି। ଗାଲିଲିଓ ଓ ନିଉଟନ୍ ମାନବର ଚିନ୍ତାରାଜ୍ୟରେ ପରିବର୍ତ୍ତନ ଆନୟନ କରିଥିବା ପରି ପାର୍ବତୀମା'ଙ୍କ ଆବିଷ୍କୃତ ପାନ ଓ ଗୁଣ୍ଡି ଓଡ଼ିଶାର ଜନସାଧାରଣଙ୍କ ମନ ରାଜ୍ୟରେ ଯାଜପୁରକୁ ଏକ ବିଶିଷ୍ଟ ସ୍ଥାନ ଦେଇଥିଲା। ଯାଜପୁରଠାରୁ କବି କେନ୍ଦ୍ରାପଡ଼ା ଅଭିମୁଖେ ଯାତ୍ରା କରିବା ସମୟରେ ରାଧାଶ୍ୟାମ ନରେନ୍ଦ୍ରଙ୍କ ବଦାନ୍ୟ କଥା ତାଙ୍କ ସ୍ମରଣକୁ ଆସିଛି। ଅତିଥିମାନଙ୍କ ସେବାରେ ସେ ତାଙ୍କର ସମସ୍ତ ସଂପତ୍ତି ନିଲାମ କରି ଦେଇଥିଲେ। ତତ୍କାଳୀନ ଓଡ଼ିଶାର ରାଜଧାନୀ କଟକ ଅଭିମୁଖେ କବି ଗତିକଲା ବେଳେ କଟକର ବିଶିଷ୍ଟ ବିଶିଷ୍ଟ ବ୍ୟକ୍ତିଙ୍କ ବିଷୟରେ ଆଲୋଚନା କରିଛନ୍ତି। ବାବୁ ନନ୍ଦ କିଶୋର ଦାସ ଇଂରାଜୀ ଶିକ୍ଷିତ ହେଲେ ମଧ୍ୟ ଗଡ଼ଜାତ ରାଜାମାନଙ୍କର ସମ୍ମାନ ରକ୍ଷା ନିମିତ୍ତ ସେ ଆପ୍ରାଣ ଉଦ୍ୟମ କରିଥିଲେ। ଏପରିକି ଫକୀରମୋହନ ତାଙ୍କ ଦ୍ୱାରା ଅନେକବାର ଉପକୃତ ହୋଇଥିବା କଥା ନିଜର 'ଆତ୍ମଜୀବନ ଚରିତ'ରେ ଉଲ୍ଲେଖ କରିଛନ୍ତି। କଟକରେ ଅବସ୍ଥାନ କରୁଥିବା କବି ରାଧାନାଥ ରାୟଙ୍କର ଉଚ୍ଚ ପ୍ରଶଂସା କରିବା ସଙ୍ଗେ ସଙ୍ଗେ 'ପାର୍ବତୀ' ଓ 'କେଦାର ଗୌରୀ' କାବ୍ୟର ଭୂରି ଭୂରି ପ୍ରଶଂସା କରିଛନ୍ତି।

ଓଡ଼ିଶାକୁ ଅନେକ ଇଂରେଜୀ ସାହେବ ଉଚ୍ଚପଦବୀରେ ଅଧିଷ୍ଠିତ ହୋଇ ଆସିଥିଲେ ମଧ୍ୟ ଓଡ଼ିଶାର ଶିକ୍ଷା, ଭାଷା ତଥା ସଂସ୍କୃତିର ବିକାଶ କ୍ଷେତ୍ରରେ ରେଭେନ୍‌ସା ସାହେବଙ୍କର ଅବଦାନ ଚିରସ୍ମରଣୀୟ। ବାଳିକା ସ୍କୁଲ, ହସ୍‌ପିଟାଲ, ଚାନ୍ଦବାଲି ବନ୍ଦର, ନର୍ମାଲ ସ୍କୁଲ, ହାଇଲେବଲ କେନାଲ ସର୍ଭେ ସ୍କୁଲ, ରେଭେନ୍‌ସା କଲେଜ ପ୍ରଭୃତି ରେଭେନ୍‌ସା ସାହେବଙ୍କର ଓଡ଼ିଶାକୁ ଏକ ଏକ ସ୍ମରଣୀୟ ଦାନ। ଜନବୀମ୍‌ସ ମଧ୍ୟ ଓଡ଼ିଶାର ହିତାକାଂକ୍ଷୀ ଥିଲେ। କିନ୍ତୁ ସେ ଓଡ଼ିଶାରେ ବେଶି ଦିନ ସ୍ଥାୟୀ ଭାବେ ରହିପାରିନଥିବାରୁ ବିଶେଷ କିଛି ଉଲ୍ଲେଖଯୋଗ୍ୟ କାର୍ଯ୍ୟ କରିପାରିନଥିଲେ। ଉକ୍ତ ଦୁଇଜଣଙ୍କ ଅବଦାନକୁ କବି ପ୍ରଶଂସା କରିଛନ୍ତି।

ଓଡ଼ିଶାର ଜାତୀୟଜୀବନ ବିକାଶରେ 'ଉତ୍କଳଦୀପିକା'ର ଉଲ୍ଲେଖଯୋଗ୍ୟ ଭୂମିକା ରହିଛି। ନ'ଅଙ୍କ ଦୁର୍ଭିକ୍ଷ, ଭାଷା ସୁରକ୍ଷା ଆନ୍ଦୋଳନ କ୍ଷେତ୍ରରେ 'ଉତ୍କଳ ଦୀପିକା' ଯେଉଁ ସାହସିକତାର ପରିଚୟ ପ୍ରଦାନ କରିଛି, ତାହା ଅତୁଳନୀୟ। ଏହାର ସୁଯୋଗ୍ୟ ସଂପାଦକ ଥିଲେ କର୍ମବୀର ଗୌରୀଶଙ୍କର ରାୟ। ନିଜେ ଜାତିରେ ବଙ୍ଗାଳୀ ଥିଲେ ମଧ୍ୟ ଓଡ଼ିଆ ଭାଷା ରକ୍ଷା କ୍ଷେତ୍ରରେ ସେ ବଙ୍ଗାଳୀମାନଙ୍କୁ ଯେଉଁ ତୀବ୍ର ବ୍ୟଙ୍ଗୋକ୍ତି କରିଥିଲେ ତାର ପ୍ରଶଂସା ନକରି ରହି ହୁଏ ନାହିଁ। ତାଙ୍କର କନିଷ୍ଠ ଭ୍ରାତା ରାମଶଙ୍କର

ପ୍ରଥମେ ନାଟକ ଓ ଉପନ୍ୟାସ ରଚନା କ୍ଷେତ୍ରରେ ଲେଖନୀ ଚାଳନା କରିଥିଲେ। କଳାତ୍ମକ ଦୃଷ୍ଟିକୋଣରୁ ହୁଏତ ତାହା ପ୍ରଥମ ନାଟକ ଓ ଉପନ୍ୟାସ ଭାବରେ ସ୍ୱୀକୃତି ଲାଭ କରିନପାରେ; ମାତ୍ର ଏ କ୍ଷେତ୍ରରେ ସେ ହେଉଛନ୍ତି ପ୍ରଥମ ଦିଗ୍‌ଦର୍ଶକ। ଫକୀରମୋହନ ଏହି ଭ୍ରାତା ଦ୍ୱୟଙ୍କର ସ୍ୱଗୁଣାବଳୀର ଆଲୋଚନା କରିବା ସଙ୍ଗେ ସଙ୍ଗେ ସେମାନଙ୍କର ପ୍ରଶଂସାଗାନ କରିଛନ୍ତି।

ଓଡ଼ିଶାରେ ବ୍ରାହ୍ମ ଆନ୍ଦୋଳନର ମୁଖ୍ୟ ପୁରୋଧା ଥିଲେ ଭକ୍ତକବି ମଧୁସୂଦନ ରାଓ। ଗୀତି କବିତା କ୍ଷେତ୍ରରେ ସେ ଓଡ଼ିଆ ସାହିତ୍ୟରେ ଏକ ସ୍ୱତନ୍ତ୍ର ଆସନ ଦାବୀ କଲେ ମଧ୍ୟ, କାୟ ମନ ବାକ୍ୟରେ ଥିଲେ ଜଣେ ଋଷିପ୍ରତିମ ବ୍ୟକ୍ତି। ତାଙ୍କ ପରିବାର ଓ ସେ ନିଜେ ଥିଲେ ଶୁଦ୍ଧ ପୂତ ମନା। ଯେ ଥରେ ମାତ୍ର ତାଙ୍କ ସଂସ୍ପର୍ଶରେଆସୁଥିଲା ତାଙ୍କର ମଧୁର ଓ ପବିତ୍ର ଭାବ ଦ୍ୱାରା ସେ ଏପରି ବିମୋହିତ ହୋଇଯାଉଥିଲା ଯେ, ତାଙ୍କୁ ଜଣେ ଦେବତା ଭାବରେ ଭକ୍ତି କରିବାକୁ ଆରମ୍ଭ କରି ଦେଉଥିଲା। ଶହ ଶହ ଗୀତି କବିତା, ପ୍ରବନ୍ଧ ଓ କେତୋଟି ଗଳ୍ପ ଅନୁବାଦ କରି ସେ ଓଡ଼ିଆ ସାହିତ୍ୟରେ ନିଜର ଏକ ସ୍ୱତନ୍ତ୍ର ଆସନ ରଖିଦେଇ ଯାଇଛନ୍ତି। ଉତ୍କଳ ଗୌରବ ମଧୁସୂଦନ ଦାସ ଇଂରାଜୀ ଶିକ୍ଷାରେ ଶିକ୍ଷିତ ହୋଇ ମଧ୍ୟ, ମାତୃଭୂମି ଓ ମାତୃଭାଷାର ଉନ୍ନତି କଳ୍ପେ ଜୀବନ ଉତ୍ସର୍ଗ କରିଥିଲେ। ଉତ୍କଳ ସମ୍ମିଳନୀ ଓ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ କେବଳ ତାଙ୍କର ପ୍ରତ୍ୟକ୍ଷ ପ୍ରେରଣା ଓ ଉଦ୍ୟମ ଦ୍ୱାରା ସମ୍ଭବ ହୋଇ ପାରିଥିଲା। ଉତ୍କଳର ବୈଶିଷ୍ଟ୍ୟ ଅନ୍ୟ ଦେଶମାନଙ୍କରେ ପରିପ୍ରଚାର ପାଇଁ ସେ କଟକରେ ଯେଉଁ ତାରକସୀ କାର୍ଯ୍ୟ ଓ ଶିଙ୍ଗ ନିର୍ମିତ ବିଭିନ୍ନ ପଦାର୍ଥ ନିର୍ମାଣ କରାଉଥିଲେ, ସେ ସମୟରେ କେବଳ ଭାରତ କାହିଁକି, ବିଶ୍ୱର ଅନେକ ଦେଶ ଉତ୍କଳର କାରୁକାର୍ଯ୍ୟ ଦ୍ୱାରା ବିମୋହିତ ହୋଇ ପଡ଼ିଥିଲେ। ଓକିଲାତି ପାଶ୍ କରି ଓ ବିଲାତ ଯାଇ ମଧ୍ୟ ଶେଷନିଃଶ୍ୱାସ ତ୍ୟାଗ କଲା ପର୍ଯ୍ୟନ୍ତ ସେ ଖାଣ୍ଟି ଓଡ଼ିଆଙ୍କ ପରି ବ୍ୟବହାର ପ୍ରଦର୍ଶନ କରୁଥିଲେ। ଜୀବନର ସମସ୍ତ ଉପାର୍ଜନ ମାତୃଭୂମି ସେବାରେ ଖର୍ଚ୍ଚ କରି ଶେଷ ସମୟରେ ଦାରୁଣ ଦାରିଦ୍ର୍ୟ ମଧ୍ୟରେ ଜୀବନ ଅତିବାହିତ କରିଥିଲେ। ଉତ୍କଳର ଏହି ବରପୁତ୍ର ଦ୍ୱୟଙ୍କର ସୁଗୁଣାବଳୀ ଆଲୋଚନା କରିବାରେ ଫକୀରମୋହନଙ୍କ 'ଉତ୍କଳ ଭ୍ରମଣଂ' ମୁଖରିତ। ଶଶିଭୂଷଣ ରାୟ ଦାକ୍ଷିଣାତ୍ୟ ଭ୍ରମଣ କରି ଉତ୍କଳ ସାହିତ୍ୟକୁ 'ଭ୍ରମଣ ସାହିତ୍ୟ' ଉପହାର ଦେଇଥିଲେ। ସେହିପରି ପଣ୍ଡିତ ବାଗ୍ମୀ ବିଶ୍ୱନାଥ କର ଦୀର୍ଘ କୋଡ଼ିଏ ବର୍ଷ 'ଉତ୍କଳ ସାହିତ୍ୟ' ପତ୍ରିକା ପ୍ରକାଶ ପୂର୍ବକ ତତ୍‌କାଳୀନ ଉତ୍କଳର ବହୁ ବୁଦ୍ଧିଜୀବୀ ତଥା ସାହିତ୍ୟିକ ମାନଙ୍କର ସାହିତ୍ୟକୃତି ଆଲୋକକୁ ଆଣିପାରିଥିଲେ। ସେ ନିଜେ ଯେପରି ଥିଲେ ବିଶିଷ୍ଟ ଜ୍ଞାନୀ ସେହିପରି ଥିଲେ ଓଡ଼ିଶାର ବିଶିଷ୍ଟ ପ୍ରାବନ୍ଧିକ। ଭାଷଣରେ ତାଙ୍କର ପଟୁତା ଲକ୍ଷ୍ୟ କରି

ଯେକୌଣସ ବ୍ୟକ୍ତି ତାଙ୍କ ଦ୍ୱାରା ଖୁବ୍ ଶୀଘ୍ର ପ୍ରଭାବିତ ହୋଇପାରୁଥିଲେ। ଫକୀରମୋହନ ବିଶ୍ୱନାଥ କରଙ୍କ ଗୁଣାବଳୀ ଆଲୋଚନା କରିବା ସଙ୍ଗେସଙ୍ଗେ ମାତୃଭାଷା ଓ ମାତୃଭୂମି ପ୍ରତି ତାଙ୍କର ପ୍ରଗାଢ଼ ମମତା ଲକ୍ଷ୍ୟ କରି ବିସ୍ମିତ ହୋଇଛନ୍ତି। ଏହାଛଡ଼ା କବି ପୁରୁଷୋତ୍ତମ ରଥଙ୍କ ସଂସ୍କୃତ ଶ୍ଳୋକର ସରଳ ଅନୁବାଦ, ବିହାରୀ ଲାଲଙ୍କ ଗୀତାର ଗୂଢ଼ାର୍ଥ ବ୍ୟାଖ୍ୟା, ଜଗନ୍ନାଥ ରାଓଙ୍କ ଅଭିଧାନ ପ୍ରଣୟନ, ଯୋଗେଶଚନ୍ଦ୍ର ରାୟଙ୍କ ଉଦ୍ଭିଦ-ବିଜ୍ଞାନ ଓ ରସାୟନ ବିଜ୍ଞାନ ପ୍ରଭୃତିରେ ଜ୍ଞାନଲାଭ ବିଷୟରେ ଆଲୋକପାତ କରିଛନ୍ତି। ଯୋଗେଶ ଚନ୍ଦ୍ର ରାୟ ପ୍ରଥମଥର ପଠାଣି ସାଆନ୍ତେଙ୍କୁ ଦେଶ ଆଗରେ ପ୍ରକୃତ ମର୍ଯ୍ୟାଦା କିପରି ପ୍ରଦାନ କରିଥିଲେ, ସେ ବିଷୟରେ ସୂଚନା ପ୍ରଦାନ କରିଛନ୍ତି।

ପ୍ୟାରୀମୋହନ ଆଚାର୍ଯ୍ୟ ଓଡ଼ିଶାର ଇତିହାସ ରଚନା କରି ଓଡ଼ିଶାର କେତେକ ଅନ୍ଧାରୀ ମୁଳକ କଥା ଆଲୋକକୁ ଆଣିଥିଲେ। ଲୋକମାନଙ୍କ ସେବା କରିବାରେ ସେ ସର୍ବଦା ଆଗୁସାର ଥିଲେ। ତାଙ୍କ ନାମରେ ନାମିତ ପ୍ୟାରୀମୋହନ ଏକାଡ଼େମୀ ଏବେବି ଓଡ଼ିଶାର ଶିକ୍ଷାର ବିକାଶ କ୍ଷେତ୍ରରେ ଏକ ଉଲ୍ଲେଖଯୋଗ୍ୟ ସ୍ଥାନ ଦାବୀକରେ। କବି ସଂକ୍ଷେପରେ ସୁଦାମ ଚନ୍ଦ୍ର ଓ ବୈଦ୍ୟନାଥ ବାହାଦୂରଙ୍କ ନାମୋଲ୍ଲେଖ କରିଛନ୍ତି। ନନ୍ଦକିଶୋର ବଳଙ୍କ ପଲ୍ଲୀପ୍ରତି ମୋହ ଓ ପଲ୍ଲୀକୁ ଅନ୍ୟଙ୍କୁ ଚିହ୍ନାଇ ଦେବାର ପ୍ରୟାସ ତାଙ୍କୁ ପଲ୍ଲୀକବି ଆଖ୍ୟା ଦେଇଥିଲା। ଫକୀରମୋହନ ନନ୍ଦକିଶୋରଙ୍କ ପଲ୍ଲୀକବିତା ପାଠ କରି ତାଙ୍କର ଉଚ୍ଚ ପ୍ରଶଂସା କରିଛନ୍ତି। ମୃତ୍ୟୁଞ୍ଜୟ କାବ୍ୟତୀର୍ଥଙ୍କ ପାଣ୍ଡିତ୍ୟ, ଉଚ୍ଚଶିକ୍ଷିତ ବ୍ରଜସୁନ୍ଦରଙ୍କ ସରକାରୀ ଚାକିରୀପ୍ରତି ବିମୁଖ ଭାବ୍, ଭିକାରୀଙ୍କ କବିତା, ଶିଙ୍ଗାରପୁର ବାସୀଙ୍କ ଓଡ଼ିଶୀ କଳାକୁ ବଞ୍ଚାଇବାର ପ୍ରୟାସକୁ ସେ ପ୍ରଶଂସା କରିଛନ୍ତି। ଏହା ବ୍ୟତୀତ ଡେପୁଟୀ ଇନ୍ସପେକ୍ଟର ପ୍ୟାରୀସେନ୍, ଦାମୋଦର, ସୀତାନାଥ ପ୍ରଭୃତିଙ୍କ ନାମୋଲ୍ଲେଖ ମଧ୍ୟ କରାଯାଇଛି।

ଜଗନ୍ମୋହନ ଲାଲା ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ଏକ ପରିଚିତ ନାମ। ସେ ସମୟରେ ତାଙ୍କ ରଚିତ ନାଟକ 'ବାବାଜୀ' ବୁଦ୍ଧିଜୀବୀ ମହଲରେ ଆଲୋଡ଼ନ ସୃଷ୍ଟି କରିଥିଲା। ବାର୍ଦ୍ଧକ୍ୟରେ ଉପନୀତ ହେବା ସଙ୍ଗେ ସଙ୍ଗେ ସେ ଲେଖନୀ ଚାଳନରୁ ବିରତ ରହିବାର ଦେଖି କବି କ୍ଷୋଭ ପ୍ରକାଶ କରିଛନ୍ତି। ୩। ଓଡ଼ିଶାରେ ଆଧୁନିକ ଶିକ୍ଷାର ବିସ୍ତାର କ୍ଷେତ୍ରରେ ମିସନାରୀମାନଙ୍କର ଭୂମିକା ଉଲ୍ଲେଖଯୋଗ୍ୟ। ସେହିମାନଙ୍କ ଉଦ୍ୟମରେ ଓଡ଼ିଶାରେ ଆଧୁନିକ ଶିକ୍ଷାର ଭିତ୍ତିଭୂମି ପଡ଼ିଥିଲା ଓ ସେହିମାନେ ପ୍ରଥମେ ଏଠାରେ ଛାପାଖାନା ପ୍ରତିଷ୍ଠା କରି ଓଡ଼ିଆମାନଙ୍କର ଚକ୍ଷୁ ଖୋଲି ଦେଇଥିବାରୁ ଫକୀର ମୋହନ ସେମାନଙ୍କର ପ୍ରଶଂସା କରିଛନ୍ତି। ବାରିଷ୍ଟର ନରେନ୍ଦ୍ର ସର୍କାର, ଗଦେଇ ତିହାଡ଼ି ପ୍ରଭୃତିଙ୍କର ବିଶିଷ୍ଟ ଗୁଣାବଳୀର ସେ ଆଲୋଚନା କରିଛନ୍ତି।

ଖଣ୍ଡପଡ଼ା ଦିଗକୁ ଅଗ୍ରସର ହେବା ସମୟରେ କଣ୍ଟିଲୋଠାରେ ନିର୍ମିତ ହେଉଥିବା ପ୍ରସିଦ୍ଧ କଂସାବାସନ ସମ୍ପର୍କରେ କବି ଉଲ୍ଲେଖ କରିଛନ୍ତି। ଏହାଛଡ଼ା ଖଣ୍ଡପଡ଼ା ମଣ୍ଡଳର ପଠାଣି ସାଆନ୍ତଙ୍କ ଜ୍ଞାନରାଶିର ଆଲୋଚନାପୂର୍ବକ ତାଙ୍କ ଦ୍ୱାରା ପ୍ରତିଷ୍ଠିତ ଜ୍ୟୋତିଷ ବିଦ୍ୟାର ପ୍ରଶଂସା କରିଛନ୍ତି। ଏହାପରେ କବି ପଶ୍ଚିମ ଦିଗକୁ ଅଗ୍ରସର ହୋଇ ଦଶପଲ୍ଲାର ରାଜଧାନୀ ବିଷୟ ଉଲ୍ଲେଖ କରିଛନ୍ତି। ଏହି ସ୍ଥାନ ବ୍ରହ୍ମପୁରୀ ପାଟ, ଖାଣ୍ଡିସୁନାରେ ନିର୍ମିତ ବୀରବଲ୍ଲୀ ଜଡ଼ାଉ ପଦକ ପାଇଁ ପ୍ରସିଦ୍ଧ ବୋଲି ସେ ପ୍ରକାଶ କରିଛନ୍ତି। ଢେଙ୍କାନାଳର ରାଜା ଭଗୀରଥ ମହେନ୍ଦ୍ର ଓଡ଼ିଆ ଭାଷାର ପ୍ରଚାର ଓ ପ୍ରସାର କ୍ଷେତ୍ରରେ ଉଲ୍ଲେଖଯୋଗ୍ୟ କାର୍ଯ୍ୟ କରିଥିଲେ। ଏହା ବ୍ୟତୀତ ଇଂରାଜୀ ସ୍କୁଲ, ସଂସ୍କୃତ ଟୋଲ, ଦାତବ୍ୟ ଚିକିତ୍ସାଳୟ ପ୍ରଭୃତି ପ୍ରତିଷ୍ଠା କରି ଜନସାଧାରଣଙ୍କର ଅଶେଷ ମଙ୍ଗଳ ସାଧନ କରିଥିବାରୁ କବି ତାଙ୍କର ପ୍ରଶଂସା କରିଛନ୍ତି। ବନମାଳୀ, ଢେଙ୍କାନାଳ ରାଜାଙ୍କର ପୋଷ୍ୟପୁତ୍ର ଦୀନବନ୍ଧୁ ମହେନ୍ଦ୍ର, ଢେଙ୍କାନାଳ ରାଣୀ ସୁଲକ୍ଷଣା ଦେବୀ, ତାଳଚେରର ଯୁବରାଜା ରାମଚନ୍ଦ୍ର ବୀରବର, ମୁନିପାଳ ଓ ମହେନ୍ଦ୍ରଦେବ ପ୍ରଭୃତିଙ୍କ କାର୍ଯ୍ୟାବଳୀକୁ ସେ ତାରିଫ କରିଛନ୍ତି।

ରାଜା ସୁଡ଼ଳଦେବ ଥିଲେ ଜଣେ ଜାତିପ୍ରେମୀ, ଭାଷାପ୍ରେମୀ ଓ ଉଗ୍ର ଜାତୀୟତାବାଦର ପୃଷ୍ଠପୋଷକ। ତାଙ୍କର ପୃଷ୍ଠପୋଷକତାରେ 'ହିତୈଷିଣୀ' ପତ୍ରିକା ପ୍ରକାଶ ଲାଭ କରିଥିଲା। ମୁଗଲବନ୍ଦୀ ଓ ଛତିଶଗଡ଼କୁ ଏକତ୍ର କରିବାରେ ତାଙ୍କର ଦାନ ଅତୁଳନୀୟ। କବି ତାଙ୍କୁ ଓଡ଼ିଶାର ବିକ୍ରମାଦିତ୍ୟ ଭାବରେ ବର୍ଣ୍ଣନା କରି ଓଡ଼ିଆ ସାହିତ୍ୟ ପାଇଁ ତାଙ୍କର ଅବଦାନକୁ ପ୍ରଶଂସା କରିଛନ୍ତି। ୪। ଏହାଛଡ଼ା ପ୍ରସଙ୍ଗକ୍ରମେ ସେ ନୀଳମଣି ବିଦ୍ୟାରତ୍ନ, ସଚ୍ଚିଦାନନ୍ଦ ତ୍ରିଭୁବନ ଦେବ, ହରିଦାସ, ଶରତଚନ୍ଦ୍ର ବାନାର୍ଜୀ, କିଶୋରୀ ଚରଣ ପ୍ରଭୃତିଙ୍କ ନାମ ଉଲ୍ଲେଖ କରିଛନ୍ତି।

କବି ପୁରୀ ଦିଗକୁ ଅଗ୍ରସର ହେବା ମାତ୍ରେ ପୁରୀ ପଣ୍ଡାଙ୍କ କଥା ସ୍ମରଣକୁ ଆସି ବିଚଳିତ ହୋଇ ପଡ଼ିଛନ୍ତି। ଓଡ଼ିଶାର ପ୍ରସିଦ୍ଧ ଦେବତା ଜଗନ୍ନାଥଙ୍କ କ୍ଷେତ୍ରରେ ପଣ୍ଡାମାନଙ୍କର ଅବିବେକୀତାକୁ ବ୍ୟଙ୍ଗ କରି କବି କବିତା ରୂପରେ ଏକ ପତ୍ର ଜଗନ୍ନାଥଙ୍କ ନିକଟକୁ ପଠାଇଛନ୍ତି। ଦୀର୍ଘ ଗୋଟିଏ ଶତାବ୍ଦୀ ପୂର୍ବରୁ ଫକୀରମୋହନ ପୁରୀପଣ୍ଡା ମାନଙ୍କର ଚରିତ୍ର ବିଶ୍ଳେଷଣ କରି ଯେଉଁ ମତାମତ ପ୍ରଦାନ କରିଯାଇଛନ୍ତି, ଏବେବି ତାର କୌଣସି ପରିବର୍ତ୍ତନ ହୋଇଥିବା ପରି ମନେହୁଏ ନାହିଁ। ଦକ୍ଷିଣା ଦେବାପରେ ପୁରୀରେ ଦେବଦର୍ଶନ ମିଳିଥାଏ। ସେଥିପାଇଁ ଫକୀରମୋହନ ସେହି ତୀର୍ଥସ୍ଥାନକୁ ନରକ ଗୁଲଜାର ଭାବରେ ବର୍ଣ୍ଣନା କରିଛନ୍ତି। ମୁକ୍ତିମଣ୍ଡପ ପଣ୍ଡିତମାନଙ୍କ ସଭାସ୍ଥଳ ଭାବରେ ସ୍ୱୀକୃତ

ଲାଭ କରିଥିଲେ ମଧ୍ୟ ଏବେ ସେଠାରେ କେବଳ ପଇସାର ଖେଳ ଚାଲିଛି। ପୁରୀର ପଣ୍ଡିତସଭା ଭାରତରେ ଖ୍ୟାତି ଲାଭ କରିଥିଲେ ସୁଦ୍ଧା ଏବେ ସେଠାରେ ପଣ୍ଡିତମାନଙ୍କ ପରିବର୍ତ୍ତେ ଠକମାନଙ୍କର ଆସର ଜମିଛି। ଯେଉଁ ସ୍ଥାନରେ ଜଗବନ୍ଧୁ ମହାପାତ୍ର, ଦୀନବନ୍ଧୁ ମିଶ୍ର, ମୃତ୍ୟୁଞ୍ଜୟ ତର୍କ ପଞ୍ଚାନନ, ରଘୁମିଶ୍ର, ବିନାୟକ ମିଶ୍ର, ଜୟରଥ ପ୍ରଭୃତି ପଣ୍ଡିତଗଣ ସ୍ୱୀୟ ବିଦ୍‌ବତ୍ତା ଦ୍ୱାରା ପଣ୍ଡିତ ସଭାର ମହତ୍ତ୍ୱ ବୃଦ୍ଧି କରିଥିଲେ, ସେହିମାନଙ୍କ ସ୍ଥାନ ଆଜି କେତେଜଣ ମୂର୍ଖ, ଠକ ଦଖଲ କରିଥିବାରୁ କବି କ୍ଷୋଭ ପ୍ରକାଶ କରିଛନ୍ତି। ସେଥିପାଇଁ ସଦାଶିବ କାବ୍ୟକଣ୍ଠ ପୁରାଣ ଆଲୋଚନା ପରିବେର୍ତ୍ତ ଭାଷା ଚର୍ଚ୍ଚାରେ ମନୋନିବେଶ କରିଛନ୍ତି। ସୁଦର୍ଶନ ଦାସ, ମୋହନ ଦାସ ପ୍ରଭୃତିଙ୍କ ଦ୍ୱାରା ଯେଉଁ ମଙ୍ଗୁମଠରେ ମହତ୍ତ୍ୱ ବୃଦ୍ଧି ପାଇଥିଲା, ରଘୁନନ୍ଦନ ସେଠାରେ ମହନ୍ତ ହେବାପରେ ତାର ଗାରିମା ନିମ୍ନମୁଖୀ ହୋଇପଡ଼ିଛି। ଅନୁରୂପ ଭାବେ କବି ହୟଗ୍ରୀବ ଦାସ, ଚତୁର୍ଭୁଜ, ଭଗବାନ ଦାସ, ରାମକୃଷ୍ଣ ପାଟଯୋଶୀ, ନାରାୟଣ ଦାସ ପ୍ରଭୃତିଙ୍କୁ 'ଉତ୍କଳ ଭ୍ରମଣଂ'ରେ ତୀବ୍ର ବ୍ୟଙ୍ଗୋକ୍ତି କରିଛନ୍ତି। ଗୋପାଳ ପ୍ରତିହାରୀ, ସଦାଶିବ ମିଶ୍ର ମହାମହୋପାଧ୍ୟାୟ, ମାଗୁଣି ମିଶ୍ର ପ୍ରଭୃତିଙ୍କ କାର୍ଯ୍ୟାବଳୀର ପ୍ରଶଂସା ରହିଛି।

କବି ସାହିତ୍ୟିକମାନଙ୍କ ବିଷୟରେ ଆଲୋକପାତ କରିବା ସମୟରେ ପ୍ରଥମେ ତାଙ୍କର ଦୃଷ୍ଟି ପଡ଼ିଛି ଗୋପାଳ ଚନ୍ଦ୍ର ପ୍ରହରାଜଙ୍କ ଉପରେ। ଖାଣ୍ଟି ଓଡ଼ିଆ ଭାଷାରେ ସାହିତ୍ୟ ସୃଷ୍ଟି କରିଥିବାରୁ ସେ ତାଙ୍କର ଉଚ୍ଚ ପ୍ରଶଂସା କରିଛନ୍ତି। ସେହିପରି ଆନନ୍ଦ ମିଶ୍ର ସେ ସମୟରେ ଜଣେ ପ୍ରସିଦ୍ଧ ମୂର୍ତ୍ତି ନିର୍ମାଣକାରୀ ଥିବାରୁ ଇଂରେଜମାନେ ମଧ୍ୟ ତାଙ୍କର ମୂର୍ତ୍ତିକୁ ପସନ୍ଦ କରିଥିଲେ। ସତ୍ୟବାଦୀ ବନବିଦ୍ୟାଳୟର ପ୍ରତିଷ୍ଠାତା ଗୋପବନ୍ଧୁ ଦାସ ଓ ତାଙ୍କର ସହଯୋଗୀମାନଙ୍କୁ କବି ଧନ୍ୟବାଦ ଦେବା ସଙ୍ଗେ ସଙ୍ଗେ ଏହି ବିଦ୍ୟାଳୟକୁ ବିହାରର ନାଳନ୍ଦା ସହିତ ତୁଳନା କରିଛନ୍ତି।

ଖଲ୍ଲିକୋଟ ଓ ଆଠଗଡ଼ର ରାଜରାଜେଶ୍ୱରୀ କାଞ୍ଚନମଞ୍ଜରୀ, ଭଗବତୀ ଚଟ୍ଟୋପାଧ୍ୟାୟ, ଧରାକୋଟ ଓ ମଞ୍ଜୁଷା ରାଜା, ଚିକିଟୀଅଧୀଶ୍ୱର, ମେକ୍‌ଡ଼ୋନାଲ, ଲର୍ଡ଼ କନିମରା ସାହେବ, ବିକ୍ରମଦେଓ ପ୍ରଭୃତିଙ୍କ ଗୁଣାବଳୀର ଆଲୋଚନା କରିଛନ୍ତି। କବି ଶେଖର ଚିନ୍ତାମଣି, ସ୍ୱଭାବ କବି ଗଙ୍ଗାଧର ମେହେରଙ୍କ କାବ୍ୟାବଳୀର ଭୂୟସୀ ପ୍ରଶଂସା କରିବା ସଙ୍ଗେ ସଙ୍ଗେ ଓଡ଼ିଆ ସାହିତ୍ୟର ଉନ୍ନତି ପାଇଁ ଆହୁରି ଅଧିକ ସାହିତ୍ୟ ସୃଷ୍ଟି ନିମିତ୍ତ ସେମାନଙ୍କୁ ପ୍ରେରଣା ଦେଇଛନ୍ତି।

ଶେଷରେ କବି ନିଜେ ସ୍ୱୀକାର କରିଛନ୍ତି ଓଡ଼ିଶାରେ ଆହୁରି ଅନେକ ଗୁଣୀଲୋକ ଥିଲେ ମଧ୍ୟ ସମସ୍ତଙ୍କର ନାମୋଲ୍ଲେଖ କରିବା ସମ୍ଭବପର ନୁହେଁ। ତାଙ୍କର ଚରିତ୍ର

ସମ୍ପର୍କୀୟ ଅଧ୍ୟୟନ ଏକ ପୋଖତ ମସ୍ତିଷ୍କର ପରିଚୟ ପ୍ରଦାନ କରିଥାଏ। ଚରିତ୍ର ଅଧ୍ୟୟନ କରିବାର ଯେଉଁ ଅଭିଜ୍ଞତା ସେ ଲାଭ କରିଥିଲେ ତାରି ଆଲୋକରେ 'ଉତ୍କଳ ଭ୍ରମଣଂ'ର ସଂଖ୍ୟାଧିକ ଚରିତ୍ର ଆଲୋକିତ। 'ଉତ୍କଳ ଭ୍ରମଣଂ' କେବଳ ଏକ ସୁଖପାଠ୍ୟ କାବ୍ୟ ନୁହେଁ, ପରନ୍ତୁ ଏଥିରେ ସେ 'ସମସାମୟିକ ସାମାଜିକ, ରାଜନୀତିକ, ସାଂସ୍କୃତିକ ପରିବେଶ ସହିତ ସାହିତ୍ୟିକମାନଙ୍କ ସମ୍ପର୍କରେ ତାଙ୍କର ଅଭିମତ ପ୍ରକାଶ କରିଛନ୍ତି। × × × ସମକାଳୀନ ସାହିତ୍ୟିକମାନଙ୍କ କର୍ମ-କୃତିତ୍ୱ ସମ୍ପର୍କରେ 'ଉତ୍କଳ ଭ୍ରମଣଂ'ରେ ଯେପରି ବିସ୍ତୃତ ବିବରଣୀ ରହିଛି ବୋଧହୁଏ ଅନ୍ୟ କୌଣସି ପୁସ୍ତକରେ ସେଭଳି ବର୍ଣ୍ଣନା ନାହିଁ। ୫। ଜୀବନ ବ୍ୟାପି ଓଡ଼ିଶାରେ ଭ୍ରମଣ କରି ବିଭିନ୍ନ ଚରିତ୍ରମାନଙ୍କ ସମ୍ପର୍କରେ ଆସି ଯେଉଁ ଅଭିଜ୍ଞତା ଲାଭ କରିଥିଲେ ତାହାକୁ ସେ ଉତ୍କଳଭ୍ରମଣଂର ଚରିତ୍ର ଅନୁଶୀଳନରେ ପ୍ରୟୋଗ କରି ଅସମ୍ଭବ ସଫଳତା ଲାଭ କରିଛନ୍ତି।

**ସ୍ଥାନ ଓ ପରିବେଶ :**

ପୂର୍ବରୁ ଆଲୋଚନା ପ୍ରସଙ୍ଗରେ ଉଲ୍ଲେଖ କରାଯାଇଛି ଯେ ଭଦ୍ରକରୁ ଆନନ୍ଦପୁର ସମୟସୀମା ମଧ୍ୟରେ 'ଉତ୍କଳ ଭ୍ରମଣଂ'ର ପରିକଳ୍ପନା ଓ ପରିସମାପ୍ତି। କିନ୍ତୁ ଏହାର ବିଷୟବସ୍ତୁ ଓ ଚରିତ୍ର ଗ୍ରହଣ କରାଯାଇଛି ସମଗ୍ର ଓଡ଼ିଶାରୁ। ଓଡ଼ିଶାର ସ୍ଥାନ ଓ ପରିବେଶ ଏ କାବ୍ୟର ମୂଳ ପ୍ରେରଣା। ଓଡ଼ିଶାର ଉତ୍ତର ଦିଗରୁ ଗ୍ରନ୍ଥ ଆରମ୍ଭ କରି ଦକ୍ଷିଣ ଦିଗରେ ପରିସମାପ୍ତି କରାଇଅଛନ୍ତି ଏବଂ ଏହି ପରିସର ମଧ୍ୟରେ ତାଙ୍କ ଦୃଷ୍ଟିପଥକୁ ଯାହା ଆସିଛି, ଅନୁଭୂତିର ରଙ୍ଗ ଦେଇ ତାର ଚମତ୍କାର ରୂପଚିତ୍ର ଅଙ୍କନ କରିଛନ୍ତି।

ପ୍ରକୃତି ରାଣୀର ଶୋଭା ଭଣ୍ଡାରରେ ଉତ୍କଳର ଏକ ସ୍ୱତନ୍ତ୍ର ବୈଶିଷ୍ଟ୍ୟ ରହିଛି। ଓଡ଼ିଶାର କାରୁକାର୍ଯ୍ୟ ମଣ୍ଡିତ ଶିଳ୍ପକଳା ଭାରତରେ ଅଦ୍ୱିତୀୟ। ଭୁବନେଶ୍ୱର ଓ ଖଣ୍ଡଗିରିଠାରେ ଖୋଦିତ ପ୍ରସ୍ତର ଦେହରେ ଉତ୍କଳୀୟ ଶିଳ୍ପୀଙ୍କ କାରିଗରୀ କୌଶଳ, ଉତ୍କଳୀୟମାନଙ୍କର ସୌନ୍ଦର୍ଯ୍ୟପ୍ରିୟତା ଓ କାରିଗରୀ ବଡ଼ିମାର ପରିଚୟ ପ୍ରଦାନ କରିଥାଏ। ଭୁବନେଶ୍ୱରର ସୁନ୍ଦର କାରୁକାର୍ଯ୍ୟ ଲକ୍ଷ୍ୟ କରି ମରହଟ୍ଟା ସର୍ଦ୍ଦାର ଶିବାଜୀ ନିଜେ ସ୍ୱୀକାର କରିଥିଲେ ଏ ଦେଶ ଦେବତାମାନଙ୍କ ବାସଯୋଗ୍ୟ ସ୍ଥାନ, ମାନବ ମାନଙ୍କର ନୁହେଁ। ୬। କବି ଏହି ଭ୍ରମଣ କାବ୍ୟରେ ଉତ୍କଳର ବିଭିନ୍ନ ସ୍ଥାନର ବର୍ଣ୍ଣନା ଦେବା ସଙ୍ଗେ ସଙ୍ଗେ ସେ ସ୍ଥାନଗୁଡ଼ିକର ବୈଶିଷ୍ଟ୍ୟ ପ୍ରକାଶ କରିଛନ୍ତି।

କବି ପ୍ରଥମେ ବାଲେଶ୍ୱର ଜିଲ୍ଲାର ମହତ୍ତ୍ୱ ବର୍ଣ୍ଣନା କରିଛନ୍ତି। ସେତେବେଳେ ବାଲେଶ୍ୱର ଅନେକ କବି ଓ କଳାକାରମାନଙ୍କର ବାସସ୍ଥାନ ଥିଲା। ଓଡ଼ିଆ ସାହିତ୍ୟର ଦୁର୍ଦ୍ଦିନରେ ଏହି ଜିଲ୍ଲାର କେତେକ ବ୍ୟକ୍ତି ନିଜ ମାତୃଭୂମି ଓ ମାତୃଭାଷାର ସୁରକ୍ଷା

ନିମିତ୍ତ ଆପ୍ରାଣ ଉଦ୍ୟମ କରିଥିଲେ। ଫକୀରମୋହନଙ୍କ ଜନ୍ମସ୍ଥାନ ବାଲେଶ୍ୱର ଅନେକ ଗର୍ବ ଓ ଗୌରବର ସାକ୍ଷ୍ୟ ବହନ କରିଥିବାରୁ ସେ ତାର ପ୍ରଶଂସାରେ ମୁଖରିତ। ବାଲେଶ୍ୱରର 'ସୋର' ସଦାଶିବ ନନ୍ଦ ଓ କବିବର ରାଧାନାଥଙ୍କୁ ଜନ୍ମ ଦେଇଥିବାରୁ କବି ଏହି ଗ୍ରାମଟିକୁ ସଭକ୍ତି ସମ୍ମାନ ପ୍ରଦର୍ଶନ କରିଛନ୍ତି।

ଯାଜପୁର ଉତ୍କଳୀୟ ସଂସ୍କୃତିର ମୂର୍ତ୍ତ ପ୍ରତୀକ। ଏଠାରେ ଓଡ଼ିଶାର ପ୍ରସିଦ୍ଧ ଠାକୁରାଣୀ ବିରଜାଙ୍କର କ୍ଷେତ୍ର ଅବସ୍ଥିତ। ଇତିହାସର ଅନେକ କିମ୍ବଦନ୍ତୀର ମୂକସାକ୍ଷୀ ଏହି ଯାଜପୁର। ସେଥିପାଇଁ କବି ଯାଜପୁରକୁ ପ୍ରଶଂସା କରିଛନ୍ତି। ଉତ୍କଳର ଶିକ୍ଷା ଓ ସଂସ୍କୃତିର ବିକାଶରେ କେନ୍ଦ୍ରାପଡ଼ା ଏକ ବିଶିଷ୍ଟ ସ୍ଥାନ ଦାବୀ କରେ। ଓଡ଼ିଶାର ପ୍ରସିଦ୍ଧ ବଳଦେବଜୀଉ ମନ୍ଦିର ଏଠାରେ ଅବସ୍ଥିତ। ଦାନ, ଧ୍ୟାନ ଓ ଅତିଥି ସେବାରେ କେନ୍ଦ୍ରାପଡ଼ାର ରାଧାଶ୍ୟାମ ନରେନ୍ଦ୍ର ସର୍ବସ୍ୱ ଶେଷ କରି ଦେଇଥିଲେ। କଟକ ଓଡ଼ିଆ ସାହିତ୍ୟ ଓ ସଂସ୍କୃତିର ରକ୍ଷକ। ଏହିଠାରେ ଅନେକ ମହାପୁରୁଷ ଜନ୍ମଗ୍ରହଣ କରି ଦେଶସେବା ଓ ଭାଷା ସେବାରେ ଆତ୍ମନିୟୋଗ କରିଯାଇଛନ୍ତି। ପ୍ରତ୍ୟେକ ନୂତନତାର ଆରମ୍ଭ ସ୍ଥଳୀ ଏହି କଟକ। ତତ୍‌କାଳୀନ ଓଡ଼ିଶାର ରାଜଧାନୀ ଭାବରେ ଅନେକ ଗର୍ବ ଓ ଗୌରବର ଅଧିକାରୀ କଟକକୁ କବି ପ୍ରଶଂସା କରିଛନ୍ତି। ଝିଙ୍ଗାରପୁର ସେତେବେଳେ ଶାସ୍ତ୍ରୀୟ ସଙ୍ଗୀତ ଚର୍ଚ୍ଚା କ୍ଷେତ୍ରରେ ବିଶିଷ୍ଟ ସ୍ଥାନ ଅଧିକାର କରିଥିଲା। ଓଡ଼ିଶାର ନିଜସ୍ୱ ଶୈଳୀ ଓଡ଼ିଶୀକୁ ସେମାନେ ଶାସ୍ତ୍ରୀୟ ମର୍ଯ୍ୟାଦା ଦେବାକୁ ଯେଉଁ ପ୍ରଚେଷ୍ଟା ଚଳାଇଥିଲେ ଫକୀରମୋହନ ତାକୁ ଆନନ୍ଦରେ ସ୍ୱାଗତ ଜଣାଇଥିଲେ। କପିଳାସର ଶିବ ମନ୍ଦିର ଓଡ଼ିଶା ପାଇଁ ଏକ ଗର୍ବ ଓ ଗୌରବର ବିଷୟ। ତାର ମାହାତ୍ମ୍ୟ ଶ୍ରବଣମାତ୍ରେ ପାପୀ ମନର ସମସ୍ତ ଆବିଳତା ଧୋଇ ହୋଇଯାଇଥାଏ। ତେଣୁ ସେହି ପବିତ୍ର କ୍ଷେତ୍ର ବିଷୟରେ ଜାଣିବା ନିମିତ୍ତ କବିଙ୍କ ମନରେ ଉତ୍କଣ୍ଠାଜାତ ହୋଇଛି। ଡୋମପଡ଼ାର ରାଜାମାନଙ୍କର ଓଡ଼ିଶାର କଳା ଓ ସାହିତ୍ୟ ନିମିତ୍ତ ଅବଦାନ ଚିରସ୍ମରଣୀୟ। ତେଣୁ ସେହି ସ୍ଥାନର ଭବିଷ୍ୟତ ବଂଶଧରମାନଙ୍କୁ ନିଜ ପିତୃ ପୁରୁଷଙ୍କ ପୂର୍ବ ଗାରିମା ସ୍ମରଣକରାଇ ଦେଇ ଦେଶ ଓ ଜାତି ନିମିତ୍ତ କିଛି କରିବା ନିମିତ୍ତ କବି ପରାମର୍ଶ ଦେଇଛନ୍ତି। କଣ୍ଟିଲୋ କଂସା ନିର୍ମିତ ବାସନ ପାଇଁ ଓଡ଼ିଶାରେ ପ୍ରସିଦ୍ଧ। ଖଣ୍ଡପଡ଼ା ପଠାଣି ସାନ୍ତେଙ୍କୁ ଜନ୍ମ ଦେଇ ଏ ଜାତିକୁ ଧନ୍ୟ କରିଛି। ତେଣୁ କବି ଉକ୍ତ ଦୁଇଟି ସ୍ଥାନକୁ ବିଶେଷ ପ୍ରଶଂସା କରିଛନ୍ତି।

ଦଶପଲ୍ଲା ହସ୍ତନିର୍ମିତ ବସ୍ତ୍ର ପାଇଁ ପ୍ରସିଦ୍ଧି ଅର୍ଜନ କରିଥିଲା। ବ୍ରହ୍ମପୁରପାଟ ସେତେବେଳେ ସମଗ୍ର ଭାରତ ବର୍ଷରେ ଏକ ଆଦରଣୀୟ ବସ୍ତ୍ର ଭାବରେ ଲଳନାମାନଙ୍କ ଦ୍ୱାରା ବ୍ୟବହୃତ ହେଉଥିବାରୁ ଏହାର ଚାହିଦା ଅନ୍ୟାନ୍ୟ ବସ୍ତ୍ର ତୁଳନାରେ ଯଥେଷ୍ଟ ଶୀର୍ଷରେ ଥିଲା। ଫକୀରମୋହନ ଏଠାରେ ନିର୍ମିତ ବସ୍ତ୍ର ଓ ଅଳଙ୍କାରର ପ୍ରଶଂସା ଗାନ

କରିଛନ୍ତି। ପ୍ରସଙ୍ଗକ୍ରମେ ସେ ଆଠଗଡ଼ ରାଜାଙ୍କ ବଦାନ୍ୟ, ଢେଙ୍କାନାଳ ରାଣୀଙ୍କର ସ୍ନେହ, ମମତା ଓ ପ୍ରଜାମାନଙ୍କୁ କିପରି ପୁତ୍ରପରି ସ୍ନେହ ଦୃଷ୍ଟିରେ ଦେଖୁଥିଲେ, ସର୍ବଗୁଣାଳଙ୍କାର ତାଳଚେର ପତି ରାମଚନ୍ଦ୍ରଙ୍କ ଅକାଳ ବିୟୋଗ, ସୁଢ଼ଳ ମହାରାଜାଙ୍କ ସାହିତ୍ୟ ପ୍ରୀତି ପ୍ରଭୃତି ଚମତ୍କାର ଭାବରେ ବର୍ଣ୍ଣନା କରିଛନ୍ତି।

କେବଳ ଓଡ଼ିଶା କାହିଁକି ସମଗ୍ର ବିଶ୍ୱରେ ପୁରୁଷୋତ୍ତମ କ୍ଷେତ୍ର ପୁରୀ ଏକ ବିଶିଷ୍ଟ ସ୍ଥାନର ଅଧିକାରୀ। ଧର୍ମ ପ୍ରଚାରକ ଓ ପଣ୍ଡିତମାନଙ୍କ ପାଇଁ ଏହି କ୍ଷେତ୍ର ଗୋଟିଏ ପବିତ୍ର ପୀଠ ଭାବରେ ସ୍ୱୀକୃତି ଲାଭ କରିଛି। କବି ପଣ୍ଡାମାନଙ୍କ ବ୍ୟବହାରକୁ ବ୍ୟଙ୍ଗୋକ୍ତି କରିଥିଲେ ମଧ୍ୟ ଏ ସ୍ଥାନର ମହତ୍ତ୍ୱ ଓ ଦେବାଦେବୀମାନଙ୍କର ବିଶଦ ବିବରଣୀ ପ୍ରଦାନ କରିବାରେ କୁଣ୍ଠିତ ହୋଇନାହାନ୍ତି। ସତ୍ୟବାଦୀ ବକୁଳ ବନର ଆଦର୍ଶକୁ ପ୍ରଶଂସା କରିବା ସଙ୍ଗେ ସଙ୍ଗେ ଖଲ୍ଲିକୋଟ ରାଣୀଙ୍କର ସାହିତ୍ୟାନୁରାଗ, ଧରାକୋଟ ରାଜାଙ୍କର ଶିକ୍ଷାପ୍ରତି ବିରାଗ, ଗଞ୍ଜାମ ଜିଲ୍ଲାବାସୀଙ୍କର ଦେଶ ପ୍ରତି ହତାଦର ଭାବ, ଚିକିଟୀରାଜା ତଥା ଜନସାଧାରଣଙ୍କର ଜାତିପ୍ରୀତି, ପାରଳାଖେମୁଣ୍ଡି ବାସୀଙ୍କର ସାହିତ୍ୟପ୍ରୀତି ଓ ସମ୍ବଲପୁର (ବରପାଲି)ର ବିଶିଷ୍ଟ କବିତଥା ସ୍ଥାନ ବିଷୟରେ ଚମତ୍କାର ଆଲୋଚନା କରିଛନ୍ତି।

ତେଣୁ ଫକୀର ମୋହନଙ୍କ 'ଉତ୍କଳ ଭ୍ରମଣଂ'ରେ କେବଳ ଚରିତ୍ର ନୁହେଁ ସ୍ଥାନ ଓ ପରିବେଶର ମଧ୍ୟ ବ୍ୟାପକ ଆଲୋଚନା ରହିଛି। ବିଭିନ୍ନ ସ୍ଥାନ ପରିଭ୍ରମଣ କରି ଫକୀରମୋହନ ସ୍ଥାନ ଓ ବ୍ୟକ୍ତିବିଶେଷଙ୍କର ମହତ୍ତ୍ୱ ପ୍ରତିପାଦନ କରିବା ସଙ୍ଗେ ସଙ୍ଗେ ସମୟର ପ୍ରାଣସ୍ପନ୍ଦନକୁ କଳାତ୍ମକ ରୂପରେ ପ୍ରକାଶ କରିଛନ୍ତି। ଅନୁଭୂତିର ନିବିଡ଼ତା ନଥିଲେ ଏଭଳି ବର୍ଣ୍ଣନା ଦେବା ସହଜସାଧ୍ୟ ନୁହେଁ। ସମାଲୋଚକ ଡଃ ସାମନ୍ତରାୟ କହନ୍ତି ''ଦୀର୍ଘ ଜୀବନର ତିକ୍ତ ମଧୁର ଅନୁଭୂତି ଏଠାରେ କେବଳ ହାସ୍ୟରସାତ୍ମକ ଭାଷାରେ ଜୀବନ୍ତ ଭାବେ ଅଭିବ୍ୟକ୍ତି ଲାଭ କରିଛି। ଯେ ଉତ୍ତରରୁ ଗ୍ରନ୍ଥ ଆରମ୍ଭ କରି ଦକ୍ଷିଣରେ ଶେଷ କରେ, ସେ ସମଗ୍ର ଓଡ଼ିଶାର ଧୂଳିମାଟି, ପାଣି ପବନ ତଥା ମଣିଷ ଓ ତାର ମନକୁ ମଧ୍ୟ ଅଧ୍ୟୟନ କରିବାର ପରମ ସୌଭାଗ୍ୟ ଲାଭ କରିଥାଏ। × × × ତେଣୁ 'ଉତ୍କଳ ଭ୍ରମଣଂ' ସାଧାରଣ ଅର୍ଥରେ ଏକ ହାସ୍ୟରସାତ୍ମକ କବିତାମୟୀ ସମାଲୋଚନା କିମ୍ବା ମାମୁଲି ଜୀବନ-ଭ୍ରମଣ ଗ୍ରନ୍ଥ ନୁହେଁ; ଏହା ନିଜ ତିକ୍ତ ମନୋବୃତ୍ତି ତଥା ଜ୍ଞାନନେତ୍ର ଓ ଉଦାର ଦୃଷ୍ଟିଭଙ୍ଗୀର ମଧୁର ସାହିତ୍ୟିକ ପରିଣତି ମଧ୍ୟ। ୭। ସୁତରାଂ ଫକୀରମୋହନଙ୍କ 'ଉତ୍କଳ ଭ୍ରମଣଂ' ଊନବିଂଶ ଶତକ ଓଡ଼ିଶାର ଜନଜୀବନ ତଥା ସ୍ଥାନ ବିଶେଷର ପୁଷ୍କଳ ପରିପ୍ରକାଶ। ଏହା ଇତିହାସ ନହେଲେ ମଧ୍ୟ ବହୁ ଐତିହାସିକ ତଥ୍ୟରେ ପରିପୂର୍ଣ୍ଣ।

## ଇଂରାଜୀ ଶିକ୍ଷାର ଅନ୍ଧାନୁସରଣର ସମାଲୋଚନା

ଇଂରାଜୀ ଶିକ୍ଷାକୁ ସରକାରୀ ଚାକିରିର ମାଧ୍ୟମ ଭାବରେ ଗ୍ରହଣ କରାଯିବା ଦ୍ୱାରା ଓଡ଼ିଶାରେ ଇଂରାଜୀ ଶିକ୍ଷାପ୍ରତି ଆଦର ପ୍ରକାଶ ପାଇଲା। ତତ୍‌ପୂର୍ବରୁ ରକ୍ଷଣଶୀଳ ଓଡ଼ିଆ ଇଂରାଜୀ ଶିକ୍ଷାକୁ ହୀନ ଦୃଷ୍ଟିରେ ଦେଖୁଥିବାରୁ ଓଡ଼ିଶାରେ ଆଧୁନିକ ଶିକ୍ଷାର ପ୍ରସାର ଅନ୍ୟାନ୍ୟ ପଡ଼ୋଶୀ ଦେଶ ତୁଳନାରେ ଅନେକ ପଛରେ ପଡ଼ିଯାଇଥିଲା। କିନ୍ତୁ ଆଧୁନିକ ଶିକ୍ଷାର ପ୍ରସାର ପରେ ଏ ଦେଶରେ ଅନ୍ୟ ଗୋଟିଏ ଶିକ୍ଷିତ ଗୋଷ୍ଠୀ ଆବିର୍ଭାବ ଲାଭ କଲେ, ଯେଉଁମାନେ ଏ ଦେଶର ଶିକ୍ଷା, ସଂସ୍କୃତି ଓ ପରମ୍ପରାକୁ ଅସ୍ୱୀକାର କରିବାକୁ ଲାଗିଲେ। ମାକ୍‌ଲେ, ଇଂରାଜୀ ଶିକ୍ଷାଦ୍ୱାରା ଭାରତୀୟମାନେ ରୁଚି ଓ ଚିନ୍ତାରେ ଇଂରେଜ ହେବେ ବୋଲି ଯାହା କହିଥିଲେ, ବାସ୍ତବରେ ତାହା ସତ୍ୟ ହେଲା। ଇଂରାଜୀ ଶିକ୍ଷିତ ଯୁବକ ନିଜର ମାତୃଭାଷାକୁ ହୀନ ଦୃଷ୍ଟିରେ ଦେଖିବାକୁ ଲାଗିଲେ। ଭୁଲିଗଲେ ନିଜର ପରମ୍ପରା ଓ ବଂଶମର୍ଯ୍ୟାଦା।

ଓଡ଼ିଆମାନଙ୍କର ଏହି ଇଂରେଜୀ ପ୍ରୀତି ଫକୀରମୋହନଙ୍କ ପ୍ରତି ଥିଲା ଅସହ୍ୟ। ଇଂରାଜୀ ଶିକ୍ଷାର ଏହି ଅନ୍ଧାନୁକରଣ ଲକ୍ଷ୍ୟକରି ସେ 'ଉତ୍କଳ ଭ୍ରମଣଂ'ରେ ଲେଖିଛନ୍ତି -

Educated ବାବୁମାନଙ୍କର ବ୍ୟବହାର
ଦେଖି ଦେଖି ହେଲିଣି ମୁଁ ନିହାତି ନାଚାର।
Old fool Prejudice ପକାଇଛ କାଟି
କଥାବେଳେ ମେଲିଯାଏ ଦେଢ଼ଫୁଟ ପାଟି
Science, logic ସବୁ ପକାଇଛ ଖୁଣ୍ଟି
ବାଟ ଚାଲି ଜାଣୁନାହଁ ପଡୁଅଛ ଝୁଣ୍ଟି। ୮।

ଫକୀରମୋହନ ରକ୍ଷଣଶୀଳ ନଥିଲେ। ଇଂରାଜୀ ଶିକ୍ଷାକୁ ସେ ଘୃଣା କରୁନଥିଲେ। କିନ୍ତୁ ଇଂରାଜୀ ଶିକ୍ଷା ଅନ୍ତରାଳରେ ନିଜ ମାତୃଭାଷାର ଅପମାନ ସେ ସହ୍ୟ କରିବାକୁ ପ୍ରସ୍ତୁତ ନଥିଲେ। କାରଣ ଇଂରାଜୀ ଭାଷା ଆମ ନିଜର ନୁହେଁ, ଏହା ପରର। ନିଜ ଜାତି ଓ କୁଳାନୁଯାୟୀ କାର୍ଯ୍ୟ କରିବାକୁ ସେ ଆହ୍ୱାନ ଦେଇଥିଲେ। ସେ ନିଜେ ଅନୁଭବ କରିଥିଲେ ଅପର ଗୋଡ଼ରେ ଠିଆ ହୋଇ କେହି କେବେ ବଡ଼ ହୋଇପାରିନାହିଁ, କିମ୍ବା ପରଭାଷା ଅଧ୍ୟୟନ କରି କେହି ଉନ୍ନତି କରିନାହିଁ। ସେଥିପାଇଁ ସେ ଉପଦେଶ ଦେଇଛନ୍ତି -

ଯେଉଁପାଠ ପଢ଼ିବାରେ ଦେଇ ଅଛ ମନ
ନ ବିଚାର ସେତ ନୁହେଁ ତୁମ୍ଭ ଗଣ୍ଠି ଧନ

ପଢ଼ ଇଙ୍ଗରେଜୀ କେହି ମନା କରୁନାହିଁ
କିନ୍ତୁ ବାପା କାମକର ଜାତି କୁଳ ଚାହିଁ
ଘୃଣା କରୁଅଛ ମାତୃଭାଷା ପଢ଼ିବାକୁ
ହାୟ ହାୟ ଲାଜ କଥା କହିବି କାହାକୁ। ୯।

ପରମୁଖାପେକ୍ଷିତା ଅଧୋଗତିର କାରଣ। ଯେଉଁ ଜାତି ନିଜ ଭାଷା ଓ ଭୂମିକୁ ସମ୍ମାନ କରି ନଜାଣେ, ସେ ଜାତିର ଉନ୍ନତି ଅସମ୍ଭବ। ଯେଉଁ ଜାତି ଅନ୍ୟ ଭାଷା ଶିକ୍ଷା କରିବା ସଙ୍ଗେ ସଙ୍ଗେ ନିଜ ମାତୃଭାଷାର ଉନ୍ନତି ପାଇଁ କାର୍ଯ୍ୟ କରେ, ସେ ଜାତି ଓ ଭାଷାର ଉନ୍ନତିର ଗତି ପଥକୁ କେହି ଅବରୋଧ କରିପାରିବେ ନାହିଁ। ସେଥିପାଇଁ କବି ବଙ୍ଗାଳୀମାନଙ୍କ ଠାରୁ ଭାଷାପ୍ରୀତି ଶିକ୍ଷା କରିବାକୁ ନିର୍ଦ୍ଦେଶ ଦେଇଛନ୍ତି। ଆଜି ଯଦି ଭାରତୀୟ ଭାଷାମାନଙ୍କ ମଧ୍ୟରେ ବଙ୍ଗଳାଭାଷା ଶୀର୍ଷ ସ୍ଥାନ ଅଧିକାର କରିଥାଏ, ତାହା କେବଳ ସମ୍ଭବ ହୋଇପାରିଛି ସେମାନଙ୍କର ଜାତିପ୍ରୀତି, ଭାଷାପ୍ରୀତି ଓ ଦେଶପ୍ରୀତି ଯୋଗୁଁ। ।୧୦। ଓଡ଼ିଆ ସହିତ ଇଂରାଜୀ ମିଶାମିଶି ଭାଷା ଅଦ୍ଭୁତ ଖେଚୁଡ଼ି କରି ଯେଉଁମାନେ କୁହନ୍ତି, ସେମାନେ ସେଥିପାଇଁ ଗର୍ବିତ ହେବା ପରିବର୍ତ୍ତେ ଲଜ୍ଜିତ ହେବା ଉଚିତ। ଆମ୍ଭମାନଙ୍କର ସ୍ୱଭାବ କୁକୁର ପରି। କାରଣ କୁକୁର ଯେପରି ବାରଘର ବୁଲି ଅଇଁଠାପତ୍ର ଚାଟି ଚାଟି ଦିନ ବିତାଇ ଦେଉଥିବାରୁ ତାର ଏକ ସ୍ୱତନ୍ତ୍ର ବାସଗୃହର ଆବଶ୍ୟକ ହୋଇ ନଥାଏ, ଠିକ୍ ସେପରି ଆମେ ପରଭାଷା ଅନୁସରଣ କରି କୃତାର୍ଥ ହେଉଥିବାରୁ ଆମ ମାତୃଭାଷାର ଉନ୍ନତି ବିଷୟକ ଚିନ୍ତାରେ ଆମର ମସ୍ତିଷ୍କ ଭାରାକ୍ରାନ୍ତ କରିବାର ଆବଶ୍ୟକ ଅନୁଭବ କରିନଥାଉ। ତେଣୁ ସେ ଲେଖିଛନ୍ତି -

ଭଲ ଗୋଟେ ମାତୃଭାଷା କିସ ହେବ ଭାଇ
ଚଳି ଯାଉଅଛି କାମ ରୁଣ୍ଡାଇ ପୁଣ୍ଡାଇ
କୁକୁର କିପାଇଁ ଗୋଟେ ବନାଇବ ଘର
ଚାଟିବୁଲେ ବାରମିଶା ଅଇଣ୍ଠାପତର। ୧୧।

ଇଂରାଜୀ ଶିକ୍ଷାଦ୍ୱାରା ଆମେ କେତେ ଗୁଡ଼ିଏ ଅପସଂସ୍କୃତିର ଅଧିକାରୀ ହୋଇଛୁ। ନିଜ ଦେଶରେ ନିର୍ମିତ ଅସଲି ଛେନାବରା ପରିବର୍ତ୍ତେ ବିସ୍କୁଟ ଖାଇବାକୁ ବେଶ୍ ପସନ୍ଦ କରୁଛୁ। ମଦ୍ୟ ସହିତ ଦରସିଝା ମାଂସଖାଇ ନିଜକୁ ଇଂରେଜୀବାବୁ ମନେ କରି ମନେମନେ ଆହ୍ଲାଦ ଲାଭ କରୁଛୁ। ସେଥିପାଇଁ ଫକୀର ମୋହନ ସମାଲୋଚନା କରି ଲେଖିଛନ୍ତି -

ମୟୂର ଲାଞ୍ଜକୁ ଗୁଞ୍ଜି ବୁଲ ନାହିଁ ଆଉ
ନ ହେବ ମୟୂର ଥିବ ଯେ କାଉ ସେ କାଉ
Nature ଯାହାକୁ ଯାହା ଦେଇଅଛି ବାଣ୍ଟି
ନ ପାରିବ Change କରି ତାହା ଘୁଣ୍ଟି ଘାଣ୍ଟି । ୧୨ ।

ଉକ୍ତ ବର୍ଣ୍ଣନାଟି କବିସୂର୍ଯ୍ୟ ବଳଦେବ ରଥଙ୍କ 'ଜଗତେ କେବଳ' ବ୍ୟଙ୍ଗ କବିତାର ଅନୁରୂପ। କେବଳ ସମାଲୋଚନା କରିଦେଲେ ସମସ୍ୟାର ସମାଧାନ ହୋଇଯାଏ ନାହିଁ। ସମସ୍ୟା ସମାଧାନ ପାଇଁ ଆବଶ୍ୟକ ଉପଯୁକ୍ତ ନେତୃତ୍ୱ ଓ ପରାମର୍ଶ। ତେଣୁ ଫକୀରମୋହନ ମାତୃଭାଷାର ଉନ୍ନତି ଦ୍ୱାରା ଜାତିର ଦୁର୍ଗତି ଘୁଞ୍ଚିଯିବ ବୋଲି ପରାମର୍ଶ ଦେଇଛନ୍ତି। ଏକ ମନ, ଏକ ପ୍ରାଣ ହୋଇ ଦେଶ ସେବାରେ ଆତ୍ମୋତ୍ସର୍ଗ କଲେ ଦେଶ ତଥା ଜାତିର ଉନ୍ନତି ହେବ। ଭାରତର ଅନ୍ୟାନ୍ୟ ପ୍ରଦେଶ ସହିତ ଓଡ଼ିଶା ପାଦ ମିଳାଇ ଚାଲିବାକୁ ସମର୍ଥ ହୋଇପାରିବ।

'ଉତ୍କଳ ଭ୍ରମଣଂ'ରେ ଇଂରାଜୀ ଶିକ୍ଷାର ଅନ୍ଧାନୁସରଣ ବିରୋଧରେ ସ୍ୱର ଉତ୍ତୋଳନ କରାଯାଇଛି। ପ୍ରତ୍ୟେକ ଶିକ୍ଷାର ଦୁଇଟି ଦିଗ ରହିଛି। ସୁଦିଗ ଓ କୁଦିଗ। ଆମେ ସୁଦିଗ ପରିବର୍ତ୍ତେ ସର୍ବଦା ଇଂରାଜୀ ଶିକ୍ଷାର କୁଦିଗ ପ୍ରତି ଆକୃଷ୍ଟ ହୋଇଛୁ। ଯେକୌଣସି ଜାତି ପକ୍ଷରେ ଏଇଟା ପରିତାପର ବିଷୟ ନିଶ୍ଚୟ। ଇଂରାଜୀ ଶିକ୍ଷା ଅର୍ଥ ନୁହେଁ ମାତୃଭାଷା ତଥା ମାତୃଭୂମିକୁ ହୀନ ଚକ୍ଷୁରେ ଦେଖିବା। ଯଦି ଏହି ଶିକ୍ଷା ଦ୍ୱାରା ଇଂରାଜୀ ଜାତୀୟତା ସମ୍ପର୍କରେ ଆମେ ସମ୍ୟକ୍ ଜ୍ଞାନ ଆହରଣ କରିପାରନ୍ତୁ, ତାହେଲେ ଆମ ଶିକ୍ଷାର ଗୁରୁତ୍ୱ ରୁହନ୍ତା; ଶିକ୍ଷା ସାର୍ଥକ ଲାଭ କରିପାରନ୍ତା। ଦେଶ ସେବା ଅନ୍ତରାଳରେ ଦେଶଦ୍ରୋହୀତା ସର୍ବଦା ନିନ୍ଦନୀୟ। ଦେଶ ଓ ଜାତିର ସାମୂହିକ ଉନ୍ନତି ପାଇଁ ସମୂହ କର୍ତ୍ତବ୍ୟ ଅବଶ୍ୟମ୍ଭାବୀ। ଯେଉଁ ଜାତି ଯେତେ ପରିମାଣରେ ଆତ୍ମ ସଚେତନ ସେ ଜାତି ସେହି ପରିମାଣରେ ଉନ୍ନତ। ତେଣୁ କବି ଆହ୍ୱାନ ଦେଇଛନ୍ତି ଏକ ମନ ଏକ ପ୍ରାଣ ପୂର୍ବକ ମାତୃଭାଷା ଓ ମାତୃଭୂମିର ଉନ୍ନତି ସାଧନରେ ବ୍ରତୀ ହେଲେ, ଆମ ମନର ଗୌଣ ଭାବ ଦୂରୀଭୂତ ହେବା ସଙ୍ଗେ ସଙ୍ଗେ ଜାତି ତଥା ଦେଶର ଉନ୍ନତି ହୋଇପାରିବ।

**ଶୈଳୀ ଓ ଭାଷା :**

ପ୍ରତ୍ୟେକ କବି ବା ସାହିତ୍ୟିକଙ୍କର ଏକ ଏକ ନିଜସ୍ୱ ଶୈଳୀ ଓ ଭାଷା ଥାଏ। ସେହି ଶୈଳୀ ଓ ଭାଷାରୁ ଜଣେ କବି ଅନ୍ୟ ଜଣେ କବିଙ୍କଠାରୁ ସ୍ୱତନ୍ତ୍ର ଭାବେ ବାରି ହୋଇପଡ଼େ। ଆଲୋଚ୍ୟ କବି ଫକୀରମୋହନଙ୍କ ଭାଷା ଓ ପ୍ରକାଶଭଙ୍ଗୀର ରୀତି

ଓଡ଼ିଆ ସାହିତ୍ୟରେ ଅନନ୍ୟ-ସାଧାରଣ। ସାଧାରଣ ଭାବେ ଆମେ ତାଙ୍କ ଠାରୁ ଯାହା ଆଶା କରିଥାଉ, ପାଇଥାଉ କିନ୍ତୁ ଅଧିକ। ଯେପରି ଅଷ୍ଟାଦଶ ଶତାବ୍ଦୀରେ ଇଂରାଜୀ ସାହିତ୍ୟ କ୍ଷେତ୍ରରେ ଯେଉଁ ପାରମ୍ପରିକ ଶୈଳୀର ବ୍ୟବହାର କରାଯାଉଥିଲା, ଓ୍ୱାର୍ଡ଼ସ୍ ଓ୍ୱାର୍ଥ ସେହି ଶୈଳୀର ଏକ ଆମୂଳଚୂଳ ପରିବର୍ତ୍ତନ କରି ଏକ ସ୍ୱତନ୍ତ୍ର ଶୈଳୀର ଉଦ୍‌ବର୍ତ୍ତନ କରିଥିଲେ, ଅନୁରୂପ ଭାବେ ମଧ୍ୟଯୁଗୀୟ କାବ୍ୟଶୈଳୀ ପରିହାର କରି ଫକୀରମୋହନ ପ୍ରଥମଥର ଊନବିଂଶ ଶତାବ୍ଦୀର କାବ୍ୟକବିତା କ୍ଷେତ୍ରରେ ଏକ ନୂତନ ଲୋକକଥିତ ଶୈଳୀର ବ୍ୟବହାର କରିଥିଲେ। 'ଫକୀରମୋହନ, ତତ୍ସମ, ତଦ୍‌ଭବ ବହୁଳ ପୋଷାକୀ କାବ୍ୟିକ ଭାଷା ପରିବର୍ତ୍ତେ ଲୋକ କଥିତ ଭାଷାକୁ ରଚନାର ମାଧ୍ୟମ ରୂପେ ବାଛି ନେଇଥିଲେ।'୧୩। ଓଡ଼ିଆ ଭାଷାକୁ ସେ ଏକ ନୂତନ ମର୍ଯ୍ୟାଦା ପ୍ରଦାନ କରିଥିଲେ। ଖାଣ୍ଟି ଗାଉଁଲୀ ଓଡ଼ିଆ ପୋଷାକ ପିନ୍ଧି ତାଙ୍କ ଚରିତ୍ର ଗୁଡ଼ିକ ଆମ ଚତୁର୍ଦ୍ଦିଗରେ ଘୂରି ବୁଲିବା ସଙ୍ଗେ ସଙ୍ଗେ ହାତଠାରି ଆମକୁ ଦେଖାଇ ଦେବାକୁ ଲାଗିଲେ, ସେମାନଙ୍କର ବିଶେଷତ୍ୱ। ଲୋକକଥିତ ଭାଷା ଯେ, ସାହିତ୍ୟରେ ଏକ ସ୍ୱତନ୍ତ୍ର ମର୍ଯ୍ୟାଦା ଦାବୀ କରିପାରେ, ତାହା ପ୍ରଥମ ଥର ପାଇଁ ଫକୀରମୋହନ ପ୍ରମାଣ କରିଗଲେ। 'ଉତ୍କଳ ଭ୍ରମଣଂ'ରେ ଫକୀରମୋହନ ଏହି ଲୋକ କଥିତ ଭାଷାର ବ୍ୟବହାର କରିବା ସଙ୍ଗେ ସଙ୍ଗେ ଏକ ସ୍ୱତନ୍ତ୍ର ଶୈଳୀର ଆବିଷ୍କାର କରିଛନ୍ତି।

ସାଧାରଣ ଦୃଷ୍ଟି ଅପେକ୍ଷା କବି ଦୃଷ୍ଟିରେ ସ୍ୱତନ୍ତ୍ରତା ଥାଏ। ଏହି ସ୍ୱତନ୍ତ୍ରତା ଗୋଟିଏ କବିକୁ ଅନ୍ୟ କବିଠାରୁ ପୃଥକ ବୋଲି ଦର୍ଶାଇ ଦେଇଥାଏ। ପ୍ରସିଦ୍ଧ ପୀଠସ୍ଥଳୀମାନଙ୍କରେ ବ୍ରାହ୍ମଣମାନଙ୍କର ପଇସା ପାଇଁ ବିଭିନ୍ନ ପ୍ରକାର କାରସାଦୀ ଏକ ସାଧାରଣ ବ୍ୟାପାର। ଫକୀରମୋହନ, ଯାଜପୁରଠାରେ ବ୍ରାହ୍ମଣମାନଙ୍କର ଏହି ପ୍ରବୃତ୍ତିକୁ ଚମତ୍କାର ବ୍ୟଙ୍ଗ ଶୈଳୀରେ ପ୍ରକାଶ କରିଛନ୍ତି –

ରାମ ରାମ ରାମ ରାମ ପଡ଼ିଲିଣି ଥକି
ଘାଟିଆ ବାମୁଣ ଗଣ ସଙ୍ଗେ ବକି ବକି
ଆଉ ଭାଇ ଶୁଣିବାରେ ନାହିଁ ମୋର କାମ
ଚୌଦୟେ ଛପନ୍ନ ପୁରୁଷଙ୍କ ନାମ ଧାମ
ନିଅ ନନା ଟଙ୍କାଟିଏ କରନାହିଁ ହୁରି
ଆପଣା ପୋଥିରେ ଦୟାକରି ଦିଅ ତୋରି। ୧୪।

ଇଂରାଜୀ ଶିକ୍ଷିତ ଓଡ଼ିଆ ବାବୁମାନଙ୍କର ମାତୃଭାଷା ପ୍ରତି ହତାଦର ଭାବ ଲକ୍ଷ୍ୟ କରି ଚମତ୍କାର ଭାବରେ ବ୍ୟଙ୍ଗ ଶୈଳୀରେ ସେ ସମାଲୋଚନା କରି ଲେଖିଛନ୍ତି –

Learned ବାବୁ ଦେଖି ବିଚାରେଁ ମନରେ
ଦାରୁଇନ୍ ଆସିଥିଲେ ଏ ଦେଶକୁ ଥରେ
ଏମାନଙ୍କୁ ଦେଖି ବୋଲିଛନ୍ତି ଅନୁମାନେ
ମାଙ୍କଡ଼ ବଂଶରୁ ଜନ୍ମିଛନ୍ତି ଲୋକମାନେ
ଇଂରେଜୀକୁ ହେଉଥାଉ ଦିନରାତି ଘୋଷି
ନ ଛୁଅଁ ପଛକେ ପାଣି ପଦାଆଡ଼େ ବସି। ୧୫।

ପରବର୍ତ୍ତୀ ସମୟରେ ଫକୀରମୋହନଙ୍କ ଏହି ଶୈଳୀରୁ ଲକ୍ଷ୍ୟ କରି ରାଧାନାଥ ତାଙ୍କର ବ୍ୟଙ୍ଗ କାବ୍ୟ 'ଦରବାର' ରଚନା କରିଥିଲେ ମଧ୍ୟ ଫକୀରମୋହନଙ୍କ ଦେଶଭାଷାର ଅନୁରୂପ ବ୍ୟବହାର ରାଧାନାଥ କରିପାରି ନାହାନ୍ତି। ତାଙ୍କ 'ଦରବାର' କାବ୍ୟରେ ଅନେକ ତତ୍ସମ ଶବ୍ଦର ପ୍ରୟୋଗ କରାଯାଇଛି। ତେଣୁ ଫକୀରମୋହନ ଯେଉଁ ଭାଷାର ବ୍ୟବହାରକରିଛନ୍ତି, ତାହା ହେଉଛି ନିତିଦିନିଆ ଓଡ଼ିଆ ମାନଙ୍କର ଲୋକକଥିତ ଗାଉଁଲୀ ଭାଷା। ଯେତେବେଳେ ସେ କୁହନ୍ତି -

ଭଲ ଗୋଟେ ମାତୃଭାଷା କିସ ହେବ ଭାଇ
ଚଳିଯାଉଅଛି କାମ ଗୁଣ୍ଡାଇ ପୁଣ୍ଡାଇ। ୧୬।

ସେତେବେଳେ ଆମର ମନେହୁଏ ସତେ ଯେପରି କେହି ଜଣେ ଗାଉଁଲୀ ଓଡ଼ିଆ ଆମମାନଙ୍କ ସଙ୍ଗରେ ଦୁଃଖ ସୁଖ ହେଉଛି। ତାର ଅଭିମାନ ପ୍ରକାଶ କରୁଛି। ତାଙ୍କ କାବ୍ୟକବିତାର ଶୈଳୀ ଏପରି ମାର୍ଜିତ ଭାବରେ ପରିବେଷିତ ହୋଇଛି ଯେ, ଜଣେ ସୂକ୍ଷ୍ମ ଭାବରେ ଅନୁସନ୍ଧାନ ନକଲେ ଆଦୌ ଜାଣିପାରିବେ ନାହିଁ। ତାଙ୍କର ଏହି ଶୈଳୀ କେତେବେଳେ ପ୍ରତ୍ୟକ୍ଷ ଭାବରେ ବା କେତେବେଳେ ପରୋକ୍ଷ ଭାବରେ ସାମାଜିକ ସମସ୍ୟାର ଉତ୍‌ଥାନ ସଙ୍ଗେ ସଙ୍ଗେ ସମାଧାନ ପାଇଁ ପଥ ନିର୍ଦ୍ଦିଷ୍ଟ କରିଛି।

ସଂକ୍ଷେପରେ କହିଲେ ଫକୀରମୋହନଙ୍କ 'ଉତ୍କଳ ଭ୍ରମଣଂ' ଏକ ଅଭିନବ କାବ୍ୟ। କି ଚରିତ୍ର ଚିତ୍ରଣ, କି ଭାଷା ବା ଶୈଳୀ– ପ୍ରତ୍ୟେକ କ୍ଷେତ୍ରରେ ଏକ ଅଭିଜ୍ଞ କୁଶଳୀ ହସ୍ତ ତାର ପରିଚୟ ପ୍ରଦାନ କରିଛି। କେବଳ ସେତିକି ନୁହେଁ 'ଉତ୍କଳ ଭ୍ରମଣଂ'ର ପୃଷ୍ଠଭୂମିରେ ଯେଉଁ ଅକୁତୋଭୟ, ବଳିଷ୍ଠ ବ୍ୟକ୍ତିତ୍ୱ ରହିଛି; ଓଡ଼ିଆ ସାହିତ୍ୟରେ ସେପରି ବ୍ୟକ୍ତିତ୍ୱର କ୍ୱଚିତ ପରିଚୟ ମିଳିଥାଏ। ଆଦ୍ୟ ବିଂଶ ଶତାବ୍ଦୀର କବିତାରେ ଫକୀରମୋହନହିଁ ଯଥାର୍ଥରେ ଥିଲେ 'avante garde' ବା ଅଗ୍ରଗାମୀ। ୧୭। ଓଡ଼ିଆ ସାହିତ୍ୟକୁ ଫକୀରମୋହନଙ୍କ 'ଉତ୍କଳ ଭ୍ରମଣଂ' ଏକ ଅନବଦ୍ୟ ଅବଦାନ; ଯେଉଁଥିରେ ଆମେ ଊନବିଂଶ ଶତାବ୍ଦୀ ଓଡ଼ିଶାର ରାଜନୀତିକ, ସାମାଜିକ ଓ ଆର୍ଥନୀତିକ ଚିତ୍ର

ପାଇବା ସଙ୍ଗେ ସଙ୍ଗେ ଓଡ଼ିଶାର ଜନଜୀବନର ସ୍ୱତନ୍ତ୍ର ପରିଚୟ ପାଇଥାଉ । ଅନ୍ୟ ଅର୍ଥରେ କହିଲେ "ଉତ୍କଳ ଭ୍ରମଣଂ' ଊନବିଂଶ ଶତାବ୍ଦୀ ଓଡ଼ିଶାର ଏକ ସାମାଜିକ ଇତିହାସ ।

## 'ବୌଦ୍ଧାବତାର କାବ୍ୟ' : ଏକ ଅନୁଶୀଳନ

କବି ବାଲେଶ୍ୱରରେ ଅବସ୍ଥାନ କରୁଥିବା ସମୟରେ ବୁଦ୍ଧଦେବଙ୍କ ଜୀବନ ଅବଲମ୍ବନରେ ବୌଦ୍ଧାବତାର କାବ୍ୟ ରଚନା କରିଛନ୍ତି ବୋଲି ନିଜ "ଆତ୍ମଜୀବନ ଚରିତ"ରେ ସ୍ୱୀକାର କରିଛନ୍ତି । ୧୮ । 'ଶାନ୍ତିକାନନ'ର ନିର୍ଜନ ପରିବେଶ ଓ ନିଃସଙ୍ଗ ଜୀବନ ବାର୍ଦ୍ଧକ୍ୟ ବୟସରେ ତାଙ୍କୁ ବୌଦ୍ଧଧର୍ମ ପ୍ରତି ଆକୃଷ୍ଟ କରିଛି । ପବିତ୍ର ଦୋଳୋତ୍ସବ ଓ ମହରମ ପର୍ବରେ ଉକ୍ତ କାବ୍ୟର ରଚନା ଆରମ୍ଭ । ୧୯୦୯ ମସିହାରେ ସେ ଏହି କାବ୍ୟଟି ରଚନା କରନ୍ତି । ନିଃସଙ୍ଗ ଜୀବନ ଯେତେବେଳେ ତାଙ୍କୁ ଏକାନ୍ତ ଅସହ୍ୟବୋଧ ହୋଇଛି, ଗୃହ ମଧ୍ୟରେ କବାଟ ବନ୍ଦ କରି ବସି ରହିଥିବା ସମୟରେ ହଠାତ୍ ଦୋଳୋତ୍ସବର ବାଦ୍ୟ ତାଙ୍କ ମାନସଲୋକରେ ଅତୀତ ଇତିହାସର ପୃଷ୍ଠା ଉନ୍ମୋଚନ କରିଛି । ସେ ନିଜେ ସ୍ୱୀକାର କରିଛନ୍ତି "ସହସା ମୋ ମନରେ ଉଦିତ ହେଲା, କପିଳ ବାସ୍ତୁରେ ସିନା ଏହିପରି ବସନ୍ତୋତ୍ସବ ସମାହିତ ହେଉଥିଲା ? ସମ୍ମୁଖସ୍ଥ ମେଜ ଉପରେ ଲିଖନର ଉପକରଣ ପ୍ରସ୍ତୁତ ଥିଲା - ଦୟାମୟ ବିଶ୍ୱବିଧାତାଙ୍କ ମହାପବିତ୍ର ନାମ ସ୍ମରଣ ପୂର୍ବକ ଉପସ୍ଥିତ କାବ୍ୟ ଖଣ୍ଡିକର ଲେଖା ଆରମ୍ଭ କରିଦେଲି ।" ୧୯ । ଏହା ହିଁ ହେଉଛି ବୌଦ୍ଧାବତାର କାବ୍ୟର ପ୍ରସ୍ତୁତି ପର୍ବ । ଫାଲଗୁନ ମାସ ଶୁକ୍ଳ ତ୍ରୟୋଦଶୀରେ ଗ୍ରନ୍ଥାରମ୍ଭ ଓ ବୈଶାଖ କୃଷ୍ଣ ଏକାଦଶୀରେ ଗ୍ରନ୍ଥ ରଚନାର ପରିସମାପ୍ତି । ମାତ୍ର ବୟାଳିଶ ଦିନ ମଧ୍ୟରେ କାବ୍ୟ ବିଷୟବସ୍ତୁର ପରିକଳ୍ପନା, ସଜ୍ଜୀକରଣ ଓ ପରିସମାପ୍ତି । ଊନବିଂଶ ସର୍ଗ ବିଶିଷ୍ଟ ଏହି କାବ୍ୟଟି ମାତ୍ର ବୟାଳିଶ ଦିନ ମଧ୍ୟରେ ସମାପ୍ତ ହେବା କମ୍ ଆୟାସସାଧ ବ୍ୟାପାର ନୁହେଁ । ସେପରି ଏକାଗ୍ରତା, ମନୋନିବେଶ ଓ ଧୈର୍ଯ୍ୟ ନଥିଲେ ଏତେ କମ୍ ଦିନରେ ଏପରି ଏକ କାବ୍ୟ ରଚନା କରିବା ସମ୍ଭବ ନୁହେଁ ।

ବୌଦ୍ଧାବତାର କାବ୍ୟ ଆଲୋଚନା କରିବା ସମୟରେ ସ୍ୱତଃ କେତୋଟି ପ୍ରଶ୍ନ ମନ ମଧ୍ୟରେ ଉଙ୍କିମାରି ଉଠିଥାଏ । ଯଥା - ବୌଦ୍ଧାବତାର କାବ୍ୟ ଏକ ମୌଳିକ କାବ୍ୟ କି ? ଯଦି ନୁହେଁ, ତେବେ ଏହାର ମୂଳ ଉତ୍ସ କେଉଁଠି ? ଏଥିରେ କୌଣସି କଳାତ୍ମକ ମୂଲ୍ୟ ଅଛି କି ? ମନରେ ଏଭଳି କେତେଗୁଡ଼ିଏ ପ୍ରଶ୍ନ ଜାଗରିତ ହେବା ସ୍ୱାଭାବିକ । କିନ୍ତୁ ଦୁଃଖର ସହିତ ସ୍ୱୀକାର କରିବାକୁ ପଡୁଛି, ଫକୀରମୋହନ ତାଙ୍କର

ଗଦ୍ୟ ସାହିତ୍ୟ କ୍ଷେତ୍ରରେ ଯେପରି ମୌଳିକତା ପ୍ରଦର୍ଶନ କରିଛନ୍ତି, ପଦ୍ୟ ସାହିତ୍ୟ କ୍ଷେତ୍ରରେ ସେପରି ମୌଳିକତା ଦେଖାଇ ପାରିନାହାନ୍ତି। ତାଙ୍କର ବୌଦ୍ଧାବତାର କାବ୍ୟ ଓ କେତେଗୁଡ଼ିଏ କ୍ଷୁଦ୍ର କବିତା ବଙ୍ଗଳା ସାହିତ୍ୟର ଅନୁସରଣରେ ରଚିତ। ଏ କ୍ଷେତ୍ରରେ ବଙ୍ଗଳାର ପ୍ରସିଦ୍ଧ ତିନିଜଣ କବି ତାଙ୍କ ସମ୍ମୁଖରେ ଆଦର୍ଶ ଭାବରେ ଦେଖା ଦେଇଛନ୍ତି। ସେମାନେ ହେଲେ ନବୀନ ଚନ୍ଦ୍ର ସେନ, ରବୀନ୍ଦ୍ରନାଥ ଠାକୁର ଓ ମାଇକେଲ ମଧୁସୂଦନ ଦତ୍ତ। ପ୍ରସଙ୍ଗ କ୍ରମେ ପରବର୍ତ୍ତୀ ସମୟରେ ଫକୀରମୋହନଙ୍କ କବିତାଗୁଡ଼ିକ ସହିତ ଉଲ୍ଲିଖିତ କବିମାନଙ୍କ କବିତାଗୁଡ଼ିକର ତୁଳନାତ୍ମକ ଆଲୋଚନା ପ୍ରଦାନ କରାଯିବ। ବର୍ତ୍ତମାନ ଏଠାରେ କେବଳ 'ବୌଦ୍ଧାବତାର କାବ୍ୟ'ର ଆଲୋଚନା କରାଗଲା।

'ବୌଦ୍ଧାବତାର କାବ୍ୟ' ଆଲୋଚନା ସମୟରେ ପ୍ରଥମେ ଆମକୁ ତାର ମୂଳଉତ୍ସ ସମ୍ପର୍କରେ ଅନୁସନ୍ଧାନ କରିବାକୁ ପଡ଼ିବ। ଫକୀରମୋହନ 'ବୌଦ୍ଧାବତାର କାବ୍ୟ'ର ମୁଖବନ୍ଧରେ ସ୍ୱୀକାର କରିଛନ୍ତି, ଲଳିତ ବିସ୍ତର ଓ କେତୋଟି ବଙ୍ଗଳା ପତ୍ରିକା ତଥା ପୁସ୍ତକ ପାଠ କରିଛନ୍ତି। କିନ୍ତୁ ଏହି କାବ୍ୟଟି ରଚନା ପାଇଁ ସେ ମୁଖ୍ୟତଃ କେଉଁଥିରୁ ଉପାଦାନ ସଂଗ୍ରହ କରିଛନ୍ତି, ତାହା ସ୍ପଷ୍ଟ ଭାବରେ ଉଲ୍ଲେଖ କରିନାହାନ୍ତି। ବର୍ତ୍ତମାନ ବୌଦ୍ଧାବତାର କାବ୍ୟର ମୂଳ ଉତ୍ସ ସମ୍ପର୍କରେ କେତେକ ବିବରଣୀ ପ୍ରଦାନ କରାଯାଉଛି।

## ବୌଦ୍ଧାବତାର କାବ୍ୟର ମୂଳଉତ୍ସ :

ବୁଦ୍ଧଦେବଙ୍କ ଜୀବନ ଚରିତ ଅବଲମ୍ବନରେ ଅନେକ କାବ୍ୟ କବିତା ରଚନା କରାଯାଇଛି। ତନ୍ମଧ୍ୟରୁ ଲଳିତ ବିସ୍ତର, ଅଶ୍ୱଘୋଷଙ୍କ ବୁଦ୍ଧ ଚରିତ, ସାର ଏଡ଼ଉଇନ୍ ଆର୍ଣ୍ଣୋଲ୍ଡ (Sir Edwin Arnold) ଙ୍କ Light of Asia, ନବୀନ ଚନ୍ଦ୍ର ସେନଙ୍କ 'ଅମିତାଭ' ଓ 'ଫକୀରମୋହନଙ୍କ ବୌଦ୍ଧାବତାର କାବ୍ୟ ପ୍ରଭୃତି ପ୍ରଧାନ। ଫକୀର-ମୋହନ ତାଙ୍କର ଉକ୍ତ କାବ୍ୟ ପାଇଁ କେଉଁ କାବ୍ୟଠାରୁ ପ୍ରେରଣା ଲାଭ କରିଛନ୍ତି ତାହା ଅନ୍ୟାନ୍ୟ କାବ୍ୟଗୁଡ଼ିକ ସହିତ ତୁଳନାତ୍ମକ ଆଲୋଚନା କଲେ ସ୍ପଷ୍ଟ ହୋଇପାରିବ।

## ଲଳିତବିସ୍ତର ଓ ବୌଦ୍ଧାବତାର କାବ୍ୟ :

ସମାଲୋଚକ କୁଞ୍ଜବିହାରୀ ଦାଶ ତାଙ୍କ 'ସମାଲୋଚନା' ଗ୍ରନ୍ଥରେ 'ଲଳିତ ବିସ୍ତର' ସହିତ ବୌଦ୍ଧାବତାର କାବ୍ୟର ତୁଳନାତ୍ମକ ଆଲୋଚନା କରି ଲଳିତ ବିସ୍ତର ବୌଦ୍ଧାବତାର କାବ୍ୟର ମୂଳ ଉତ୍ସ ବୋଲି ମତପ୍ରଦାନ କରିଛନ୍ତି। ସମାଲୋଚକ ଦାଶ ଲଳିତବିସ୍ତରର କେତେକ ପଦ ସହିତ ଏହି କାବ୍ୟର କେତେକ ପଦର ସାମଞ୍ଜସ୍ୟ

ଲକ୍ଷ୍ୟ କରି ଏପରି ମତାମତ ପ୍ରଦାନ କରିଛନ୍ତି। ମାୟାଦେବୀଙ୍କ ସ୍ୱପ୍ନ ପ୍ରସଙ୍ଗରେ ଲଳିତ ବିସ୍ତରରେ ଉଲ୍ଲେଖ ଅଛି -

ହିମରଜତ ନିଭଷ୍ଟ ଷଡ଼ ବିଷାଣଃ ସୁଚରଣ ଚାରୁଭୁଜଃ ସୁରକ୍ତ ଶୀର୍ଷା
ଉଦର ମୁପଗତୋ ଗଜ ପ୍ରଧାନୋଲଳିତ-ଗତି-ଦୃଢ଼ ବଜ୍ର ପାତ୍ରସନ୍ଧି
.... (୬ଷ୍ଠ ଅଧ୍ୟାୟ)

ଉକ୍ତ ବର୍ଣ୍ଣନାର ସାମଞ୍ଜସ୍ୟ ପରିଲକ୍ଷିତ ହୋଇଥାଏ 'ବୌଦ୍ଧବତାର କାବ୍ୟର ମାୟାଦେବୀଙ୍କ ସ୍ୱପ୍ନ ବୃତ୍ତାନ୍ତ ପ୍ରସଙ୍ଗରେ -

× × ତୁଷାର ଧବଳ ଏକ ଦନ୍ତାବଳ
ଶ୍ୱେତ ପଦ୍ମ ଏକ ଧରି
ରାଣୀଙ୍କ ପୟରେ ଭକ୍ତି-ବିନୟରେ
ପ୍ରଣମିଣ ତିନିଥର
ସବ୍ୟେତର ଦେଶ କଲାକ ପ୍ରବେଶ
ବିଦାରି ଦେବୀ ଉଦର। (୧ମ ସର୍ଗ)

ଅଶ୍ୱଘୋଷଙ୍କ ରଚିତ 'ବୁଦ୍ଧ ଚରିତ'ରେ ମଧ୍ୟ ଅନୁରୂପ ବର୍ଣ୍ଣନା ଦେଖାଯାଇଥାଏ।

ବିବେଶ ତସ୍ୟା ସ୍ମୃତ ଏକ କୁଯୌ ନନ୍ଦଗୁହା-ଯାମିକ ନାଗରାଜଃ
ଧୃତ୍ୱା ହିମାଦ୍ରି ଧବଳଂ ଗୁରୁଷଡ଼ ବିଷାଣଂ (୧ମ ଅଧ୍ୟାୟ)

ଲଳିତବିସ୍ତରରେ ରାଣୀ ତାଙ୍କ ସ୍ୱପ୍ନ ବୃତ୍ତାନ୍ତ ରାଜାଙ୍କ ସମ୍ମୁଖରେ ପ୍ରକାଶ କରନ୍ତେ ରାଜା ବ୍ରାହ୍ମଣମାନଙ୍କୁ ଡକାଇ ମାୟାଦେବୀଙ୍କ ସ୍ୱପ୍ନ ବିଷୟରେ ଗଣନା କରି ଶୁଭାଶୁଭ ବିଚାର କରିବାକୁ କହିଛନ୍ତି। ବ୍ରାହ୍ମଣମାନେ ମାୟାଦେବୀଙ୍କ ସ୍ୱପ୍ନ ବିଶ୍ଳେଷଣ କରି ଏହିପରି ମତାମତ ପ୍ରଦାନ କରିଛନ୍ତି। ଯଥା -

ପୁତ୍ର ତବ ଜନେଷୀ ଲକ୍ଷଣୈ
ଭୂଷିତାଙ୍ଗମ୍ ରାଜକୁଳୀନମ୍ ଚକ୍ରବର୍ତ୍ତିଂ ମହାତ୍ମଂ
ସ ଚ ପୁନ ବିଜହିତ୍ୱା କାମ ରାଜାଞ୍ଚ ଗେହଂ
ପ୍ରବଜିତ ନିରପେକ୍ଷଃ ସର୍ବଲୋକାନୁ କମ୍ପା
ବୁଦ୍ଧୋ ଭବତି ଏଷୋ ଦର୍ଶନୀୟ ସ୍ତ୍ରୀ ଲୋକେ
ଅମୃତ ରସ ବରେଣ ତର୍ପୟେତ୍ ସର୍ବଲୋକଂ
(ଷଷ୍ଠ ଅଧ୍ୟାୟ, ପୃ-୬୦)

ବୌଦ୍ଧାବତାର କାବ୍ୟରେ ଦୈବଜ୍ଞ ବ୍ରାହ୍ମଣମାନେ ସ୍ୱପ୍ନର ଫଳାଫଳ ଗଣନା କରି ପ୍ରକାଶ କରିଛନ୍ତି -

ପୁଚ୍ଛନ୍ତେ ସକଳେ          ରାଣୀ ଭାଗ୍ୟବଳେ
ଲଭିବେ ଦିବ୍ୟ ସନ୍ତାନ
×    ×    ×    ×
ହେଲେ ସେ ସନ୍ନ୍ୟାସୀ          ଜଗତ ନିବାସୀ
ମାନବ ଉଦ୍ଧାରପାଇଁ
କରିବେ ବିଧାନ          ତେଜି ଧନମାନ
ବିଷୟେ ସଂଶୟ ନାହିଁ
ପୃଥ୍ୱୀ ପାପ ଭାର          କରିବେ ସଂହାର × × × ×

ବୁଦ୍ଧଦେବ ଯୋଗରେ ବସିଥିବା ସମୟରେ ଆକାଶ ମାର୍ଗରେ ଗତିକରୁଥିବା ପଞ୍ଚଋଷିଙ୍କ ଗତିପଥ ବନ୍ଦ ହୋଇଯିବା ସମ୍ପର୍କରେ ଉଭୟକାବ୍ୟର ବର୍ଣ୍ଣନା ଏକ ପ୍ରକାର।

**ଲଳିତ ବିସ୍ତର :**

ପଞ୍ଚଋଷି ସ୍ୱପଥେନ ହି ଗଛମାନା
ଜମ୍ବୁୟ ମୂର୍ଦ୍ଧ୍ନି ପ୍ରଭୋନ୍ତି ପରାକ୍ରମି ତୁଂ
ତ ବିସ୍ମିତା ନିହତି ମାନା ମହାଷ୍ଟ ଭୂତ୍ୱା
ସର୍ବେ ସମଗ୍ର ସହିତାଃ ସମୁଦୀକ୍ଷୟନେ
(୧୧ଶ ଅଧ୍ୟାୟ    ୧୫୨-୫୩)

**ବୌଦ୍ଧାବତାର କାବ୍ୟ :**

ସେହି କାଳେ ପାଞ୍ଚଜଣ ମହର୍ଷି ଗଗନେ
ଯାଉଥିଲେ ଶାକ୍ୟ ସିଂହେ ଦେଖିଲେ ନୟନେ
ସ୍ଥିର ହେଲା ଯୋଗାସନ, ଆଉ ଶକ୍ତି କାହିଁ
ବୁଦ୍ଧେ ଅତିକ୍ରମି ଅଗ୍ରସର ହେବାପାଇଁ।
(୩ୟ ସର୍ଗ, ଫ.ମୋ.ଗ୍ର-୪୬୭)

ଜମ୍ବୁବୃକ୍ଷମୂଳେ ଯୋଗରତ ବୁଦ୍ଧଦେବଙ୍କୁ ଦେଖି ଲଳିତବିସ୍ତର ବର୍ଣ୍ଣନ କରିଛି-

ପଶ୍ୟନ୍ତି ଶାକ୍ୟ ନେୟଂ ତହି ଜମ୍ବୁମୂଳେ
ଜମ୍ବୁନଦାର୍ଚ୍ଚି ସଦୃଶପ୍ରଭ ତେଜ ରଶ୍ମିଂ

(୧୧ଶ ଅଧ୍ୟାୟ-୧୫୩)

**ବୌଦ୍ଧାବତାର କାବ୍ୟ :**

ଦେଖିଲେ ଋଷିଏ ଯୁବା ଜମ୍ବୁବୃକ୍ଷ ତଳେ
କାଞ୍ଚନ ପ୍ରତିମା କିବା ଜ୍ୱଳନ୍ତ ଅନଳେ (୩ୟ ସର୍ଗ-ପୃ: ୪୬୬)

ବୁଦ୍ଧଦେବଙ୍କ ରାଜଗୃହ ତ୍ୟାଗ ପରେ କପିଳବସ୍ତୁ ନଗରର ପ୍ରତିକ୍ରିୟା ପ୍ରକାଶ କରି 'ଲଳିତବିସ୍ତର'ରେ ବର୍ଣ୍ଣିତ ଅଛି-

ଶୁଦ୍ଧୋଦନସ୍ୟ ସ୍ୱଗୃହେ ପରିମାର୍ଗ ମାଣଃ
ସଂପୃଚ୍ଛତେ କ୍ୱନୁଗତଃ ସହିମେ କୁମାରଃ।

(୧୧ଶ ଅଧ୍ୟାୟ-୧୫୪)

ବୌଦ୍ଧାବତାର କାବ୍ୟରେ ମଧ୍ୟ ଅନୁରୂପ ବର୍ଣ୍ଣନା ଦେଖାଯାଇଥାଏ।

କାହାନ୍ତି କୁମାର ଏହି କଥା ହିଁ କେବଳ
ପଡ଼ିଲା କପିଳବସ୍ତୁ ନଗରେ ଚହଳ।× × ×
ସମସ୍ତଙ୍କ ମୁଖେ ଏକ କଥା ବାରମ୍ବାର
ଘରେତ ନାହାନ୍ତି, କାହିଁ ଅଛନ୍ତି କୁମାର।

(୧୨ଶ ସର୍ଗ-ପୃ. ୪୯୦)

ଏହିପରି କେତେକ ବର୍ଣ୍ଣନାଗତ ସାମ୍ୟ ଲକ୍ଷ୍ୟକରି ଶ୍ରୀଦାଶ ଏପରି ମତାମତ ପ୍ରଦାନ କରିଛନ୍ତି।

**Light of Asia :**

Sir Edwin Arnold ଙ୍କ The light of Asia ରେ ମଧ୍ୟ ସେହିପରି କେତେକ ବର୍ଣ୍ଣନା ଦେଖାଯାଏ। Arnold ପ୍ରଥମେ ୧୮୭୯ ମସିହାରେ ବୁଦ୍ଧଦେବଙ୍କ ଦର୍ଶନ ଦ୍ୱାରା ପ୍ରଭାବିତ ହୋଇ ଏହି କାବ୍ୟଟି ରଚନା କରନ୍ତି। ଜଣେ ବୌଦ୍ଧ ଧର୍ମାବଲମ୍ବୀଙ୍କ ଠାରୁ ବୁଦ୍ଧଙ୍କ ଜୀବନ ଚରିତ ଓ ଦର୍ଶନ ଶ୍ରବଣ କରି ତଦ୍ଦ୍ୱାରା ଆକୃଷ୍ଟ ହୋଇ Light of Asia ରଚନା କରିଥିବା ବିଷୟ ଏହାର ମୁଖବନ୍ଧରେ ସ୍ୱୀକାର କରାଯାଇଛି।"୨୦। ଏହି ପୁସ୍ତକର କେତେକ ଅଂଶର ଭାବ ସହିତ ବୌଦ୍ଧାବତାର

କାବ୍ୟର କେତେକ ଅଂଶର ସାମଞ୍ଜସ୍ୟ ପରିଲକ୍ଷିତ ହୋଇଥାଏ। ରାଣୀଙ୍କ ସ୍ୱପ୍ନବୃତ୍ତାନ୍ତ ସମ୍ପର୍କରେ ଏଥିରେ ଉଲ୍ଲେଖ ଅଛି -

Maya the Queen asleep beside her loved
Dreamed a strange dream; dreamed that a
star from heaven -
Splendid Scy-rayed in colour rosy-pearl,

ବୁଦ୍ଧଦେବଙ୍କ ବୈରାଗ୍ୟଭାବ ଦେଖି ରାଜା ତାଙ୍କର ପାତ୍ର ମନ୍ତ୍ରୀଙ୍କ ସହିତ ପରାମର୍ଶ କରିଛନ୍ତି ପୁତ୍ରର ବିବାହ ନିମିତ୍ତ। ସେଥିପାଇଁ ଏକ ଉତ୍ସବର ଆୟୋଜନ କରାଯାଇଛି, ଯେଉଁଥିରେ ସିଦ୍ଧାର୍ଥ ନିଜର ଜୀବନ ସଙ୍ଗିନୀ ନିଜେ ସ୍ଥିର କରିବେ। ଶାକ୍ୟ ତରୁଣୀଗଣ ବହୁମୂଲ୍ୟ ବସ୍ତ୍ର ଓ ଅଳଙ୍କାର ପରିଧାନପୂର୍ବକ ସିଦ୍ଧାର୍ଥଙ୍କ ନିକଟରୁ ଉପଢୌକନ ନେଇଛନ୍ତି। The Light of Asiaରେ ଏ ସମ୍ପର୍କୀୟ ବର୍ଣ୍ଣନା ହେଉଛି ଏହିପରି-

×××× Was ending and the prizes spent, when last
Came young yasodhara, and they that stood
Nearest Siddartha saw the princely boy
Start, as the radiant girl approached. A form
of heavenly mould; a gait like Parvatis's;
Eyes like a hind's in love-time, face so fair
words cannot paint its spell; and she alone
gazed full folding her palms a cross her breasts-
on the boy's gaze, her stately neck unbent.
"Is there a gift for me ?" She asked and smiled.
"The gifts are gone." The prince replied. Yet take
This for amends, dear sister of whose grace
our happy city boasts." Therewith the loosed
The emeraled necklet from his throat, and clasped
Its green beads round her dark and silk-safe waist.
And their eyes mixed and from the look sprang love.
(Book the Second. P-19)

**ବୌଦ୍ଧାବତାର କାବ୍ୟ :**

ଦଣ୍ଡପାଣି କନ୍ୟା ଗୋପା ମିଳିଲେ ଶେଷରେ,
ଉତ୍ସବ-ବାସରେ ରାଜକୁମାର ପାଶରେ
ପରସ୍ପର ଶୁଭଦୃଷ୍ଟି ହେଲା ବିନିମୟ
ବିକାଶେ କୁମୁଦ କାନ୍ତି ହେଲେ ଚନ୍ଦ୍ରୋଦୟ,

ବାସନ୍ତି ମଳୟାନିଳେ
ପ୍ରଫୁଲ୍ଲ ସୁମନ ଦଳେ
ଜନ୍ମାନ୍ତର ସ୍ମୃତି ପରି ପ୍ରେମର ଅଙ୍କୁର
କୁମାର ହୃଦୟେ ଜାତ ପ୍ରଣୟ ପ୍ରଚୁର।
× × ×
ଉଭୟେ ଆପଣା ଭୁଲି
ଚାହିଁଛନ୍ତି ନେତ୍ର ମେଲି
ନିରେଖି, ଉଦିତ ଚନ୍ଦ୍ରେ ସ୍ଥିରା କୁମୁଦିନୀ
ପ୍ରେମ ମୁଗ୍ଧ ଯୁବ ମୃଗେ ଚକିତା ମୃଗୁଣୀ
ଦଣ୍ଡପାଣି କନ୍ୟାଗୋପା ମଧୁର ବଚନେ
ବୋଇଲା କୁମରେ ଚାହିଁ ସଜଳ ନୟନେ
ଯୁବରାଜ! କୃପାଧାର!
କିଁପା ମୋତେ ଉପହାର
ଦେଲେ ନାହିଁ? × × ×
ନିଃଶେଷ ଅଶୋକ ଭାଣ୍ଡ-ବୋଇଲେ କୁମାର
ହେ ସୁନ୍ଦରୀ! ତବଯୋଗ୍ୟ ନାହିଁ ଉପହାର
ନିଅ ମୋର ଅଙ୍ଗୁରୀୟ
ନୁହେଁ ସତ୍ୟ ରମଣୀୟ
ହେଉ ଏ ଅମୂଲ୍ୟ ନିଧି ପଡ଼ି ତବ କରେ
ଆୟାସ କାଞ୍ଚନ, ସ୍ୱର୍ଣ୍ଣମଣି ପରଶରେ। (ଚତୁର୍ଥ ସର୍ଗ)

ରାଜାଙ୍କ ନିର୍ଦ୍ଦେଶରେ ଏକ ଉତ୍ସବର ଆୟୋଜନ ହୋଇଛି, ଯେଉଁଠାରେ ରାଜପୁତ୍ର ଉପହାର ଦେବେ ବୋଲି ସ୍ଥିର ହୋଇଛି। ସେଠାରେ ବର୍ଣ୍ଣନାଗତ ସାମ୍ୟ ମଧ୍ୟ ଉଭୟ କାବ୍ୟରେ ପରିଦୃଷ୍ଟ ହୋଇଥାଏ।

**Light of Asia**
×× Command a festival
Where the realm's maids shall be competitors
In youth and grace and sports that sakyas use
Let the prince give the prizes to the fair.
(Book the Second-P-17)

**ବୌଦ୍ଧାବତାର କାବ୍ୟ :**

ବିଚାରିଲେ ମନ୍ତ୍ରିଗଣେ ଘେନି ନରସାଇଁ,
ପୁତ୍ର ଇଛା ଅନୁରୂପ କନ୍ୟା ଅଛି କାହିଁ ?
ମନ୍ତ୍ରିଏ ନିଯୁକ୍ତ କାର୍ଯ୍ୟେ
ଘୋଷଣା ଦେଲେକ ରାଜ୍ୟେ
ପୂରିତ ଅଶୋକ ଭାଣ୍ଡ ମଣି କାଞ୍ଚନରେ
ଶାକ୍ୟ କୁମାରୀଙ୍କୁ ଦାନ କରିବେ କୁମରେ (ଚତୁର୍ଥ ସର୍ଗ)

ସେହିପରି ତୀରବିଦ୍ଧ ହଂସଟିର ସେବା ସମୟରେ ଦେବଦତ୍ତଙ୍କ ସହିତ ଯୁକ୍ତି, ଗୃହତ୍ୟାଗ ସମୟରେ ବୁଦ୍ଧଦେବଙ୍କ ମାନସିକ ବିଭ୍ରାନ୍ତି, କଠୋର ତପାଚ୍ଚରଣ, ଧର୍ମପ୍ରଚାର ପ୍ରଭୃତି ଅନେକ କ୍ଷେତ୍ରରେ ଉଭୟ କାବ୍ୟରେ ବର୍ଣ୍ଣନାଗତ ସାମ୍ୟ ପରିଲକ୍ଷିତ ହୋଇଥାଏ । ଏପରି ବର୍ଣ୍ଣନାଗତ ସାମ୍ୟ ଯୋଗୁଁ 'ବୌଦ୍ଧାବତାର କାବ୍ୟ' ଯେ The Light of Asia ଦ୍ୱାରା ପ୍ରଭାବିତ ଏହା ଆମେ କହି ପାରିବାନାହିଁ। କାରଣ ଫକୀରମୋହନ କେବେ Light of Asia ପାଠ କରି ନାହାନ୍ତି । ଯଦିବା ପାଠ କରିଥିବେ, ତଥାପି ତାକୁ ଅନୁରୂପ ଭାବେ ଅନୁକରଣ କରିବାକୁ ବୋଧହୁଏ କ୍ଷମ ହୋଇପାରି ନଥିବେ । ଦ୍ୱିତୀୟରେ କବି ଲଳିତବିସ୍ତର କିମ୍ବା 'ବୁଦ୍ଧ ଚରିତ' ଦ୍ୱାରା ବିଶେଷ ଭାବେ ପ୍ରଭାବିତ ହୋଇଥିବା ପରି ମନେ ହୁଏ ନାହିଁ; ଯଦିଓ ସେ ଲଳିତବିସ୍ତର ପାଠ କରିଛନ୍ତି ବୋଲି ମୁଖବନ୍ଧରେ ସ୍ୱୀକାର କରିଛନ୍ତି । କାରଣ 'ଲଳିତବିସ୍ତର' ଓ 'ବୁଦ୍ଧଚରିତ' ଅନେକ କ୍ଷେତ୍ରରେ ବୁଦ୍ଧ ଦେବଙ୍କୁ ଏକ ଦେବ ଚରିତ୍ର ଭାବରେ ବର୍ଣ୍ଣନା କରିଛନ୍ତି । ସେଥିରେ ବର୍ଣ୍ଣିତ ବୁଦ୍ଧ ଚରିତର ଅତି-ମାନୁଷିକ ଓ ପୌରାଣିକ ଚିତ୍ର କବି ଫକୀରମୋହନ ପରିତ୍ୟାଗ ପୂର୍ବକ ବୁଦ୍ଧ ଦେବଙ୍କୁ ଏକ ମାନବ ଭାବରେ ବର୍ଣ୍ଣନା କରି କାବ୍ୟଟିକୁ ବାସ୍ତବମୁଖୀ କରିପାରିଛନ୍ତି । The Light of Asia ମଧ୍ୟ କେତେକାଂଶରେ ବୁଦ୍ଧଦେବଙ୍କ ଚରିତ୍ରକୁ ଏକ ଦେବ ଚରିତ୍ର ଭାବରେ ବର୍ଣ୍ଣନା କରିଛନ୍ତି । ତେଣୁ ଉକ୍ତ ବର୍ଣ୍ଣନାଗୁଡ଼ିକର ତୁଳନାତ୍ମକ ବିଚାର କଲେ ସ୍ପଷ୍ଟ ପ୍ରତୀୟମାନ ହୁଏ ଯେ, ଫକୀରମୋହନ ଏହି କାବ୍ୟଗୁଡ଼ିକ ଦ୍ୱାରା ବିଶେଷ ଭାବରେ ପ୍ରଭାବିତ ହୋଇନାହାନ୍ତି । ବଙ୍ଗଳାର ବିଶିଷ୍ଟ କବି ନବୀନଚନ୍ଦ୍ର ସେନ୍ ବୁଦ୍ଧଦେବଙ୍କ ଜୀବନ ଚରିତ ଅବଲମ୍ବନରେ 'ଅମିତାଭ' ନାମରେ ଏକ କାବ୍ୟ ୧୩୦୨ ସାଲ ଅର୍ଥାତ୍ ୧୮୯୫ ମସିହାରେ ରଚନା କରନ୍ତି । ଫକୀର ମୋହନ ଉକ୍ତ କାବ୍ୟଟି ପାଠ କରି ତା'ଦ୍ୱାରା ପ୍ରଭାବିତ ହୋଇ ବୌଦ୍ଧାବତାର କାବ୍ୟ ରଚନା କରିଛନ୍ତି । ଫକୀରମୋହନ 'ଅମିତାଭ' କାବ୍ୟ ଦ୍ୱାରା କିପରି ଭାବରେ ପ୍ରଭାବିତ ହୋଇଛନ୍ତି ତାହା ନିମ୍ନ ଆଲୋଚନାରୁ ସ୍ପଷ୍ଟ ହୋଇପାରିବ।

## ଅମିତାଭ ଓ ବୌଦ୍ଧାବତାର କାବ୍ୟ :

'ଅମିତାଭ' କାବ୍ୟର ରଚୟିତା ନବୀନଚନ୍ଦ୍ର ସେନ 'ଲଳିତବିସ୍ତର' କିମ୍ବା 'ବୁଦ୍ଧ ଚରିତ' ପାଠ କରିଛନ୍ତି କି ନାହିଁ ତାର ପ୍ରମାଣ ଆମ ପାଖରେ ନାହିଁ। କିନ୍ତୁ ସେ 'The light of Asia' ପାଠ କରିଛନ୍ତି ବୋଲି ତାଙ୍କର ଆଲୋଚକ ମାନେ ସ୍ୱୀକାର କରିଛନ୍ତି। ସେ ଏହି ପୁସ୍ତକଟି ପାଠକରି ତାର ଅନୁକରଣ ନକରି ବରଂ ଜୀବନ ଚରିତାନୁଯାୟୀ ଏକ ମୌଳିକ କାବ୍ୟ ସୃଷ୍ଟି କରିଛନ୍ତି।୨୧। ନବୀନଚନ୍ଦ୍ର ମଧ 'The Light of Asia' ପାଠ କରିଛନ୍ତି ବୋଲି ନିଜେ ସ୍ୱୀକାର କରିଛନ୍ତି। Edwin Arnold ବୁଦ୍ଧଦେବଙ୍କୁ ଏକ ଅତିମାନବ ଭାବରେ ପରିକଳ୍ପନା କରିଛନ୍ତି। ଏ କ୍ଷେତ୍ରରେ ନବୀନଚନ୍ଦ୍ର "ଆମାର ଜୀବନ" ୫ମ ଭାଗରେ ମତ ଦେଇ କହିଛନ୍ତି - "ପ୍ରାୟ ସର୍ବତ୍ର ଏମନ କି ଏଡ୍ୱଇନ ଆର୍ଣ୍ଣୋଲଡ୍ 'ଲାଇଟ ଅଫ୍ ଏସିଆ'ର ପର୍ଯ୍ୟନ୍ତ ବୁଦ୍ଧ ଚରିତ୍ର ଅତିରଞ୍ଜିତ ଅତିମାନୁଷିକ ଭାବେ ଚିତ୍ରିତ। ତାହାତେଠିକ୍ ରକ୍ତମାଂସେର ବୁଦ୍ଧ ଦେଖିତେ ପାଇ ନା। ଅଥଚ ଅବତାରରା ମାନୁଷ ଛିଲେନ, ମାନୁଷେର କାର୍ଯ୍ୟ କରିୟା ମାନୁଷକେ ଶିକ୍ଷାଦାନର ଅବତାରତ୍ୱେର ଏକମାତ୍ର ସାର୍ଥକତା ×× ଅତଏବ ଆମରା ଯେ ଭାବେ ବୁଦ୍ଧ ଦେବକେ ଚକ୍ଷେର ଉପରେ ଦେଖିତେ ପାଇ, ତାହାକେ ଧାରଣା କରିତେ ପାରି, ସେ ଭାବେ ଚିତ୍ର କରାଇ ଆମାର ଉଦ୍ଦେଶ୍ୟ।"

କବି ନବୀନଚନ୍ଦ୍ର ଭୂମିକାରେ ସ୍ୱୀକାର କରିଛନ୍ତି; ଉକ୍ତ ଗ୍ରନ୍ଥ ପ୍ରଣୟନ କ୍ଷେତ୍ରରେ ସେ ପୂର୍ବବର୍ତ୍ତୀ ଗ୍ରନ୍ଥକାରମାନଙ୍କ ନିକଟରେ ଋଣୀ। ପୁଣି ସେ କହିଛନ୍ତି ପୂର୍ବବର୍ତ୍ତୀ ଗ୍ରନ୍ଥକାରମାନେ ଅଳ୍ପ ବହୁତେ ବୁଦ୍ଧ ଦେବଙ୍କୁ ଅତିମାନବ ଭାବେ ଚିତ୍ରିତ କରିଛନ୍ତି ଓ ସେ ଯଥାସାଧ ତାଙ୍କୁ ମାନୁଷିକ ଭାବାପନ୍ନ କରିବାକୁ ଚେଷ୍ଟା କରିଛନ୍ତି। ୨୨। ଅନୁରୂପ ଭାବେ ଫକୀରମୋହନ ବୁଦ୍ଧଦେବଙ୍କ ଚରିତ୍ରକୁ ମାନବୋଚିତ କରି ପ୍ରକାଶ କରିଛନ୍ତି। ଫକୀରମୋହନ ନିଜେ ସ୍ୱୀକାର କରିଛନ୍ତି "ବୌଦ୍ଧଗ୍ରନ୍ଥ ଲଳିତ ବିସ୍ତର ଏବଂ ବଙ୍ଗଭାଷାରେ ପ୍ରକାଶିତ କେତେ ଖଣ୍ଡ ମାସିକ ପତ୍ରିକା ଏବଂ ପୁସ୍ତକ ଅବଲମ୍ବନରେ ଏହି କାବ୍ୟ ଖଣ୍ଡିକ ଲିଖିତ। ଏଥକୁ ଆମ୍ଭେମାନେ ସେମାନଙ୍କଠାରେ ସମ୍ପୂର୍ଣ୍ଣ ରୂପେ ଋଣ ପାଶରେ ଆବଦ୍ଧ।.।୨୩। 'ଅମିତାଭ' କାବ୍ୟ ପୁସ୍ତକାରରେ ପ୍ରକାଶ ଲାଭ କରିବା ପୂର୍ବରୁ ଏହାର କେତେକ ଅଧ୍ୟାୟ 'ଜନ୍ମଭୂମି' ନାମକ ମାସିକ ପତ୍ରିକାରେ ପ୍ରକାଶ ଲାଭ କରିଥିଲା ବୋଲି ନବୀନ-ଚନ୍ଦ୍ର ସେନ ନିଜେ ସ୍ୱୀକାର କରିଛନ୍ତି। ୨୪। ହୁଏତ ଫକୀରମୋହନ ପ୍ରାଥମିକ ଅବସ୍ଥାରେ ସେହି ପତ୍ରିକାଗୁଡ଼ିକ ପାଠ କରିଥିବେ ଓ ପରବର୍ତ୍ତୀ ସମୟରେ ସମ୍ପୂର୍ଣ୍ଣ ପୁସ୍ତକଟିକୁ ପାଠ କରିବାର ସୌଭାଗ୍ୟ ଲାଭ କରିଛନ୍ତି। ନବୀନଚନ୍ଦ୍ରଙ୍କ

ପୂର୍ବରୁ ଗିରୀଶଚନ୍ଦ୍ର ଘୋଷ 'ବୁଦ୍ଧଦେବ ଚରିତ' ନାମକ ଏକ ନାଟକ ରଚନା କରିଥିଲେ । କିନ୍ତୁ ସେଥିରେ ବୁଦ୍ଧଦେବଙ୍କ ଅଲୌକିକ ଓ ଅତିପ୍ରାକୃତ ଘଟଣାବଳୀ ଉପରେ ଅଧିକ ଗୁରୁତ୍ୱ ଆରୋପ କରାଯାଇଛି ।

ଉଭୟ 'ଅମିତାଭ' ଓ 'ବୌଦ୍ଧାତାର କାବ୍ୟର ତୁଳନାତ୍ମକ ଆଲୋଚନା କଲେ ଫକୀରମୋହନ ଯେ ପ୍ରତ୍ୟେକ କ୍ଷେତ୍ରରେ ନବୀନଚନ୍ଦ୍ରଙ୍କ ପଦାଙ୍କ ଅନୁସରଣ କରିଛନ୍ତି, କହିବା ବାହୁଲ୍ୟ ମାତ୍ର । କି ସର୍ଗବିଭାଜନ, କି ବିଷୟବସ୍ତୁ, କି ବୁଦ୍ଧ ଦର୍ଶନ ଆଲୋଚନା ସମସ୍ତ କ୍ଷେତ୍ରରେ ନବୀନଚନ୍ଦ୍ର ହେଉଛନ୍ତି ଫକୀରମୋହନଙ୍କ ଆଦର୍ଶ । ବୌଦ୍ଧାବତାର କାବ୍ୟ ରଚନା ଯୋଗୁଁ ସେ ଯେଉଁ ଆଧ୍ୟାତ୍ମିକ ବିମଳ ଆନନ୍ଦ ପ୍ରାପ୍ତ ହୋଇଥିଲେ ବୋଲି ମୁଖବନ୍ଧରେ ସ୍ୱୀକାର କରିଛନ୍ତି, ତାହା ତାଙ୍କ କାବ୍ୟର ମୌଳିକତା ପାଇଁ ନୁହେଁ, ବରଂ ବୃଦ୍ଧାବସ୍ଥାରେ ବୁଦ୍ଧଦେବଙ୍କ ଜୀବନ ଚରିତ ଆଲୋଚନା କରି ଏକ କାବ୍ୟ ପ୍ରଣୟନ କରିପାରିଥିବା ଯୋଗୁଁ । କେଉଁ କେଉଁ କ୍ଷେତ୍ରରେ କବି ଫକୀରମୋହନ ନବୀନ ଚନ୍ଦ୍ରଙ୍କୁ ଅନୁସରଣ କରିଛନ୍ତି, ତାର ଆଲୋଚନା ଏଠାରେ ପ୍ରଦତ୍ତ ହେଲା ।

### (କ) ସର୍ଗ ବିଭାଜନ :

ନବୀନଚନ୍ଦ୍ର ସେନ ତାଙ୍କ ଅମିତାଭ କାବ୍ୟକୁ ୧୯ଟି ସର୍ଗରେ ବିଭାଜନ କରିବା ପରି ଫକୀରମୋହନ ବୌଦ୍ଧାବତାର କାବ୍ୟକୁ ମଧ୍ୟ ଉଣେଇଶଟି ସର୍ଗରେ ବିଭାଜନ କରିଛନ୍ତି । ସର୍ଗର ନାମ କରଣରେ ମଧ୍ୟ ସାମଞ୍ଜସ୍ୟ ଦୃଷ୍ଟିଗୋଚର ହୋଇଥାଏ । ଆଲୋଚନାର ସୁବିଧା ଦୃଷ୍ଟିରୁ ଉଭୟ କାବ୍ୟର ସର୍ଗମାନଙ୍କର ନାମକରଣ ନିମ୍ନରେ ପ୍ରଦତ୍ତ କରାଗଲା ।

### ନବୀନ ଚନ୍ଦ୍ରସେନ୍‌ଙ୍କ 'ଅମିତାଭ' କାବ୍ୟ :

୧ମ ସର୍ଗ - ଶୁଭଜନ୍ମ
୨ୟ ସର୍ଗ - ଭବିଷ୍ୟତ
୩ୟ ସର୍ଗ - କୈଶୋର
୪ର୍ଥ ସର୍ଗ - ଅଶୋକୋତ୍ସବ
୫ମ ସର୍ଗ - ବିବାହ
୬ଷ୍ଠ ସର୍ଗ - ଗାଥା
୭ମ ସର୍ଗ - ବୈରାଗ୍ୟ
୮ମ ସର୍ଗ - ମହାନିଶି

୯ମ ସର୍ଗ - ବିଦାୟ
୧୦ମ ସର୍ଗ = ମହାନିଷ୍କ୍ରମଣ
୧୧ଶ ସର୍ଗ - ନବୀନ ସନ୍ୟାସୀ
୧୨ଶ ସର୍ଗ - ଯୌବନେ ଯୋଗିନୀ
୧୩ଶ ସର୍ଗ - ପ୍ରବ୍ରଜ୍ୟା
୧୪ଶ ସର୍ଗ - ସାଧନା
୧୫ଶ ସର୍ଗ - ସିଦ୍ଧି
୧୬ଶ ସର୍ଗ - ପ୍ରଚାର
୧୭ଶ ସର୍ଗ - ସଂସାର ଶ୍ମଶାନ
୧୮ଶ ସର୍ଗ - ଲୋକଶିକ୍ଷା
୧୯ଶ ସର୍ଗ - ମହାନିର୍ବାଣ

**ଫକୀରମୋହନଙ୍କ ବୌଦ୍ଧାବତାର କାବ୍ୟ :**

୧ମ ସର୍ଗ - କୌଣସି ନାମକରଣ କରାଯାଇନଥିଲେ ମଧ୍ୟ ବୁଦ୍ଧଙ୍କ ଜନ୍ମ ସମ୍ପର୍କରେ ରଚିତ ହୋଇଅଛି ।

୨ୟ ସର୍ଗ - ଅସିତାଗମନ
୩ୟ ସର୍ଗ - ହଳୋତ୍ସବ
୪ର୍ଥ ସର୍ଗ - ଅଶୋକୋତ୍ସବ
୫ମ ସର୍ଗ - ମଙ୍ଗଳକୃତ୍ୟ
୬ଷ୍ଠ ସର୍ଗ - ବୈରାଗ୍ୟ ସଞ୍ଚାର
୭ମ ସର୍ଗ - ବୈରାଗ୍ୟ
୮ମ ସର୍ଗ - ମହାନିଶା
୯ମ ସର୍ଗ - ମେଲାଣି
୧୦ମ ସର୍ଗ - ନିଷ୍କ୍ରମଣ
୧୧ଶ ସର୍ଗ - ସନ୍ୟାସ
୧୨ଶ ସର୍ଗ - ବିଳାପ
୧୩ଶ ସର୍ଗ - ମାର୍ଗ ଅନ୍ୱେଷଣ
୧୪ଶ ସର୍ଗ - ତପସ୍ୟା
୧୫ଶ ସର୍ଗ - ସିଦ୍ଧି
୧୬ଶ ସର୍ଗ - ପ୍ରଚାର
୧୭ଶ ସର୍ଗ - ସଂସାର ଶ୍ମଶାନ

୧୮ଶ ସର୍ଗ - ମହାପ୍ରଚାର
୧୯ଶ ସର୍ଗ - ଅନ୍ତ୍ୟଲୀଳା

ଯେଉଁଠାରେ ଫକୀରମୋହନ ନବୀନ ଚନ୍ଦ୍ରଙ୍କର 'ସର୍ଗ ନାମର ଅନୁସରଣ କରିନାହାନ୍ତି, ସେଠାରେ ତାଙ୍କର କୌଣସି ସ୍ୱତନ୍ତ୍ର ବୈଶିଷ୍ଟ୍ୟ ଥିବା ପରି ମଧ୍ୟ ଜଣାଯାଏ ନାହିଁ। କାରଣ ନବୀନଚନ୍ଦ୍ରଙ୍କ 'ଭବିଷ୍ୟତକୁ' ଫକୀର ମୋହନ 'ଅସିତାଗମନ', 'କୈଶୋର'କୁ 'ହଳୋତ୍ସବ', 'ଗାଥା'କୁ 'ବୈରାଗ୍ୟ ସଞ୍ଚାର', 'ଯୌବନେ ଯୋଗିନୀ'କୁ 'ବିଳାପ', 'ପ୍ରବ୍ରଜ୍ୟା'କୁ 'ମାର୍ଗ ଅନ୍ୱେଷଣ', 'ସାଧନା'କୁ 'ତପସ୍ୟା', 'ଲୋକ ଶିକ୍ଷା'କୁ 'ମହାପ୍ରଚାର' ପ୍ରଭୃତି ନାମରେ ନାମିତ କରିଥିଲେ ମଧ୍ୟ ବିଷୟବସ୍ତୁରେ କୌଣସି ଅସାମଞ୍ଜସ୍ୟ ପରିଲକ୍ଷିତ ହୁଏ ନାହିଁ। ପୁଣି ନାମକରଣରେ ପାର୍ଥକ୍ୟ ପରିଦୃଷ୍ଟ ହେଉଥିଲେ ମଧ୍ୟ କେତେକ କ୍ଷେତ୍ରରେ ଉଭୟର ଅର୍ଥ ଏକପରି ମନେ ହୋଇଥାଏ। ଯଥା - ଭବିଷ୍ୟତ ଓ ଅସିତାଗମନ, ପ୍ରବ୍ରଜ୍ୟା ଓ ମାର୍ଗ ଅନ୍ୱେଷଣ, ସାଧନା ଓ ତପସ୍ୟା ଇତ୍ୟାଦି। ଏହି ଦୃଷ୍ଟିକୋଣରୁ ବିଚାର କଲେ ସର୍ଗବିଭାଜନରେ ଫକୀରମୋହନଙ୍କର କୌଣସି ମୌଳିକତା ପରିଦୃଷ୍ଟ ହୋଇ ନଥାଏ।

**(ଖ) ବିଷୟବସ୍ତୁ :**

ଫକୀରମୋହନ 'ଅମିତାଭ' କାବ୍ୟର ବିଷୟବସ୍ତୁକୁ ଅନୁସରଣ କରି 'ବୌଦ୍ଧାବତାର' କାବ୍ୟ ରଚନା କରିଛନ୍ତି। ପୂର୍ବରୁ ସେ 'ଶାକ୍ୟସିଂହ-ବୈରାଗ୍ୟ' ନାମରେ ଏକ କବିତା ବୁଦ୍ଧଦେବଙ୍କ ଜୀବନ ଚରିତକୁ ନେଇ ଲେଖିଥିଲେ ମଧ୍ୟ କାବ୍ୟ ବିଷୟବସ୍ତୁର ସନ୍ନିବେଶ ଅମିତାଭର ପଦାଙ୍କ ଅନୁସରଣରେ ସଜ୍ଜିତ। ଉଭୟ କାବ୍ୟର ବିଷୟବସ୍ତୁ ମଧ୍ୟରେ କିପରି ଅସମ୍ଭବ ଭାବେ ସାମଞ୍ଜସ୍ୟ ପରିଲକ୍ଷିତ ହୁଏ, ତାହା ନିମ୍ନ ଆଲୋଚନାରୁ ସ୍ପଷ୍ଟ ଭାବରେ ଜଣାପଡ଼ିବ।

'ଅମିତାଭ' କାବ୍ୟର ପ୍ରଥମ ସର୍ଗରେ ସିଦ୍ଧାର୍ଥଙ୍କର ଜନ୍ମ ବର୍ଣ୍ଣନା ପ୍ରସଙ୍ଗରେ ନବୀନ ଚନ୍ଦ୍ର ଜନନୀ ମାୟାଦେବୀଙ୍କ ସ୍ୱପ୍ନଦର୍ଶନ ବୃତ୍ତାନ୍ତର ଅବତାରଣା କରିଛନ୍ତି। ଏହି ଜନ୍ମ ପ୍ରସଙ୍ଗଟିରେ କିଛିଟା ଅଲୌକିକତାର ସ୍ପର୍ଶ ଲାଗିବା ପରି ବୌଦ୍ଧାବତାର କାବ୍ୟର ପ୍ରଥମ ସର୍ଗରେ ଅନୁରୂପ ବର୍ଣ୍ଣନା ଦୃଷ୍ଟିଗୋଚର ହୋଇଥାଏ। ଅବଶ୍ୟ ପୁତ୍ରାର୍ଥିନୀ ରମଣୀର ବିଚିତ୍ର ସ୍ୱପ୍ନଦର୍ଶନ ବୃତ୍ତାନ୍ତ ମନସ୍ତତ୍ତ୍ୱସମ୍ମତ ହୋଇପାରିଛି ଉକ୍ତ ବର୍ଣ୍ଣନା ଦ୍ୱାରା।

ଦ୍ୱିତୀୟ ସର୍ଗରେ ଅସିତ ମହର୍ଷିଙ୍କର ପୁତ୍ରଦର୍ଶନର ପ୍ରବଳ ଆଗ୍ରହର ବର୍ଣ୍ଣନା ସଙ୍ଗେ ସଙ୍ଗେ ଦେବୋପମ ପୁତ୍ରର ଭବିଷ୍ୟତ ଜୀବନ ସମ୍ପର୍କରେ ସୂଚନା ପ୍ରଦାନ

କରାଯାଇଛି । ଉଭୟ କାବ୍ୟର ବର୍ଣ୍ଣନା ମଧ୍ୟରେ କୌଣସି ପାର୍ଥକ୍ୟ ପରିଦୃଷ୍ଟ ହୁଏ ନାହିଁ । ତୃତୀୟ ସର୍ଗରେ ସିଦ୍ଧାର୍ଥଙ୍କର କୈଶୋର ଜୀବନର କ୍ରିୟାକଳାପର ବର୍ଣ୍ଣନା ସଙ୍ଗେ ସଙ୍ଗେ ତାଙ୍କର ମାନସିକ ଚିତ୍ର ପ୍ରକାଶ ପାଇଛି ତୀରବିଦ୍ଧ ଏକ ରାଜହଂସଟିର ଦାରୁଣ ଯନ୍ତ୍ରଣାରେ । ଭବିଷ୍ୟତ ସାଧନାମୟ ଜୀବନର ପ୍ରାରମ୍ଭିକ ଦୃଶ୍ୟର ଆରମ୍ଭ ଉକ୍ତ ସର୍ଗଟି । 'ବୌଦ୍ଧାବତାର କାବ୍ୟ'ରେ ମଧ୍ୟ ଅନୁରୂପ ବର୍ଣ୍ଣନାରେ କୌଣସି ତ୍ରୁଟି ପରିଲକ୍ଷିତ ହୁଏ ନାହିଁ । ଏହି ସର୍ଗରେ ବୁଦ୍ଧଦେବଙ୍କ ମନରେ ଯେଉଁ ଭାବୋଦୟ ଘଟିଛି, ତାହା ସ୍ୱାଭାବିକ ମଧ୍ୟ । କାରଣ ବୁଦ୍ଧ ଚରିତ୍ରର ପ୍ରଧାନ ଅବଲମ୍ବନ ହେଉଛି ଭାବାବିଷ୍ଟତା ।

ଚତୁର୍ଥ ସର୍ଗରେ ସିଦ୍ଧାର୍ଥଙ୍କର ବିବାହରେ ସମ୍ମତି ପ୍ରଦାନ ପ୍ରସଙ୍ଗରେ ନବୀନଚନ୍ଦ୍ର ସ୍ୱାଭାବିକ ଭାବେ ତାଙ୍କ ମନରେ ଦ୍ୱନ୍ଦ୍ୱ ସୃଷ୍ଟି କରିଛନ୍ତି । ଭାବୀପତ୍ନୀ ସମ୍ପର୍କରେ ସିଦ୍ଧାର୍ଥ ଯେଉଁ ମତାମତ ପ୍ରଦାନ କରିଛନ୍ତି, ତାହା ଯଥାର୍ଥ ଗୃହୀଜନୋଚିତ । ଶାକ୍ୟ କୁମାରୀ ଗଣଙ୍କର ଉପଢୌକନ ଗ୍ରହଣ ଓ ଗୋପାଙ୍କୁ ନିଜର ମନୋନୀତ ପତ୍ନୀ ଭାବରେ ସ୍ଥିର କରିବା ପ୍ରାୟ ଉଭୟ କାବ୍ୟରେ ସମାନ । ପଞ୍ଚମ ସର୍ଗରେ ଦଣ୍ଡପାଣି ନୃପତିଙ୍କର ପ୍ରତିଶ୍ରୁତି ରକ୍ଷା କରିବାକୁ ଯୁବରାଜ ସିଦ୍ଧାର୍ଥଙ୍କର ପରୀକ୍ଷା ପ୍ରଦାନ, ଷଷ୍ଠ ସର୍ଗରେ ଅଶରୀରୀ ଏକ ବୀଣାର ମୂର୍ଚ୍ଛନାରେ ତାଙ୍କର ଆତ୍ମ ପ୍ରତ୍ୟୟ ଜାତ, ୭ମ ସର୍ଗରେ ପ୍ରଥମେ ବୃଦ୍ଧ, ଦ୍ୱିତୀୟରେ ଜରାଗ୍ରସ୍ତ ପୀଡ଼ିତ ବ୍ୟକ୍ତି, ତୃତୀୟରେ ମୃତ ବ୍ୟକ୍ତି ଓ ଚତୁର୍ଥରେ ସ୍ଥିତପ୍ରଜ୍ଞ ଗମ୍ଭୀର ସନ୍ନ୍ୟାସୀ ଦର୍ଶନରେ ସିଦ୍ଧାର୍ଥଙ୍କ ମନରେ ବୈରାଗଜାତ, ଅଷ୍ଟମ ସର୍ଗରେ ରାତ୍ରକାଳରେ ନର୍ତ୍ତକୀଗଣଙ୍କର ନିଦ୍ରାଗତା ବୀଭତ୍ସ ଦୃଶ୍ୟ ଦର୍ଶନରେ ମାନବ ମୁକ୍ତି ପାଇଁ ଦୃଢ଼ ପ୍ରତିଜ୍ଞା, ନବମ ସର୍ଗରେ ପିତାଙ୍କଠାରୁ ଅନୁମତି ଭିକ୍ଷା, ଦଶମ ସର୍ଗରେ ପତ୍ନୀ ଓ ପୁତ୍ରଙ୍କ ଶେଷ ଦର୍ଶନ ପୂର୍ବକ ରାଜପୁରରୁ ନିଷ୍କ୍ରମଣ, ଏକାଦର୍ଶ ସର୍ଗରେ ଛନ୍ଦକର କରୁଣ ପ୍ରାର୍ଥନା ସହିତ ସିଦ୍ଧାର୍ଥଙ୍କର ସ୍ଥିର ସଂକଳ୍ପ ମନର ପରିଚୟ, ଦ୍ୱାଦଶ ସର୍ଗରେ ପତି ଓ ପୁତ୍ର ଅନୁପସ୍ଥିତିରେ ଗୋପା ଏବଂ ମାତା ପ୍ରଜାବତୀଙ୍କ ଆକୁଳ କ୍ରନ୍ଦନ, ତ୍ରୟୋଦଶ ସର୍ଗରେ ଆରାଢ଼କାଲାମ ମହର୍ଷିଙ୍କର ଶିଷ୍ୟତ୍ୱ ଗ୍ରହଣ, ବିଭିନ୍ନ ଦର୍ଶନ ଶାସ୍ତ୍ର ଅଧ୍ୟୟନ ଓ ସେଠାରୁ ପ୍ରତ୍ୟାବର୍ତ୍ତନ, ମଗଧ ରାଜ୍ୟରେ ପ୍ରବେଶ ଏବଂ ସେଠାରୁ ପାଣ୍ଡବ ପର୍ବତରେ ଆସୀନ ରୁଦ୍ରକ ମହର୍ଷିଙ୍କଠାରୁ ସମାଧି ପ୍ରାପ୍ତି ଓ ପ୍ରତ୍ୟାବର୍ତ୍ତନ, ଚତୁର୍ଦ୍ଦଶ ସର୍ଗରେ ଗୟାତୀର୍ଥ ନିକଟରେ ଶାନ୍ତି ତପୋବନରେ ଦୀର୍ଘ ଷଡ଼ବର୍ଷ ସାଧନାରେ ନିଷ୍ଫଳତା, ଲାଳସା ଓ କାମନାର ସିଦ୍ଧାର୍ଥଙ୍କୁ ତପସ୍ୟାରୁ ବିରତ କରିବାର ନିଷ୍ଫଳ ପ୍ରଚେଷ୍ଟା ଓ ଶେଷରେ ନିର୍ବାଣ ଲାଭ ନିମିତ୍ତ ଦୃଢ଼ ପ୍ରତିଜ୍ଞା, ପଞ୍ଚଦଶ ସର୍ଗରେ ନିରଞ୍ଜନାରେ ସ୍ନାନପୂର୍ବକ ନନ୍ଦିକପତି ସୁଜାତାଙ୍କଠାରୁ ପାୟାସାନ୍ନ ଗ୍ରହଣ, ପୁନର୍ବାର ସାଧନା ଓ ନିର୍ବାଣ ପ୍ରାପ୍ତି, ଷୋଡ଼ଶ ସର୍ଗରେ ଧର୍ମପ୍ରଚାର ଉଦ୍ଦେଶ୍ୟରେ ବିଭିନ୍ନ ସ୍ଥାନ ପରିଭ୍ରମଣ

ଏବଂ ଶିଷ୍ୟ ଗ୍ରହଣ, ସପ୍ତଦଶ ସର୍ଗରେ ମଗଧ ଦେଶରେ ଧର୍ମପ୍ରଚାର, ପିତାମାତା, ଭ୍ରାତା, ପତ୍ନୀ ଓ ପୁତ୍ରଙ୍କୁ ସ୍ୱଧର୍ମରେ ଦୀକ୍ଷା ପ୍ରଦାନ ପୂର୍ବକ ଭ୍ରାତା ଓ ପୁତ୍ରଙ୍କ ସହିତ କୌଶମ୍ବୀ ପର୍ବତରେ ସମାଧି ମଗ୍ନ, ଅଷ୍ଟାଦଶ ସର୍ଗରେ ଏକନାଳା ଗ୍ରାମର ଭୂସ୍ୱାମୀ ବ୍ରାହ୍ମଣଙ୍କୁ, ଅଲାବୀ ନିବିଡ଼ ଅରଣ୍ୟରେ ଏକ ତସ୍କରଙ୍କୁ ନିଜର ଅଲୌକିକ ପ୍ରତିଭା ଦ୍ୱାରା ଦୀକ୍ଷା ପ୍ରଦାନ, ଶ୍ରାବନ୍ତୀ ନଗରରେ ପୁତ୍ର ହରା ଶୋକାତୁରା ଗୌତମୀଙ୍କୁ ନିର୍ବାଣ ପ୍ରାପ୍ତିର ପଥ ନିର୍ଦ୍ଦେଶ, ସ୍ୱର୍ଣ୍ଣକାରଙ୍କୁ ପ୍ରକୃଷ୍ଟ ମାର୍ଗ ନିର୍ଦ୍ଦେଶ, ମଗଧରାଣୀ କ୍ଷମାଦେବୀ, ଭଦ୍ରାରାଜ ଗୃହଠାରେ ବଣିକ ଦୁହିତା, ସୁଧେମା ନୃପତିଙ୍କ ଦୁହିତା, ବିଶାଖା ପ୍ରଭୃତି ସଂଖ୍ୟାଧିକ ବ୍ୟକ୍ତିଙ୍କୁ ବୌଦ୍ଧଧର୍ମ ଦୀକ୍ଷା ପ୍ରଦାନ ସଙ୍ଗେ ସଙ୍ଗେ ନିଜର ଶେଷ ଇଚ୍ଛା ପ୍ରକାଶ ପ୍ରଭୃତିର ଚମତ୍କାର ବର୍ଣ୍ଣନା ଉଭୟ କାବ୍ୟରେ ସମାନ।

ଶେଷ ସର୍ଗରେ ବୁଦ୍ଧଦେବ ମହାନିର୍ବାଣ ପ୍ରାପ୍ତି ପୂର୍ବରୁ ଭିକ୍ଷୁଗଣଙ୍କୁ ନିକଟରେ ବସାଇ ଶେଷ ଉପଦେଶ ପ୍ରଦାନ କରିଛନ୍ତି। ସେ ଯେଉଁ ଉପଦେଶ ପ୍ରଦାନ କରିଥିଲେ ନବୀନଚନ୍ଦ୍ର ତାକୁ ଅଣଚାଶଟି ପଦରେ ସମାପ୍ତି କରାଇ ଅଛନ୍ତି। କିନ୍ତୁ ଫକୀରମୋହନ ଏହି ଉପଦେଶକୁ ଚଉବନଟି ପଦରେ ସମାପ୍ତ କରାଇଥିଲେ ମଧ୍ୟ ଏହା ନବୀନଚନ୍ଦ୍ରଙ୍କ ବର୍ଣ୍ଣିତ ଅଣଚାଶଟି ପଦର ସାରାଂଶ ମାତ୍ର। ଏଥିରେ କୌଣସି ନୂତନତା ଥିବାର ଦୃଷ୍ଟିଗୋଚର ହୁଏ ନାହିଁ।

## (ଗ) ବର୍ଣ୍ଣନା :

'ଅମିତାଭ' ଓ 'ବୌଦ୍ଧାବତାର କାବ୍ୟ'ର ବର୍ଣ୍ଣନା ବୈଚିତ୍ର୍ୟରେ କୌଣସି ପାର୍ଥକ୍ୟ ପରିଦୃଷ୍ଟ ହୁଏ ନାହିଁ। ନବୀନଚନ୍ଦ୍ର ସେନଙ୍କ ବିଶିଷ୍ଟ ବୈଶିଷ୍ଟ୍ୟ ହେଉଛି ତାଙ୍କର ବର୍ଣ୍ଣନା ଚାତୁରୀ। "ତାଙ୍କ ବର୍ଣ୍ଣନାରେ ଆବେଗ ଅଛି, ଗତି ଅଛି, ଛନ୍ଦ ଅଛି, ତାଙ୍କ ବର୍ଣ୍ଣନା ଝରଣା ପରି ସହଜ, ସ୍ୱାଭାବିକ ଭାବରେ ବହିଯାଇଛି। ଏଇ ବର୍ଣ୍ଣନାହିଁ ତାଙ୍କ କାବ୍ୟର ପ୍ରାଣ ଓ ସୌନ୍ଦର୍ଯ୍ୟ।"୨୫। ଫକୀରମୋହନ ନବୀନଚନ୍ଦ୍ରଙ୍କର ଏହି ବର୍ଣ୍ଣନାଶୈଳୀ ଦ୍ୱାରା ଗଭୀରଭାବରେ ପ୍ରଭାବିତ ହୋଇ ତାଙ୍କର 'ବୌଦ୍ଧାବତାର କାବ୍ୟ' ରଚନା କରିଛନ୍ତି। ସେଥିପାଇଁ କେତେକ ବୌଦ୍ଧଦର୍ଶନ ବ୍ୟାଖ୍ୟା, ନୀତିଶିକ୍ଷା ଅଂଶ ବାଦ୍ ଦେଲେ ସମସ୍ତ ବୌଦ୍ଧାବତାର କାବ୍ୟଟି ଏକ ନିଃଶ୍ୱାସରେ ପଢ଼ିହୁଏ। ପଦାବଳୀର ସରଳ ମାଧୁରୀ ଆମୂଳାନ୍ତ ବିଦ୍ୟମାନ। ତାଙ୍କ ସ୍ୱଭାବସିଦ୍ଧ ହାସ୍ୟରସ ଏଥିରେ ପ୍ରକାଶ ପାଇନାହିଁ। ପାଇବାର ଅବକାଶ ନାହିଁ ବୋଲି ଭାବର ଶାଣିତ ତୀକ୍ଷ୍ଣ ସଂଯମ ଓ ଗାମ୍ଭୀର୍ଯ୍ୟ କେଉଁଠାରେ ନୀରସ ବା ବିରକ୍ତକର ବୋଧହୁଏ ନାହିଁ। ସମତଳ ଭୂମିରେ ଏହି କାବ୍ୟଧାରର ଗତି। ××× ୨୬। ସମାଲୋଚକ ଡଃ ଦାଶଙ୍କର ଏହି

ମତାମତ ଅନେକାଂଶରେ ସତ୍ୟ ହେଲେ ମଧ୍ୟ ଫକୀରମୋହନଙ୍କର ବର୍ଣ୍ଣନା ରୀତିରେ ତାଙ୍କର ବିଶେଷ କିଛି ମୌଳିକତା ନାହିଁ । କାରଣ କାବ୍ୟଟିର ଆମୂଳଚୂଳ 'ଅମିତାଭ' କାବ୍ୟର ବର୍ଣ୍ଣନା ବିଭବ ଦ୍ୱାରା ପ୍ରଭାବିତ । ଏହାର ଅର୍ଥ ନୁହେଁ ଯେ, ଏହି ବର୍ଣ୍ଣନାରେ ଫକୀରମୋହନଙ୍କର କୌଣସି ନିଜସ୍ୱତା ନାହିଁ । ଯାହାଅଛି ତାଙ୍କପରି ଏକ ପ୍ରତିଭାବାନ କବିଙ୍କ ପକ୍ଷରେ ତାହା ଯଥେଷ୍ଟ ନୁହେଁ । ଉଭୟ କାବ୍ୟର କେତୋଟି ବର୍ଣ୍ଣନାର ତୁଳନାତ୍ମକ ଆଲୋଚନା କଲେ ଏହି ଉକ୍ତିର ସତ୍ୟତା ପ୍ରମାଣିତ ହୋଇପାରିବ ।

ନବୀନଚନ୍ଦ୍ରଙ୍କ ବର୍ଣ୍ଣନାର ବିଶିଷ୍ଟ ବୈଶିଷ୍ଟ୍ୟ ତାଙ୍କ ଭାଷାର ଯାଦୁକରୀ ସ୍ପର୍ଶ । ଅତି ସହଜ ଓ ସରଳ ଭାଷାକୁ ସେ କାବ୍ୟରେ ଏପରି ଭାବରେ ପ୍ରୟୋଗ କରିପାରନ୍ତି, ଯାହାଦ୍ୱାରା ତାଙ୍କ ପାଠକମାନେ ସେହି ଭାଷାର ଯାଦୁକରୀ ସ୍ପର୍ଶରେ ଲୌକିକ ଜ୍ଞାନଶୂନ୍ୟ ହୋଇ ଏକ ଅଲୌକିକ ଜଗତରେ ବିଚରଣ କରେ । ବଙ୍ଗଳାର ଜଣେ ବିଶିଷ୍ଟ ସମାଲୋଚକ କୁହନ୍ତି – "ତାଙ୍କର ଭାଷା ଯେପରି ବର୍ଷାର କୂଳ ପ୍ଲାବିନୀ ତଟିନୀର ପରି ତଟର ଶାସନ ଉପେକ୍ଷା କରି ସ୍ୱାଭାବିକ ଗତିରେ ଦୁର୍ବାର ବେଗରେ ଛୁଟି ଚାଲେ । ତାଙ୍କ କାବ୍ୟର ସେହି ଦୁର୍ଦମ ଗତିବେଗ, ସେହି ବିପୁଳ ପ୍ରାଣଶକ୍ତି, ସେହି ଉନ୍ମାଦ କଳଧ୍ୱନି ବଙ୍ଗାଳୀମାନଙ୍କୁ ପ୍ରବଳ ଭାବେ ଆକର୍ଷଣ କରୁଅଛି ।"୨୭ । ଫକୀରମୋହନଙ୍କ ଭାଷା କ୍ଷେତ୍ରରେ ଉକ୍ତ ମତ ମଧ୍ୟ ପ୍ରଣିଧାନ ଯୋଗ୍ୟ ।

'ଅମିତାଭ' କାବ୍ୟର ପ୍ରଥମ ସର୍ଗରେ କପିଳ ବସ୍ତୁର ବର୍ଣ୍ଣନା ପରି 'ବୌଦ୍ଧାବତାର କାବ୍ୟ'ର ପ୍ରଥମ ସର୍ଗର ବର୍ଣ୍ଣନା ଅନୁରୂପ । ବୃଦ୍ଧରାଜା ଶୁଦ୍ଧୋଦନ ଓ ମହିଷୀ ଯୁଗଳଙ୍କ ବର୍ଣ୍ଣନା ପ୍ରସଙ୍ଗରେ ନବୀନ ଚନ୍ଦ୍ର ଲେଖିଛନ୍ତି –

ବୃଦ୍ଧରାଜା ଶୁଦ୍ଧୋଦନ          ମହାମାୟା ପ୍ରଜାବତୀ
ମହିଷୀ-ଯୁଗଳ ପତିବ୍ରତା
ଶଙ୍କରେର ଅଙ୍କେ ଯେନ          ପାର୍ବତୀ ଓ ଭାଗୀରଥୀ
ପୁଣ୍ୟ-ଅଙ୍କେ ପ୍ରୀତି ପବିତ୍ରତା

**ବୌଦ୍ଧାବତାର କାବ୍ୟ :**

ରାଜା ଶୁଦ୍ଧୋଦନ          ଧର୍ମ ପରାୟଣ
ଥିଲେ ତହିଁ ନରପତି
ତାଙ୍କ ଦୁଇଜାୟା          ସତୀ ମହାମାୟା'
ପୁଣ୍ୟଶୀଳା ପ୍ରଜାବତୀ

ପୁଣ୍ୟ ଅଙ୍କେ ଯଥା ପ୍ରୀତି, ପବିତ୍ରତା
ତେସନେ ସେ ବେନି ରାଣୀ
ଶଙ୍କର ଅଙ୍କରେ ଥାନ୍ତି ଯେ ରୂପରେ
ଦେବୀ ଜାହ୍ନବୀ ଭବାନୀ

**ମାୟାଦେବୀଙ୍କ ସ୍ୱପ୍ନବୃତ୍ତାନ୍ତ ପ୍ରସଙ୍ଗରେ 'ଅମିତାଭ'ର ବର୍ଣ୍ଣନା :**

ଦେଖିଲା ସପ୍ତମ ଦିନେ ପୂର୍ଣ୍ଣମୀ ପ୍ରଭାତେ ସୁଖେ
ମାୟାଦେବୀ ଅପୂର୍ବ ସ୍ୱପନ !
ଚାରି ସ୍ୱର୍ଗ ଦୂତ ଆସି ଦେବୀର ପର୍ଯ୍ୟଙ୍କ ଖାନି
ହିମାଳୟେ କରିୟା ବହନ ।
ସୁବିଶାଳ ଶାଳବନେ ନାମାଇଲ ସମ୍ଭ୍ରମେ
ଦିବ୍ୟାଲୋକେ ଉଜ୍ଜଳ କାନନ
ସୁରରାଣୀ ଗଣ ସ୍ନାନ ସୁଧାପୂର୍ଣ୍ଣ ସରୋବରେ
କରାଇଲ ଦେବୀରେ ତଖନ
ପାର୍ଥିବତା ଗେଲ ଭାସି ହଇଲ ପବିତ୍ର ଦେହ
କିରଣ ପ୍ଳାବିତ ପୁଷ୍ପବନ

**ବୌଦ୍ଧାବତାର କାବ୍ୟରେ :**

ସପ୍ତଦିବସେ ନିଶି ଅବଶେଷେ
ପୂର୍ଣ୍ଣିମା ତିଥି ଶେଷରେ
ଦେବୀ ମହାମାୟା ନୃପତିଙ୍କ ଜାୟା
ଦେଖିଲେ ସ୍ୱପ୍ନ ଯୋଗରେ
ଚାରିଦେବ ଲୋକ ଦେବୀଙ୍କ ପର୍ଯ୍ୟଙ୍କ
ଶୂନ୍ୟମାର୍ଗେ ହିମାଳୟେ
ଘେନି ଶାଳବନେ ପ୍ରସ୍ତର ଆସନେ
ସ୍ୱର୍ଗୀୟ ଆଲୋକ ମୟେ ।
ଥୋଇଲେ ଆସନ ସ୍ୱର୍ଗୁଁ ଦେବୀଗଣ
ଆସି ସମ୍ଭ୍ରମେ ସେ ସ୍ଥଳେ
ରାଣୀଙ୍କୁ ସମ୍ମାନ କରାଇଲେ ସ୍ନାନ
ସୁଧାସମ ସରଜଳେ/

ଗଲାପାର୍ଥିବତା ଦୈବୀ ଉଜ୍ଜଳତା
ଯୋଗେ ମହିଷୀ ଶରୀର। × × ×

ସେହିପରି ପ୍ରଥମ ସର୍ଗରେ 'ଅମିତାଭ'ରେ ଦୈବଜ୍ଞ ବ୍ରାହ୍ମଣମାନଙ୍କର ରାଣୀଙ୍କ ଗର୍ଭର ପୁତ୍ରର ଭବିଷ୍ୟତ ଜୀବନ ସମ୍ପର୍କରେ ସୂଚନା, ଗର୍ଭବତୀ ରାଣୀଙ୍କର ରୂପ ବର୍ଣ୍ଣନା, ପୁତ୍ରଜନ୍ମ ସମୟରେ ଶାଳମୂଳେ ମାୟାଦେବୀଙ୍କ ଅଚେତନ ଅବସ୍ଥା ଓ ମାୟାଦେବୀଙ୍କ ଶରୀର ତ୍ୟାଗ ବର୍ଣ୍ଣନା ସଙ୍ଗରେ ବୌଦ୍ଧାବତାର କାବ୍ୟର ଉକ୍ତ ବର୍ଣ୍ଣନା ଗୁଡ଼ିକର ଅଦ୍ଭୁତ ସାମ୍ୟ ରହିଛି।

ଦ୍ୱିତୀୟ ସର୍ଗରେ ଅସିତ ଋଷିଙ୍କ ଧ୍ୟାନସ୍ଥ ଅବସ୍ଥାର ବର୍ଣ୍ଣନା ପ୍ରସଙ୍ଗରେ 'ଅମିତାଭ'ରେ ଅଛି -

ଯୋଗସ୍ଥ ଅସିତ ଋଷି; ସିତ ଜଟାରାଶି
ଶୋଭିଛେ ମସ୍ତକେ ଅତି ବୃଦ୍ଧ ମହର୍ଷିର ××
ଦେଖିଲେନ ଧ୍ୟାନେ ଋଷି ଅପୂର୍ବ କୁମାର
ହଇୟାଛେ ଅବତୀର୍ଣ୍ଣ କପିଲ ନଗରେ ××
ଶୂନ୍ୟେ ଯୋଗବଲେ ଋଷି ରାଜହଂସ ମତ
ଆସିୟା କପିଲ ପୁରେ ମନୋରଥ ଗତି

**ବୌଦ୍ଧାବତାର କାବ୍ୟରେ :**

ମହର୍ଷି ଅସିତ ଶିରେ ସିତ ଜଟାରାଶି
ସ୍ଥବିର, ମାନସ ସ୍ଥିର, ପୂଜ ପବନାଶୀ
ମହାପ୍ରାଜ୍ଞ ତ୍ରିକାଳଜ୍ଞ ଜାଣିଲେ ଧ୍ୟାନରେ
ଜନ୍ମିଲେ ଅଦ୍ଭୁତ ସୁତ କପିଳ ନଗରେ ×××
ବିହାୟସ ମାର୍ଗେ ବିହଙ୍ଗମ ସମାନରେ
ଆସି ଭାସି ଉପନୀତ କପିଳ ନଗରେ। (୨ୟ ସର୍ଗ)

'ବୌଦ୍ଧାବତାର କାବ୍ୟ'ରେ ଅସିତ ଋଷିଙ୍କ ଆଦେଶରେ ରାଜା ଶୁଦ୍ଧୋଦନ ଶିଶୁ ପୁତ୍ରକୁ ଋଷିଙ୍କ ନିକଟକୁ ଆଣିବା ସମୟର ବର୍ଣ୍ଣନା 'ଅମିତାଭ' କାବ୍ୟର ଅନୁରୂପ। ଧ୍ୟାନମଗ୍ନ ଋଷିଙ୍କ ନେତ୍ରରୁ ଅଶ୍ରୁଜାତ ହେବା ଯୋଗୁଁ ଭୀତତ୍ରସ୍ତ ଶୁଦ୍ଧୋଦନ ଯେପରି ଭାବରେ ପୁତ୍ରର ଭବିଷ୍ୟତ ଅଶୁଭ ଆଶଙ୍କାରେ ବିଚଳିତ ହୋଇପଡ଼ିଛନ୍ତି, ଉଭୟ କାବ୍ୟରେ ତାର ବର୍ଣ୍ଣନା ଏକପ୍ରକାର। ରାଜାଙ୍କ ପ୍ରଶ୍ନର ଋଷି ଉତ୍ତର ଦେଇଛନ୍ତି 'ଅମିତାଭ'ରେ -

ମୁଛି ଅଶ୍ରୁଧାରା
ଉତରିଲା ମହାଯୋଗୀ- "ଏ କି ଭ୍ରାନ୍ତ ତବ !
ଅମଙ୍ଗଳ ମହାରାଜ ମଙ୍ଗଳ ନିଦାନ
ଶିଶୁ ତବ ଅମଙ୍ଗଳ ସମ୍ଭବେ କି ତାର ? (୨ୟ ସର୍ଗ)

ବୌଦ୍ଧାବତାର କାବ୍ୟ :

ବୋଇଲେ ନୟନୁ ଅଶ୍ରୁ ପୋଛି ମହାଯତି,
"ଅମଙ୍ଗଳ ଅସମ୍ଭବ ! ଆହେ ନରପତି !
ପାଇବେ ମଙ୍ଗଳ ଯହୁଁ ନିଖିଳ ମାନବ
ଅମଙ୍ଗଳ ତାହାଠାରେ କେଭେଁ କି ସମ୍ଭବ ? (୨ୟ ସର୍ଗ)

ପୁତ୍ରର ନାମକରଣ ସମ୍ପର୍କରେ ଋଷି କହିଛନ୍ତି, 'ଅମିତାଭ'ରେ -

ସିଦ୍ଧ ତବ ମନୋରଥ ସିଦ୍ଧ ମନୋରଥ
ମାନବେର ଏତଦିନେ ଭକ୍ତିପୂର୍ଣ୍ଣ ମନ
ରାଖିଓ ସିଦ୍ଧାର୍ଥ ନାମ ପିତା ଶୁଦ୍ଧୋଦନ
ବିମାତା ଗୌତମୀ ଦେବୀ ମହା ପ୍ରଜାବତି
ପାଲିବେନ ଶିଶୁନାମ ହଇବେ ଗୌତମ
ଶାକ୍ୟକୁଳେ ଜନ୍ମ ନାମ ହବେ ଶାକ୍ୟମୁନି
ମାନବେର ଦୁଃଖଭାର ହରିତେ ଆଗତ
ଯଥାକାଲେ ଶିଶୁନାମ ହବେ ତଥାଗତ । (୨ୟ ସର୍ଗ)

ବୌଦ୍ଧାବତାର କାବ୍ୟ :

ସିଦ୍ଧ ମନୋରଥ ହେବେ ମାନବେ କୃତାର୍ଥ
ଥୋଇବ ଏହାଙ୍କ ନାମ ହେ ନୃପ ! ସିଦ୍ଧାର୍ଥ
ବିମାତା ଗୌତମୀ ଦେବୀ କରିବେ ପାଳନ
ବୋଲିବେ ଗୌତମ ମୁନି ତେଣୁ ଲୋକଗଣ
ଶାକ୍ୟ ମୁନି ନାମ ହେବ ଶାକ୍ୟ ବଂଶୁଜାତ ××
ମାନବର ପାପତାପ ମୋଚନେ ଆଗତ
ବହିବେ ଏଥକୁ ଶିଶୁ ନାମ ତଥାଗତ । (୨ୟ ସର୍ଗ)

ସେହିପରି ଆଠଜଣ ଜ୍ୟୋତିର୍ବିଦଙ୍କର ରାଜସଭାରେ ପ୍ରବେଶପୂର୍ବକ ପୁତ୍ରର ଭବିଷ୍ୟତ ଜୀବନ ସମ୍ପର୍କରେ ଯେଉଁ ଭବିଷ୍ୟତ ବାଣୀ ପ୍ରଦାନ କରିଛନ୍ତି ଉଭୟ କାବ୍ୟରେ ତାର ବର୍ଣ୍ଣନା ଏକ ପ୍ରକାର ।

ତୃତୀୟ ସର୍ଗରେ ଗୌତମ ବୁଦ୍ଧଙ୍କର କୈଶୋର ଜୀବନର ବର୍ଣ୍ଣନା ପ୍ରଦାନ କରାଯାଇଛି । ରାଜପୁତ୍ର ଥିବାରୁ ରାଜା ତାଙ୍କର ଶିକ୍ଷାଦୀକ୍ଷା ତଥା ଯୁଦ୍ଧ ବିଦ୍ୟା ପାଇଁ ଗୁରୁ ନିଯୁକ୍ତ କରିଛନ୍ତି । ଏହି ସମୟରେ ତାଙ୍କ ମନରେ ଗଭୀର ଭାବନାର ଉଦୟ ହୋଇଛି । ଏ ବର୍ଣ୍ଣନା ଅବଶ୍ୟ ଯଥାର୍ଥ । କାରଣ ବୁଦ୍ଧଙ୍କ ଚରିତ୍ରର ପ୍ରଧାନ ଅବଲମ୍ବନ ହେଉଛି ଭାବାବିଷ୍ଟତା । ତାଙ୍କ ମନର କରୁଣାର ଚିତ୍ର ଦେବାକୁ 'ଅମିତାଭ'ରେ କେତୋଟି ବର୍ଣ୍ଣନା ଦିଆଯାଇଛି-

କ୍ରୀଡ଼ା ଯୁଦ୍ଧେ ମୃଗୟାୟ ନାହିଁ ସମକକ୍ଷ କେହ
ନାହିଁ ସମକକ୍ଷ ଅଶ୍ୱ ଅସ୍ତ୍ର ସଞ୍ଚାଳନେ
କିନ୍ତୁ ଘୋର ମୃଗୟାୟ ଘୋର ଯୁଦ୍ଧ କ୍ରୀଡ଼ାଙ୍ଗନେ
ଚକିତେ ଥାମିତ ଶିଶୁ କି ଭାବିତ ମନେ ।

× × ×

ଯାଇତେଛେ ଅଶ୍ୱଛୁଟି ଶୁନି ଅଶ୍ୱକଷ୍ଟ ଶ୍ୱାସ
ଥାମିତ ହଇତେ କଭୁ ସ୍ୱପ୍ନେ ନିମଗନ
ଜଗତେର ଦୁଃଖ କିଛୁ କୁମାରତ ନାହିଁ ଜାନେ
ଦେଖେ ନାଇ ଶୁନେ ନାଇ ଭାବେ ନାହିଁ ମନେ
ତଥାପି ହୃଦୟେ ଧୀରେ ତ୍ରିଦିବ କରୁଣା ଉସ
ହଇତେଛେ ସଞ୍ଚାରିତ ଅଙ୍କାନେ କେମନେ !

**ବୌଦ୍ଧାବତାର କାବ୍ୟରେ :**

ବ୍ୟାୟାମେ କ୍ରୀଡ଼ାରେ ଅଶ୍ୱଗଜ ଆରୋହଣେ
ସମକକ୍ଷ ପ୍ରତିଦ୍ୱନ୍ଦୀ ଥିଲା ନାହିଁ ଜଣେ
ଥିଲେ ମଧ୍ୟ ସିଦ୍ଧହସ୍ତ ମୃଗୟା କ୍ଷେତ୍ରରେ
ପଡ଼ନ୍ତି ଚମକି ଭାଳି କି କଥା ମନରେ ।

× × ×

ଧାବିତ ଘୋଟକ ଘର୍ମ ଦେଖିଲେ ନୟନେ
ଓହ୍ଲାଇ ପଡ଼ନ୍ତି ପଶୁ ଉପରୁ ତକ୍ଷଣେ

ଜଗତର ଦୁଃଖ ବାର୍ତ୍ତା ନ ଜାଣେ କୁମର
ତଥାପି ହୁଅନ୍ତି ପର ଦୁଃଖରେ କାତର

ଆହତ ପକ୍ଷୀଟିର ସେବାଚିତ୍ର ମଧ୍ୟ ଦେଇ ସିଦ୍ଧାର୍ଥଙ୍କ ମନରେ ପ୍ରଥମ କରୁଣା ସଞ୍ଚାର ଚିତ୍ରଟିର ବର୍ଣ୍ଣନା ଉଭୟ କାବ୍ୟରେ ଏକ ପ୍ରକାର । ପାଞ୍ଚଜଣ ମହର୍ଷି ଗଗନ ମାର୍ଗରେ ଅତିକ୍ରମ କରୁଥିବା ସମୟରେ ଶାକ୍ୟସିଂହଙ୍କ ଦର୍ଶନମାତ୍ରେ ସେମାନଙ୍କର ଯୋଗାସନ ସ୍ଥିର ହେବାର ଯେଉଁ ବର୍ଣ୍ଣନା ନବୀନଚନ୍ଦ୍ର ଦେଇଛନ୍ତି, ଫକୀରମୋହନ ଅନୁରୂପ ବର୍ଣ୍ଣନା ନିଜ କାବ୍ୟରେ ପ୍ରଦତ୍ତ କରିଛନ୍ତି । ବୌଦ୍ଧାବତାର କାବ୍ୟର ଶାକ୍ୟସିଂହଙ୍କ ଯୋଗାସନ ବର୍ଣ୍ଣନା ମଧ୍ୟ 'ଅମିତାଭ' କାବ୍ୟର ଅନୁରୂପ ।

ଚତୁର୍ଥ ସର୍ଗରେ ସିଦ୍ଧାର୍ଥଙ୍କର ବୈରାଗ୍ୟ ଭାବ ଲକ୍ଷ୍ୟ କରି ପିତା ଶୁଦ୍ଧୋଦନ ବିବ୍ରତ ହୋଇ ପଡ଼ିଛନ୍ତି । ଅମାତ୍ୟମାନେ ରାଜାଙ୍କୁ ପରାମର୍ଶ ଦେଇଛନ୍ତି -

ଯୌବନ-ଉଷାୟ ଏବେ ପ୍ରେମ ଉନ୍ମେଷିତ
ନିର୍ମ୍ମାବ ପ୍ରମୋଦ ପୁରୀ ପ୍ରମୋଦ କାନନ
ରଚିବ ସୁଖେର ସ୍ୱର୍ଗ, ପ୍ରେମେର ସ୍ୱପନ
ବିଳାସେ ପ୍ରଣୟା ବେଶ × × ×
× × ରବେ ପ୍ରହରୀ ନିପୁଣ
ଜରା, ବ୍ୟାଧି, ମୃତ୍ୟୁ, ଦୁଃଖ, ଉଦାସୀନ ଆର
ଦିବ ନା ଆସିତେ ପୁର-ପରିଖାର ପାର । (ଅମିତାଭ)

**ବୌଦ୍ଧାବତାର କାବ୍ୟ :**

ମହାରାଜ ! କୁମାରଙ୍କ ଯୌବନ ଉଦୟ
ବିଳାସ ବାସନା ସୁଖ ଭୋଗର ସମୟ;
× × ×
ରଚିବୁ ନନ୍ଦନୋଦ୍ୟାନ ନଅର ମଧ୍ୟରେ
× × ×
ବିଳାସ ପଦାର୍ଥମାନ
ଆଣିବୁ ଯେତେକ ଯହିଁ ଯତନରେ
ଜନ୍ମିବ ଉଲ୍ଲାସ ଯେଣୁ କୁମାର ମନରେ । × ×
ରଖିବୁ ବିମୁଗ୍ଧ କରି
ସଦା ନିପୁଣ ପ୍ରହରୀ

ଥିବେ ଜଗି, ନ କରିବେ କୁମାର ବିଲୋକ
ଉଦାସୀନ, ଜରା, ବ୍ୟାଧିଗ୍ରସ୍ତ, ମୃତ ଲୋକ (୪ର୍ଥ ସର୍ଗ)

ଏହି ସର୍ଗରେ ବିବାହରେ ସମ୍ମତି ଦାନ ପ୍ରସଙ୍ଗରେ ନବୀନଚନ୍ଦ୍ର ଯେପରି ଖୁବ୍ ସ୍ୱାଭାବିକ ଭାବରେ ସିଦ୍ଧାର୍ଥଙ୍କ ମନରେ ଦ୍ୱନ୍ଦ୍ୱ ସୃଷ୍ଟି କରିଛନ୍ତି, ମନୋନୀତା ବଧୂର ସମ୍ପର୍କରେ ସିଦ୍ଧାର୍ଥ ଯେଉଁ ଗୃହୀ ଜନୋଚିତ ମତାମତ ପ୍ରଦାନ କରିଛନ୍ତି, ଯେପରି ପାତ୍ରୀ ମନୋନୟନ କ୍ଷେତ୍ରରେ ସିଦ୍ଧାର୍ଥଙ୍କର ସଂଯତ ଆଚରଣର ବର୍ଣ୍ଣନା ଦେଇଛନ୍ତି, ଫକୀରମୋହନ ତାଙ୍କୁ ଅନୁସରଣ କରି ଏକପ୍ରକାର ବର୍ଣ୍ଣନା 'ବୌଦ୍ଧାବତାର କାବ୍ୟ'ରେ ଦେଇଛନ୍ତି । ପଞ୍ଚମ ସର୍ଗରେ ଶାକ୍ୟ ବଂଶ ପରମ୍ପରା ଅନୁଯାୟୀ ବିଭିନ୍ନ ପ୍ରତିଯୋଗିତାରେ ସିଦ୍ଧାର୍ଥ ଜୟଲାଭ କରିବା ଦେଖି ସମସ୍ତେ ଆଶ୍ଚର୍ଯ୍ୟାନ୍ୱିତ ହୋଇଛନ୍ତି । ନବୀନଚନ୍ଦ୍ର ଏହାର ସୁନ୍ଦର ବର୍ଣ୍ଣନା ଦେଇ ଲେଖିଛନ୍ତି -

ହାୟ ! ମୂର୍ଖ ଶାକ୍ୟଗଣ ! କିବା ଅସମ୍ଭବ ତାର,
ନାରାୟଣ ଅଂଶେ ଜନ୍ମ ଯାର ?
ଶିଖେ କି କେଶରୀ ଶୌର୍ଯ୍ୟ ? ଚିତ୍ରବିଦ୍ୟା ଇନ୍ଦ୍ରଧନୁ ?

ବୌଦ୍ଧାବତାର କାବ୍ୟରେ -

ଇନ୍ଦ୍ରଧନୁକୁ ଚିତ୍ର କେ କଲା ବୋଲ ?
କେ ଦିଏ ଶିକ୍ଷା ସିଂହେ ବଳ କୌଶଳ ?
ପରମବ୍ରହ୍ମ ଅଂଶୁ ଜନ୍ମ ଯାହାର
× × ×
କି ଅସମ୍ଭବ ବୋଲ ସେ ପ୍ରଭୁଠାରେ ?

ଦାମ୍ପତ୍ୟ ଜୀବନର ସୁଖତୃପ୍ତ ସିଦ୍ଧାର୍ଥଙ୍କ ମନରେ ସଂସାର ସୌନ୍ଦର୍ଯ୍ୟ, ଆସ୍ଥାର ଭାବ ସୁନ୍ଦର ଭାବେ ପରିସ୍ଫୁଟିତ ହୋଇଛି; ଯଦିଓ ତାହା ସାମୟିକ । ତାର ସୁନ୍ଦର ବର୍ଣ୍ଣନା ଅମିତାଭରେ ଏହିପରି ପ୍ରଦତ୍ତ -

ଗୋପାର ପ୍ରେମେର ସ୍ରୋତେ ବୈରାଗ୍ୟ ଚଲିଲ ଭାସି
ସିଦ୍ଧାର୍ଥ ହଇଲ ନିମଜ୍ଜିତ
ଗୋପା ରୂପବତୀ, ଗୋପା ଗୁଣବତୀ, ଧର୍ମେ ମତି
ପତିପ୍ରେମେ ପୂର୍ଣ୍ଣ ମାତୋ ଯାରା ।
ସିନ୍ଧୁ ଗର୍ଭେ ନଦୀ ଯେନ ସିଦ୍ଧା ସାଧିକାର ମତ
ପତି-ପଦେ ଗୋପା ଆତ୍ମହରା

ନାହିଁ ଅଙ୍ଗେ ଆଭରଣ ନା ଆଛେ ଅବଗୁଣ୍ଠନ
ଦେଖିଯା ବିବସା ଲଜ୍ଜାହୀନା
× × ×
ନାରୀ ଆଭରଣ ଧର୍ମ ନାରୀର ସୌନ୍ଦର୍ଯ୍ୟ ଧର୍ମ
ଧର୍ମ ଅବଗୁଣ୍ଠନ ତାହାର × × ×
ଇନ୍ଦ୍ରିୟ ସଂଯତ ଯାର ବାକ୍ୟ ଯାର ନିୟମିତ
ଚିତ୍ତବୃତ୍ତି ନିରୁଦ୍ଧ ଯାହାର
ମନ ଯାର ନିରମଳ ସ୍ୱଚ୍ଛେ ସରସୀର ଜଳ
ଆବରଣେ କି କାଯ ତାହାର ।

**ବୌଦ୍ଧାବତାର କାବ୍ୟରେ ମଧ୍ୟ ଅନୁରୂପ ବର୍ଣ୍ଣନା ଦେଖାଯାଏ -**

ଗୋପା ପ୍ରେମ ସାଗରେ ଡୁବି ସିଦ୍ଧାର୍ଥ
ବୈରାଗ୍ୟ ତେଜି ଗୃହୀ ହେଲେ ଯଥାର୍ଥ
ଲାବଣ୍ୟମୟୀ ଗୋପା ପ୍ରେମ ମୂରତି
ଲଳିତ କଳାବତୀ ପବିତ୍ରା ସତୀ
ମନପ୍ରାଣ ସମର୍ପି ପତି ପଦରେ
କାୟାଛାୟା ସମାନେ ଥାନ୍ତି ପାଶରେ
× × ×
ଆତ୍ମ ବିସ୍ମରି ଗୋପା ପତିଚରଣେ
ମିଳିତା ସିନ୍ଧୁଗର୍ଭେ ନଦୀ ଯେସନେ
ନାହିଁ ଭୂଷଣ ଶିରେ ଅବଗୁଣ୍ଠନ
ଧନ ବା ଲଜ୍ଜାହୀନା ନାରୀ ଯେସନ
× × ×
ନାରୀ ଲାବଣ୍ୟ ଧର୍ମ ସେ ଆଭରଣ
ଧର୍ମ ହିଁ ନାରୀଙ୍କର ଅବଗୁଣ୍ଠନ
× × ×
ମନ ନିର୍ମଳ, ବାକ୍ୟ ସତ୍ୟ, ସରସ
ନିରୁଦ୍ଧ ଚିତ୍ତବୃତ୍ତି, ଇନ୍ଦ୍ରିୟ ବଶ
ନାହିଁ ଯାହାର ବୃଥା ଅବଗୁଣ୍ଠନ
ଶୀଳତା ନିଷ୍ଠାହୀନ- ବୃଥାଭରଣ

ଷଷ୍ଠସର୍ଗରେ ସିଦ୍ଧାର୍ଥଙ୍କ ଅନ୍ତରରେ ବୈରାଗ୍ୟ ଭାବର ଜାଗ୍ରତ ପାଇଁ ପୂର୍ବାଭାସ ଭାବରେ ନବୀନଚନ୍ଦ୍ର ଯେଉଁ ଗୋଟିଏ ଗୀତି ରସମୟ କରୁଣ 'ଗାଥା' ସଂଯୋଜିତ କରିଛନ୍ତି ତାର ଏକ ଗଭୀର ତାତ୍ପର୍ଯ୍ୟ ରହିଛି । ଏହା ଯେପରି ଭାବୀ ଘଟଣାର ଶଙ୍କିତ ଛାୟାପାତ । ଗୋପା ପ୍ରେମରେ ନିମଜ୍ଜିତ ସିଦ୍ଧାର୍ଥଙ୍କ ଅବସ୍ଥା ସୂଚାଇବାକୁ ଯାଇ ନବୀନଚନ୍ଦ୍ର କହିଛନ୍ତି -

ଗୋପାର ସୌନ୍ଦର୍ଯ୍ୟେ ପ୍ରେମେ ସିଦ୍ଧାର୍ଥ ମୁଗ୍ଧମୋହିତ
ବୁଝିଲେନ ବନହସ୍ତୀ ହଇୟାଛେ ଶୃଙ୍ଖଳିତ ।

**ବୌଦ୍ଧାବତାର କାବ୍ୟ :**

ଗୋପାର ମଧୁର ପ୍ରେମେ ମୋର ଭାଗ୍ୟବଳେ
ଆବଦ୍ଧ ପ୍ରମତ୍ତ କରୀ ପ୍ରଣୟ ଶୃଙ୍ଖଳେ ।

ହଠାତ୍ ରାତ୍ରିର ନିସ୍ତବ୍ଧ ପ୍ରହରରେ ସିଦ୍ଧାର୍ଥ ଏକ ବୈରାଗ୍ୟ ସୁଲଭ ଗୀତ ଶୁଣିବାକୁ ପାଇଛନ୍ତି, ଯାହାଦ୍ୱାରା ତାଙ୍କ ମନରେ ଭାବାନ୍ତର ସୃଷ୍ଟି ହୋଇଛି -

ଜରାବ୍ୟାଧି ଦୁଃଖେ ଭରାହାୟ ! ଏଇ ତ୍ରିଭୁବନ
ମରଣ-ଅଗ୍ନିତେ ଦୀପ୍ତ, ଅନାଶ୍ରୟ ଅକିଞ୍ଚନ
× × ×
ଶାରଦୀୟ ଅଭ୍ରସମ ଅନିତ୍ୟ ଏ ରଙ୍ଗାଳୟ
ଜନ୍ମମୃତ୍ୟୁ ନିରନ୍ତର କରିତେଛେ ଅଭିନୟ ।
ବେଗବତୀ ନଦୀମତ, ଚଞ୍ଚଳ ବିଦ୍ୟୁତ୍ ପ୍ରାୟ
ମାନବ ଜୀବନ ଦ୍ରୁତ କୋଥାୟ ଚଲିୟା ଯାୟ
ଅଜ୍ଞାନ ଆଁଧାରେ ଘୋର ତୃଷ୍ଣାୟ ପୀଡ଼ିତ ନର
କୁମ୍ଭକାର-ଚକ୍ରମତ ଘୂରିତେଛେ ନିରନ୍ତର
ଇନ୍ଦ୍ରିୟେର ସୁଖେ ହାୟରେ ! ମାନବ ଶତ
ଜଡ଼ିତ ବ୍ୟାଧର ଜାଲେ ପ୍ରଲୁବ୍ଧ ମୃତ୍ୟୁର ମତ
ନିପତିତ ନଦୀବକ୍ଷେ ବିଶୁଷ୍କ ପତ୍ରେର ମତ
ଏ ସଂସାରେ ପ୍ରିୟଜନ ଭାସିୟା ଯାୟ ସତତ (ଅମିତାଭ)

**ବୌଦ୍ଧାବତାର କାବ୍ୟରେ ଫକୀରମୋହନ ଲେଖିଛନ୍ତି -**

ଜରା, ବ୍ୟାଧି, ଦୁଃଖ, ମୃତ୍ୟୁପୂର୍ଣ୍ଣ ଏ ଭୁବନ
ଦାରୁଣ ଯନ୍ତ୍ରଣା ଭୁଞ୍ଜେ ଜୀବ ଅକିଞ୍ଚନ

× × ଆହା ପୃଥ୍ୱୀ ରଙ୍ଗାଳୟ
କରେ ନିତ୍ୟ ଜୀବ ଜନ୍ମ ମୃତ୍ୟୁ ଅଭିନୟ
ଅବିଶ୍ରାନ୍ତ ନଦୀସ୍ରୋତ ସମାନେ ଜୀବନ
ଧାବିତ ମରଣ ସିନ୍ଧୁ ଗର୍ଭେ ଅନୁକ୍ଷଣ
ଘୂର୍ଣ୍ଣିତ କୁରାଳ ଚକ୍ର ସମାନେ ମାନବ
ପର୍ଯ୍ୟାୟରେ ଜନ୍ମମୃତ୍ୟୁ କରେ ଅନୁଭବ
× × ×
ବ୍ୟାଧ ଜାଲେ ବଦ୍ଧ ମୃଗ ସମାନେ ଜୀବନ
ଜନମ ମରଣେ ବଦ୍ଧ ମୋହେ ଅଚେତନ
× × ×
ନଦୀ ସ୍ରୋତେ ଶୁଷ୍କ ତୃଣ ସମାନେ ମିଳନ
ଜଗତରେ ତଥା ଜ୍ଞାତି ବନ୍ଧୁ ପରିଜନ ।

ବିଷାଦଗ୍ରସ୍ତ ମନରେ ଗୃହତ୍ୟାଗ କରି ନିର୍ବାଣ ଅନୁସରଣରେ ସିଦ୍ଧାର୍ଥ ଯିବାକୁ ଯେତେବେଳେ ପ୍ରତିଜ୍ଞାବଦ୍ଧ ହୋଇଛନ୍ତି, ସେହି ସମୟରେ ପ୍ରିୟଜନମାନଙ୍କର ସ୍ନେହ, ପ୍ରେମ ତାଙ୍କ ହୃଦୟକୁ ଆନ୍ଦୋଳିତ କରିଛି । ଏହି ସମୟର ବର୍ଣ୍ଣନା ଉଭୟ 'ଅମିତାଭ' ଓ 'ବୌଦ୍ଧାବତାର କାବ୍ୟ'ରେ ଏକ ପ୍ରକାର ।

ସପ୍ତମ ସର୍ଗରେ ବୈରାଗ୍ୟ ପ୍ରସଙ୍ଗରେ ନବୀନଚନ୍ଦ୍ର ସିଦ୍ଧାର୍ଥଙ୍କୁ ଜରା-ମୃତ୍ୟୁ ପ୍ରଭୃତି ମାନବର ବିଭିନ୍ନ ଦୁର୍ଦ୍ଦଶା ଦର୍ଶନ କରାଇଛନ୍ତି । ଏହି ବହୁଶ୍ରୁତ କାହାଣୀ ବୁଦ୍ଧ ଜୀବନର ଅଙ୍ଗୀଭୂତ ଏବଂ ବୈରାଗ୍ୟ ପ୍ରବଣ ମନରେ ଏହି ଧରଣର ଅଭିଜ୍ଞତା ବା ଉପଲବ୍ଧି ଖୁବ୍ ସ୍ୱାଭାବିକ ଭାବରେ ସେ ଗ୍ରହଣ କରିଛନ୍ତି । ଫକୀରମୋହନ ମଧ୍ୟ ଅନୁରୂପ ବର୍ଣ୍ଣନା ତାଙ୍କ କାବ୍ୟରେ ଦେଇଛନ୍ତି । ପ୍ରିୟଜନ ଓ ପତ୍ନୀ ଗୋପାର ପ୍ରେମ ତାଙ୍କୁ ଅତିଶୟ ଭାବପ୍ରବଣ କରିଥିଲେ ମଧ୍ୟ ସେ ଗୃହତ୍ୟାଗ କରିବାକୁ ସ୍ଥିର ସଂକଳ୍ପ-

ହାୟ ! ଯେଇ ସଂସାରେର ବନ୍ଧନ କରିତେ ଛିନ୍ନ
କରିଲାମ ସଂକଳ୍ପ ଏଖନ
ସୁଦୃଢ଼ ବନ୍ଧନ ଆର ହୃଦୟେର ହୃଦୟେତେ
ସେ ସଂସାର କରିଲ ସ୍ଥାପନ
ଆର କିଛିଦିନ ହାୟ ! ଥାକି ଯଦି ଏ ସଂସାରେ
ବନ୍ଧନେର ଉପରେ ବନ୍ଧନ
ଛଡ଼ାଇବେ ଏ ସଂସାର; ଆର ନା ସମୟ ଏଇ
ମାୟାଜାଲ କରିବ ଛେଦନ । (ଅମିତାଭ)

**ବୌଦ୍ଧାବତାର କାବ୍ୟ**

ବନ୍ଧନ ଉପରେ ହେଲା ବନ୍ଧନ
ଛିନ୍ନ କରିଯିବ ବୋଲ କେସନ?
ଯାଉ-ତ୍ୟାଗ କଲି ସର୍ବ ବିଷୟ
ସାଧିବି ସଂକଳ୍ପ ସ୍ଥିର ନିଶ୍ଚୟ ।

ଉକ୍ତ ସର୍ଗରେ ସିଦ୍ଧାର୍ଥଙ୍କ ମନରେ ଯେଉଁ ସଂସାର ସୁଖ ଓ ମାନବ ଦୁଃଖ ପରି ଦୁଇଟି ବିରୁଦ୍ଧ ଭାବର ଦ୍ୱନ୍ଦ୍ୱ ବିକ୍ଷୋଭ ଦେଖାଯାଇଛି ତାହା ବିଶେଷ ଭାବରେ ଲକ୍ଷଣୀୟ ।

ଅଷ୍ଟମ ସର୍ଗରେ ପୁତ୍ର ରାହୁଳର ଜନ୍ମ ଘଟଣାକୁ କେନ୍ଦ୍ରକରି ସିଦ୍ଧାର୍ଥଙ୍କ ମନରେ ଭୋଗ ଓ ବୈରାଗ୍ୟର ଦ୍ୱନ୍ଦ୍ୱ ଗଭୀର ହୋଇଉଠିଛି । ଏହି ସର୍ଗରେ ଗୋପା ସ୍ୱପ୍ନରେ କେତେକ ଅଶୁଭ ସଙ୍କେତ ଲକ୍ଷ୍ୟକରି ଚମକି ଉଠିଛନ୍ତି । ଏ ବର୍ଣ୍ଣନା ଉଭୟ କାବ୍ୟରେ ସମାନ ଭାବେ ବର୍ଣ୍ଣିତ ।

ଗୋପା ଦେଖିଛେନ ସ୍ୱପ୍ନ-କାଁପିତେଛେ ଧରା
ବହିଛେ ପ୍ରଳୟ ଝଡ଼ କରି ବୃକ୍ଷରାଜି
ଉତ୍କ୍ଷେପିତ, ଭୂପତିତ, ଆକାଶେ ନିଷ୍ପ୍ରଭ
ଚନ୍ଦ୍ରସୂର୍ଯ୍ୟ ଗ୍ରହରାଜି, ପଡ଼ିଛେ ଖସିୟା
ବରିଷାର ଫୋଁଟା ସମ ନକ୍ଷତ୍ର ସକଳ
ଗୋପାର ମୁକୁଟ ଭଗ୍ନ, ଛିନ୍ନ କେଶ ଜାଲ
ଛିନ୍ନ ମୁକ୍ତାହାର ଗୋପା ଭଗ୍ନ ଶଯ୍ୟାତଲେ
କାଙ୍ଗାଳିନୀ ଆତ୍ମହାରା ପଡ଼ିୟା ଧରାୟ
ରାଜାର ଚାମର ଛତ୍ର ଦଣ୍ଡ ଭୂପତିତ
ଛିନ୍ନ ଭିନ୍ନ ଆଭରଣ ସହ ସିଦ୍ଧାର୍ଥେର (ଅମିତାଭ)

**ବୌଦ୍ଧାବତାର କାବ୍ୟ**

ନିଦ୍ରାବତୀ ଗୋପାଦେବୀ ଦେଖିଲେ ସ୍ୱପନେ
ସହସା ନିର୍ମଳାକାଶେ ପ୍ରଚଣ୍ଡ ଝଟିକା
ବହେଁ ପ୍ରବଳରେ ବିନା ମେଘେ ବଜ୍ରପାତ
ଚନ୍ଦ୍ରସୂର୍ଯ୍ୟ ଗ୍ରହଗଣେ ପ୍ରଚଣ୍ଡ ଭାବରେ
ଧାବିତ, ଆହତ ମହାବେଗେ ପ୍ରବଳରେ

ଏକ ଏକ ତାରା ସର୍ବେ ପଡୁଛନ୍ତି ଖସି
ନିଷ୍ପ୍ରଭ ଚନ୍ଦ୍ରମା ଜ୍ୟୋତି, ନିଷ୍ପ୍ରଭ ତପନ
କମ୍ପିତା ମେଦିନୀ, ଗିରିରାଜ ଛିନ୍ନଭିନ୍ନ
ଦାବାନଳେ ଦଗ୍ଧ ବନ! ସର୍ବ ବିଶୃଙ୍ଖଳ
ଗୋପାକଣ୍ଠ ମୁକ୍ତାହାର ଛିଣ୍ଡିପଡ଼େ ଚୂର୍ଣ
ବିଶୃଙ୍ଖଳ କେଶପାଶ, ସର୍ବ ଅଳଙ୍କାର
କାଙ୍ଗାଳିନୀ ପରି ପଡ଼ି କାନ୍ଦନ୍ତି ଭୂମିରେ
ରାଜକୀୟ ଛତ୍ରଦଣ୍ଡ କେତନ ଚାମର
ଛିନ୍ନଭିନ୍ନ ସିଦ୍ଧାର୍ଥଙ୍କ ଦେହ ଅଳଙ୍କାର

ନବମ ସର୍ଗରେ ସିଦ୍ଧାର୍ଥ ପିତା ଶୁଦ୍ଧୋଦନଙ୍କ ନିକଟରୁ ଚିର ବିଦାୟ ନେଇ ଯିବାକୁ ବାହାରିଛନ୍ତି । ଏହି ସର୍ଗଟି କରୁଣ ରସରେ ପରିପୂର୍ଣ୍ଣ । ପିତାଙ୍କଠାରୁ ବିଦାୟ ନେବା ବେଳେ ନବୀନଚନ୍ଦ୍ର ଚମତ୍କାର ଭାବରେ ଲେଖିଛନ୍ତି -

କହ ବତ୍ସ! କୋନ ପ୍ରୟୋଜନେ
ତ୍ୟାଜିବ ସଂସାର? କହ କି ଅଭାବ ତବ?
ରୂପବତୀ, ଗୁଣବତୀ, ଲାବଣ୍ୟ ପ୍ରତିମା
ଗୋପାବଧୂ ମାତା ମମ; ନବଜାତ ଶିଶୁ
ନବୋଦିତ ଶଶଧର; ଏଇ ଶାକ୍ୟ ରାଜ୍ୟ
ବିସ୍ତୀର୍ଣ୍ଣ ସୁବର୍ଣ୍ଣ ପ୍ରସୂ, ଚାରୁ ଲୀଳାଭୂମି
ପ୍ରକୃତିର, ବୀରଭୂମି ବୀରେର ଜନନୀ
ଅନୁପମ ରୂପତବ, ନବୀନ ଯୌବନ
ଶିରୀଷ-କୁସୁମ-ସମ ଦେହ ସୁକୁମାର
କଠୋର ସନ୍ନ୍ୟାସ-କ୍ଲେଶ ସହିବେ କେମନେ?
× × ×
ହାପୁତ୍ର ଜୀବନାଧିକ । ପାଇୟା ତୋମାର
ଭୁଲିୟାଛି ଆମି ତବ ଜନନୀର ଶୋକ ।

**ବୌଦ୍ଧାବତାର କାବ୍ୟରେ ଏହି ଘଟଣା ନିମ୍ନପ୍ରକାର ବର୍ଣ୍ଣିତ**

ରେ ପୁତ୍ର! ତୋହର ଅଛି କିବା ପ୍ରୟୋଜନ?
କି ଅଭାବ ଅଛି ତୋର, କିପାଇଁ ସଂସାର
ତେଜିବୁ? × × ×

ଲଳନା ଲାବଣ୍ୟମୟୀ ଗୋପା ସାଧ୍ୱୀ ସତୀ
ଶାକ୍ୟକୁଳ ଲକ୍ଷ୍ମୀବଧୂ ସରଳା ଯୁବତୀ ।
ଦେବ ପୁଷ୍ପ ପାରିଜାତ କୋରକ କୁମାର
ବିତ୍ତଶାଳୀ ଶାକ୍ୟରାଜ୍ୟ ବିଖ୍ୟାତ ସଂସାର
କମଳାର ଲୀଳାସ୍ଥଳୀ ସୁବର୍ଣ୍ଣା ପ୍ରସବା
ପ୍ରକୃତିର ଗନ୍ତାଘର ମେଲିଅଛି ଅବା !

× × ×

ସୁଠାମ କୋମଳ କାନ୍ତ ପ୍ରଫୁଲ୍ଲ ସୁମନ
ସମାନ ସ୍ୱରୂପ ତବ ନବ ଯଉବନ
ବିଜନ ବିପଦପୂର୍ଣ୍ଣ ନିବିଡ଼ କାନନ
କ୍ଳେଶ ସହି କରିବୁରେ ତପସ୍ୟା କେସନ ?

× × ×

ତୋହର ଜନନୀ ଶୋକ ଯାଇଛି ପାସୋରି
ତୋର ମୁଖଚନ୍ଦ୍ର ଦେଖି ଅଛି ପ୍ରାଣଧରି

ପିତାଙ୍କର ଅଶ୍ରୁ ଦେଖି ପୁତ୍ର ମାଗିଛନ୍ତି ଚାରୋଟି ବର, ପିତାଙ୍କୁ । ଉଭୟ ଅମିତାଭ ଓ ବୌଦ୍ଧାବତାର କାବ୍ୟର ଏହି ପଦଗୁଡ଼ିକ ଏକ ପ୍ରକାର । ପୁତ୍ରର କଥାଶୁଣି ପିତା ଶୁଦ୍ଧୋଦନ କହିଛନ୍ତି -

ସୁଦୀର୍ଘ ନିଃଶ୍ୱାସ ଛାଡ଼ି ନୃପତି ବିଷାଦେ
କହିଲେନ - "ପୁତ୍ର ଯାହା ହଇବାର ନହେ
ପାଇବାର ନହେ ଯାହା, ଚାହିତେଛେ ତୁମି
କଳ୍ପ କଳ୍ପାନ୍ତର କରି ତପସ୍ୟା କଠୋର
ନା ପାୟ ଯୋଗୀରା ଯାହା ପାଇବ କୋଥାୟ ? (ଅମିତାଭ)

## ବୌଦ୍ଧାବତାର କାବ୍ୟ

ବୋଇଲେ ନୃପତି କଷ୍ଟେ ପକାଇ ନିଃଶ୍ୱାସ
"ପାଇବୁ ଅପ୍ରାପ୍ୟ ବିତ୍ତ କିଁପା ଏ ବିଶ୍ୱାସ ?
ଜଗତ ମଧ୍ୟରେ ଯାହା ଦୁର୍ଲ୍ଲଭ ପଦାର୍ଥ
ସେ ସମସ୍ତ ଦ୍ରବ୍ୟ ଲୋଡୁ କିଁପାରେ ସିଦ୍ଧାର୍ଥ ?

ଯୋଗୀଗଣ କରି କଷ୍ଟ କଷ୍ଟାନ୍ତ ତପସ୍ୟା
ଯାହା ଲଭିବାକୁ ପାଇ ନାହାନ୍ତି ଭରସା,
ଅପ୍ରାପ୍ୟ ପଦାର୍ଥ ଲାଭେ କିଁପା ଅଭିଳାଷ ?

ବିଦାୟର ଶେଷ ମୁହୂର୍ତ୍ତ । ପୁତ୍ର ଓ ପିତା ଉଭୟ ଶୋକାକୁଳ । ପୁତ୍ରର କର ପିତା ପାଦ ପଦ୍ମରେ ଓ ପିତାର କର ପୁତ୍ର ମସ୍ତକରେ । ଚମତ୍କାର କରୁଣ ଦୃଶ୍ୟ -

ପ୍ରଣମିଲା ପିତୃପଦେ ପୁତ୍ର ଭକ୍ତିଭରେ
ସୁପବିତ୍ର ପଦତୀର୍ଥେ ପୁତ୍ରେର ମସ୍ତକ
ସୁ ପ୍ରଣତ; ପାଦପଦ୍ମେ କର ପଦ୍ମଦ୍ୱୟ
କୁମାରେର; କର ପଦ୍ମ ପୁତ୍ରେର ମସ୍ତକେ
ଜନକେର; କୁମାରେ ଚକ୍ଷୁ ଛଳ ଛଳ
ଜନକେର ଅଶ୍ରୁଧାରା ବହିଛେ ଧାରାୟ (ଅମିତାଭ)

**ବୌଦ୍ଧାବତାର କାବ୍ୟ :-**

ସିଦ୍ଧାର୍ଥ ଭକ୍ତିରେ **ପିତୃଦେବ ଚରଣରେ**
ଓଳଗି ହେଲେକ **କାୟ** ମନ **ବଚନ**ରେ
× × ପୁତ୍ରଙ୍କର **କରପଦ୍ମ ଜନକ ପଦ**ରେ
ପିତାଙ୍କର କରପଦ୍ମ **ପୁତ୍ର ମସ୍ତକରେ**
ପିତା ପଦ ଯୁଗ୍ମ **ସିକ୍ତ ପୁତ୍ର ନେତ୍ର** ନୀରେ
ପିତାଙ୍କ ନୟନ **ଅଶ୍ରୁ ପଡ଼େ ପୁତ୍ର** ଶିରେ

ଦଶମ ସର୍ଗରେ ବର୍ଣ୍ଣିତ ସିଦ୍ଧାର୍ଥଙ୍କର ନିଷ୍କ୍ରମଣ (ଅମିତାଭରେ ମହା ନିଷ୍କ୍ରମଣ) ତାଙ୍କ ଜୀବନ ନାଟକର ଚରମ ମୁହୂର୍ତ୍ତ ବା Climax । ଶେଷଥର ନିମିତ୍ତ ପତ୍ନୀପୁତ୍ରଙ୍କର ମୁଖ ନିରୀକ୍ଷଣ ସମୟରେ ସିଦ୍ଧାର୍ଥ ଯେପରି ମାୟାସିକ୍ତ ସଂସାରର ବେଦନସ୍ଫୁରିତ ରହସ୍ୟକୁ ନିଜେ ଉପଲବ୍ଧି କରୁଥିଲେ । ଅଳ୍ପ ସମୟ ପୂର୍ବରୁ ଯେଉଁ ପୁତ୍ର ପିତାଙ୍କ ନିକଟରେ ଅଶ୍ରୁ ଧାରା ବର୍ଷଣ କରୁଥିଲେ, ବର୍ତ୍ତମାନ ତାଙ୍କ ଚକ୍ଷୁରେ ମାତ୍ର ଦୁଇଟି ଅଶ୍ରୁ ବିନ୍ଦୁ । ଏଥିରୁ ସ୍ପଷ୍ଟ ଅନୁମେୟ ଶାନ୍ତ ଆତ୍ମ ସମର୍ପଣ ମଧ୍ୟ ଦେଇ ଶେଷଥର ସେ ମାୟାପାଶ ଛିନ୍ନପୂର୍ବକ ଯିବାପାଇଁ ପ୍ରସ୍ତୁତ । ଛନ୍ଦକର ଅନୁରୋଧ ପ୍ରତ୍ୟାଖ୍ୟାନ କରି ଦୃଢ଼ ସ୍ୱରରେ ସିଦ୍ଧାର୍ଥ କହିଛନ୍ତି-

ଉତ୍ତରିଲ ଦୃଢ଼କଣ୍ଠେ କୁମାର - "ନିଶ୍ଚୟ !
ସୁମେରୁର ମତ ଦୃଢ଼ ପ୍ରତିଜ୍ଞା ଆମାର । (ଅମିତାଭ)

**ବୌଦ୍ଧାବତାର କାବ୍ୟ :**

ନିଶ୍ଚୟ ମୋ କଥା ଯଥାର୍ଥ ଛନ୍ଦକେ
ବୋଇଲେ ସିଦ୍ଧାର୍ଥ
"ସୁମେରୁ ପର୍ବତ ସମାନ, ସ୍ଥିର ମୋ ବଚନ ପ୍ରମାଣ ।

ଶେଷ ମୁହୂର୍ତ୍ତରେ ଗୋପାର ମୁଖ ଚାହିଁ ତାଙ୍କ ମନରେ ଯେଉଁ ଭାବାନ୍ତର ଓ ଦୃଢ଼ତା ସୃଷ୍ଟି ହୋଇଛି, ଉଭୟ କାବ୍ୟର ବର୍ଣ୍ଣନାରେ ତାର କୌଣସି ପାର୍ଥକ୍ୟ ପରିଦୃଷ୍ଟ ହୁଏ ନାହିଁ ।

ଏକାଦଶ ସର୍ଗରେ ରାଜପୁରୀଠାରୁ ଦୂରରେ ନଦୀ ତୀରରେ ସିଦ୍ଧାର୍ଥ ସନ୍ନ୍ୟାସୀ ବେଶ ଧାରଣ କରି ଛନ୍ଦକକୁ ବିଦାୟ ଦେଇଛନ୍ତି । ସେତେବେଳର ଦୃଶ୍ୟ ବର୍ଣ୍ଣନା କରି ନବୀନ ଚନ୍ଦ୍ର ଲେଖିଛନ୍ତି -

କାଟିୟାଭ୍ରମର କୃଷ୍ଣଦୀର୍ଘ କେଶ ଜାଲ
ନିଜ ଖଡ଼୍ଗେ ତୀକ୍ଷ୍ଣ ଧାର କରି ବିନିମୟ
ବ୍ୟାଧେର ସହିତ ନିଜ କୌଷିକ ବସନ
ବହୁମୂଲ୍ୟ ଶତଛିଦ୍ର କାଷାୟ ବ୍ୟାଧେର
ମ୍ଳାନ ଜୀର୍ଣ୍ଣ ପରିଲେନ ତିନଖଣ୍ଡ କରି
ନବୀନ ସନ୍ୟାସୀ ବେଶ ଦେଖିୟା ପ୍ରଭୁର
କାଁଦିତେ ଲାଗିଲ ଭୃତ୍ୟ କାଁଦିଲ କଣ୍ଟକ । (ଅମିତାଭ)

**ବୌଦ୍ଧାବତାର କାବ୍ୟରେ -**

ଭୃଙ୍ଗଶ୍ରେଣୀ କୃଷ୍ଣଦୀର୍ଘ କେଶକୁ ତକ୍ଷଣ
ଛେଦି ନିଜ ଖଡ୍‌ଗେ ତେଜି କୌଷେୟ ବସନ
ତିନିଖଣ୍ଡ ଜୀର୍ଣ୍ଣ ବସ୍ତ୍ର ପିନ୍ଧିଲେ ତକ୍ଷଣେ
ରହିଛି ଛନ୍ଦକ ଚାହିଁ ଚକିତ ନୟନେ ।
ନବୀନ ସନ୍ୟାସୀ ରୂପ ଦେଖିଲା କଣ୍ଟକ
କି ବୁଝିଲା ପଶୁ ଚାହିଁଅଛି ଭକଭକ
ନୀରବେ ବହୁତ ଅଶ୍ରୁଧାରା ଦ୍ୱିନୟନୁ
ଉଭା ଚିତ୍ରପିତୁଳି କି ସ୍ଥିର କରି ତନୁ ।

ସିଦ୍ଧାର୍ଥଙ୍କର ଅଦୃଶ୍ୟ ହେବାମାତ୍ରେ କଣ୍ଟକ 'ପ୍ରାଣ ବିସର୍ଜନ କରିଛି ଅମିତାଭ କାବ୍ୟରେ । କିନ୍ତୁ ବୌଦ୍ଧାବତାର କାବ୍ୟରେ କଣ୍ଟକ ଦୁଃଖର ସହିତ ଦୀର୍ଘନିଶ୍ୱାସ ତ୍ୟାଗ କରି ରାଜପ୍ରାସାଦକୁ ଫେରି ଯାଇଛନ୍ତି । ଦ୍ୱାଦଶ ସର୍ଗରେ ବିଷାଦିନୀ ଗୋପା ତଥା ରାଜପୁରୀର ଶୋକାଚ୍ଛନ୍ନ ରୂପ ଏକ କରୁଣମୟ ପରିବେଶ ସୃଷ୍ଟି କରିଛି । ଏତେଦୁଃଖ ସହ୍ୟ କରି ନପାରି ଗୋପା ହୋଇଛି ଭାଷାହୀନା, ନିର୍ବାକ୍ । ନବୀନ ଚନ୍ଦ୍ର ଲେଖିଛନ୍ତି-

"କୋଥାୟ କୁମାର" ? - ଜିଜ୍ଞାସେ ସଖୀରା
ଗୋପାକହେ - "ପ୍ରାଣନାଥ ?"
"କୋଥାୟ କୁମାର ? - ମହା କୋଳାହଲ
ହ'ଲ ଶିରେ ବଜ୍ରାଘାତ
× × ×
"କୋଥାୟ କୁମାର ? - ଛୁଟେ ପଦାତିକ
ଅଶ୍ୱାରୋହୀ ଅଶ୍ୱେ ଚଢ଼ି
ଖୋଁଜେ ଘରେ ଘରେ ନଗରେ ନଗରେ
ଖୋଁଜେ ବନ ଉପବନ
ଶେଖରେ, ଗହ୍ୱରେ, ପ୍ରାଚୀରେ, ପ୍ରାନ୍ତରେ
ନିଶାନ୍ତେ ଏ କିଁ ସ୍ୱପନ !
"କୋଥାୟ କୁମାର ?' ଚିହ୍ନ ନାହିଁ ତାର
ଗେଲ ଦିବାରାତ୍ରି ଚଲି
× × ×
"କୋଥାୟ କୁମାର' - ଆସିଲ ଛନ୍ଦକ
ଉଠିଲ କି ହାହାକାର ।
"କୁମାର ସନ୍ୟାସୀ" - ଅଶ୍ରୁ ସ୍ରୋତେ ବହି
ଛୁଟିଲ ଏ ସମାଚାର
ସପ୍ତଦିବା ନିଶି ଶାକ୍ୟ ରାଜ୍ୟେ କେହ
ଛୁଇଁଲ ନା ଅନ୍ନଜଲ × × ×
ସପ୍ତଦିବା ନିଶି ମାତା ପ୍ରଜାବତୀ
ମୂର୍ଚ୍ଛିତା ଧରା ଶାୟିତା
ସପ୍ତଦିବା ନିଶି ଗୋପା ଅଭାଗିନୀ
ମୂର୍ଚ୍ଛିତା ଧୂଳି-ଲୁଣ୍ଠିତା

ସପ୍ତଦିବା ନିଶି ବୃଦ୍ଧ ନରପତି
ନୀରବ ନିଶ୍ଚଳ ସ୍ଥିର
ନିଦ୍ରିତ ଜାଗ୍ରତ କେହି ନାହି ଜାନେ
ନେତ୍ରେ ନାହିଁ ବିନ୍ଦୁ ନୀର ।

**ବୌଦ୍ଧାବତାର କାବ୍ୟ :**

ପୁନଶ୍ଚ ପୁଛିଲେ ସଖୀ, କାହାନ୍ତି ସିଦ୍ଧାର୍ଥ ?
ଏକ ହିଁ ଉତ୍ତର - କାହିଁ ଗଲ ପ୍ରାଣନାଥ
× × ×
କାହାନ୍ତି କୁମାର, ଏହି କଥା ହିଁ କେବଳ
ପଡ଼ିଲା କପିଳବସ୍ତୁ ନଗରେ ଚହଳ ।
× × ×
ଧାଇଁଲେ ପଦାତି, ଅଶ୍ୱାରୋହୀ ରଥିଗଣ
ଘରେ ଘରେ ସ୍ଥାନେ ସ୍ଥାନେ କଲେ ଅନ୍ୱେଷଣ
ଖୋଜିଲେ ପର୍ବତେ ଗିରି ଗହ୍ୱରେ, କାନନେ,
ପ୍ରାନ୍ତରେ, କାନ୍ତାରେ, ରାଜମାର୍ଗେ, ଉପବନେ
ସ୍ୱପନ ସମାନ ତଥ୍ୟ ଜଣାଗଲା ନାହିଁ
ରାତ୍ର ମଧ୍ୟେ ରାଜପୁତ୍ର ଚାଲିଗଲେ କାହିଁ ?
ଆସିଲା ଛନ୍ଦକ ବୋଲେ କୁମାର ସନ୍ୟାସୀ
ଚାଲିଗଲେ ରାଜ୍ୟ ତେଜି ହୋଇ ବନବାସୀ
× × ×
ନ ଛୁଇଁଲେ ଅନ୍ନଜଳ ସାତ ଦିନ ରାତି
ସମସ୍ତଙ୍କ ଏକ କଥା କୁମାର କାହାନ୍ତି ?
ସାତଦିନ ସାତରାତି ମାତା ପ୍ରଜାବତୀ
ଅଜ୍ଞାନ ! ମୂର୍ଚ୍ଛିତା, ଭୂମିତଳେ ପଡ଼ିଛନ୍ତି
× × ×
ସଂଜ୍ଞାହୀନା ଭୂପତିତା ଗୋପା ଅଭାଗିନୀ
ଅଜ୍ଞାନେ କାଟିଲେ ସାତ ଦିବସ ଯାମିନୀ
ସାତଦିନ ସାତରାତି ବୃଦ୍ଧ ନରପତି
ନିଶ୍ଚଳ, ନୀରବ, ସ୍ଥାଣୁ ପରି ବସିଛନ୍ତି ।

ଏହି ସର୍ଗରେ ଏହିପରି ଆହୁରି ଅନେକ ବର୍ଣ୍ଣନା ରହିଛି, ଯାହାର ଅମିତାଭ କାବ୍ୟ ସହିତ ବହୁ ପରିମାଣରେ ସାମଞ୍ଜସ୍ୟ ରହିଛି ।

ତ୍ରୟୋଦଶ ଓ ଚତୁର୍ଦ୍ଦଶ ସର୍ଗରେ ସିଦ୍ଧାର୍ଥଙ୍କର ପ୍ରବ୍ରଜ୍ୟା, ଆରାଡ଼ କାଲାମ ସଙ୍ଗ, ରାଜଗୃହେ ବାସ ଓ ମଗଧ ରାଜ ବିମ୍ବିସାରଙ୍କ ସହିତ ସାକ୍ଷାତ, ଗୟାଗମନ, ନିରଞ୍ଜନା ନଦୀତୀରେ କୃଚ୍ଛ ସାଧନା, ଦୀର୍ଘ ଛଅବର୍ଷ ପର୍ଯ୍ୟନ୍ତ ବିଫଳ ସାଧନା, ନିର୍ବାଣ ଲାଭର ଆଶାଶୂନ୍ୟ ମୁହୂର୍ତ୍ତରେ କନ୍ଦର୍ପର ଆବିର୍ଭାବ ପ୍ରଭୃତି ସୁପରିଜ୍ଞାତ ଘଟଣାଗୁଡ଼ିକ ଯଥାଯଥ ପରିବେଶ ରକ୍ଷା କରି ଗୁରୁତ୍ୱ ସହିତ ବର୍ଣ୍ଣିତ । ଉଭୟ କାବ୍ୟରେ ଏକ ପ୍ରକାର ବର୍ଣ୍ଣନା ପରିଦୃଷ୍ଟ ହୋଇଥାଏ ।

ପଞ୍ଚଦଶ ସର୍ଗରେ ସୁଜାତାଠାରୁ ପାୟାସାନ୍ନ ଗ୍ରହଣ, ବୁଦ୍ଧତ୍ୱ ପ୍ରାପ୍ତି ପ୍ରଭୃତି ବର୍ଣ୍ଣିତ ହେବା ସଙ୍ଗେ ସଙ୍ଗେ ପ୍ରସଙ୍ଗକ୍ରମେ ବୌଦ୍ଧ ଦର୍ଶନର ମୂଳତତ୍ତ୍ୱ ଅତି ସଂକ୍ଷେପରେ ବର୍ଣ୍ଣନା କରାଯାଇଛି । ଉଭୟ କାବ୍ୟରେ ବୁଦ୍ଧଦେବଙ୍କ ନବଲବ୍ଧ ବୋଧିର ଯେଉଁ ସ୍ୱରୂପ ବର୍ଣ୍ଣନା କରାଯାଇଛି ତାହା ଯଥାର୍ଥ ଓ ପ୍ରସଙ୍ଗୋଚିତ ।

ଷୋଡ଼ଶ ସର୍ଗରେ ଧର୍ମ ପ୍ରଚାର ଉଦ୍ଦେଶ୍ୟରେ ବୁଦ୍ଧଙ୍କର ବିଭିନ୍ନ ସ୍ଥାନ ଭ୍ରମଣ, ବାରାଣସୀ ଠାରେ ପୂର୍ବରୁ ପଳାୟନ କରିଥିବା ପଞ୍ଚଶିଷ୍ୟ ଓ ରାଜଗୃହେ ରାଜା ବିମ୍ବିସାରଙ୍କୁ ଦୀକ୍ଷାଦାନ ପ୍ରଭୃତି ଉଭୟ କାବ୍ୟରେ ଏକ ପ୍ରକାର ବର୍ଣ୍ଣିତ ।

ସପ୍ତଦଶ ସର୍ଗ ଦଶମ ସର୍ଗପରି କାରୁଣ୍ୟ ରସରେ ପରିପୂର୍ଣ୍ଣ । 'ଅମିତାଭ'ରେ ପ୍ରଥମରୁ ଯେଉଁପରି ବର୍ଣ୍ଣନା ରହିଛି 'ବୌଦ୍ଧାବତାର' କାବ୍ୟରେ ମଧ୍ୟ ପ୍ରାରମ୍ଭରୁ ସେହିପରି ବର୍ଣ୍ଣନା ରହିଛି ।

ମଗଧେର ବେଣୁବନେ ଉପବିଷ୍ଟ ବୁଦ୍ଧଦେବ
ଶିଷ୍ୟସହ, ଗୁଳ୍ମ ମଧ୍ୟେ ଯେନ ତରୁବର
ଶୈଶବେର ସହଚର ଆସି ପିତୃଦୂତ କହେ
ପ୍ରଣମି ଚରଣେ କରି କୃତାଞ୍ଜଳି କର
"ହାୟ ଦେବ! କତ ଦୂତ ପାଠାଇଲା ପିତାତବ
କେହ ନା ଫିରିଲ ରାଜ୍ୟେ ଗେଲ ପ୍ରବ୍ରଜ୍ୟାୟେ
ଆସିୟାଛେ ଏଇ ଦାସ ତୋମାର ଶୈଶବ ସଖା
ପାଷାଣେ ବାନ୍ଧିଆ ବୁକ ଲଇତେ ତୋମାୟ
ବାଜିତେଛେ ଧର୍ମ ଭେରୀ- ଦେଶଦେଶାନ୍ତରେ ତବ
ବାଜିବେ ନା ଶୁଧୁଇକି କପିଳ ନଗରେ? (ଅମିତାଭ)

**ବୌଦ୍ଧାବତାର କାବ୍ୟରେ :**

ଗୌତମ ମଗଧ ଦେଶରେ ଶିଷ୍ୟମାନଙ୍କ ସହିତରେ
ବସି ଅଛନ୍ତି ବେଣୁବନେ ଗୁଳ୍ମରେ ଅଶ୍ୱଥିଯେସନେ
ପିତୃ ପ୍ରେରିତଦୂତ ଜଣେ ବିନୟେ ନମିଲା ଚରଣେ

× × ×

ବୋଇଲା ଆସି ଯୋଡ଼ି ହାତ ହେ ମହାପ୍ରଭୁ ! ତୁମ୍ଭ ତାତ
ପେଷିଲେ ଦୂତ ଦେଶେଦେଶେ ପ୍ରଭୁଙ୍କୁ ଲୋଡ଼ିବା ଉଦ୍ଦେଶେ
ସକଳ ଗଲା ଅକାରଣେ ବାହୁଡ଼ି ନଆଇଲେ ଜଣେ
ସେ ଲୋକ ଗଣ ନିରାଶରେ ବିରାଗେ ଗଲେ ପ୍ରବ୍ରଜ୍ୟାରେ
ଶୈଶବ ବନ୍ଧୁ ଏହି ଦାସ ଭାଗ୍ୟେ ଭେଟିଲା ଆସିପାଶ
ହୃଦୟ ପାଷାଣରେ ବାନ୍ଧି ଆସିଛି ଧାଇଁ କାନ୍ଦି କାନ୍ଦି
ବାଜୁଛି ତୁମ୍ଭ ଧର୍ମ ଭେରୀ ଦେଶେ ଦେଶାନ୍ତେ କର୍ଣ୍ଣ ଡେରି
ଅଛନ୍ତି ଲୋକେ ଶୁଣିବାକୁ ଏଥକୁ ଅଇଲି ଏଠାକୁ
କପିଳବସ୍ତୁ ବାସିଗଣେ କି ଦୋଷ କଲେ ବା ଚରଣେ

କପିଳବସ୍ତୁରେ ପହଞ୍ଚିବା ପରେ ପିତାମାତା ଓ ଗୋପା ସହିତ ସାକ୍ଷାତ ହେବା ସମୟରେ ଏକ କରୁଣ ପରିବେଶ ସୃଷ୍ଟି ହୋଇଥିଲେ ମଧ୍ୟ ବୁଦ୍ଧଦେବ ରହିଛନ୍ତି ଚିର ଗମ୍ଭୀର । ମାତାଙ୍କ ନିର୍ଦ୍ଦେଶରେ ପୁତ୍ର ମାଗିଛି ପିତୃଧନ । ଏ ପ୍ରତ୍ୟେକ କ୍ଷେତ୍ରରେ 'ଅମିତାଭ' କାବ୍ୟର ବର୍ଣ୍ଣନା ସହିତ 'ବୌଦ୍ଧାବତାର କାବ୍ୟ'ର ବର୍ଣ୍ଣନା ଅବିକଳ ମିଶି ଯାଉଛି ।

ସେହିପରି ଅଷ୍ଟାଦଶ ସର୍ଗରେ ଲୋକ ଶିକ୍ଷକ ବୁଦ୍ଧଦେବଙ୍କ ମହାମାନବ ରୂପ ଫୁଟି ଉଠିଛି । ପ୍ରଥମରୁ ପ୍ରକୃତିର ଏକ ଚମତ୍କାର ବର୍ଣ୍ଣନା ଉଭୟ କାବ୍ୟରେ ପ୍ରଦତ୍ତ ହୋଇଥିଲେ ମଧ୍ୟ ବୌଦ୍ଧାବତାର କାବ୍ୟର ବର୍ଣ୍ଣନା ଅଧିକ ଚିତ୍ତାକର୍ଷକ ହୋଇପାରିଛି । ପ୍ରକୃତି ପ୍ରତି ଫକୀରମୋହନଙ୍କର ଯେଉଁ ଆକର୍ଷଣ ରହିଥିଲା, ତାର ପ୍ରକୃତ ସ୍ୱରୂପ ଉଦ୍‌ଘାଟନ ଉକ୍ତ ସର୍ଗରେ ହୋଇପାରିଛି । ଏକନାଳା ଗ୍ରାମରେ ଭୂସ୍ୱାମୀ ବ୍ରାହ୍ମଣର ଉତ୍ତର ବୁଦ୍ଧଦେବ ଚମତ୍କାର ଭାବରେ ବୌଦ୍ଧ ଦର୍ଶନ ମାଧ୍ୟମରେ ବ୍ୟାଖ୍ୟା କରିଛନ୍ତି –

ବିସ୍ମିତ ବ୍ରାହ୍ମଣ କହେ – କୃଷିଜୀବୀ ତୁମି
ଦେଖିତେ ପାଇନା କଇ ଚିହ୍ନ ଓ ତାହାର
କୋଥାୟ ବଳଦ ତବ, କୋଥା ବୀଜ ହଳ ?

ବିଶ୍ୱାସ ଆମ୍ଭର ବୀଜ - ବୁଦ୍ଧ ଉତ୍ତରିଲା
ଆମ୍ଭର ଶସ୍ୟେର କ୍ଷେତ୍ର ମାନବ-ହୃଦୟ
ଧର୍ମ ମମ ହଳ ଜ୍ଞାନ ବଳଦ ଆମାର
ନିର୍ବାଣ ଆମାର ଶସ୍ୟ ଅମର ଅକ୍ଷୟ ।' (ଅମିତାଭ)

**ବୌଦ୍ଧାବତାର କାବ୍ୟ**

ବୋଇଲା ବ୍ରାହ୍ମଣ ହଲାଇଣ ମଥା
ତୁହି କୃଷିକାରୀ ? ତୁଚ୍ଛା ମିଛ କଥା ।
କାହିଁ ତୋ ବଳଦ ବୀଜ, ହଳ, ଚାଷ ?"
ବୋଇଲେ ଗୌତମ ବୀଜ ମୋ ବିଶ୍ୱାସ
ମୋର ଶସ୍ୟ କ୍ଷେତ୍ର ମାନବର ହୃଦ
ଧର୍ମହଳ ମୋର ଜ୍ଞାନ ବଳୀବର୍ଦ୍ଦ
ନିର୍ବାଣ ମୋ ଶସ୍ୟ ଅମର ଅକ୍ଷୟ × ×

ଏହିପରି ଭାବରେ ଆଲୋଚନା କଲେ ଏହା ସ୍ପଷ୍ଟ ହୋଇଥାଏ ଯେ, 'ଅମିତାଭ' କାବ୍ୟର ଅନୁସରଣରେ ଫକୀରମୋହନ 'ବୌଦ୍ଧବତାର କାବ୍ୟ' ରଚନା କରିଛନ୍ତି । ପ୍ରତ୍ୟେକ ବର୍ଣ୍ଣନାରେ ସେ ନବୀନ ଚନ୍ଦ୍ରଙ୍କ ପଦାଙ୍କ ଅନୁସରଣ କରିଛନ୍ତି ଓ ତାର ଅନୁରୂପ ବର୍ଣ୍ଣନା 'ବୌଦ୍ଧାବତାର କାବ୍ୟ'ରେ ସନ୍ନିବେଶିତ କରିଛନ୍ତି । ଊନବିଂଶ ସର୍ଗ 'ବୁଦ୍ଧବାଣୀ'ର ଆଲୋଚନା ସ୍ୱତନ୍ତ୍ର ଭାବରେ ଏକ ବିଭାଗ ରୂପେ ଆଲୋଚନା କରାଯାଉଥିବାରୁ ଏଠାରେ ତାର ଆଲୋଚନା କରାଗଲା ନାହିଁ ।

**(ଘ) ବୁଦ୍ଧବାଣୀ**

ଊନବିଂଶ ସର୍ଗରେ ବୁଦ୍ଧଦେବ ଇହଲୀଳା ସମ୍ବରଣ ପୂର୍ବରୁ ତାଙ୍କ ଶିଷ୍ୟମାନଙ୍କ ନିକଟରେ କେତେକ ଉପଦେଶ ପୂର୍ଣ୍ଣ ବାଣୀ କହିଛନ୍ତି ଓ ତାହା ବୁଦ୍ଧବାଣୀ ନାମରେ ଖ୍ୟାତ । ନବୀନଚନ୍ଦ୍ର ସେନ 'ଅମିତାଭ' କାବ୍ୟରେ ଅଣଚାଶଟି ପଦ ମଧ୍ୟରେ ଏହି ବାଣୀକୁ ସୀମିତ ରଖିଥିବା ସମୟରେ ଫକୀର ମୋହନ ଚଉବନଟି ପଦରେ ଏହାକୁ ଶେଷ କରିଛନ୍ତି । ଉଭୟ କାବ୍ୟର ଏହି ବାଣୀଗୁଡ଼ିକ ପ୍ରାୟ ସମାନ ପରି ପ୍ରତୀୟମାନ ହୋଇଥାଏ । ଆଲୋଚନାର ସୁବିଧା ଦୃଷ୍ଟିରୁ ଉଭୟ କାବ୍ୟର କେତେକ ବାଣୀ ଏଠାରେ ଉଦ୍ଧାର କରାଗଲା ।

**ଅମିତାଭ :**

୧. କେ ସୃଜିଲା ଏଇ ବିଶ୍ୱ ? ସୃଜିଲା କେମନେ ?
ଭିକ୍ଷୁଗଣ ! ଜ୍ଞାନାତୀତ ଜଗତ କାରଣ
ତର୍ଜନୀ କ୍ଷେପଣ କରି ମହାପାରାବାରେ
ଚାହିଓ ନା ପରିମାଣ କରିତେ କଖନ ?

୨. କେନ ଏଇ ବିଶ୍ୱ ? ବିଶ୍ୱ ଆଦି କି ଅନାଦି ?
ଭିକ୍ଷୁଗଣ ! ଚାହିଓ ନା ଜାନିତେ କଖନ
କେନ ଆମି ନର ? ଆମି ଆଦି କି ଅନାଦି ?
ନାହି ଜାନି, କି ଜାନିବ ବିଶ୍ୱେର କାରଣ ?

୩. ଯେ କର ଏ ପ୍ରଶ୍ନ, ଆର ଯେ ଦେୟ ଉତ୍ତର
ଜାନି ଓ ଉଭୟ ଭ୍ରାନ୍ତେ । ଯୁଗ ଯୁଗାନ୍ତର
ପାରେ ନାହି ନର-ଜ୍ଞାନ କରିତେ ଉତ୍ତର
ପାରିବେ ନା ନର-ଜ୍ଞାନ ଯୁଗ ଯୁଗାନ୍ତର

୪. ପ୍ରଚ୍ଛନ୍ନ ସେ ମହାତତ୍ତ୍ୱ ମାନବ-ନୟନ
ଦେଖିବେନା । ଆବରଣ ପର ଆବରଣ
ମାନବେର ଜ୍ଞାନ ବଲେ ହବେ ଉତ୍ତୋଳିତ
ରବେ ତବୁ ଆବରଣ ପର ଆବରଣ ।

୫. ଏଇ ଦେଖ-ଜନ୍ମେ ଚକ୍ରେ ବୀଜେ ତେ ଅଙ୍କୁର
ଅଙ୍କୁରେତେ ବୃକ୍ଷ, ବୃକ୍ଷେ ଫୁଲ, ଫୁଲେ ଫଳ
ଫଳେ ପୁନଃ ବୀଜ; ଜଲେ ଜନ୍ମେ ବାଷ୍ପ ରାଶି
ବାଷ୍ପେ ଜନ୍ମେ ମେଘ ପୁନଃ ମେଘ ହୟଜଲ

୬. ଏଇ ଦେଖ-ଚକ୍ରେ ଜୀବ ଜନ୍ମି ନିରନ୍ତର
ସେହି ମହାସିନ୍ଧୁ ଗର୍ଭେ ଆବର୍ତ୍ତନ ମୟ
କରି ଜରା-ବ୍ୟାଧି-ଭୋଗ, ଦୁଃଖ ନିର୍ଯ୍ୟାତନ
ସେଇ ମହାସିନ୍ଧୁ ଗର୍ଭେ ହଇତେଛେ ଲୟ

୭. ଏଇ ଚକ୍ରେ ଧର୍ମଚକ୍ର । ଏଇ ଆବର୍ତ୍ତନ
ଜଗତେର ମହାଧର୍ମ । ସୃଷ୍ଟି ସ୍ଥିତି ଲୟ ।

ହଉତେଛେ ସଂଘଟିତ ଏଇ ଆବର୍ତ୍ତନେ
ନିରନ୍ତର, ସର୍ବବ୍ୟାପୀ ସର୍ବଶକ୍ତିମୟ

୮. ଅତଏବ ଭିକ୍ଷୁଗଣ । ହୃଦୟେ ଅଙ୍କିତ
କର ଚାରି ଆର୍ଯ୍ୟ - ସତ୍ୟ ଅମର ରେଖାୟ
ଆଛେ ଦୁଃଖ, ଆଛେ ଏଇ ଦୁଃଖେର କାରଣ
ଦୁଃଖେର ନିରୋଧ ଆଛେ-ନିରୋଧ ଉପାୟ

୯. ଆଛେ ଦୁଃଖ-ହାୟ ! ଏଇ ମାନବ-ଜୀବନ
ଦୁଃଖେର ପ୍ରବାହ କ୍ଷୁଦ୍ର ! ଦୁଃଖ ଜନମେର
ଦୁଃଖ ଶୈଶବେର, ଘୋର ଦୁଃଖ ଯୌବନେର
ଦୁଃଖ ଜରା-ବାର୍ଦ୍ଧକ୍ୟେର, ଦୁଃଖ ମରଣେର

୧୦. ସୌନ୍ଦର୍ଯ୍ୟେ, ଐଶ୍ୱର୍ଯ୍ୟେ, ବୀର୍ଯ୍ୟେ, ଗୌରବେ ଓ ପ୍ରେମେ
କୋଥା ତୃପ୍ତି ? ହାୟ ମୃଗ ତୃଷ୍ଣିକା କେବଳ !
ଯତ ପାଇ ତତ ଚାଇ । ପ୍ରାଣେ ଅନିବାର
ଆକାଂକ୍ଷାର ଅତୃପ୍ତିର ଘୋର ଦାବାନଳ ।

୧୧. କେନ ଏଇ ଦୁଃଖ ? କିବା କାରଣ ତାହାର ?
କେନ ଜୀବ ସହେ ଏତ ଦୁଃଖ ଘୋରତର ?
ଦୁଃଖେର କାରଣ ଜନ୍ମ । ନାହଲେ ଜନମ
ମହିତ ନା ଜୀବ ଏତ ଦୁଃଖ ନିରନ୍ତର × ×

୧୨. କର୍ମଫଳେ କେହ ଏଇ ଧରାର ଈଶ୍ୱର
କେହଦୀନ ହୀନ ପଥେ ପଡ଼ି ଅନଶନ
କେହ ଜ୍ଞାନୀ, କେହ ମୂର୍ଖ, କେହ କଦାକାର
କେହ ମନୋମୁଗ୍ଧକର ରୂପେ ଅନୁପମ

୧୩. ପାବେ ପଶୁଜନ୍ମକର କର୍ମ ପଶୁମତ
ପାବେ ଦେବଜନ୍ମ କରକର୍ମ ଦେବୋପମ,
ସୁର ଲୋକେ କରକର୍ମ ଅସୁରେର ମତ
ଅସୁର, ତିର୍ଯ୍ୟକ୍ ଜନ୍ମ କରିବେ ଗ୍ରହଣ

× × ×

୧୪. ଗ୍ରହ-ଉପଗ୍ରହ ଗତି ଅଲଂଘ୍ୟ ଯେମନ
ଅଲଂଘ୍ୟ ଜଳେର ଯଥା ଭାଁଟା ଓ ଜୋୟାର
ଅଲଂଘ୍ୟ ଯେମନ ଦିବା-ନିଶି-ବିବର୍ତ୍ତନ
ଏଇ କର୍ମଫଳ-ଗତି ଅଲଂଘ୍ୟ ଅପାର

× × ×

ଆଛେ ଅଷ୍ଟପଥ-ଶୁଦ୍ଧ ଦୃଷ୍ଟି ନିରମଳ
ସତ୍ୟବାକ୍ୟ, ସୁସଂକଳ୍ପ, ସାଧୁ ବ୍ୟବହାର
ପୁଣ୍ୟକର୍ମ, ସାଧୁ ଉପଜୀବିକା ସୁନ୍ଦର
ଶୁଦ୍ଧ ସ୍ମୃତି, ଅବିଚଳ ସତ୍ୟଧ୍ୟାନ ଆର ।

୧୫. ହିଂସା, ଚୌର୍ଯ୍ୟ, ପିଶୁନତା, ଯଥେଚ୍ଛା ଆଚାର
ମିଥ୍ୟାଚାର, ପରୁଷତା, ବିରୁଦ୍ଧ ଭାଷିତା
ମିଥ୍ୟା ମନୋଯୋଗ, ମିଥ୍ୟା ଦୃଷ୍ଟି, ପାଣି ବଧ
ଏଇ ଦଶଲୀଳା ଜନ୍ମଦୁଃଖ ପ୍ରସବିତା

× × ×

୧୬. ନିର୍ବାଣେର ପଥେ ସଂଘ ଦିକ-ପ୍ରଦର୍ଶକ
ଭିତ୍ତି ଧର୍ମ-ଚକ୍ର; ଚାରି ଅକ୍ଷୟ ପ୍ରାଚୀର
ଚାରି ଆର୍ଯ୍ୟ ସତ୍ୟ, ଅଷ୍ଟ ସ୍ତମ୍ଭ ଅଷ୍ଟପଥ,
ସାଧନାର ଦୁଇକକ୍ଷ - ଭିକ୍ଷୁଭିକ୍ଷୁଣୀର

**ବୌଦ୍ଧାବତାର କାବ୍ୟ :**

୧. କେ କରିଛି ଏହି ବିଶ୍ୱ ସଂସାର ସୃଜନ ?
କି ଉପାୟେ ? କି ପଦାର୍ଥ ଘେନି ? କି କାରଣ
ଅଗମ୍ୟ ଅଚିନ୍ତ୍ୟ ତତ୍ତ୍ୱ ସାମାନ୍ୟ ବୁଦ୍ଧିରେ-
ନ ଲୋଡ଼ କଳିବ ସିନ୍ଧୁ ଗର୍ଭ ଅଙ୍ଗୁଳିରେ

୨. ଏ ବିଶ୍ୱ ଅନାଦି ଅବା ଆଦି ? ଏଇ ତତ୍ତ୍ୱ
ନକର ଯତନ ମର୍ମ ହେବ ଅବଗତ
ତୁମ୍ଭେ -ନର ଆତ୍ମତତ୍ତ୍ୱ କିଛି ଜାଣ ନାହିଁ;
ଅନନ୍ତ ବ୍ରହ୍ମାଣ୍ଡ କଥା ଜାଣିବ କିପାଇଁ

୩. ପ୍ରଶ୍ନକର୍ତ୍ତା ଏକଥାରେ ଯେ ଦିଏ ଉତ୍ତର-
ଉଭୟ ଅଟନ୍ତି ଭ୍ରାନ୍ତ ଜାଣିବ ନିକର
ସାମାନ୍ୟ ମାନବ ଜ୍ଞାନ ଯୁଗ ଯୁଗାନ୍ତରେ
ନ ହେବ ସକ୍ଷମ ଜ୍ଞାତ ତତ୍ତ୍ୱ ବିଷୟରେ

୪. ଜଗତର ମହାତତ୍ତ୍ୱ ନିତାନ୍ତ ପ୍ରଚ୍ଛନ୍ନ
ନ ପାରିବ ଭେଦି ତୁଚ୍ଛ ମାନବ ନୟନ
ଜଡ଼ୀୟ ମାନବ ନେତ୍ର ଆତ୍ମଦରଶନେ
ଅକ୍ଷମ! ବିଶ୍ୱର ତତ୍ତ୍ୱ ଜାଣିବ କେସନେ?

୫. ଦେଖୁଛ ପ୍ରତ୍ୟନୀ ଜାତ ବୀଜରୁ ଅଙ୍କୁର
ଅଙ୍କୁରରୁ ଜାତ ବୃକ୍ଷ, କୁସୁମ ପ୍ରଚୁର
କୁସୁମରୁ ଜାତ ଫଳ, ତହୁଁ ବୀଜ ଜାତ
ବୀଜୁ ପୁଣି ବୃକ୍ଷ ସ୍ୱଭାବରେ ଗତାୟାତ
ମେଘରୁ ପତିତ ଜଳ, ତହୁଁ ବାଷ୍ପକଣା
ବାଷ୍ପୁ ମେଘଜାତ ଦେଖ ପ୍ରତ୍ୟକ୍ଷ ଘଟନା

୬. ଏହି ଆବର୍ତ୍ତନ ମୟ ନିୟମ ସୂତ୍ରରେ
ଜନ୍ମି ଜରା, ବ୍ୟାଧି, ମୃତ୍ୟୁ ଭୋଗ କରେ
ଯେ ସୂତ୍ରେ ସମୟେ ସୃଷ୍ଟି, ସେଥିରେ ବିଲୟ
ମଧ୍ୟେ ଅବସ୍ଥିତ କାଳମାତ୍ର କଷ୍ଟମୟ।

୭. କି ଅଚିନ୍ତ୍ୟ ମହାଧର୍ମେ ସୃଷ୍ଟି ସ୍ଥିତି ଲୟ
ହେଉଅଛି ସର୍ବବ୍ୟାପୀ, ସର୍ବ ଶକ୍ତିମୟ
ଦେଖୁଛ ପ୍ରତ୍ୟକ୍ଷ ମାତ୍ର ଏହି ଆବର୍ତ୍ତନ
ଜାଣିବା ମାନବ ପକ୍ଷେ ଅସାଧ କାରଣ।

୮. ଚାରିଗୋଟି ମହାସତ୍ୟ କଥା ଭିକ୍ଷୁଗଣ
ରଖମନେ (୧) ଅଛି ଦୁଃଖ (୨) ଦୁଃଖର କାରଣ
(୩) ଦୁଃଖର ନିରୋଧ (୪) ଅଛି ନିରୋଧ ଉପାୟ
ହୃଦୟରେ ଚିତ୍ର-ପାଷାଣରେ ରେଖା ପ୍ରାୟ।

୯. ମାନବ ଜୀବନ ଭାସେ ଦୁଃଖ ସମୁଦ୍ରରେ
ଜନମ କାଳରେ ଦୁଃଖ, ଦୁଃଖ ଶୈଶବରେ,
ଯୌବନରେ ଅଛି ଦୁଃଖ-ବାର୍ଦ୍ଧକ୍ୟେ ମରଣେ
ମହାଦୁଃଖ ଚକ୍ରେ ଆବର୍ତ୍ତିତ ଲୋକ ଗଣେ ।

୧୦. ସୌନ୍ଦର୍ଯ୍ୟ, ଐଶ୍ୱର୍ଯ୍ୟ, ବୀର୍ଯ୍ୟ, ପ୍ରଣୟ, ଜୀବିକା
କାହିଁ ତୃପ୍ତି ଲଭେ ଜୀବ ? ଘୋର ମରୀଚିକା
ଲାଳସା ଅତୃପ୍ତି, ବୃଦ୍ଧି ଲଭିଲେ ସକଳ
ହବ୍ୟାହୁତି ପ୍ରାପ୍ତେ ଯଥା ଜ୍ୱଳନ୍ତା ଅନଳ ।

୧୧. କି ସକାଶେ ଦୁଃଖ ? କିବା ଦୁଃଖର କାରଣ ?
କି ସକାଶେ ସହନ୍ତି ବା ଦୁଃଖ ଜୀବଗଣ ?
ଦୁଃଖର କାରଣ ଜନ୍ମ ଦେଖୁଛୁଁ ପ୍ରତ୍ୟକ୍ଷ
ନ ଜନ୍ମିଲେ କିପାଁ ଦୁଃଖ ଭୁଞ୍ଜନ୍ତେ ବା ଲୋକ ।

× × ×

୧୨. କର୍ମଫଳେ କେଉଁ ଲୋକ ପୃଥ୍ୱୀ ଅଧିପତି
ଆତ୍ମକର୍ମେ ଦୀନହୀନ ଭୁଞ୍ଜଇ ଦୁର୍ଗତି ।
କେହି ଜ୍ଞାନୀ, କେହି ମୂର୍ଖ, ଧାର୍ମିକ, ପାମର
କେ କୁତ୍ସିତ, କେବା ପାଏ ରୂପ ମନୋହର

୧୩. କଲେ କର୍ମ ପଶୁପରି ପଶୁ ଜନ୍ମ ଲାଭ
ଲଭିବ ଦେବତା ଜନ୍ମ ଧର ଦେବଭାବ
ଆସୁରିକ କର୍ମେ ଲାଭ ଅସୁର ଜନମ,
ତିର୍ଯ୍ୟକ୍ କର୍ମରେ ହେବ ତିର୍ଯ୍ୟକ ଅଧମ ।

× × ×

୧୪. ଗ୍ରହ ଉପଗ୍ରହ ଅତି ଅଲଘ୍ୟ ଯେସନ
ଋତୁ, ଦିବା, ନିଶି, ମାସ ଆଦି ବିବର୍ତ୍ତନ ।
ତେସନ କର୍ମର ଫଳ ଅଲଘ୍ୟ ଅପାର
କାହାର ବା ସାଧ କରିପାରେ ପରିହାର ?

× × ×

ଆଠଟି ଏହାର ମାର୍ଗ .୧. ଶୁଭ ଦୃଷ୍ଟି ସାର
୨. ସତ୍ୟବାକ୍ୟ, ୩. ସୁ ସଂକଳ୍ପ, ୪. ସାଧୁ ବ୍ୟବହାର
୫. ପୁଣ୍ୟକର୍ମ, ୬. ଶୁଦ୍ଧ ସ୍ମୃତି, ୭. ନିତ୍ୟ ସତ୍ୟଧ୍ୟାନ
ନିଃସଂଶୟ ରୂପେ ହୃଦେ ବ୍ରହ୍ମ ତତ୍ତ୍ୱଜ୍ଞାନ
୧୫. କଷ୍ଟଭୁଞ୍ଜେ ଜୀବ କଲେ ଦଶଟି ବେଭାର
୧. ଚୌର୍ଯ୍ୟ, ୨. ହିଂସା, ୩. ପିଶୁନତା, ୪. ଯଥେଚ୍ଛାଆଚାର
୫. ନିଷ୍ଠୁରତା, ୬. ମିଥ୍ୟାଚାର, ୭. ପୁରୁଷ ଭାଷିତା
୮. ପ୍ରାଣୀହିଂସା, ୯. ମିଥ୍ୟା ଦୃଷ୍ଟି, ୧୦. ବୋଲିବାର ମିଥ୍ୟା

× × ×

୧୬. ନିର୍ବାଣ ସଉଦ ସଙ୍ଘ ପବିତ୍ର ରୁଚିର
ଭିତ୍ତି ଧର୍ମଚକ୍ର, ଚାରି ସତ୍ୟ ତା ପ୍ରାଚୀର
ଅଷ୍ଟସ୍ତମ୍ଭ ମହାସତ୍ୟେ ସୌଧ ପ୍ରତିଷ୍ଠିତ
ଲଭିବେ ସେ ଗୃହେ ଭିକ୍ଷୁ ଭିକ୍ଷୁଣୀ ବାଞ୍ଛିତ

ଏହିପରି ଭାବେ ଆଲୋଚନା କଲେ, ଉଭୟ କାବ୍ୟ ମଧ୍ୟରେ ବହୁ ସାମଞ୍ଜସ୍ୟ ବିଦ୍ୟମାନ। ବୁଦ୍ଧଦେବଙ୍କ ବାଣୀ ହୁଏତ ସର୍ବକ୍ଷେତ୍ରରେ ସମାନ ହୋଇପାରେ; କିନ୍ତୁ କବି ଦୃଷ୍ଟି ଅନୁଯାୟୀ ବର୍ଣ୍ଣନାରେ ପାର୍ଥକ୍ୟ ଦୃଷ୍ଟିଗୋଚର ହେବା ସ୍ୱାଭାବିକ। କିନ୍ତୁ ନବୀନଚନ୍ଦ୍ର ଓ ଫକୀରମୋହନଙ୍କ ବର୍ଣ୍ଣନାରେ ଏ କ୍ଷେତ୍ରରେ କୌଣସି ପାର୍ଥକ୍ୟ ଦୃଷ୍ଟିଗୋଚର ହୁଏ ନାହିଁ। ଅମିତାଭ କାବ୍ୟ 'ବୌଦ୍ଧାବତାର କାବ୍ୟ'ର ଅଗ୍ରଜ ହୋଇଥିବାରୁ, ଫକୀରମୋହନ ଯେ ନବୀନଚନ୍ଦ୍ରଙ୍କୁ ଅନୁସରଣ କରିଥିବେ, କହିବା ପ୍ରମାଦପୂର୍ଣ୍ଣ ନୁହେଁ ନିଶ୍ଚୟ। ବର୍ଣ୍ଣନା, ବିଷୟ ସଜ୍ଜୀକରଣ, ସର୍ଗ ସଂଯୋଜନା ପ୍ରଭୃତି ପ୍ରତ୍ୟେକ କ୍ଷେତ୍ରରେ 'ଅମିତାଭ'ର ଗଭୀର ପ୍ରଭାବ 'ବୌଦ୍ଧାବତାର କାବ୍ୟ' ଉପରେ ପରିଲକ୍ଷିତ ହୋଇଥାଏ।

## ବୌଦ୍ଧାବତାର କାବ୍ୟରେ ବୌଦ୍ଧ ଦର୍ଶନ :

ବୌଦ୍ଧାବତାର କାବ୍ୟ କେବଳ ବୁଦ୍ଧ ଦେବଙ୍କ ଜୀବନ ଚରିତନୁହେଁ; ପରନ୍ତୁ ଏହାର ପ୍ରତିଛତ୍ରରେ ବୌଦ୍ଧ ଧର୍ମ ଦର୍ଶନ ପ୍ରତିଫଳିତ। ବୌଦ୍ଧଧର୍ମର ମୂଳକଥା ନିର୍ବାଣ ପ୍ରାପ୍ତି। ନିର୍ବାଣ ପ୍ରାପ୍ତି ପରେ ମାନବ ଆଉ ଇହଜଗତକୁ ଫେରିପାରେ ନାହିଁ। ଏକ

ଅନିର୍ବଚନୀୟ ଆନନ୍ଦର ଅଧିକାରୀ ସେ ହୋଇଥାଏ । ଏହି ନିର୍ବାଣ ସାଧାରଣତଃ ସଂସାର ଅବସ୍ଥାର ନିର୍ବାଣ, ବ୍ୟାବହାରିକ ସତ୍ତାର ନିର୍ବାଣ ଓ ଉପାଧିର ନିର୍ବାଣ ଏହିପରି ଭାବରେ କଥିତ । ଏ ସ୍ଥଳେ କହି ରଖିବା ଆବଶ୍ୟକ ଯେ ଉପାଧିର ନିର୍ବାଣ ଏବଂ ନିରୁପାଧି ଅବସ୍ଥା ଲାଭ ଏକ କଥା । ଏକର ବା ଗୋଟିକର ଅତ୍ୟନ୍ତିକ ନିର୍ବାଣ ହେଲେ ଅପରର ସ୍ୱଭାବ ପ୍ରକାଶ ଲାଭ କରିବା ସହଜସାଧ । ବ୍ୟାବହାରିକ ସତ୍ତାର ବିନାଶ, ଯାହା ପାରମାର୍ଥିକ ସତ୍ତାର ପ୍ରକାଶହିଁ ତାହା । ସୁତରାଂ ନିର୍ବାଣର ଦୁଇଟି ଦିଗ; ଗୋଟିଏ ବିନାଶର ଦିଗ ଓ ଅପରଟି ପ୍ରକାଶର ଦିଗ । ବ୍ୟାବହାରିକ ସତ୍ତାର ବିନଷ୍ଟ କରି ଯେ ପାରମାର୍ଥିକ ରୂପରେ ଉତ୍ପନ୍ନ କରିବାକୁ ହେବ ତାହା ନୁହେଁ । କାରଣ ପାରମାର୍ଥିକ ରୂପର ଉତ୍ପତ୍ତି ନାହିଁ । ବ୍ୟାବହାରିକ ସତ୍ତାକୁ ନିର୍ମୂଳ କରିପାରିଲେ, କେବଳ ପାରମାର୍ଥିକ ସତ୍ତାର ପ୍ରକାଶ ହେବା ସମ୍ଭବ । ଏହାହିଁ ନିତ୍ୟାବସ୍ଥା, ଏହାହିଁ ପରମାବସ୍ଥା । ଏହାକୁହିଁ ନିର୍ବାଣ କୁହାଯାଏ । ୨୮ । ବୌଦ୍ଧଧର୍ମର ବୌଦ୍ଧ ସଂଘ ଓ ଭିକ୍ଷୁ ଜୀବନର ବିଶଦ ବିବରଣୀ ବିନୟପିଟକରେ ଦେଖିବାକୁ ମିଳେ । 'ସୁତପିଟକ'ରେ ବୌଦ୍ଧ ପ୍ରବଚନ ଓ ଶିଷ୍ୟମାନଙ୍କ ବିଷୟରେ ବିସ୍ତୃତ ବିବରଣୀ ଦେଖିବାକୁ ମିଳିଥାଏ । ସୁତ ପିଟକରେ ଲୋକ ପ୍ରଚଳିତ ଉପଦେଶାବଳୀର ଆଧିକ୍ୟ ଦେଖାଯାଇଥାଏ । ଏହା ପାଞ୍ଚ ଭାଗରେ ବିଭକ୍ତ ଯଥା - ଦୀଘନିକାୟ, ମଜଝିମନିକାୟ, ସଂଯୁତ ନିକାୟ, ଅଙ୍ଗୁତର ନିକାୟ ଏବଂ ଖୁଦ୍ଦକ ନିକାୟ । ଏଗୁଡ଼ିକରେ ବୁଦ୍ଧ ଦର୍ଶନ ଓ ନିର୍ବାଣର ବ୍ୟାଖ୍ୟା ବିଭିନ୍ନ ଭାବରେ ପ୍ରଦତ୍ତ କରାଯାଇଛି । ଆଲୋଚନାର ସୁବିଧା ନିମିତ୍ତ ଏଠାରେ ସେହି ନିକାୟ ଗୁଡ଼ିକରେ ପ୍ରଦତ୍ତ ବୁଦ୍ଧଦର୍ଶନ ଓ ନିର୍ବାଣର କେତେକ ବ୍ୟାଖ୍ୟା ଦିଆଗଲା ଏବଂ ବୌଦ୍ଧାବତାର କାବ୍ୟରେ ସେଗୁଡ଼ିକ କିପରି ଭାବରେ ପ୍ରତିଫଳିତ ତାର ଆଲୋଚନା କରାଗଲା ।

'ଭବ ନିରୋଧୋ ନିବ୍ବାନଂ' (୨୯) । ଭବ ଅର୍ଥ ଜନ୍ମ, ଉତ୍ପତ୍ତି । ଭବ ନିରୋଧ ଜନ୍ମ ନିବୃତ୍ତି । ପୁନର୍ଜନ୍ମର ଅତୀତ ହେଉଛି ନିର୍ବାଣ । କାରଣ ନିର୍ବାଣ ପ୍ରାପ୍ତି ପରେ ମାନବର ଆଉ କୌଣସି ଜନ୍ମ ହୁଏ ନାହିଁ । ଜନ୍ମ ହେବାହିଁ ଦୁଃଖର କାରଣ । ଜନ୍ମ ନଥିଲେ ଦୁଃଖର ସତ୍ତା ନାହିଁ । ନିଜର କର୍ମଫଳ ଯୋଗୁଁ ମାନବ ବାରମ୍ବାର ଜନ୍ମଗ୍ରହଣ କରେ । ବୌଦ୍ଧାବତାର କାବ୍ୟରେ ଏହାର ଉଲ୍ଲେଖ ଅଛି-

ଜନ୍ମ ଅଟେ ଦୁଃଖର କାରଣ
କର୍ମଫଳ ଯେ ଜନ୍ମ କାରଣ
ଚେଷ୍ଟାରୁ ଯେ ଜାତ କର୍ମଫଳ ବ୍ରତ

ଦେହ ମାନସ ଚେଷ୍ଟା କାରଣ
ଏ ଦେହରେ। (୧୫ଶ ସର୍ଗ। ୪୧ପଦ)

ବୁଦ୍ଧଦେବ କୁହନ୍ତି, ଜୀବନ ଦୁଃଖମୟ। ଜାଗତିକ ସୁଖ ଦୁଃଖ ସମସ୍ତ କ୍ଷଣସ୍ଥାୟୀ। ସୁତରାଂ ଏହା କ୍ଲେଶ ଦାୟକ। ପୁନର୍ଜନ୍ମ, ଜରା, ବ୍ୟାଧି, ମୃତ୍ୟୁ ପ୍ରଭୃତି ଦୁଃଖର ଉତ୍ପତ୍ତିର କାରଣ। ଏହାହିଁ ଆର୍ଯ୍ୟ ସତ୍ୟ। ପୁନର୍ଜନ୍ମ ରୋଧ କରିପାରିଲେ ଦୁଃଖର ଅବସାନ ଘଟେ। ଏହି ଆର୍ଯ୍ୟସତ୍ୟ ଦୁଃଖ, ସମୁଦାୟ, ନିରୋଧ ଓ ମଗ୍ଗ ଭାବରେ ପରିଚିତ। ୩୦। ଏ ଜଗତ ଅନିତ୍ୟ। ବିଭିନ୍ନ ବନ୍ଧନ ଦ୍ୱାରା ଆବଦ୍ଧ ହୋଇ ମାନବ ସ୍ୱକାର୍ଯ୍ୟ ବିସ୍ମରଣ ହୁଏ। ବନ୍ଧନ ଛିନ୍ନ କଲେ ମାନବ କୌଣସି ପାପ କାର୍ଯ୍ୟ କରିପାରେ ନାହିଁ। ତେଣୁ ସର୍ବଗ୍ରନ୍ଥି ପ୍ରମୋଚନ ବୌଦ୍ଧଧର୍ମର ସାରକଥା।

"ନିବ୍ବାନଂ ଭଗବା ଆହୁ ସବ୍ବ ଗନ୍ଥ ପ୍ପମୋଚନଂ (୩୧)

ସମସ୍ତ ପ୍ରକାର ବନ୍ଧନରୁ ମୁକ୍ତ ହେଲେ ମାନବ ନିର୍ବାଣ ଲାଭ କରେ। ବୌଦ୍ଧାବତାର କାବ୍ୟରେ ମଧ୍ୟ ଏହି କଥାର ଉଲ୍ଲେଖ କରାଯାଇଛି। ୩୨। ପୁନର୍ଜନ୍ମର କାରଣ ହେଉଛି ସାଂସାରିକ ଜୀବନ ପ୍ରତି ଆସକ୍ତି। ଏ ଆସକ୍ତି ଜାତ ହୁଏ ଚକ୍ଷୁ, କର୍ଣ୍ଣ, ନାସିକା, ଜିହ୍ୱା, ତ୍ୱକ୍ ଓ ମନ - ଏହି ଷଡ଼ ଇନ୍ଦ୍ରିୟ ଦ୍ୱାରା। କାରଣ ଇନ୍ଦ୍ରିୟଗୁଡ଼ିକ କୌଣସି ବସ୍ତୁର ପ୍ରକୃତ ସ୍ୱରୂପ ଉପଲବ୍ଧି କରିପାରନ୍ତି ନାହିଁ। ଏହି ଜ୍ଞାନର ଅଭାବ ଯୋଗୁଁ ଜଗତର ବସ୍ତୁ ପ୍ରତି ଆସକ୍ତି ଜନ୍ମ ହୁଏ। ସୁତରାଂ ଅବିଦ୍ୟା ବା ପ୍ରକୃତ ଜ୍ଞାନର ଅଭାବହିଁ ଦୁଃଖର ଉତ୍ପତ୍ତିର କାରଣ। ଏହି ଚିରନ୍ତନ ସତ୍ୟର ଉଲ୍ଲେଖ ବୌଦ୍ଧାବତାର କାବ୍ୟରେ ପରିଦୃଷ୍ଟ ହୋଇଥାଏ।

ଅବିଦ୍ୟାରୁ ଜାତ ଭ୍ରମ ଜ୍ଞାନ
ଅହଂକାରରେ ହରାଇ ଜ୍ଞାନ
ଇନ୍ଦ୍ରିୟ ଓ ମନ ମୋହେ ହତଜ୍ଞାନ
ହୋଇ ଅର୍ଜନ୍ତି ଅଧର୍ମ ମାନ
ଯେ ଅଜ୍ଞାନେ। (୧୫ଶ ସର୍ଗ, ୫୩ ପଦ)

ପୁନର୍ଜନ୍ମ ନିରୋଧ ହେଲେ ମାନବ ମୁକ୍ତି ଲାଭ କରେ। ମାର୍ଗ ସତ୍ୟର ଜ୍ଞାନ ଯେତେବେଳେ ଲାଭ ହୁଏ, ସେତେବେଳେ ଦୁଃଖ ଉପଲବ୍ଧିର କାରଣ ସମୂହର ଜ୍ଞାନ ଜାତ ହୋଇଥାଏ। ୩୩। କାମନା ଦ୍ୱାରା ପରିଚାଳିତ ମାନବ ତତ୍ତ୍ୱମାର୍ଗ ଦର୍ଶନ ପ୍ରତି ସମ୍ପୂର୍ଣ୍ଣ ଅନ୍ଧ ହୋଇଥିବାରୁ ସେ ନିଜର ମୁକ୍ତି ବିଷୟରେ ସଚେତନ ହୋଇନଥାଏ।

ଜୀବ କାମନାଗାରେ ଆବଦ୍ଧ
ତତ୍ତ୍ୱମାର୍ଗ ଦର୍ଶନରେ ଅନ୍ଧ
ଇନ୍ଦ୍ରିୟ ବିଳାସ ହୁଏ ଯେବେ ନାଶ
ମୁକ୍ତି ବିଷୟ ସଙ୍ଗେ ସମ୍ବନ୍ଧ
ଏ ଜୀବର (୧୫ମ ସର୍ଗ, ୫୨ ପଦ)

ତୃଷ୍ଣାର କ୍ଷୟ ନହେବା ପର୍ଯ୍ୟନ୍ତ ନିର୍ବାଣପ୍ରାପ୍ତି ଅସମ୍ଭବ ବୋଲି କଥିତ।(୩୪) ସେହି ସଂଯୁତ ନିକାୟର ୪/୨୫୧ରେ କୁହାଯାଇଛି ରାଗକ୍ଷୟ, ଦ୍ୱେଷକ୍ଷୟ ଓ ମୋହ କ୍ଷୟହିଁ ନିର୍ବାଣ। ବୌଦ୍ଧଧର୍ମର ରାଗ ଅର୍ଥ ଆସକ୍ତି, କାମନା ପ୍ରଭୃତି। ସାଧାରଣତଃ ବାହ୍ୟ ଜଗତର ପାଞ୍ଚଟି ପଦାର୍ଥ ମାନବର ବ୍ୟାବହାରିକ ଅବସ୍ଥା ଭାବରେ ଗୃହୀତ ହୋଇଥାଏ। ତାକୁ ପଞ୍ଚସ୍କନ୍ଧ କୁହାଯାଏ। ସେଗୁଡ଼ିକ ହେଲା– ରୂପ (ଦେହ), ବେଦନା (ଇନ୍ଦ୍ରିୟର ଉପଭୋଗ), ସଂଜ୍ଞା, ସଂସ୍କାର ଓ ବିଜ୍ଞାନ ଯେତେବେଳେ ଏହି ପଞ୍ଚସ୍କନ୍ଧ ସଂପୂର୍ଣ୍ଣରୂପେ ନିରୁଦ୍ଧ ହୁଏ, ସେତେବେଳେ ଏହାର ଆଉ ପୁନରୁତ୍ପତ୍ତି ସମ୍ଭବ ହୁଏ ନାହିଁ ଓ ନିର୍ବାଣ ଲାଭ ହୋଇଥାଏ। (୩୫) ବୌଦ୍ଧାବତାର କାବ୍ୟରେ ଏହା ନିମ୍ନ ଭାବରେ ବର୍ଣ୍ଣିତ।

ଜଗତର ରୂପ, ରସ, ଗନ୍ଧ, ମନୋହର
ଇନ୍ଦ୍ରିୟ ଓ ମନଭୋଗ କରେ ନିରନ୍ତର।
ଇନ୍ଦ୍ରିୟ ସହିତ ବାହ୍ୟ ବସ୍ତୁର ସମ୍ବନ୍ଧ
କି ଅଛି? ଭୁଞ୍ଜାଇ କିପାଁ ରୂପ ରସ ଗନ୍ଧ?
(୧୯ଶ ସର୍ଗ – ୩୨ ପଦ)

ବୌଦ୍ଧ ଧର୍ମରେ ଯେଉଁ ଚାରିସତ୍ୟ ଉପରେ ଗୁରୁତ୍ୱ ଆରୋପ କରାଯାଇଛି, ତନ୍ମଧ୍ୟରୁ ମଧ୍ୟମ ମାର୍ଗହିଁ ବୌଦ୍ଧ ସାହିତ୍ୟର ଆର୍ଯ୍ୟ ଅଷ୍ଟାଙ୍ଗିକ ମାର୍ଗ ନାମରେ ଅଭିହିତ। ଏ ଆଠଟି ଅଙ୍ଗ ବା ସାଧନାର ଉପାୟ ଯଥା – ସମ୍ୟକ୍ ଦୃଷ୍ଟି, ସମ୍ୟକ୍ ସଂକଳ୍ପ, ସମ୍ୟକ୍ ବାକ୍ୟ, ସମ୍ୟକ୍ କର୍ମ, ସମ୍ୟକ୍ ଜୀବିକା, ସମ୍ୟକ୍ ପ୍ରଚେଷ୍ଟା, ସମ୍ୟକ୍ ସ୍ମୃତି ଓ ସମ୍ୟକ୍ ସମାଧି। ସମ୍ୟକ୍ ଦୃଷ୍ଟି ହେଉଛି ଚତୁଃ ଆର୍ଯ୍ୟ ସତ୍ୟ ଓ ପ୍ରତୀତ୍ୟ ସମୁତ୍ ପାଦ ଜ୍ଞାନ। ରୂପ, ରସ, ଶବ୍ଦ, ଗନ୍ଧ, ସ୍ପର୍ଶ ଓ କାମଗୁଣ ପରିହାରପୂର୍ବକ ଏବଂ ମୈତ୍ରୀ ଭାବ ଓ କରୁଣାଭାବ ଉତ୍ପାଦନ କରାଇବା ସମ୍ୟକ୍ ସଂକଳ୍ପ। ମିଥ୍ୟାକଥା, କଟୁଭାଷଣ, ମର୍ମ୍ମଭେଦୀ ବାକ୍ୟ ଓ ନିରର୍ଥକ ଆଳାପରୁ ବିରତ ହେବାହିଁ ସମ୍ୟକ୍ ବାକ୍ୟ। ଜୀବହତ୍ୟା, ଚୌର୍ଯ୍ୟ ଓ ବ୍ୟଭିଚାରରୁ ବିରତ ସମ୍ୟକ୍ କର୍ମ। ଅସତ୍ ଉପାୟରେ ଜୀବନ ଯାପନ ନକରି ସତ୍‌ଜୀବିକା ଦ୍ୱାରା ଜୀବନ ଯାତ୍ରା ନିର୍ବାହ କରିବା ସମ୍ୟକ୍ ଜୀବିକା। ଅନୁତ୍ପନ୍ନ ପାପ

ପରିହାର ଓ କୁଶଳର ଉତ୍ପାଦନ ଏବଂ ଉତ୍ପନ୍ନ କୁଶଳର ସ୍ଥିତି ଓ ବୃଦ୍ଧି ସମ୍ୟକ୍ ପ୍ରଚେଷ୍ଟା। କାୟ ମନରେ ଧର୍ମ ସମୂହ ସର୍ବଦା ସ୍ମରଣ ରଖିବା ସମ୍ୟକ୍ ସ୍ମୃତି। ଚିତ୍ତର ଏକାଗ୍ରତା ହିଁ ସମାଧି। ସମ୍ୟକ୍ ସମାଧି ମନର ଚଞ୍ଚଳତା ଦୂର କରେ। ପ୍ରଜ୍ଞାଶୀଳ ଓ ସମାଧି ଭେଦରେ ଏ ମାର୍ଗ ପୁଣି ତିନି ଭାଗରେ ବିଭକ୍ତ। ଏହି ଅଷ୍ଟାଙ୍ଗିକ ମାର୍ଗର ଅନୁଶୀଳନରେ ଜୀବର ତୃଷ୍ଣା ଓ ଅବିଦ୍ୟା ବିଦୂରିତ ହୁଏ ଏବଂ ପରିଶେଷରେ ନିର୍ବାଣ ଉପଲବ୍ଧି କରାଯାଏ। ସଂସାର ଦୁଃଖରୁ ମୁକ୍ତିଲାଭ ପାଇଁ ଏହା ପ୍ରକୃଷ୍ଟ ପନ୍ଥା। ୩୬। ଫକୀରମୋହନ ଏହି ଅଷ୍ଟାଙ୍ଗିକ ମାର୍ଗକୁ ନିମ୍ନ ଭାବରେ ଉଲ୍ଲେଖ କରିଛନ୍ତି -

ଆଠଟି ଏହାର ମାର୍ଗ। ୧. ଶୁଭ ଦୃଷ୍ଟିସାର

୨. ସତ୍ୟବାକ୍ୟ, ୩. ସୁସଂକଳ୍ପ, ୪. ସାଧୁ ବ୍ୟବହାର

୫. ପୁଣ୍ୟକର୍ମ, ୬. ଶୁଦ୍ଧ ସ୍ମୃତି, ୭. ନିତ୍ୟ ସତ୍ୟଧ୍ୟାନ

ନିଃସଂଶୟ ରୂପେ ହୃଦେ ବ୍ରହ୍ମ ତତ୍ତ୍ୱଜ୍ଞାନ

(୧୯ଶ ସ୍ୱର୍ଗ। ୪୧ ପଦ)

ଦଶଟି କୁକାର୍ଯ୍ୟରତ ହେଲେ ମାନବ ନାନାଦି କଷ୍ଟ ଭୋଗ କରିଥାଏ। ଏହି ଦଶଟି କୁକାର୍ଯ୍ୟ ପରିତ୍ୟାଗପୂର୍ବକ ଅଷ୍ଟାଙ୍ଗିକ ମାର୍ଗକୁ ଉଚିତ୍ ଅର୍ଥରେ ବ୍ୟବହାର କଲେ, ମାନବ ନିର୍ବାଣ ପ୍ରାପ୍ତ ହୁଏ ବୋଲି ଫକୀରମୋହନ ବୌଦ୍ଧାବତାର କାବ୍ୟରେ ଉଲ୍ଲେଖ କରିଛନ୍ତି। ଏହି ଦଶଟି କୁକାର୍ଯ୍ୟ ହେଲା -

୧. ଚୌର୍ଯ୍ୟ, ୨. ହିଂସା, ୩. ପିଶୁନତା, ୪. ଯଥେଚ୍ଛ ଆଚାର,
୫. ନିଷ୍ଠୁରତା, ୬. ମିଥ୍ୟାଚାର, ୭. ପୁରୁଷ ଭାଷିତା,
୮. ପ୍ରାଣୀହିଂସା, ୯. ମିଥ୍ୟା ଦୃଷ୍ଟି, ୧୦. ବୋଲିବାର ମିଥ୍ୟା।

(୧୯ଶ ସର୍ଗ, ୪୨ ପଦ)

ପ୍ରବୃତ୍ତି ମାର୍ଗ ଅପେକ୍ଷା ନିବୃତ୍ତି ମାର୍ଗହିଁ ନିର୍ବାଣ ପ୍ରାପ୍ତିର ଉପଯୁକ୍ତ ପଥ। ଏହିପଥ ଦେଇ ସାଧକ ଗତି କଲେ, ସେ ସମସ୍ତ ଜାଗତିକ ବିଷୟବାସନା ରହିତ ହୋଇ ଏକ ଅଲୌକିକ ଆନନ୍ଦର ଅଧିକାରୀ ହୋଇଥାଏ। ନିର୍ବାଣ ପ୍ରାପ୍ତିର ଭିତ୍ତି ଧର୍ମ ଚକ୍ର, ଦୁଃଖ, ସମୁଦାୟ, ନିରୋଧ, ମାର୍ଗ ପ୍ରଭୃତି, ଚାରି ସତ୍ୟ ପ୍ରାଚୀର। ଅଷ୍ଟାଙ୍ଗିକ ମାର୍ଗ ସୌଧ ଭାବରେ ଗୃହୀତ।

ନିର୍ବାଣ ସଉଧ ସଂଘ ପବିତ୍ର ରୁଚିର
ଭିତ୍ତି ଧର୍ମଚକ୍ର, ଚାରିସତ୍ୟ ତା ପ୍ରାଚୀର

ଅଷ୍ଟସ୍ତମ୍ଭ ମହାସତ୍ୟେ ସୌଧ ପ୍ରତିଷ୍ଠିତ
ଲଭିବେ ସେ ଗୃହେ ଭିକ୍ଷୁ ଭିକ୍ଷୁଣୀ ବାଞ୍ଛିତ ।
(୧୯ଶ ସର୍ଗ, ୫୧ ପଦ)

ବୁଦ୍ଧ, ଧର୍ମ ଓ ସଂଘର ଶରଣାଗତ ହେଲେ ନିର୍ବାଣ ଆଲୋକ ପ୍ରାପ୍ତ ସମ୍ଭବପର ହୋଇଥାଏ । ଏହିପରି ଭାବରେ ଫକୀରମୋହନ ତାଙ୍କର 'ବୌଦ୍ଧାବତାର କାବ୍ୟ'ରେ ବୌଦ୍ଧ ଦର୍ଶନର ବିଭିନ୍ନ ଜଟିଳ ଭାବକୁ ସରଳ ଭାବରେ ବ୍ୟାଖ୍ୟା କରିଛନ୍ତି । ଓଡ଼ିଆ ବୌଦ୍ଧ ସାହିତ୍ୟ କ୍ଷେତ୍ରରେ ଏହି କାବ୍ୟଟିର ଯେ ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି, ଅସ୍ୱୀକାର କରାଯାଇନପାରେ ।

## ବୌଦ୍ଧାବତାର କାବ୍ୟର ସାହିତ୍ୟିକ ମୂଲ୍ୟ

'ବୌଦ୍ଧାବତାର କାବ୍ୟ' କେବଳ ଏକ ଶୁଷ୍କଦର୍ଶନ ମୂଳକ ଆଧ୍ୟାତ୍ମିକ କାବ୍ୟ ନୁହେଁ, ପରନ୍ତୁ ଏହାର ସାହିତ୍ୟିକ ମୂଲ୍ୟ ମଧ୍ୟ ସ୍ୱୀକାର୍ଯ୍ୟ । କେବଳ ବୌଦ୍ଧ ଦର୍ଶନରେ କାବ୍ୟଟି ଭାରାକ୍ରାନ୍ତ ହୋଇଥିଲେ, ଏହା ହୋଇ ପଡ଼ିଥାନ୍ତା ଶୁଷ୍କ ନୀରସ । ଫକୀରମୋହନ ଥିଲେ, ଜଣେ ଆଜୀବନ ସାହିତ୍ୟ ସାଧକ । ସାହିତ୍ୟ ଓ ଜୀବନ ତାଙ୍କ ନିକଟରେ ଥିଲା ଗୋଟିଏ ମୁଦ୍ରାର ଦୁଇପାର୍ଶ୍ୱ ସଦୃଶ । ଆଲୋଚ୍ୟ କାବରେ ତାଙ୍କର ସାହିତ୍ୟିକ ପ୍ରତିଭା କିପରି ଚରମ ଉତ୍କର୍ଷ ଲାଭ କରିଛି ତାର ସୂଚନା ପ୍ରଦତ୍ତ କରାଗଲା ।

### (କ) ବର୍ଣ୍ଣନା ବୈଚିତ୍ର୍ୟ :

ବର୍ଣ୍ଣନାରେ ପ୍ରାକୃତିକତା ଫୁଟାଇବା ଫକୀରମୋହନଙ୍କର ବିଶିଷ୍ଟ ବୈଶିଷ୍ଟ୍ୟ । ଦଶମ ସର୍ଗରେ ରଜନୀର ପ୍ରାକୃତିକ ବର୍ଣ୍ଣନା ତାଙ୍କ କାବ୍ୟକୁ ମହିମା ମଣ୍ଡିତ କରିଛି । ଉତ୍ସବ ଶେଷ । କ୍ଳାନ୍ତ ଅବସନ୍ନ ଦେହ ନେଇ ସମସ୍ତେ ରଜନୀ କୋଳରେ ଶାୟିତ । ଦୀପାବଳୀ କ୍ରମଶଃ ସ୍ତିମିତ ହୋଇ ଆସୁଛି । ମନ୍ଦ ପବନ କ୍ଳାନ୍ତ ଶରୀରରେ ଶାନ୍ତିର ପ୍ରଲେପ ବୋଳି ଦେଉଛି । ନୀଳ ଗଗନରେ ତାରାଗଣ ଆଖି ମିଟି ମିଟି କରୁଛନ୍ତି । ଅଦୂରରୁ ଭାସି ଆସୁଛି ଝିଲ୍ଲୀ ଧ୍ୱନି । ବୈରାଗ୍ୟର ପୂର୍ବାଭାସ । ତେଣୁ ବର୍ଣ୍ଣନା ମଧ୍ୟ ସେହିପରି ସ୍ୱାଭାବିକ । ପରିବେଶ ନୀରବତାର ସୂଚନା ଦେଉଛି । ଏହି ସମୟ ହିଁ ଗୃହତ୍ୟାଗ କରିଯିବାର ଉପଯୁକ୍ତ ସମୟ । ସିଦ୍ଧାର୍ଥଙ୍କ ମନରେ ବୈରାଗ୍ୟ ଓ ଦୃଢ଼ଭାବ ଜାଗ୍ରତ କରାଇବାରେ ଏହି ବର୍ଣ୍ଣନା ଅନେକ ପରିମାଣରେ ସାହାଯ୍ୟ କରିଛି । ପ୍ରକୃତିକୁ ଅନୁସରଣ କରୁଛି ପୁରୁଷ । ବର୍ଣ୍ଣନାଟି ଅତୀବ ଚମତ୍କାର –

ଅର୍ଦ୍ଧେକ ଅତୀତା ଯାମିନୀ, ତିମିରେ ଆଚ୍ଛନ୍ନ ମେଦିନୀ
ଉତ୍ସବ ଶେଷେ କ୍ଲାନ୍ତ ଦେହେ, ନିଦ୍ରିତ ସର୍ବଜନ ଗେହେ
ନିଭୁଛି କ୍ରମେ ଦୀପାବଳୀ ବହେ ପବନ ସୁଧାବଳି
ନୀଳ ଆକାଶେ ତାରାଗଣେ ଶେଫାଳୀ ବିସ୍ତୃତ ପ୍ରାଙ୍ଗଣେ
ଗଭୀର ଶାନ୍ତିମୟ ମୂର୍ତ୍ତି ତିମିର ମଣ୍ଡିତା ପ୍ରକୃତି ।
ଦୂରେ ଶୁଭଇ ଝିଲ୍ଲୀ ଧ୍ୱନି କ୍ରନ୍ଦନ କରୁଛି ରଜନୀ ।

ପୁଷ୍ୟା ନକ୍ଷତ୍ର ଉଦୟ ହୋଇ ମାହେନ୍ଦ୍ର ବେଳାର ଶୁଭ ସୂଚନା ପ୍ରଦାନ କରିଛି । ସିଦ୍ଧାର୍ଥଙ୍କ ମନରେ ଏହି ପରିବେଶ ସୃଷ୍ଟି କରିଛି ବୈରାଗ୍ୟଭାବ । ସେ ଗୃହ ତ୍ୟାଗ ପୂର୍ବକ ଅନ୍ତିମ ପଥ ଅନ୍ୱେଷଣରେ ଯାତ୍ରା କରିବାକୁ ଉଦ୍ୟତ । ପାତ୍ରାନୁରୂପ ବର୍ଣ୍ଣନା, ବିଷୟଟିକୁ ଜୀବନ୍ତ କରି ତୋଳିଛି ।

ଗୟାତୀର୍ଥର କବି ଯେଉଁ ବର୍ଣ୍ଣନା ପ୍ରଦତ୍ତ କରିଛନ୍ତି, ତାହା ଯେପରି ସ୍ୱାଭାବିକ ସେହିପରି ଜୀବନ୍ତ । ଅନେକାଂଶରେ 'ଅମିତାଭ'ରେ ପ୍ରଦତ୍ତ ବର୍ଣ୍ଣନା ଅପେକ୍ଷା ଏହି ବର୍ଣ୍ଣନାଟି ଅଧିକ ଚିତ୍ତାକର୍ଷକ ମନେ ହୋଇଥାଏ । ଦିଗନ୍ତ ବିସ୍ତାରିତ ବାଲୁକାରାଶି ମଧ ଦେଇ ପତିତ ପାବନୀ ଗଙ୍ଗା ବହି ଯାଉଛି । ଭକ୍ତମାନେ ବାଲୁକା ରାଶି ମଧ୍ୟରୁ ଜଳ ଆଣି ତର୍ପଣ କରୁଛନ୍ତି । ସ୍ଥିତପ୍ରଜ୍ଞ ଋଷିମାନଙ୍କର ପବିତ୍ର ବେଦ ମନ୍ତ୍ରରେ ସ୍ଥାନଟି ସ୍ୱର୍ଗୀୟ ପବିତ୍ରତାରେ ପରିପୂର୍ଣ୍ଣ ହୋଇଉଠିଛି । ବର୍ଣ୍ଣନାଟି କିପରି ଚମତ୍କାର ଭାବ ବହନ କରିଛି ଦେଖନ୍ତୁ–

ପ୍ରଚ୍ଛନ୍ନ ସଲିଳା ଫଲଗୁ ପତିତ ପାବନୀ
ପିତୃଲୋକ ଉଦ୍ଧାରିଣୀ ପୁଣ୍ୟ ସନାତନୀ
ବିଧାତା ସୃଷ୍ଟି ଏକ ଅଦ୍ଭୁତ କୌଶଳ
ସିକତା ନିମ୍ନରେ ପ୍ରବାହିତ ପୂତ ଜଳ ।
ଜନନୀର ସ୍ତନ୍ୟ ସମ ଲୁକ୍‌କାୟିତ ବାରି
ତର୍ପଣେ ତୁଳନ୍ତି ଭକ୍ତେ ବାଲୁକା ବିଦାରି
ନଦୀ ବକ୍ଷେ ମହାଯଜ୍ଞ ହୁଏ ସମାହିତ
ପ୍ରତି ନିୟତରେ ବେଦ ମନ୍ତ୍ର ମୁଖରିତ ।
ସ୍ୱର୍ଗୀୟ ଅପୂର୍ବ ଭାବଯୁକ୍ତ କ୍ଷେତ୍ରଧାମ
ଧର୍ମ ପିପାସୁର ପୂର୍ଣ୍ଣହୁଏ ମନସ୍କାମ ।
ମହାଧାମ ଗୟାତୀର୍ଥ ବିରାଜିତ ତୀରେ
ପୁଲିନ ପ୍ରାନ୍ତରେ ବିରାଜିତ ରାମଶୀଳା । (ଚତୁର୍ଦ୍ଦଶ ସର୍ଗ)

ଏହି ସର୍ଗରେ ପ୍ରକୃତିରାଣୀ ଅପୂର୍ବ ସୁଷମା ମଣ୍ଡିତା, ଶାନ୍ତ, ନିର୍ବିକାର ଭାବରେ ଆମ ଆଗରେ ଦେଖା ଦିଅନ୍ତି । ନିରଞ୍ଜନା ନଦୀ ପ୍ରଖର ଗତିରେ ବହି ଚାଲିଛି । ତୀରସ୍ଥ ପାଦପ ଶ୍ରେଣୀ ଧ୍ୟାନମଗ୍ନ ଋଷି ପରି ସ୍ଥିର ଭାବରେ ଦଣ୍ଡାୟମାନ । ବୃକ୍ଷମାନଙ୍କରେ ଲତିକା ଗୁଡ଼ିକ ଆଲିଙ୍ଗନବଦ୍ଧା । ଶ୍ୟାମଳ ପତ୍ରାବଳୀରେ ସବୁଜ ଅରଣ୍ୟଟି ବେଶ୍ ପ୍ରାକୃତିକ ହୋଇଉଠିଛି । ବୃକ୍ଷ ଓ ପତ୍ରାବଳୀ ଏପରି ଭାବରେ ଘଞ୍ଚଯେ, ସୂର୍ଯ୍ୟକିରଣ ବୃକ୍ଷ ପତ୍ରାବଳୀ ଭେଦ କରି ପୃଥିବୀ ସ୍ପର୍ଶ କରିବାକୁ ଅକ୍ଷମ । ବନ୍ୟ ବିହଙ୍ଗମଗଣଙ୍କର କଳକୂଜନରେ ଅରଣ୍ୟ ମୁଖରିତ । ମୟୂର ମୟୂରୀଙ୍କ ଚମତ୍କାର ନୃତ୍ୟରେ ପ୍ରକୃତିରାଣୀ ଉଲ୍ଲସିତା । ଅଦୂରରେ ପର୍ବତ ଶ୍ରେଣୀ ଧ୍ୟାନମଗ୍ନ ପରି ଉପବିଷ୍ଟ । ବର୍ଣ୍ଣନାଟି ଅତୀବ ଚମତ୍କାର-

ନୀଳାଞ୍ଜନା ନୈରଞ୍ଜନା ବହେ ଖରେ ବେଗେ
କାମାସକ୍ତ ଲୋକ ଯଥା ମନର ଆବେଗେ
ତୀରସ୍ଥ ପାଦପ ଶ୍ରେଣୀ ଧ୍ୟାନମଗ୍ନ ପ୍ରାୟ
ଛନ୍ତି ଉଭା ଊର୍ଦ୍ଧ୍ୱବାହୁ ଯୋଗୀ ସ୍ଥିରକାୟ ।
ନିବିଡ଼ ଲତିକାସ୍ଥିର କାଣ୍ଡରେ ବେଷ୍ଟିତା,
ସୋହାଗୀ କାମିନୀ ପତି ପ୍ରେମେ ପ୍ରଫୁଲ୍ଲିତା
ଶାରଦ ଶ୍ୟାମଳ ପତ୍ରେ ବନ ଆଚ୍ଛାଦିତ;
ପ୍ରବେଶ ତପନ ତେଜ ନକରେ କିଞ୍ଚିତ
ଦିଗନ୍ତ ପ୍ରସାର କରି ବନ୍ୟ ବିହଙ୍ଗମେ
ପ୍ରଭାତୀ ସଙ୍ଗୀତେ ମଗ୍ନ ସପ୍ତମ ପଞ୍ଚମେ
× × ×
ମୟୂର ମୟୂରୀ ସୁଖେ କରନ୍ତି ନର୍ତ୍ତନ
ଦାମ୍ପତ୍ୟ ପ୍ରଣୟ ପରାକାଷ୍ଠା ନିଦର୍ଶନ
× × ×
ଅଦୂରେ ପର୍ବତ ଶ୍ରେଣୀ ଶ୍ୟାମଳ ଉପଳେ
ଧ୍ୟାନ ମଗ୍ନ ପ୍ରାୟ ଉପବିଷ୍ଟ ମହୀ ତଳେ ।

ଅଶୋକୋତ୍ସବ ସମୟରେ ଶାକ୍ୟ ଲଳନାମାନଙ୍କର ରୂପ ବର୍ଣ୍ଣନାରେ କଳ୍ପନାର ଆତିଶଯ୍ୟ ପରିଲକ୍ଷିତ ହେଉଥିଲେ ମଧ୍ୟ ବର୍ଣ୍ଣନାଟି କିନ୍ତୁ ଜୀବନ୍ତ । ଦୀର୍ଘକେଶା, ଝୀନ ବସନ ପରିହିତା, କୁରଙ୍ଗୀ ନୟନା, ସ୍ମିତହାସ୍ୟା ଶାକ୍ୟ ଲଳନାଙ୍କର ଯେପରି ବର୍ଣ୍ଣନା

ପ୍ରଦତ୍ତ ହୋଇଛି, ଯେ କୌଣସି ପୁରୁଷଙ୍କ ଧୈର୍ଯ୍ୟରୂପକ ଗର୍ବ ଖର୍ବ କରିବାରେ ସେମାନେ ସମର୍ଥା । ସେହିପରି ଶାକ୍ୟରାଜପୁରେ ନର୍ତ୍ତକୀଗଣଙ୍କର ନୃତ୍ୟ ପରିବେଷଣ ପରେ କ୍ଳାନ୍ତ ଅବସନ୍ନ ଦେହରେ ଯେତେବେଳେ ନିଦ୍ରାଦେବୀଙ୍କ କୋଳରେ ଆଶ୍ରୟ ନେଇଛନ୍ତି, ସେମାନଙ୍କର ସ୍ୱାଭାବିକ ବର୍ଣ୍ଣନା ଦେବାରେ କବି କୁଣ୍ଠିତ ହୋଇନାହାନ୍ତି । ଗୋପାଙ୍କ ରୂପ ବର୍ଣ୍ଣନାରେ ନାରୀର ଔଦ୍ଧତ୍ୟ ନାହିଁ; ବରଂ ଅଛି ଏକ ନିର୍ଲିପ୍ତା, ଗମ୍ଭୀରା, ଅପରୂପା ସ୍ଥିରମନା ରମଣୀର ଚମତ୍କାରିତା । ସିଦ୍ଧାର୍ଥଙ୍କ ରୂପ ବର୍ଣ୍ଣନା ମଧ୍ୟ ସ୍ୱାଭାବିକ । ଯେପରି -

କାଞ୍ଚନ ପ୍ରତିମା ପରି ରତ୍ନ ସିଂହାସନେ
ବସିଛନ୍ତି ରାଜପୁତ୍ର ସ୍ଥିର ନେତ୍ର ମନେ
ଚନ୍ଦ୍ରପାଶେ ଯଥା ପୁଷ୍ୟା
ତଥା ଅପରୂପ ଦୃଶ୍ୟା । (ଚତୁର୍ଥ ସର୍ଗ)

ଉକ୍ତ ବର୍ଣ୍ଣନାଟି ଏକ ନିର୍ଲିପ୍ତ, ସଂସାର ବିଷୟ ବାସନା ବିରହିତ ଯୋଗୀର ଧ୍ୟାନ ଗମ୍ଭୀର ମୂର୍ତ୍ତିର ବର୍ଣ୍ଣନା । ଏହିପରି ଭାବରେ ଲକ୍ଷ୍ୟ କଲେ, ବୌଦ୍ଧାବତାର କାବ୍ୟ ଯେ ଅନେକ ସ୍ୱାଭାବିକ ଓ ପ୍ରାକୃତିକ ବର୍ଣ୍ଣନାର ଗନ୍ତାଘର, ତାହା ଆମେ ଅନୁଭବ କରିପାରିବା । ବର୍ଣ୍ଣନାର ଚମତ୍କାରିତା ଏହି କାବ୍ୟଟିର ଗୌରବ ବୃଦ୍ଧି କରିପାରିଛି ।

## (ଖ) ନାଟକୀୟତା :

ନାଟକୀୟତା 'ବୌଦ୍ଧାବତାର କାବ୍ୟ'ର ପ୍ରଧାନ ବୈଶିଷ୍ଟ୍ୟ । କାବ୍ୟଟି ପାଠ କରିବା ସମୟରେ ମନେହୁଏ ସତେ ଯେପରି କଥୋପକଥନ ମଧ୍ୟ ଦେଇ କାବ୍ୟଟି ପରିଣତି ଦିଗକୁ ଗତି କରୁଛି । ମୁଖ, ପ୍ରତିମୁଖ, ଗର୍ଭ, ବିମର୍ଷ ଓ ନିର୍ବହଣ-ନାଟକର ପଞ୍ଚସନ୍ଧି । ସେହିପରି ଏହି କାବ୍ୟର ପ୍ରାରମ୍ଭ ଗତାନୁଗତିକ ରୀତିରେ ଆରମ୍ଭ ହୋଇଥିଲେ ମଧ୍ୟ ସିଦ୍ଧାର୍ଥଙ୍କ ମନରେ ବୈରାଗ୍ୟ ଭାବନାଠାରୁ ନାଟକୀୟ ଦ୍ୱନ୍ଦ୍ୱର ଆରମ୍ଭ । ପ୍ରବୃତ୍ତି ଓ ନିବୃତ୍ତି ମଧ୍ୟରେ ଯେଉଁ ସଂଘର୍ଷ ଆରମ୍ଭ ହୋଇଛି, ସେହିଠାରୁ ନାଟକୀୟ ଉତ୍କଣ୍ଠାର ସୂତ୍ରପାତ । ଭୋଗ ଓ ତ୍ୟାଗ ମଧ୍ୟ ଦେଇ ଗତି କରୁଥିବା ସିଦ୍ଧାର୍ଥଙ୍କ ମନ ମଧ୍ୟରେ ତୀବ୍ର ସଂଘର୍ଷ କାବ୍ୟଟିକୁ ଶୀର୍ଷସୀମା ଦିଗକୁ ଗତିମୁଖର କରାଇଛି । ନାଟକୀୟ ଉତ୍କଣ୍ଠା ଶିଥିଳ ହୋଇପଡ଼େ, ଯେତେବେଳେ ପାଠକ ସିଦ୍ଧାର୍ଥଙ୍କର ଜରା, ବ୍ୟାଧି, ମୃତବ୍ୟକ୍ତି ଓ ସନ୍ନ୍ୟାସୀଙ୍କୁ ସନ୍ଦର୍ଶନ କରିବାର ଦେଖନ୍ତି । କାରଣ ଜ୍ୟୋତଷମାନଙ୍କର ଭବିଷ୍ୟତ ବାଣୀ ଥିଲା ଅନୁରୂପ । ଯେତେବେଳେ ସିଦ୍ଧାର୍ଥଙ୍କ ମନ ମଧ୍ୟରେ ଗୃହୀ ଓ ବୈରାଗୀ ଭାବର ତୁମୁଳ ଝଡ଼ ଉଠେ, ସେତେବେଳେ ପାଠକଙ୍କ ମନରେ ପୁଣି ଉତ୍କଣ୍ଠା ସୃଷ୍ଟି ହୁଏ । ଏହି

ଉତ୍କଣ୍ଠା ତୀବ୍ରତର ହୋଇପଡ଼େ, ଯେତେବେଳେ ସିଦ୍ଧାର୍ଥ ନିଜ ପିତାଙ୍କ ନିକଟକୁ ଅନୁମତି ଭିକ୍ଷା କରିବାକୁ ଯାଆନ୍ତି । ଏଇଠି ପାଠକଙ୍କ ମନରେ ଦ୍ୱନ୍ଦ୍ୱ ଜାତ ହୁଏ ଶୁଦ୍ଧୋଦନ କ'ଣ କେବେ ନିଜର ସ୍ନେହର ପିତୁଳାଟିକୁ ସନ୍ନ୍ୟାସ ଗ୍ରହଣ କରିବାକୁ ଅନୁମତି ଦେବେ ? ପିତାଙ୍କ ଅନୁମତି ନପାଇ ସିଦ୍ଧାର୍ଥ କ'ଣ ଗୃହରୁ ନିଷ୍କ୍ରାନ୍ତ ହୋଇପାରିବେ ? ପିତାଙ୍କର ସକରୁଣ ଅନୁରୋଧକୁ କ'ଣ କେବେ ସିଦ୍ଧାର୍ଥ ପ୍ରତ୍ୟାଖ୍ୟାନ କରିପାରିବେ ? ଏହିପରି ଅନେକ ପ୍ରଶ୍ନବାଚୀ ପାଠକଙ୍କ ମନରେ ସୃଷ୍ଟି ହୋଇଥାଏ । କିନ୍ତୁ ସିଦ୍ଧାର୍ଥଙ୍କ ଅଟଳ ଜିଦ୍ ପାଠକକୁ ପରିଣତି ଦିଗକୁ ଅଗ୍ରସର କରାଇନିଏ । ନାଟକୀୟ ଦ୍ୱନ୍ଦ୍ୱ ଶୀର୍ଷ ସୀମାରେ ଉପନୀତ ହୁଏ, ଯେତେବେଳେ ଶେଷଥର ପାଇଁ ସିଦ୍ଧାର୍ଥ ପ୍ରିୟପତ୍ନୀ ଗୋପା ଓ ଶିଶୁପୁତ୍ର ରାହୁଲଙ୍କର ଶେଷ ଦର୍ଶନ ପାଇ ଯା'ନ୍ତି । ପାଠକଙ୍କ ମନରେ ଉତ୍କଣ୍ଠା, ଯଦି ଗୋପାଙ୍କର ନିଦ୍ରାଭଗ୍ନ ହୁଏ, ସେ କ'ଣ କେବେ ସିଦ୍ଧାର୍ଥଙ୍କୁ ପାଖରୁ ଅନ୍ତର କରିପାରିବେ ? ଶିଶୁପୁତ୍ର ରାହୁଲର ସୁନ୍ଦର ମୁଖ ଦେଖି ସିଦ୍ଧାର୍ଥ କ'ଣ ତାଙ୍କ ନିଷ୍ପତ୍ତିର ପୁନଃବିଚାର କରିବେ ନାହିଁ ? ଏଇଠି ନାଟକର ଶୀର୍ଷାରୋହଣ । କିନ୍ତୁ ପାଠକର ସମସ୍ତ ଆଶା ଆଶାରେ ହିଁ ପରିସମାପ୍ତି ଘଟେ । ନିଦ୍ରିତା ଗୋପାଙ୍କର ନିଦ୍ରା ଭଗ୍ନ ହୁଏ ନାହିଁ କିମ୍ବା ରାହୁଲର ସୁନ୍ଦର ମୁଖ ସିଦ୍ଧାର୍ଥଙ୍କ ମନରେ କୌଣସି ଭାବାନ୍ତର ସୃଷ୍ଟି କରିପାରେ ନାହିଁ । ତଥାପି ସିଦ୍ଧାର୍ଥ ଜଣେ ସାମାଜିକ ଜୀବ । ଶେଷଥର ପାଇଁ ଗୋପାଙ୍କୁ ଦେଖି ଫେରିବା ସମୟରେ ଗୃହୀସୁଲଭ ତାଙ୍କ ଚକ୍ଷୁରେ ଅଶ୍ରୁ ଆସିଛି । କାରଣ ଏପର୍ଯ୍ୟନ୍ତ ସେ ସଂସାର ବନ୍ଧନ ପ୍ରତି ସଂପୂର୍ଣ୍ଣ ବୀତସ୍ପୃହ ହୋଇପାରି ନାହାନ୍ତି ।

ନାଟକ ବିମର୍ଷ ଦିଗକୁ ଗତି କରିଛି ଛନ୍ଦକର ସକରୁଣ ନିବେଦନର ପ୍ରତ୍ୟାଖ୍ୟାନ ପରେ । ସାଧନା, ସାଧନାରେ ସିଦ୍ଧିଲାଭ ଓ ଧର୍ମପ୍ରଚାର ମଧ୍ୟରେ ବିଶେଷ ନାଟକୀୟତା ପରିଲକ୍ଷିତ ହୋଇ ନଥାଏ । ଯଦିଓ ଦୀର୍ଘ ଷଡ଼ବର୍ଷ ସାଧନାର ବିଫଳତା ପରେ ବିଭିନ୍ନ ଚରିତ୍ରମାନଙ୍କର ସିଦ୍ଧାର୍ଥଙ୍କୁ ପ୍ରଲୋଭିତ କରିବା ନିମିତ୍ତ ଆପ୍ରାଣ ଉଦ୍ୟମରେ କେତେକ ପରିମାଣରେ ନାଟକୀୟତା ପରିଲକ୍ଷିତ ହୋଇଥାଏ । କିନ୍ତୁ କାବ୍ୟଟିର ସାର୍ଥକତା ସେତିକିବେଳେ, ଯେତେବେଳେ ଶାକ୍ୟରାଜ୍ୟରେ ବୁଦ୍ଧଦେବ ପ୍ରବେଶ କରିଛନ୍ତି ଓ ଗୋପାଙ୍କୁ ନବଧର୍ମରେ ଦୀକ୍ଷିତ କରାଇବାକୁ ତାଙ୍କ ନିକଟରେ ଉପସ୍ଥିତ ହୋଇଛନ୍ତି । ଦୀର୍ଘଦିନର ବିରହ ପରେ ମିଳନର ଦୃଶ୍ୟ ନିଶ୍ଚୟ ଉପଭୋଗ୍ୟ । ପ୍ରକୃତି ଓ ପୁରୁଷ ଉଭୟ ନିର୍ବାକ୍ । ଶିଶୁପୁତ୍ରଟି କାନ୍ଦି କାନ୍ଦି ମାଗୁଛି ପିତୃଧନ, କି ଚମତ୍କାର ଦୃଶ୍ୟ ! ମାତା ଗୋପାଙ୍କର ପୂର୍ବ ନିର୍ଦ୍ଦେଶ ପୁତ୍ର ଚାହେଁ ପିତୃଧନ, ଅବାକ୍ ପାଠକ ! କି ଉତ୍ତର ଦେବେ ବୁଦ୍ଧଦେବ ? ପୁତ୍ର ନିକଟରେ ପରାସ୍ତ ହେବେ ନିଶ୍ଚୟ । କିନ୍ତୁ ଆଶ୍ଚର୍ଯ୍ୟ ଭାବରେ ନାଟକୀୟତାରେ ପରିବର୍ତ୍ତନ ଆସେ । ସଂସାର ତ୍ୟାଗୀ ସାଧକର ନିଜର ବା ବ୍ୟକ୍ତିଗତ

ଧନ କ'ଣ ଅଛି ? ଅଛି ଦୀର୍ଘ ଛଅ ବର୍ଷ ସାଧନାର ଅମୃତ ଫଳ । ତାହାହିଁ ପିତୃଧନ, ଚମତ୍କାର ନାଟକୀୟ ପରିଣତି । ତାପରେ କାବ୍ୟର ଶେଷପର୍ଯ୍ୟନ୍ତ ଆଉ କୌଣସି ଉତ୍କଣ୍ଠା ବା ଦ୍ୱନ୍ଦ୍ୱ ପାଠକ ମନରେ ସୃଷ୍ଟି ହୋଇନାହିଁ । ପାରଂପରିକ ରୀତିରେ କାବ୍ୟର ପରିସମାପ୍ତି ଘଟିଛି ବୁଦ୍ଧଦେବଙ୍କ ମହାପ୍ରୟାଣରେ । କାବ୍ୟଟିର ଯେଉଁ କେତୋଟି ସ୍ଥଳରେ ନାଟକୀୟତା ସୃଷ୍ଟି ହୋଇଛି, ଆଲୋଚନାର ସୁବିଧା ଦୃଷ୍ଟିରୁ ଏଠାରେ ତାହା କିୟଦଂଶରେ ଉଲ୍ଲେଖ କରାଗଲା ।

ଚତୁର୍ଥ ସର୍ଗ – ଅଶୋକାସ୍ତବ । ଶାକ୍ୟ ଲଳନାମାନଙ୍କୁ ସିଦ୍ଧାର୍ଥ ଉପହାର ଦେବେ । ବହୁମୂଲ୍ୟ ଭୂଷଣରେ ଭୂଷିତା ଏକପରେ ଏକ ଲଳନା ଉପହାର ନେଇ ମଞ୍ଚରୁ ବିଦାୟ ନେଉଛନ୍ତ । ଶେଷରେ ଆସିଛନ୍ତି ମଞ୍ଚ ଉପରକୁ କାବ୍ୟ ନାୟିକା ଦଣ୍ଡପାଣି କନ୍ୟା ଗୋପା । କିନ୍ତୁ ସେତେବେଳକୁ ସମସ୍ତ ଉପହାର ଶେଷ । କଳକିଣା କଣ୍ଠରେଗୋପାର ପ୍ରଶ୍ନ–

ଯୁବରାଜ ! କୃପାଧର
କିଁପା ମୋତେ ଉପହାର
ଦେଲେ ନାହିଁ ? ଦେଇଛନ୍ତି କୁମାରୀ ସକଳେ,
ନ ଜାଣେ କି ଅପରାଧ କଲି ପାଦ ତଳେ ?

ସିଦ୍ଧାର୍ଥଙ୍କ ଉତ୍ତର :–

ନିଃଶେଷ ଅଶୋକ ଭାଣ୍ଡ– × × ×
ହେ ସୁନ୍ଦରି ! ତବଯୋଗ୍ୟ ନାହିଁ ଉପହାର
ନିଅ ମୋର ଅଙ୍ଗୁରୀୟ
ନୁହେଁ ସତ୍ୟ ରମଣୀୟ
ହେଉ ଏ ଅମୂଲ୍ୟ ନିଧି ପଡ଼ି ତବ କରେ
ଆୟସ କାଞ୍ଚନ ସ୍ପର୍ଶମଣି ପରଶରେ ।

ଗୋପାର ଉତ୍ତର :-

ବୋଇଲେ ବିନୟେ ଗୋପା-ନାହିଁ ପ୍ରୟୋଜନ
ରତ୍ନ ବିନିମୟେ କିଁପା ତୃଣ ଅକିଞ୍ଚନ ?
· ଅଧୀନା ଚରଣ ଦାସୀ
ନୁହେଁ ରତନ ପ୍ରୟାସୀ

ଥାଉ ପ୍ରଭୋ ! ଅଙ୍ଗୁରୀୟ ତବ ପଦ୍ମ କରେ
ତବ କୃପା ପାଏଁ ଯେହ୍ନେ ଜନ୍ମ ଜନ୍ମାନ୍ତରେ ।

ସଂଳାପ ନାଟକର ପ୍ରଥମ ଓ ପ୍ରଧାନ ବୈଶିଷ୍ଟ୍ୟ । କଥୋପକଥନଶୈଳୀରେ ଗୋପା ଓ ସିଦ୍ଧାର୍ଥଙ୍କ ମଧ୍ୟରେ ବାକ୍ୟ ବିନିମୟ କାବ୍ୟଟିକୁ ନାଟକର ମର୍ଯ୍ୟାଦା ପ୍ରଦାନ କରିଛି । ସେହିପରି ଜରା, ବ୍ୟାଧିଗ୍ରସ୍ତ, ମୃତବ୍ୟକ୍ତି ଓ ସନ୍ନ୍ୟାସୀଙ୍କୁ ଦର୍ଶନକରି ସାରଥିକୁ ସିଦ୍ଧାର୍ଥ ଯେଉଁ ପ୍ରଶ୍ନମାନ ପଚାରିଛନ୍ତି ତାହା ମଧ୍ୟ ସଂଳାପ ପ୍ରଧାନ ।

ନବମ ସର୍ଗରେ ରାତିର ନିସ୍ତବ୍ଧ ପ୍ରହରରେ ସିଦ୍ଧାର୍ଥ ଯାଇଛନ୍ତି ପିତା ଶୁଦ୍ଧୋଦନଙ୍କ ଠାରୁ ବିଦାୟ ନେବାକୁ । ପିତା ଓ ପୁତ୍ରଙ୍କ ମଧ୍ୟରେ ଚାଲିଛି ବାକ୍ୟ ବିନିମୟ । ଶେଷରେ ସିଦ୍ଧାର୍ଥ ଗୃହରେ ରହିବାକୁ ରାଜି ହୋଇଛନ୍ତି । ମାତ୍ର ତାଙ୍କର ଆବଶ୍ୟକ ଚାରିଗୋଟି ଧନ । ପିତା ଏବେ ବେଶ୍ ପ୍ରଫୁଲ୍ଲିତ । ଆଗ୍ରହରେ ପଚାରିଛନ୍ତି–

"ବୋଲ ବୋଲ ଲୋଡ଼ା ତୋର କି ଦ୍ରବ୍ୟ ଏ କ୍ଷଣେ"

ସିଦ୍ଧାର୍ଥ :–

ପିତଃ ! କରନ୍ତୁ ଆଦେଶ,
ମୋ ଶରୀରେ ନ ବାଧିବ ଯେହ୍ନେ ବାଧା କ୍ଳେଶ
ନ ମରିବି, ନ ତୁଟିବ ସଂପଦ ଯୌବନ"

ପୁତ୍ରର ଅସମ୍ଭବ ପ୍ରାର୍ଥନା ପିତା ରକ୍ଷା କରିବାରେ ଅସମର୍ଥ । ତେଣୁ ସେ ଦୀର୍ଘନିଃଶ୍ୱାସ ପକାଇ କହିଛନ୍ତି–

"ପାଇବୁ ଅପ୍ରାପ୍ୟ ବିତ୍ତ କିଁପା ଏ ବିଶ୍ୱାସ ?"

ତେଣୁ ପୁତ୍ରର ଅନ୍ୟ ଏକ ପ୍ରାର୍ଥନା–

ଗୃହ ତେଜି ଯିବି ବନେ ତପସ୍ୟା କାରଣେ
ନ କରିବ ଯେହ୍ନେ କଷ୍ଟ ଅନୁଭବ ମନେ ।

ଏହିପରି ଭାବରେ ପିତା ଓ ପୁତ୍ରଙ୍କ ମୁଖରେ କବି ଯେଉଁ ସଂଳାପର ପ୍ରୟୋଗ କରିଛନ୍ତି, ତାହା ଯଥାର୍ଥ ଓ ଯୁକ୍ତିଯୁକ୍ତ ।

ଦଶମ ସର୍ଗରେ ପିତାଙ୍କଠାରୁ ମେଲାଣି ନେଇ ସିଦ୍ଧାର୍ଥ ଯାଇଛନ୍ତି ଗୋପାଙ୍କ ନିକଟକୁ । ଗୋପାଙ୍କ ମୁଖ ଦର୍ଶନ ମାତ୍ରେ ଶ୍ରେୟ ଓ ପ୍ରେୟ ମଧ୍ୟରେ ସୃଷ୍ଟି ହୋଇଛି ତୁମୁଳ ସଂଘର୍ଷ, ମନ ଓ ବିବେକର ସଂଘର୍ଷରେ ସିଦ୍ଧାର୍ଥ ବାକ୍‌ହୀନ । ତେଣୁ–

ସିଦ୍ଧାର୍ଥ ନ ପାରିଲେ ସହି
ନେତ୍ରୁ ଲୋତକ ପଡ଼େ ବହି"

ଚତୁର୍ଦ୍ଦଶ ସର୍ଗରେ ଛଅବର୍ଷ ତପସ୍ୟା ବିଫଳ ହେବା ପରେ ତାଙ୍କର ଆରମ୍ଭ ହୋଇଛି ମାନସିକ ଦ୍ୱନ୍ଦ୍ୱ। ଏକ ପରେ ଏକ ଚରିତ୍ର ମଞ୍ଚ ଉପରକୁ ଆସି ତାଙ୍କୁ ପ୍ରଲୋଭନ ଓ ଭୟ ପ୍ରଦର୍ଶନ କରିଛନ୍ତି। ଏଠାରେ ବକ୍ତବ୍ୟ ମଧ୍ୟ କଥୋପକଥନ ଶୈଳୀରେ। ପ୍ରଥମେ ଲାଳସା ଓ କାମନାମାନେ ଆସି ମଧୁର ବଚନରେ କହିଛନ୍ତି–

"ହେ ଯୋଗି ! ନ ବୁଝି ତତ୍ତ୍ୱ ବୃଥାରେ ତପସ୍ୟା
କର, ଦେହ ନଷ୍ଟ ତୁମ୍ଭ ଅଛି କି ଭରସା ?
ସୌନ୍ଦର୍ଯ୍ୟ ଐଶ୍ୱର୍ଯ୍ୟ ବୀର୍ଯ୍ୟ ବିଳାସ ଗୌରବ
(ତେଜଯୋଗ) ଯାହା ଇଛା ଦେବୁ ଆଣି ସର୍ବ।

ତାପରେ ଆସିଛି ମୃତ୍ୟୁ ତାର ବିଭିନ୍ନ ଚରମାନଙ୍କୁ ସାଥିରେ ଧରି। ଯିବା ସମୟରେ କହିଛି–

"ଆରେ ଶାକ୍ୟସିଂହ ! ଶୁଣ
ବାହୁଡ଼ି ଆସିବି କେବେ ହେଲେ ଦିନେ ପୁଣ
କାମ ନୁହେଁ ମୃତ୍ୟୁ ମୁହିଁ ରଖିଥା ମନରେ।

ପୁତ୍ରର ନିଷ୍ଫଳ ତପସ୍ୟା ପରେ ମାତା ମାୟାଦେବୀଙ୍କ ଆବିର୍ଭାବ ଏକ ସ୍ୱର୍ଗୀୟ ଦୃଶ୍ୟର ଅବତାରଣା କରିଛି। ସପ୍ତଦଶ ସର୍ଗରେ ଗୌତମ ମଗଧ ଦେଶରେ ଶିଷ୍ୟମାନଙ୍କ ସହିତ ବେଣୁବନରେ ଉପବେଶନ କରିଥିବା ସମୟରେ ନିଜର ଏକ ବାଲ୍ୟବନ୍ଧୁ ପିତାଙ୍କ ଦୂତ ଭାବରେ ଆସି ତାଙ୍କୁ ଯେପରି ସକରୁଣ ଅନୁରୋଧ କରିଛନ୍ତି ତାହା ଏକ କରୁଣ ଦୃଶ୍ୟର ଅବତାରଣା କରିଥାଏ। ସେହିପରି ରାଜ ଅନ୍ତଃପୁରେ ପ୍ରବେଶ ପରେ କବି ପାତ୍ରପାତ୍ରୀଙ୍କ ମୁଖରେ ଯେଉଁ ସଂଳାପମାନ ଦେଇଛନ୍ତି, ସମସ୍ତ କରୁଣ ରସାଶ୍ରିତ। ଗୋପା ପୁତ୍ରକୁ ନିର୍ଦ୍ଦେଶ ଦେଇଛନ୍ତି–

"ରେ ନନ୍ଦନ, ମାଗିନେ ତୋ ପୈତୃକ ଧନ।"

ପୁତ୍ରର ଉତ୍ତର– ମାତା ଗୋ ! କିଏ ମୋ ପିଅର।

ଗୋପା –"ରେ କୁମର ! ଏହି ସନ୍ୟାସୀ ତୋ ପିଅର।

ରାହୁଳ – "ଦେଉନ୍ତୁ ବାବା, ପିତୃଧନ।

ବୁଦ୍ଧଦେବ –"ପାଳିବି ଧର୍ମରେ ନନ୍ଦନ, ଦେବି ସପତ ଗୋଟି ଧନ।"

ଏହିପରି ଆଲୋଚନା କଲେ 'ବୌଦ୍ଧାବତାର କାବ୍ୟ'ରେ ଯେ ନାଟକର ଉପାଦାନ କମ୍ ନାହିଁ, ସ୍ପଷ୍ଟ ଅନୁମିତ ହୋଇଥାଏ । ଦ୍ୱନ୍ଦ୍ୱ, ଉତ୍କଣ୍ଠା, ସଂଳାପ, ପଞ୍ଚସନ୍ଧି ପ୍ରଭୃତି ଯେଉଁଗୁଡ଼ିକ ନାଟକର ପ୍ରାଣ, ସମସ୍ତ ବିଭବ ଉକ୍ତ କାବ୍ୟରେ ଦୃଷ୍ଟିଗୋଚର ହୋଇଥାଏ । ତେଣୁ 'ବୌଦ୍ଧାବତାର କାବ୍ୟ' କେବଳ ଏକ ଧର୍ମଦର୍ଶନମୂଳକ କାବ୍ୟ ନୁହେଁ, ପରନ୍ତୁ ବିଭିନ୍ନ ନାଟକୀୟ ଆବେଗରେ ପରିପୂର୍ଣ୍ଣ ହୋଇ ଏହାକୁ ଏକ ଦୃଶ୍ୟକାବ୍ୟର ଗୌରବ ଆଣି ଦେଇଛି ।

## (ଗ) ରସ ପରିବେଷଣ

'ବୌଦ୍ଧାବତାର କାବ୍ୟ'ରେ ଅନ୍ୟାନ୍ୟ ଆନୁଷଙ୍ଗିକ ରସର ପ୍ରଭାବ ପରିଲକ୍ଷିତ ହେଉଥିଲେ ମଧ୍ୟ କରୁଣ ରସ ପ୍ରଧାନ ରସ ଭାବରେ ପରିବେଷିତ ହୋଇଛି । କାବ୍ୟର ପ୍ରଥମ ସର୍ଗରେ ମାୟାଦେବୀଙ୍କ ମୃତ୍ୟୁରେ ଯେଉଁ ବର୍ଣ୍ଣନା ପ୍ରଦତ୍ତ ହୋଇଛି, ତାହା କରୁଣ ରସର ଉଦ୍ରେକକାରୀ । ଶୃଙ୍ଗାର, ବୀର, ଭକ୍ତି ଓ କରୁଣ ରସ ଉକ୍ତ କାବ୍ୟରେ ସାଙ୍ଗୋପାଙ୍ଗୋ ଭାବରେ ବିଦ୍ୟମାନ । କିନ୍ତୁ କରୁଣ ରସ ପ୍ରଧାନ ରସ ।

ଅଶୋକୋତ୍ସବ ସମୟରେ ଶାକ୍ୟ ଲଳନାମାନଙ୍କର ଯେଉଁ ବର୍ଣ୍ଣନା ପ୍ରଦତ୍ତ ହୋଇଛି, ତାହା ଶୃଙ୍ଗାର ରସର ଉଦ୍ରେକକାରୀ–

ଆକର୍ଣ୍ଣ ବିଶ୍ରାନ୍ତ ନେତ୍ର ତରଳ ଚଞ୍ଚଳ
ଆକର୍ଣ୍ଣ ବିସ୍ତୃତ ନୀଳ ଭ୍ରୂଲତା ଯୁଗଳ
ବୀଣାର ମୂର୍ଚ୍ଛନା ସ୍ୱରେ
ବାକ୍ୟାଳାପ ପରସ୍ପରେ
ଉଲ୍ଲାସେ ବିଳାସେ ଚାଲିଛନ୍ତି ଦେହ ଢାଳି
ଅଳସ-ଗମନ ଯଥା ମନ୍ଥରା ମରାଳୀ ।[୪୦]

ପ୍ରତ୍ୟୂଷ କମଳ କଳି, ପ୍ରଦୋଷ ମଲ୍ଲିକା
ଅର୍ଦ୍ଧୋଦିତ ପୂର୍ଣ୍ଣଚନ୍ଦ୍ର ବିକାଶ ଚନ୍ଦ୍ରିକା
ଚିରାଭ୍ୟସ୍ତ ବାଲ୍ୟକ୍ରୀଡ଼ା
ତରଳ ତାରୁଣ୍ୟ ବ୍ରୀଡ଼ା
ବାଲ୍ୟ ଯୌବନର ସନ୍ଧି ଅପୂର୍ବ ମାଧୁରୀ
ଗମନେ ଭାଷଣେ ଦେହେ ପୂର୍ଣ୍ଣ ମାତ୍ର ପୂରି ।[୪୧]

(ଚତୁର୍ଥ ସର୍ଗ)

ଚତୁର୍ଦ୍ଦଶ ସର୍ଗରେ ଅପୂର୍ବ ନାରୀମାନଙ୍କର ସିଦ୍ଧାର୍ଥଙ୍କର ତପ ଭଗ୍ନ ନିମିତ୍ତ ବାକ୍ ଚାତୁରୀ ଓ ଅଙ୍ଗଭଙ୍ଗୀ ଶୃଙ୍ଗାର ରସ ଉଦ୍ରେକକାରୀ–

ସକଳେ ସୁବେଶା ଯୋଷା କୁଞ୍ଚିତ କୁନ୍ତଳା
ମୂର୍ତ୍ତିମତୀ ନାରୀରୂପା ଉଦିତା ଚପଳା ।
ଅର୍ଦ୍ଧ-ଅନାବୃତ ବକ୍ଷା ସୁଠାମ ଚାହାଣି
ତାଡ଼ିତ ମୋହରେ ଭେଦ କରେ ହୃଦ ଜାଣି ।

ଗୋପା ଓ ସିଦ୍ଧାର୍ଥଙ୍କର ମିଳନରେ କବି ଶୃଙ୍ଗାର ରସର ବର୍ଣ୍ଣନା ଦେଇନାହାନ୍ତି । ନଦେବା ମଧ୍ୟ ସ୍ୱାଭାବିକ । ପ୍ରକୃତି ଓ ପୁରୁଷର ଅପୂର୍ବ ମିଳନରେ ଯେତେବେଳେ ସ୍ୱୟଂ ଦେବତାଗଣ ସ୍ୱାଗତ ଜଣାଉଛନ୍ତି, ସେଠାରେ ଶୃଙ୍ଗାର ରସର ବର୍ଣ୍ଣନା କାବ୍ୟର କ୍ଷତିକାରକ ନିଶ୍ଚୟ । କାରଣ ସିଦ୍ଧାର୍ଥ ସାଧାରଣ ମାନବ ନୁହନ୍ତି । ତାଙ୍କ କ୍ଷେତ୍ରରେ ଲୌକିକ ଶୃଙ୍ଗାର ବର୍ଣ୍ଣନା ଅଯୌକ୍ତିକ ଓ ଅପ୍ରାସଙ୍ଗିକ ।

ପଞ୍ଚମ ସର୍ଗରେ ସିଦ୍ଧାର୍ଥଙ୍କର ଶକ୍ତି ପରୀକ୍ଷା ବୀର ରସର ଉଦାହରଣ । ଅବଶ୍ୟ ଏହି ବୀର ରସର ବର୍ଣ୍ଣନା ସେପରି ଉତ୍କଟ ନୁହେଁ । ନିଜ ଶକ୍ତି ପ୍ରଦର୍ଶନ ନିମିତ୍ତ ସିଦ୍ଧାର୍ଥ ରଙ୍ଗ ସ୍ଥଳରେ ପ୍ରବେଶ କରିଛନ୍ତି ଓ ସବୁ କ୍ଷେତ୍ରରେ ନିଜର ପାରଦର୍ଶିତାର ପ୍ରମାଣ ଦେଇଛନ୍ତି ।

ସପ୍ତମ ଦିନେ ଯୁବରାଜ ସିଦ୍ଧାର୍ଥ
ମିଳିଲେ ରଙ୍ଗ ସ୍ଥଳେ ମଲ୍ଲ ଯୁଦ୍ଧାର୍ଥ
ପ୍ରତିଦ୍ୱନ୍ଦୀ ଯୁବାକୁ ଈଷିତେ ଜିଣି
ସୁଯଶ ନିପୁଣତା ନେଲେ ସେ କିଣି
ବ୍ୟାୟାମ ନିପୁଣତା ବୁଦ୍ଧି କୌଶଳେ
ଶୌର୍ଯ୍ୟ ବୀର୍ଯ୍ୟ ପ୍ରତିଭା ସାମର୍ଥ୍ୟ ବଳେ
ନଥିଲା ପ୍ରତିଯୋଗୀ ଶାକ୍ୟ ରାଜ୍ୟରେ
ଆଶ୍ଚର୍ଯ୍ୟ ବିସ୍ମୟରେ ଦେଖିଲେ ନରେ ।

କାବ୍ୟରେ 'ଭକ୍ତିରସ' ସର୍ବତ୍ର ବିରାଜମାନ । ଅସିତ ଋଷିଙ୍କର ଶିଶୁ ନିକଟରେ ଶୋକାତୁର ଭାବପ୍ରକାଶ କରୁଣ ରସର ନୁହେଁ, ଭକ୍ତିରସର ପରିପ୍ରକାଶକ । କାନନ ମଧ୍ୟରେ ଜମ୍ବୁବୃକ୍ଷମୂଳେ ସିଦ୍ଧାର୍ଥ ମୌନାବସ୍ଥାରେ ବସିଥିବା ସମୟରେ ଆକାଶମାର୍ଗରେ ଗତି କରୁଥିବା ପାଞ୍ଚଜଣ ଋଷିଙ୍କ ଗତି ବନ୍ଦ ହୋଇଯାଇଛି । ସେମାନେ ଧ୍ୟାନ ବଳରେ ଜାଣିପାରିଛନ୍ତି–

ଜାଣିଲେ ଋଷିଏ ଧ୍ୟାନେ ତଥ୍ୟ ସମାଚାର
ଦୁରିତ ଦଳନେ ନାରାୟଣ ଅବତାର ।
ଜଗତ ଯନ୍ତ୍ରଣା ପାପ ହରଣେ ଜନମ
ପରଂବ୍ରହ୍ମ ପ୍ରଚାରିବେ ଧର୍ମ ଶ୍ରେଷ୍ଠତମ ।
ଭକ୍ତି ଭରେ ପ୍ରଦକ୍ଷିଣ କରି ଋଷି ଗଣେ
ଗଲେ ଚଳି ରଖି ଚିତ୍ତ ଗୌତମ ଚରଣେ ।

(ତୃତୀୟ ସର୍ଗ)

ନଦୀପାର ସମୟରେ ବୁଦ୍ଧଦେବଙ୍କ ଅଲୌକିକ ଶକ୍ତି ପ୍ରଦର୍ଶନ, ପଞ୍ଚଶିଷ୍ୟଙ୍କ ସହ କଥୋପକଥନ, ବ୍ରାହ୍ମଣ ଓ ଡକାୟତ ନିକଟରେ ଧର୍ମ ଉପଦେଶ ପ୍ରଦାନ ପ୍ରଭୃତି ଅନେକ କ୍ଷେତ୍ରରେ ଭକ୍ତିରସର ପରିପ୍ରକାଶ ଘଟିଛି ।

କିନ୍ତୁ ଏ କାବ୍ୟରେ ଫକୀରମୋହନଙ୍କର ସର୍ବଶ୍ରେଷ୍ଠ ବୈଶିଷ୍ଟ୍ୟ ହେଲା, କରୁଣରସର ଉପଯୁକ୍ତ ବର୍ଣ୍ଣନା । ନବମ ସର୍ଗରେ ସିଦ୍ଧାର୍ଥଙ୍କର ପିତା ଶୁଦ୍ଧୋଦନଙ୍କ ନିକଟରୁ ବିଦାୟ ମାଗିଯିବା ସମୟରେ କବି ଯେଉଁ ବର୍ଣ୍ଣନା ଦେଇଛନ୍ତି, ତାହା ପାଠକମାନଙ୍କ ମନରେ କରୁଣଭାବର ଉଦ୍ରେକ କରିଥାଏ । ଏହି ବର୍ଣ୍ଣନାରେ ବାତ୍ସଲ୍ୟରସ ସହିତ କରୁଣ ରସ ମିଶି ଏକାକାର ହୋଇଯାଇଛି । ବାତ୍ସଲ୍ୟମୋହରେ ଅନ୍ଧ ଶୁଦ୍ଧୋଦନ କହିଛନ୍ତି–

ଆରେ ମୋର ବାପଧନ ପ୍ରିୟ ପ୍ରାଣାଧିକ
ଅନ୍ଧର ଲଉଡ଼ି ଶାକ୍ୟ କୁଳର ମାଣିକ
ତୋହର ଜନନୀ ଶୋକ ଯାଇଛି ପାସୋରି
ତୋର ମୁଖ ଚନ୍ଦ୍ର ଦେଖି ଅଛି ପ୍ରାଣଧରି ।
× × ×
ପ୍ରଜାବତି ଗୋପାବଧୂ ଗୌତମୀ ତୋ ବିନା
ହାହାକାର କରି ପ୍ରାଣ ହରାଇବେ ସିନା
ବୃଦ୍ଧପିତା ମାତାକୁ ତୁ ନ ଯାଅ ଭସାଇ
ନ ଯାଅରେ ପ୍ରଜାଗଣେ କନ୍ଦାଇ କନ୍ଦାଇ ।
× × ×
ଶୁଝିଲା ରାଜାଙ୍କ କଣ୍ଠ ନ ସ୍ଫୁରିଲା ବାଣୀ
ଅବିରଳ ବହେ ବେନି ନୟନରୁ ପାଣି ।

ଦଶମ ସର୍ଗରେ ଛନ୍ଦକର ସିଦ୍ଧାର୍ଥଙ୍କୁ କରୁଣ ନିବେଦନ ମଧ୍ୟ କରୁଣ ରସର ଉଦ୍ରେକକାରୀ । ଗୋପାଙ୍କ ଶେଷ ଦର୍ଶନ ସମୟରେ ସିଦ୍ଧାର୍ଥଙ୍କ କାର୍ଯ୍ୟକଳାପ କରୁଣ ରସ ପ୍ରକାଶ କରିଛି । ଦ୍ୱାଦଶ ସର୍ଗର ଆରମ୍ଭରୁ ଶେଷପର୍ଯ୍ୟନ୍ତ କରୁଣ ରସର ଗଭୀର ପ୍ରବାହ ଦେଖିବାକୁ ମିଳିଥାଏ । କେବଳ ଗୋପା, ଗୌତମୀ କିମ୍ବା ଶୁଦ୍ଧୋଦନ ନୁହନ୍ତି ସମଗ୍ର ଶାକ୍ୟ ରାଜ୍ୟଟି ସିଦ୍ଧାର୍ଥଙ୍କ ଅବର୍ତ୍ତମାନରେ ଶୋକ ସାଗରରେ ପରିଣତ ହୋଇଛି ।

ପୁନଶ୍ଚ ପୁଛିଲେ ସଖୀ, କାହାନ୍ତି ସିଦ୍ଧାର୍ଥ
ଏକହିଁ ଉତ୍ତର-କାହିଁଗଲ ପ୍ରାଣନାଥ ।
× × ×
କାହାନ୍ତି କୁମାର, ଏହି କଥାହିଁ କେବଳ
ପଡ଼ିଲା କପିଳବସ୍ତୁ ନଗରେ ଚହଳ
× × ×
ଛନ୍ଦକ ମୁଖରୁ ଶୁଣି ଏହି ସମାଚାର
ନରନାରୀ ସର୍ବେ ଉଚ୍ଚେ କଲେ ହାହାକାର
ନ ଛୁଇଁଲେ ଅନ୍ନଜଳ ସାତ ଦିନ ରାତି
ସମସ୍ତଙ୍କ ଏକ କଥା କୁମାର କାହାନ୍ତି ?

ଏହିପରି ସମଗ୍ର ସର୍ଗଟି କରୁଣ ରସପୂର୍ଣ୍ଣ ହୋଇ ଅପୂର୍ବ କାବ୍ୟାନନ୍ଦ ପ୍ରଦାନ କରିଥାଏ । ସପ୍ତଦଶ ସର୍ଗରେ ବୁଦ୍ଧଦେବଙ୍କର ଶାକ୍ୟରାଜ୍ୟରେ ପ୍ରବେଶ ଓ ପିତାମାତାଙ୍କୁ ଧର୍ମଦୀକ୍ଷା ପ୍ରଦାନ ସମୟରେ କରୁଣରସ ସହିତ ବାତ୍ସଲ୍ୟରସର ପ୍ରକାଶ ଘଟିଛି । ସେହିପରି ଗୋପାଙ୍କ ନିକଟରେ ପହଞ୍ଚିବାପରେ ସେଠାରେ ଯେଉଁ ପରିବେଶ ସୃଷ୍ଟି ହୋଇଛି, ତାହା ମଧ୍ୟ କରୁଣରସ ପ୍ରକାଶ କରିଛି । ଏହିପରି ଭାବେ ବିଚାର କଲେ, ସମଗ୍ର କାବ୍ୟଟିରେ ଅନ୍ୟାନ୍ୟ ରସର ପ୍ରଭାବ ଥିଲେ ମଧ୍ୟ କରୁଣରସ ମୁଖ୍ୟରସ ଭାବରେ ପ୍ରାଧାନ୍ୟ ବିସ୍ତାର କରିଛି ।

## (ଘ) ଚରିତ୍ର ଚିତ୍ରଣ

ଫକୀରମୋହନଙ୍କ ସାହିତ୍ୟ ମୁଖ୍ୟତଃ ଚରିତ୍ର ପ୍ରଧାନ । ତାଙ୍କ ଜୀବନର ଅନୁଭୂତି ତାଙ୍କୁ ମାନବ ଚରିତ୍ର ଅଧ୍ୟୟନ କ୍ଷେତ୍ରରେ ଅପୂର୍ବ ସୁଯୋଗ ଦେଇଥିଲା । ତେଣୁ ତାଙ୍କର ଚରିତ୍ରଗୁଡ଼ିକ ପାଠକଙ୍କ ନିକଟରେ ଜୀବନ୍ତ ପରି ବୋଧ ହୋଇଥାଏ । ବୌଦ୍ଧାବତାର କାବ୍ୟରେ ବର୍ଣ୍ଣିତ ଚରିତ୍ରଗୁଡ଼ିକ ସଦ୍‌ବଂଶଜ ଓ ସାଧୁ ପ୍ରକୃତିର । ଏହା ମଧ୍ୟରେ

କେତେକ ଚରିତ୍ର ଦୁଷ୍ଟ ପ୍ରକୃତିର ଥିଲେ ମଧ୍ୟ ପରବର୍ତ୍ତୀ ସମୟରେ ବୁଦ୍ଧଦେବଙ୍କ ସଂସ୍ପର୍ଶରେ ସେମାନେ ଉତ୍ତମ ଚରିତ୍ର ଭାବରେ ପାଠକ ସମ୍ମୁଖରେ ଦେଖାଦେଇଥାନ୍ତି ।

ରାଜା ଶୁଦ୍ଧୋଦନ, ରାଣୀ ଗୌତମୀ, ଛନ୍ଦକ, ଗୋପା ଓ ସିଦ୍ଧାର୍ଥ କାବ୍ୟର ମୁଖ୍ୟ ଚରିତ୍ର । ଏଥିରେ ନାୟକ ସିଦ୍ଧାର୍ଥ ଧୀରୋଦତ୍ତ ପୁରୁଷ ଓ ନାୟିକା ହେଉଛନ୍ତି ଗୋପା । ଏହା ବ୍ୟତୀତ ଅନ୍ୟ କେତେକ ଗୌଣ ଚରିତ୍ର ଦେଖାଯାଇଥାନ୍ତି, ଯଥା– ବିମ୍ବିସାର, ଦେବଦତ୍ତ, ଆଜୀବକ, ନାବିକ, ଭୂସ୍ୱାମୀ ବ୍ରାହ୍ମଣ, ତସ୍କର, ଗୌତମୀ, ସ୍ୱର୍ଣ୍ଣକାର, ଅମ୍ବାପାଲୀ, ସାରୀପୁତ୍ର ପ୍ରଭୃତି । ଚରିତ୍ର ଚିତ୍ରଣ କ୍ଷେତ୍ରରେ କେତେକାଂଶରେ ଫକୀରମୋହନଙ୍କ ମୌଳିକତା ପରିଦୃଷ୍ଟ ହୋଇଥାଏ ।

ଶୁଦ୍ଧୋଦନ ରାଜା ହେଲେ ମଧ୍ୟ ସେ ଜଣେ ପିତା । ତାଙ୍କ ଅନ୍ତରରେ ବାତ୍ସଲ୍ୟ ମମତା ରହିଛି । ତେଣୁ ପୁତ୍ରର ବିଦାୟ ନେବା ସମୟରେ ରାଜା ଭାବରେ ନୁହେଁ, ଜଣେ ନିଃସହାୟ ପିତା ଭାବରେ ସେ କ୍ରନ୍ଦନ କରିଛନ୍ତି । ଗୌତମୀ ରାଣୀ ହେଲେବି ଜଣେ ନାରୀ । ନାରୀ ସ୍ୱଭାବତଃ ଅବଳା ଓ ସ୍ନେହୀ । ତେଣୁ ଆଦରର ପୁତ୍ର ଗୃହତ୍ୟାଗ କରିଥିବା ଜାଣିବା ପରେ ସେ ଅସହାୟ ଭାବରେ ବିଳାପ କରିଛନ୍ତି । ଗୋପା ମଧ୍ୟ ଜଣେ ନାରୀ । ନାରୀ ଯେତେ ଶିକ୍ଷିତା, ଆଧୁନିକା ହେଲେ ମଧ୍ୟ ପୁରୁଷ ନିକଟରେ ସତତ ଲଜ୍ଜାଶୀଳା । ଅଶୋକୋତ୍ସବର ଶେଷରେ ଉପସ୍ଥିତ ହୋଇଥିବା ଗୋପା ବ୍ରୀଡ଼ାଭାବ ନେଇ ମୁଖତଳକୁ ପୋତି ଉପହାର ମାଗିଛନ୍ତି । ନାରୀ କେବଳ ଶଯ୍ୟାସଙ୍ଗିନୀ ନୁହେଁ, ସେ ମଧ୍ୟ ଜୀବନ ସଙ୍ଗିନୀ । ପୁରୁଷର ସୁଖଦୁଃଖରେ ତାର ମଧ୍ୟ ଭାଗ ରହିଛି । ଏହି ମହନୀୟ ଭାବ ଫୁଟି ଉଠିଛି ଗୋପା ଚରିତ୍ର ମାଧ୍ୟମରେ ।

ସିଦ୍ଧାର୍ଥ ଜଣେ ନିର୍ବିକାର ପୁରୁଷ । ନିଜପାଇଁ ନୁହେଁ, ଜଗତବାସୀଙ୍କ ଉଦ୍ଧାର ନିମିତ୍ତ ସେ କୃଚ୍ଛ୍ର ସାଧନାରେ ବ୍ରତୀ ହୋଇଛନ୍ତି । ତଥାପି ସେ ମଧ୍ୟ ଜଣେ ସାମାଜିକ ଜୀବ । ବିଷୟ ବାସନାରୁ ସଂପୂର୍ଣ୍ଣ ନିବୃତ୍ତ ନୁହନ୍ତି । ତେଣୁ ବିଦାୟ ନେବା ସମୟରେ ପିତାଙ୍କ ଚକ୍ଷୁରେ ଅଶ୍ରୁ ଦେଖି ତାଙ୍କ ଚକ୍ଷୁରେ ମଧ୍ୟ ଅଶ୍ରୁ ଆସିଛି । ପ୍ରିୟାପତ୍ନୀ ଗୋପା ଓ ଶିଶୁପୁତ୍ର ରାହୁଳର ଶେଷ ଦର୍ଶନ ପାଇଁ ଯାଇ ସେ ମଧ୍ୟ ବିଷୟ ବାସନାରେ ଛନ୍ଦି ହୋଇପଡ଼ିଛନ୍ତି । ଫେରି ଆସିବାକୁ ପାଦରେ ଶକ୍ତି ନାହିଁ, କିନ୍ତୁ ଯେତେବେଳେ ସେ ଅନୁଭବ କରିଛନ୍ତି ଏ ଶରୀର କ୍ଷଣସ୍ଥାୟୀ, ସେତେବେଳେ ଗୋପାର ଉଦ୍ଧାର ପାଇଁ ତାଙ୍କ ପ୍ରାଣ ସ୍ଥିର ସଂକଳ୍ପ ନେଇଛି ।

ଛନ୍ଦକ ଜଣେ ଚାକର ହେଲେ ମଧ୍ୟ ତାର ମାନବିକତା ଓ ବିବେକ ରହିଛି । ପ୍ରଭୁଙ୍କ ଆଦେଶ ଅମାନ୍ୟ କରିବାର ଶକ୍ତି ତାର ନାହିଁ; କିନ୍ତୁ ରାଜକୁମାରଙ୍କ ସନ୍ନ୍ୟାସ

ଗ୍ରହଣକୁ ସେ ସହଜ ଭାବରେ ଗ୍ରହଣ କରିପାରିନାହିଁ । ପ୍ରଭୁର ଗୈରିକ ବସନ ପରିହିତ ରୂପ ଦେଖି ସେ ପିଲାଙ୍କ ପରି କାନ୍ଦି ଉଠିଛି । 'କଣ୍ଟକ' ଗୋଟିଏ ସାମାନ୍ୟ ପ୍ରାଣୀ ହେଲେ ମଧ୍ୟ ପ୍ରଭୁ ଭକ୍ତି ତାର ଅପରିସୀମ । ଅସୀମ ପଥର ଯାତ୍ରୀ ପ୍ରଭୁଙ୍କ ଅନ୍ତର୍ଦ୍ଧାନରେ ତାର ମଧ୍ୟ ହୃଦୟ କାନ୍ଦି ଉଠିଛି । ଆଖିରୁ ଗଡ଼ି ପଡ଼ିଛି ଟୋପାଟୋପା ଅଶ୍ରୁ ବିନ୍ଦୁ । ଏହିପରି ଭାବରେ ପ୍ରତ୍ୟେକଟି ଚରିତ୍ରକୁ ଫକୀରମୋହନ ଜୀବନ୍ତ କରି ପ୍ରକାଶ କରିଛନ୍ତି ଏହି ବୌଦ୍ଧାବତାର କାବ୍ୟରେ ।

## (ଙ) ଭାଷା ଓ ଶୈଳୀ :

ଫକୀରମୋହନଙ୍କ ସ୍ୱାଭାବିକ ଭାଷା ଓ ଶୈଳୀ 'ବୌଦ୍ଧାବତାର କାବ୍ୟ'ରେ ପରିଦୃଷ୍ଟ ହୁଏ ନାହିଁ । କାରଣ ଏହି କାବ୍ୟଟି ଏକ ବୌଦ୍ଧ ଦର୍ଶନମୂଳକ ରଚନା । ଏଥିରେ ବ୍ୟଙ୍ଗଶୈଳୀ କିମ୍ବା ଲୋକକଥିତ ଭାଷାର ପ୍ରୟୋଗ ହୋଇଥିଲେ, କାବ୍ୟଟିର ମହତ୍ତ୍ୱହାନି ଘଟିଥାନ୍ତା । ସେଥିପାଇଁ ତତ୍ସମ ଶବ୍ଦ ଓ ଗୁରୁ ଗମ୍ଭୀର ଶୈଳୀରେ କାବ୍ୟଟି ରଚନା କରି ଫକୀରମୋହନ ନିଜ ରଚନା ପାଟବତାର ପରାକାଷ୍ଠା ପ୍ରଦାନ କରିଛନ୍ତି ।

ପାତ୍ରମୁଖୀ ଭାଷା ବ୍ୟବହାର କରିବାରେ ଫକୀରମୋହନ କୁଣ୍ଠିତ ହୋଇନାହାନ୍ତି । ଯେତେବେଳେ ବୁଦ୍ଧଦେବ ଶିଷ୍ୟମାନଙ୍କ ନିକଟରେ ବୌଦ୍ଧଦର୍ଶନ ବ୍ୟାଖ୍ୟା କରିଛନ୍ତି, ସେତେବେଳେ ସେ ଲୋକକଥିତ ଭାଷାକୁ ସଂପୂର୍ଣ୍ଣ ପରିହାର କରିଛନ୍ତି । କାରଣ ଲୋକକଥିତ ଭାଷାରେ ବୌଦ୍ଧଦର୍ଶନର ଗୂଢ଼ତତ୍ତ୍ୱକୁ ବ୍ୟାଖ୍ୟା କରିବା ସହଜ ନୁହେଁ । ସେହି ଭାବକୁ ପ୍ରକାଶ କରିବାପାଇଁ ଆବଶ୍ୟକ ତତ୍ସମ ଶବ୍ଦର । ଯେପରି–

ଜଡ଼ ଚେତନର ସୃଷ୍ଟି ଅସୀମ ଅନନ୍ତ
ମହାଚକ୍ରେ ପ୍ରବର୍ତ୍ତିତ ନିୟତ ଯାବନ୍ତ ।
ସେହି ଭୂତଗ୍ରାମ ସେହି ଅନନ୍ତ ଚେତନ
ସ୍ୱଭାବ ସମୟ ସୂତ୍ରେ ମାତ୍ର ପ୍ରବର୍ତ୍ତନ ।

(ଊନବିଂଶ ସର୍ଗ)

ମାତା ଗୌତମୀଙ୍କ ମୁଖରେ ପୁତ୍ରର ରାଜପ୍ରାସାଦ ତ୍ୟାଗ ପରେ କବି ଯେଉଁ ଭାଷାର ପ୍ରୟୋଗ କରିଛନ୍ତି, ଗୋଟିଏ ଶୋକ ବିଧୂରା ଜନନୀ ମୁଖରେ ତାହା ପ୍ରାସଙ୍ଗିକ ହୋଇପାରିଛି । ଉଦାହରଣ ସ୍ୱରୂପ କେତୋଟି ପଦ ଦେଖନ୍ତୁ :-

ଫନ୍ଦା କରିଥିଲୁ ଦୁଇଜଣ ବୁଢ଼ାକାଳେ
କତୁରୀ ଲଗାଇ ପୁଅ ଗଲୁ ସିନା ଗଳେ
ମୋର ସିଦ୍ଧାର୍ଥରେ

× × ×

ଯେ ବାଟରେ ଗଲୁ ପୁଅ ଯିବି ସେହି ପଥେ
ଦେଶ ଦେଶାନ୍ତରେ ଭ୍ରମି ଭେଟିବି କି ସତେ
ହରା ରତନରେ

× × ×

ଏହାକି ମୋ ଲଲାଟରେ ଲିହିଥିଲେ ବିଧି
ପଣତ କାନିରୁ ଫିଟି ହଜି ଯିବ ନିଧି
କୃପା ବାରିଧିରେ ।
କାହୁଁ କାଳ ନିଦ ମୋତେ ଆସିଥିଲା ମାଡ଼ି
ବେଳ ଉଣ୍ଡି ବାପ ସିନା ପଳାଇଲୁ ଛାଡ଼ି ।
ଜୀବ ଜୀବନରେ

ରାଜମାତା ଗୌତମୀଙ୍କ ମୁଖରେ ଏହି ଭାଷା ପାତ୍ରମୁଖୀ ଓ ସ୍ୱାଭାବିକ ହୋଇପାରିଛି । କିନ୍ତୁ ରାଜା ଶୁଦ୍ଧୋଦନଙ୍କ ମୁଖରେ ଏ ଭାଷା ଶୋଭା ପାଏ ନାହିଁ । ସେ ରାଜା ଓ ପୁତ୍ରର ଭବିଷ୍ୟତ ସଂପର୍କରେ ପୂର୍ବରୁ ସଚେତନ । ଶୋକ ବିଧୂରା ପତ୍ନୀଙ୍କୁ ସାନ୍ତ୍ୱନା ଦେବାକୁ ଯାଇ ସେ କୁହନ୍ତି –

× × ବିଳାପ କରୁଛ ବୃଥା ସିନା ଆଗୋ ସତି
ମାନବ କି ଖଣ୍ଡିପାରେ ବିଧାତା ନିର୍ବନ୍ଧ ?
ସମ୍ଭାଳି ପାରେ କି ସିନ୍ଧୁ ଢେଉ ବାଲିବନ୍ଧ ?

ତତ୍ସମ ଶବ୍ଦ ସହିତ ଦେଶଜ ଶବ୍ଦର ସ୍ୱାଭାବିକ ମିଶ୍ରଣରେ କାବ୍ୟଟିର ଭାଷା ଓ ଶୈଳୀ ଅନନ୍ୟ ସାଧାରଣ ।

ସଂକ୍ଷେପରେ କହିଲେ 'ବୌଦ୍ଧାବତାର କାବ୍ୟ' 'ଅମିତାଭ' କାବ୍ୟର ଅନୁସରଣରେ ରଚିତ ହୋଇଥିଲେ ମଧ୍ୟ ଫକୀରମୋହନଙ୍କ ପ୍ରତିଭାର କୌଣସି ବିପର୍ଯ୍ୟୟ ଘଟିନାହିଁ । ଅନୁସରଣ କରିବା ଦୋଷାବହ ନୁହେଁ; କିନ୍ତୁ ଅନୁସରଣ ମଧ୍ୟରେ ସ୍ୱକୀୟତା ଫୁଟାଇବା ବିଶିଷ୍ଟ କବିଙ୍କ ବୈଶିଷ୍ଟ୍ୟ । 'ଅମିତାଭ' କାବ୍ୟର ଅନୁସରଣରେ ଉକ୍ତ କାବ୍ୟଟି ଫକୀରମୋହନ ରଚନା କରିଥିଲେ ମଧ୍ୟ ନିଜର ସ୍ୱକୀୟତା ଫୁଟାଇବାକୁ ଯତ୍‌ପରୋନାସ୍ତି ଚେଷ୍ଟା କରିଛନ୍ତି । ଫକୀରମୋହନଙ୍କ ବର୍ଣ୍ଣନା ବୈଚିତ୍ର୍ୟ, ଭାଷା ସଂଯୋଜନରେ ମିତବ୍ୟୟିତା, ଚରିତ୍ର ଚିତ୍ରଣ ପ୍ରଭୃତି କାବ୍ୟଟିକୁ ଏକ ମୌଳିକ କାବ୍ୟର ଗୌରବ ପ୍ରଦାନ କରିଥାଏ ।

## ଉପସଂହାର

ଫକୀରମୋହନ ତାଙ୍କ ସଂଘାତମୟ ଜୀବନରେ ଏକାଧିକ ଲୋକ ସଂପର୍କରେ ଆସିଛନ୍ତି ଓ ଶାସକ ଜୀବନରେ ଅନେକ ସ୍ଥାନ ପରିଭ୍ରମଣର ସୁଯୋଗ ଲାଭ କରିଛନ୍ତି । ପ୍ରତ୍ୟେକ ସୁଯୋଗର ସଦୁପଯୋଗ କରିବା ଥିଲା ଫକୀରମୋହନଙ୍କର ଲକ୍ଷ୍ୟ । ତେଣୁ ସେ ବିଭିନ୍ନ ସ୍ଥାନ ଓ ବ୍ୟକ୍ତିଙ୍କ ଜୀବନର ସ୍ମରଣୀୟ ତଥା ବୈଶିଷ୍ଟ୍ୟମୟ ଘଟଣାକୁ ନେଇ ଏକ ଅଭିନବ ଭ୍ରମଣ ବୃତ୍ତାନ୍ତ ରଚନା କଲେ, ଯା'ର ନାମ 'ଉତ୍କଳ ଭ୍ରମଣଂ' । ବାର୍ଦ୍ଧକ୍ୟାବସ୍ଥାରେ ଗୃହରେ ନିଃସଙ୍ଗ ଜୀବନ ଅତିବାହିତ କରୁଥିବା ସମୟରେ ବୁଦ୍ଧଦେବଙ୍କ ସାଧନାମୟ ଜୀବନକୁ ନେଇ ସେ ରଚନା କଲେ 'ବୌଦ୍ଧାବତାର କାବ୍ୟ' । 'ଅମିତାଭ' କାବ୍ୟର ଅନୁସରଣରେ ରଚିତ ହେଲେ ମଧ୍ୟ ଏଥିରେ ତାଙ୍କ କବିପ୍ରତିଭା ଚରମ ଉତ୍କର୍ଷତା ଲାଭ କରିଛି । ବୁଦ୍ଧଦେବଙ୍କ ଗୂଢ଼ ଦର୍ଶନକୁ ସହଜ ଓ ସରଳ ଭାବରେ ପ୍ରକାଶ କରି ଓଡ଼ିଆ ବୌଦ୍ଧ ସାହିତ୍ୟ ଇତିହାସରେ ଏକ ନୂତନ ସରଣୀର ନିର୍ଦ୍ଦେଶ ଦେଇଛନ୍ତି । ଓଡ଼ିଆ ସାହିତ୍ୟର ଇତିହାସରେ 'ଉତ୍କଳ ଭ୍ରମଣଂ' ଓ 'ବୌଦ୍ଧାବତାର କାବ୍ୟ' ସମାଜର ଦୁଇଦିଗ ନିର୍ଦ୍ଦେଶ କରୁଥିଲେ ମଧ୍ୟ ବ୍ୟଙ୍ଗ ଓ ଦର୍ଶନ ମାଧ୍ୟମରେ ସମାଜର ବ୍ୟକ୍ତିମାନଙ୍କ ମଧ୍ୟରେ ସୁରୁଚି ଓ ଆଦର୍ଶ ପ୍ରତିଷ୍ଠା କରିବା ଥିଲା ତାଙ୍କର ମୁଖ୍ୟ ଉଦ୍ଦେଶ୍ୟ ।



# ସହାୟକ ସୂଚୀ


୧. ଫକୀରମୋହନଙ୍କ କୃତିରେ ପ୍ରତିଫଳିତ ସମକାଳୀନ ସମାଜ ଚିତ୍ରର ଏକ ଅଧ୍ୟୟନ– ଅସିତ କବି । ପୃ-୩୧୩-୧୪ (ଉତ୍କଳ ବିଶ୍ୱବିଦ୍ୟାଳୟରେ ସଂରକ୍ଷିତ ପିଏଚ୍.ଡି. ସନ୍ଦର୍ଭ)

୨. ଆଧୁନିକ ସାହିତ୍ୟ ସନ୍ଦର୍ଶନ – ଦେବେନ୍ଦ୍ର ମହାନ୍ତି । ପୃ-୯୫, ୩ୟ ପ୍ରକାଶ- ୧୯୭୩ । ଫ୍ରେଣ୍ଡସ୍ ପବ୍ଲିଶର୍ସ, ବିନୋଦ ବିହାରୀ କଟକ ।

୩. ବନ୍ଦଗୀ ବନ୍ଦଗୀ ଭାଇ ଜଗମୋହନ ଲାଲ
ଆଉ ତ ବୁଝିଲ ନାହିଁ ହରମିଟ ହାଲ
ବସିଅଛ ବୁଢ଼ା ହୋଇ ଖାଇ ପେନସନ
ଦେଶପାଇଁ କର କିଛି ଏହି ନିବେଦନ ।
ଫ.ମୋ.ଗ୍ରନ୍ଥାବଳୀ – ୧ମ ଭାଗ, ପୃ-୨୧୦, ୨ୟ ସଂ- ୧୯୬୩
କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର, ବାଲୁବଜାର କଟକ ।

୪. ଓଡ଼ିଶା ବିକ୍ରମାଦିତ୍ୟ ସୁବର୍ଣ୍ଣ ଅକ୍ଷରେ
ଇତିହାସେ ଲେଖା ରହିଥିବ ଜଗତରେ
ସାମାନ୍ୟ ମନୁଷ୍ୟ ମୁହିଁ କି ଗୁଣ ଗାଇବି
ମହାରାଜ ବାହାଦୂର ହୁଅ ଚିରଜୀବୀ
ଫ.ମୋ. ଗ୍ରନ୍ଥାବଳୀ – ୧ମ ଭାଗ, ପୃ-୨୧୩ ।

୫. ଆସନ୍ତାକାଲି – ଶାରଦୀୟ ବିଶେଷାଙ୍କ ୧୯୮୫ ।
ଊନବିଂଶ ଶତାବ୍ଦୀ ଓଡ଼ିଆ ସମାଲୋଚନା ସାହିତ୍ୟର ଇତିହାସ- ବାଉରୀ ବନ୍ଧୁ କର, ପୃ-୯୧

୬. ଅଇଲେ ଶିବାଜୀ ଥରେ ଦେଖିବେ ଉତ୍କଳ
ଅଛି କି ନା ଏହା ପୂର୍ବ ପରି ଅବିକଳ ।
ଫ.ମୋ.ଗ୍ରନ୍ଥାବଳୀ - ୧ମ ଭାଗ, ପୃ-'୨୦୧

୭. ଓଡ଼ିଆ ସାହିତ୍ୟର ଇତିହାସ (୧୮୦୩-୧୯୨୦) ଡଃ ନଟବର ସାମନ୍ତରାୟ, ପୃ-୩୮୧ । ୨ୟ ସଂ- ୧୯୮୩ । ପ୍ରକାଶକ- ଡଃ ନଟବର ସାମନ୍ତରାୟ, ଲାବଣ୍ୟଭବନ, ସାମନ୍ତରାପୁର, ଭୁବନେଶ୍ୱର ।

୮. ଫ.ମୋ. ଗ୍ରନ୍ଥାବଳୀ - ପୃ-୨୧୦ । ୧ମ ଭାଗ, ୨ୟ ସଂ - ୧୯୬୩ । କଟକ ଷ୍ଟୁଡେଣ୍ଟସ ଷ୍ଟୋର, ବାଲୁବଜାର, କଟକ ।

୯. ଏଜନ୍ - ପୃ- ୨୧୦-୧୧ ।

୧୦. ଦେଖତ ବଙ୍ଗଳା ଭାଷା କି ହେଲାଣି ଆଜି
ଯତ୍ନେ ହେଲା ଅବା ଆପେ ହୋଇଛି ଏପରି
ତୁମ୍ଭ ମାତୃଭାଷା କିଁପା ନ ହେବ ସେ ସରି ?
ଫ.ମୋ. ଗ୍ରନ୍ଥାବଳୀ - ୧ମ ଭାଗ, ପୃ-୨୧୧

୧୧. ଏଜନ୍, ପୃ-୨୧୧ ।

୧୨. ଏଜନ୍, ପୃ-୨୧୧ ।

୧୩. ଓଡ଼ିଆ ସାହିତ୍ୟର କ୍ରମ ବିକାଶ - ଶ୍ରୀ ସୁରେନ୍ଦ୍ର ମହାନ୍ତି । ପୃ-୨୮୯, ୧ମ ପ୍ରକାଶ- ୧୯୭୮ । ଅଗ୍ରଦୂତ ପ୍ରକାଶନୀ, ବାଙ୍କାବଜାର, କଟକ

୧୪. ଫ.ମୋ.ଗ୍ରନ୍ଥାବଳୀ- ୧ମ ଭାଗ, ପୃ-୨୦୪, ୨ୟ ପ୍ର- ୧୯୬୩ ।

୧୫. ଏଜନ୍, ପୃ-୨୧୧ ।

୧୬. ଏଜନ୍, ପୃ-୨୧୧ ।

୧୭. ଓଡ଼ିଆ ସାହିତ୍ୟର କ୍ରମ ବିକାଶ- ଶ୍ରୀ ସୁରେନ୍ଦ୍ର ମହାନ୍ତି । ପୃ-୨୮୯ । ୧ମ ପ୍ରକାଶ- ୧୯୭୮ । ଅଗ୍ରଦୂତ ପ୍ରକାଶନୀ, ବାଙ୍କାବଜାର, କଟକ ।

୧୮. ଆତ୍ମଜୀବନ ଚରିତ - ଫକୀର ମୋହନ ସେନାପତି, ପୃ-୨୧୫, ୬ଷ୍ଠ ମୁଦ୍ରଣ- ୧୯୬୧, କଟକ ଷ୍ଟୁଡେଣ୍ଟସ ଷ୍ଟୋର ।

୧୯. ଫ.ମୋ.ଗ୍ରନ୍ଥାବଳୀ – ୧ମ ଭାଗ, ୨ୟ ସଂ- ୧୯୬୩, ବୌଦ୍ଧାବତାର କାବ୍ୟର ମୁଖବନ୍ଧ ଦ୍ରଷ୍ଟବ୍ୟ ।

୨୦. The light of Asia – Sir Edwin Arnold, Author's Preface-p-V, 3rd Edition- 1980. The Theosophical Publishing House, Adyar, Madras.

୨୧. ନବୀନ ଚନ୍ଦ୍ର ରଚନାବଳୀ– ୩ୟ ଖଣ୍ଡ, ୧ମ ପ୍ରକାଶ ୧୩୮୩ ସାଲ । ଭୂମିକା- ଡଃ ସୁବୋଧ ରଞ୍ଜନ ରାୟ । ପୃ-୩୪ । ଦତ୍ତ ଚୌଧୁରୀ ଆଣ୍ଡ ସନ୍ସ, କଲେଜ ଷ୍ଟ୍ରୀଟ ମାର୍କେଟ, କଲିକତା ।

୨୨. ଏଜନ୍, ଅମିତାଭ ମୁଖବନ୍ଧ, ପୃ-୯୧ ।

୨୩. ଫ.ମୋ.ଗ୍ରନ୍ଥାବଳୀ- '୧ମ ଭାଗ, ୨ୟ ସଂ- ୧୯୬୩ । ବୌଦ୍ଧାବତାର କାବ୍ୟ ମୁଖବନ୍ଧ, ପୃ-୧, କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର, ବାଲୁବଜାର କଟକ ।

୨୪. ନବୀନ ଚନ୍ଦ୍ର ରଚନାବଳୀ– ୩ୟ ଖଣ୍ଡ, ୧ମ ପ୍ରକାଶ ୧୩୮୩ ସାଲ, ମୁଖବନ୍ଧ- ପୃ-୯୧ । ଦତ୍ତ ଚୌଧୁରୀ ଆଣ୍ଡ ସନ୍ସ, କଲେଜଷ୍ଟ୍ରୀଟ୍ ମାର୍କେଟ୍, କଲିକତା

୨୫. ଆଧୁନିକ ବାଂଲାକାବ୍ୟ- ଶ୍ରୀ ତାରାପଦ ମୁଖୋପାଧ୍ୟାୟ (୧ମ ପର୍ବ) ପୃ-୨୫୨ । ୪ର୍ଥ ସଂସ୍କରଣ, ମିତ୍ର ଓ ଘୋଷ, ୧୦, ଶ୍ୟାମାଚରଣ ଦେ ଷ୍ଟ୍ରୀଟ୍, କଲିକତା-୧୨ ।

୨୬. ସମାଲୋଚନା– ଡଃ କୁଞ୍ଜବିହାରୀ ଦାଶ, ପୃ-୧୯, ଏପ୍ରିଲ-୧୯୬୨, ବିଶ୍ୱଭାରତୀ, ଶାନ୍ତି ନିକେତନ ।

୨୭. ନବୀନ ଚନ୍ଦ୍ର ରଚନାବଳୀ– ୪ର୍ଥ ଖଣ୍ଡ । ୧ମ ପ୍ରକାଶ- ମହାଳୟା ୧୩୮୩ସାଲ ପରିଚାୟିକା- ନବୀନ ଚନ୍ଦ୍ରେର ଧର୍ମ ଓ ଜାତୀୟତା- ଶ୍ରୀ ତ୍ରିପୁରା ଶଙ୍କର ସେନଶାସ୍ତ୍ରୀ, ପୃ-୭, ଦତ୍ତ ଚୌଧୁରୀ ଆଣ୍ଡ ସନ୍ସ, କଲେଜ ଷ୍ଟ୍ରୀଟ ମାର୍କେଟ, କଲିକତା ।

୨୮. ବୁଦ୍ଧ ପ୍ରସଙ୍ଗ – ମହେଶ ଚନ୍ଦ୍ର ଘୋଷ, ୧୩୬୩ ସାଲ, ପୃ- ୩୭, ୩୮ । ପ୍ରକାଶକ- ବିଶ୍ୱବିଦ୍ୟା ସଂଗ୍ରହ, ସଂଖ୍ୟା ୧୧୯ । ବିଶ୍ୱଭାରତୀ, ଦ୍ୱାରକାନାଥ ଠାକୁର ଲେନ୍, କଲିକତା ।

୨୯. ସଂଯୁତ ନିକାୟ ୨/୧୧୭
ଅଙ୍ଗୁତର ନିକାୟ ୭/୯
ବୁଦ୍ଧ ପ୍ରସଙ୍ଗ – ମହେଶ ଚନ୍ଦ୍ର ଘୋଷ, ପୃ-୪୦ ରୁ ଅଣାଯାଇଛି ।

୩୦. The Aryasatyas as commonly known are dukkha (Misery) Samudaya (Origin of Misery), nirodha (cessation of misery) and magga (means of the cessation of misery)

Mahayana Buddhisism – By Dr. Nalinaksha Dutta., 2nd Ed. 1976, p-256. Firmaklm Private Ltd. Calcutta.

୩୧. ସଂଯୁତ ନିକାୟ - ୧/୨୧୦ । ବୁଦ୍ଧ ପ୍ରସଙ୍ଗ- ମହେଶ ଚନ୍ଦ୍ର ଘୋଷ, ପୃ-୪୦ ରୁ ଉଦ୍ଧୃତ ।

୩୨. ମୋହ ଛେଦନ କରେ ଯେ ଲୋକ
ରହେ ନାହିଁ ପାପର ସଂପର୍କ
ଜଗତ ଅନିତ୍ୟ ଜାଣି ଜ୍ଞାନବନ୍ତ
ଜରାମରଣୁ ମୁକ୍ତ ସେ ଲୋକ ଏ ସଂସାରେ (୧୫ଶ ସର୍ଗ-୫୪ ପଦ)
ଫ.ମୋ. ଗ୍ରନ୍ଥାବଳୀ- ୧ମ ଭାଗ, ୨ୟ ସଂ- ୧୯୬୩, ପୃ-୫୦୮, କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର, ବାଲୁବଜାର କଟକ ।

୩୩. ବୁଦ୍ଧ ଓ ବୌଦ୍ଧଧର୍ମ – ଡଃ ଅନୁକୂଳ ଚନ୍ଦ୍ର ବନ୍ଦୋପାଧ୍ୟାୟ
୧ମ ସଂ- ୧୯୬୬, ପୃ-୪୨ । ପ୍ରକାଶକ- କେ.ଏଲ୍. ମୁଖୋପାଧ୍ୟାୟ, ୬/୨-ଏ ବାଞ୍ଛାରାମ ଅକ୍ରୁର ଲେନ୍, କଲିକତା-୧୨ ।

୩୪. ତନ୍ହାକଖ ୟୋହି...................ନିବ୍ବାନଂ
ସଂଯୁତ ନିକାୟ- ୩/୧୬୦ । ବୁଦ୍ଧ ପ୍ରସଙ୍ଗର ୪୧ ପୃଷ୍ଠାରୁ ଉଦ୍ଧୃତ ।

୩୫. ଖୁଦ୍ଦକନିକାୟ ଅନ୍ତର୍ଗତ ପଟିସମ୍ଭିଦା ନାମକ ଗ୍ରନ୍ଥରେ କୁହାଯାଇଛି ।
ବୁଦ୍ଧ ପ୍ରସଙ୍ଗ- ପୃ-୪୩ ରୁ ନିଆଯାଇଛି ।

୩୬. ବୁଦ୍ଧ ଓ ବୌଦ୍ଧଧର୍ମ- ଡଃ ଅନୁକୂଳ ଚନ୍ଦ୍ର ବନ୍ଦୋପାଧ୍ୟାୟ ।
୧ମ ସଂ- ୧୯୬୬, ପୃ-୪୨-୪୩ ।
ପ୍ରକାଶକ – କେ.ଏଲ୍. ମୁଖୋପାଧ୍ୟାୟ, ୬/୨ ଏ. ବାଞ୍ଛାରାମ, ଅକ୍ରୁର ଲେନ୍, କଲିକତା-୧୨ ।

# ପଞ୍ଚମ ପରିଚ୍ଛେଦ

## ଫକୀରମୋହନଙ୍କ କବିତାର ଆତ୍ମିକ ବିଭବ

ବ୍ୟାସକବି ଫକୀରମୋହନଙ୍କ କବିତା ସଂସାର ବୈଚିତ୍ର୍ୟପୂର୍ଣ୍ଣ । 'କଳା ପାଇଁ କଳା' ମତବାଦର ନୁହେଁ, ବରଂ 'ଜୀବନ ପାଇଁ କଳା' ମତବାଦର ସେ ଥିଲେ ସମର୍ଥକ । ସେ ଥିଲେ ବାସ୍ତବବାଦୀ କବି, ତାଙ୍କ କବିତାରେ କେବଳ ନିଜର ବ୍ୟକ୍ତିଗତ ଜୀବନର ହସ-କାନ୍ଦ, ସୁଖ-ଦୁଃଖ ପ୍ରତିଫଳିତ ହୋଇନାହିଁ, ସମାଜ ଜୀବନର ପ୍ରତ୍ୟେକ ଘଟଣା କଳାତ୍ମକ ରୂପନେଇ ପ୍ରତିଫଳିତ ହୋଇଛି । କବି ନିଜର ସୂକ୍ଷ୍ମ ଦୃଷ୍ଟି ବଳରେ ସମାଜକୁ ନିରୀକ୍ଷଣ କରିଛନ୍ତି, ଭଲ ମନ୍ଦ ବିଚାର କରିଛନ୍ତି, ଯାହା ସମାଜର ଜୀବନର ପରିପନ୍ଥୀ, ସମାଜ ଜୀବନକୁ କୀଟଦ୍ରଷ୍ଟ କରିଛି ବୋଲି ଅନୁଭବ କରିଛନ୍ତି, ତା ବିରୁଦ୍ଧରେ ସେ ସ୍ୱର ଉତ୍ତୋଳନ କରିଛନ୍ତି । କେତେବେଳେ ଶିକ୍ଷକ ଭାବରେ ଉପଦେଶ ପ୍ରଦାନ କରିଛନ୍ତି ତ, ଆଉ କେତେବେଳେ ବିପ୍ଳବୀର ଭୂମିକା ନେଇ ବିପ୍ଳବର ସ୍ୱର ତୋଳିଛନ୍ତି । ସେ ଏକାଧାରରେ ଶିକ୍ଷକ, ବିପ୍ଳବୀ ଓ ମାତୃଭୂମି ତଥା ମାତୃଭାଷାର ରକ୍ଷକ । ଯେଉଁ କବି ଯେତେ ପରିମାଣରେ ସମାଜ ସଚେତନ, ତାର କବିତା ସେହି ପରିମାଣରେ ହୃଦ୍ୟ ଓ ଗ୍ରହଣୀୟ । ଫକୀରମୋହନଙ୍କ କବିତାଗୁଡ଼ିକ ବିଶ୍ଳେଷଣ କଲେ, ଏହି ବିଭାଗଗୁଡ଼ିକ ସହଜରେ ତାଙ୍କ କବିତାରେ ଧରା ପଡ଼ିଯାଏ ।

### ବ୍ୟାସକବିଙ୍କ କବିତାରେ ସମାଜ ଚେତନା

ସାଧାରଣ ମାନବ ଦୃଷ୍ଟି ଅପେକ୍ଷା କବି ଦୃଷ୍ଟିରେ ଥାଏ ଏକ ସ୍ୱତନ୍ତ୍ରତା । ଏହି ସ୍ୱାତନ୍ତ୍ର୍ୟ ଯେତେ ନିବିଡ଼ ବା ଗଭୀର ତାର ଆବେଦନ ସେହି ପରିମାଣରେ ସାର୍ବଜନୀନ । ଫକୀରମୋହନଙ୍କ କବିତା ସମାଜର ନିତିଦିନିଆ ଘଟଣାକୁ ନେଇ ରଚିତ । ତାଙ୍କ କବିତାବଳୀରେ ସମାଜ ଜୀବନର ଅଶ୍ଳୀଳ ଇତିହାସ ବିରଳ ନୁହେଁ । ସମାଜରେ ବାସ କରୁଥିବା ନରନାରୀଙ୍କ ଜୀବନକୁ ନିଜର ସୂକ୍ଷ୍ମ ଅନୁଭୂତି ଓ ଅନୁଭବ ଦେଇ ବିଚାର କରିଛନ୍ତି ଏବଂ କଳାତ୍ମକ ରୂପ ଦେଇ ତାକୁ ପ୍ରକାଶ କରିଛନ୍ତି କବିତାରେ । ବାଲ୍ୟକାଳରୁ

ତାଙ୍କ ଜୀବନର ବିପର୍ଯ୍ୟୟଠାରୁ ସେ ଏହି ସମାଜକୁ ଦେଖି ଆସିଛନ୍ତି । ଜୀବନର ବିଚିତ୍ର ଅନୁଭୂତି ଏହି ଦେଖିବାକୁ ଆହୁରି ଟିକିଏ ନିବିଡ଼ କରି ଦେଇଛି ମଧ୍ୟ । ସମାଜକୁ ଉଚିତ ମାର୍ଗରେ ପରିଚାଳିତ କରିବା କ୍ଷେତ୍ରରେ କବିମାନଙ୍କର ଯେ ଏକ ବିଶେଷ ଭୂମିକା ରହିଛି, ତାହା ସେ ସଠିକ୍ ଅନୁଭବ କରିପାରିଛନ୍ତି । ସମାଜର ମଙ୍ଗଳକାମନା ଓ ସମାଜକୁ ଧର୍ମନୀତି ଶିକ୍ଷାଦେବା କବିର ପ୍ରଧାନ ଉଦ୍ଦେଶ୍ୟ । ଅଧୋପତିତ ସମାଜକୁ ଉତ୍ତମ ଶିକ୍ଷା ପ୍ରଦାନ କରି ତାକୁ ସୁପଥକୁ ଘେନିଯିବା କବିମାନଙ୍କର ମୌଳିକ କର୍ତ୍ତବ୍ୟ ବୋଲି ସେ ଅନୁଭବ କରିଛନ୍ତି । ତେଣୁ ସେ "କବି" କବିତାରେ କବିମାନଙ୍କୁ ସମ୍ବୋଧନ କରିଛନ୍ତି–

ଆହେ କବି ତୁମ୍ଭେ ଗୁରୁଜନ ସମାଜରେ
ଶିକ୍ଷା ଦିଅ ରାଜନୀତି ଧର୍ମ ଉପଦେଶ
ପବିତ୍ର ସମାଜ ନୀତି ସୁନୀତି ବିଶେଷ
ଅଥଚ ଆପଣେ ଥାଅ ବହୁତ ଅନ୍ତରେ ।[୧]

ଫକୀରମୋହନ ଅନୁଭବ କରିଥିଲେ, ସମାଜରେ ନାରୀମାନଙ୍କର ଏକ ବିଶେଷ ଭୂମିକା ରହିଛି । ନାରୀପ୍ରତି ସମ୍ମାନ ପ୍ରଦର୍ଶନ ନକଲେ ସମାଜର ଅଶେଷ କ୍ଷତି ସାଧନ ହୁଏ । ସମାଜ ଧ୍ୱଂସ ଦିଗରେ ଗତି କରେ । ଫକୀରମୋହନ ଏହି ବିଷୟକୁ ଚମତ୍କାର ଭାବରେ ବର୍ଣ୍ଣନା କରିଛନ୍ତି ତାଙ୍କର 'କ୍ଲିଓପେଟ୍ରା' ଓ 'ସତୀ ଲୁକ୍ରେସିୟା' କବିତାରେ । ନାରୀଙ୍କୁ ଅସମ୍ମାନ କରିଥିବା ଯୋଗୁଁ ରୋମ ସାମ୍ରାଜ୍ୟ ଧ୍ୱଂସ ହୋଇଛି; ସୃଷ୍ଟି ହୋଇଛି ରାମାୟଣ ଓ ମହାଭାରତ ।

ଶୈଶବରେ ଅକ୍ଷମ ଶିଶୁକୁ ପୃଥିବୀ ପରିପାଳିତ କରେ । ସେହି ଶିଶୁ ସକ୍ଷମ ହେବାପରେ, ସମାଜ ପ୍ରତି ତାର ଏକ ବିରାଟ କର୍ତ୍ତବ୍ୟ ରହିଛି, ଏକଥା ସେ ବିସ୍ମରଣ ହେବା ଉଚିତ ନୁହେଁ । କର୍ତ୍ତବ୍ୟ ପାଳନ ଉଦ୍ଦେଶ୍ୟରେ ମାନବର ଜନ୍ମ, କେବଳ ଆହାର ବିହାର ପାଇଁ ନୁହେଁ । ବଳଶାଳୀ ଓ ଧନଶାଳୀ ବ୍ୟକ୍ତି ସମାଜର ଧନହୀନ ବ୍ୟକ୍ତିଙ୍କ ଉପରେ ବାରମ୍ବାର ଆକ୍ରମଣ କରେ, ଭୋଗ ବିଳାସରେ ଜୀବନ ଅତିବାହିତ କରେ । ତାର ଏହି ଗୁଣ ଯୋଗୁଁ ନିଜକୁ ବୀର ଭାବରେ ଗର୍ବ କରିଥାଏ । କିନ୍ତୁ ଏହି ସମସ୍ତ ଗୁଣ ମାନବର ଶ୍ରେଷ୍ଠ ଗୁଣ ନୁହେଁ । ଅତ୍ୟାଚାର ଓ ଅନାଚାର କେବେ କାହାରି ଶ୍ରେଷ୍ଠତ୍ୱ ସ୍ୱୀକାର କରେ ନାହିଁ । ନେପୋଲିୟନ, ଆଲେକ୍‌ଜାଣ୍ଡର, ମିରାସିସ୍, ମାମୁଦ, ବାବର ପ୍ରଭୃତି ମାନବର ଶୋଣିତରେ ପୃଥିବୀକୁ ରଙ୍ଗ କରି ଦେଇଛନ୍ତି । ତଥାପି ସେମାନେ ଏ ପୃଥିବୀରେ ଚିରଦିନ ସ୍ଥାୟୀ ଅଧିବାସୀ ଭାବରେ କାଳାତିପାତ

କରିପାରିନାହାନ୍ତି । ମାନବର ପାପ କାର୍ଯ୍ୟର ବିଚାର ହୁଏ । ଏଣୁ ପ୍ରତ୍ୟେକ ମାନବ ସେବାରେ ନିଜକୁ ନିୟୋଜିତ କରିବା ଏକ ଶ୍ରେଷ୍ଠ କାର୍ଯ୍ୟ ବୋଲି କବି କହିଛନ୍ତି ।[୨]

ସମାଜରେ କୃଷକମାନେ ସଦାସର୍ବଦା ଅବହେଳିତ ବୋଲି ସେ ମର୍ମେ ମର୍ମେ ଅନୁଭବ କରିଥିଲେ । କୃଷକ ନିଜେ ହାଡ଼ଭଙ୍ଗା ପରିଶ୍ରମ କରି ମଧ୍ୟ ବର୍ଷକ ପର୍ଯ୍ୟନ୍ତ ନିଜର ଦାନା ଯୋଗାଡ଼ କରିପାରେନା । ତାର ସମସ୍ତ ଉତ୍ପାଦିତ ଶସ୍ୟକୁ ଜମିଦାର କଳନ୍ତର ପାଇଁ ଛଡ଼ାଇ ନିଏ । ନିଜର ଆଣ୍ଠୁଲୁଚା ଲୁଗାଖଣ୍ଡିକ ପିନ୍ଧି ଜ୍ୟେଷ୍ଠମାସର ମୁଣ୍ଡଫଟା ଖରାରେ ବିଲରେ ଖଟୁଥାଏ । ନିଜ ସ୍ତ୍ରୀପାଇଁ ଖଣ୍ଡିଏ ଲୁଗା କିଣି ଦେବାକୁ ସେ ଅକ୍ଷମ । ବାରମ୍ବାର ଆକାଶମାର୍ଗକୁ ଚାହିଁ ଚାହିଁ ସେ ତାର ଭାଗ୍ୟ ନିର୍ଦ୍ଧାରଣ କରେ । ଯେଉଁ ଦୁନିଆକୁ ସେ ଖୋରାକ ଯୋଗାଏ, ସେହି ଦୁନିଆ ତାର କୌଣସି ହିସାବ ରଖେ ନାହିଁ । ଦେଶର ପ୍ରଗତିପାଇଁ ବିଭିନ୍ନ ସ୍ଥାନରେ ସଭାସମିତି ମାଧ୍ୟମରେ ଜନଜାଗରଣ ସୃଷ୍ଟି କରିବାକୁ ଉଦ୍ୟମ ଅବ୍ୟାହତ ରହିଥିବା ସମୟରେ ଗରୀବ ଚାଷୀ ସଂପର୍କରେ ପଦେ ମାତ୍ର କଥା କହିବାକୁ କେହି ନାହାନ୍ତି । ଊନବିଂଶ ଶତାବ୍ଦୀରେ ପ୍ରଜାସ୍ୱତ୍ୱ ଆଇନ୍ କାର୍ଯ୍ୟକାରୀ ହେବାଦ୍ୱାରା ଚାଷୀକୁଳକୁ ବିପଦ ଘନେଇ ଆସିଲା । ଜମି ଉପରେ ମାଲିକାନା ସ୍ୱତ୍ୱର ଆରୋପ ଦ୍ୱାରା ଚାଷୀ ନିଜର ଖର୍ଚ୍ଚପାଇଁ ରେଜେଷ୍ଟ୍ରି ଅଫିସରେ ଜମି କ୍ରୟବିକ୍ରୟ କଲା । ପୂର୍ବରୁ ଜମିଦାରକୁ ଖଜଣା ଦେଇ ସେ ଜମି ଚାଷ କରୁଥିଲା । କିନ୍ତୁ ବର୍ତ୍ତମାନ ନିଜର ପୁଅ ଓ ଝିଅ ବିଭାଘର ଖର୍ଚ୍ଚ ତୁଲାଇବା ପାଇଁ ସେ ଜମି ବିକ୍ରି କରିବାର କ୍ଷମତା ପାଇବାରୁ କ୍ରମଶଃ ଜମି ବିକ୍ରି କରି ସେ ସର୍ବସ୍ୱତ୍ୱ ହରାଇବାକୁ ଲାଗିଲା ।[୩] କୃଷକମାନଙ୍କର ଅବସ୍ଥା ସଂପର୍କରେ ପୂର୍ବରୁ ଏପରି କେହି ସମବେଦନାର ସ୍ୱର ତୋଳିନଥିଲେ ।

ରକ୍ଷଣଶୀଳ ସମାଜରେ ବିଧବାମାନେ ଏକ ଏକ ଅଭିଶପ୍ତ ଜୀବ । ତାଙ୍କ ହୃଦୟର ବେଦନା କେହି ହୃଦୟଙ୍ଗମ କରିବାକୁ ଚେଷ୍ଟା କରେ ନାହିଁ । ଏ ସମାଜ ତାର ମୁଖ ଚାହିଁବା ପାପ ବୋଲି ଘୋଷଣା କରେ । ନିଜର ହୃଦୟାବେଗ ଅନ୍ୟ କାହା ନିକଟରେ ସେ ପ୍ରକାଶ କରିପାରେନା । ପ୍ରକାଶ କଲେବି କେହି ଶୁଣେନା । ଜୀବନର ସ୍ୱାଦ ଚାଖିବା ପୂର୍ବରୁ ଯଦି ନିରୀହା ଅବଳାଟି ବିଧବା ହୋଇପଡ଼େ, ସମାଜର କଠୋର ଶୃଙ୍ଖଳା ମାନିବାକୁ ସେ ବାଧ୍ୟ ହୋଇଥାଏ । ସକାଳଠାରୁ ସନ୍ଧ୍ୟାପର୍ଯ୍ୟନ୍ତ ନିଜର ଆଖିଲୁହକୁ ପଣତରେ ଭିଜାଇ ସେ ପରିଶ୍ରମ କରି ଚାଲେ । କେହି ତାର ପରିଶ୍ରମର ମୂଲ୍ୟ ମଧ୍ୟ ଦିଏ ନାହିଁ; କି ପଦେ ସାନ୍ତ୍ୱନାପୂର୍ଣ୍ଣ କଥା କୁହେ ନାହିଁ । ସମାଜର ଏହି ଅବହେଳିତ ବିଧବାମାନଙ୍କ ସପକ୍ଷରେ ଫକୀରମୋହନ ପ୍ରଥମେ ସ୍ୱର ତୋଳି ଏ ସମାଜ ବିଧବାର ଦୁଃଖ ନିମିତ୍ତ ଦାୟୀ ବୋଲି ଘୋଷଣା କରିଥିଲେ ।[୪]

ସମାଜର ବିଶିଷ୍ଟ ବ୍ୟକ୍ତି ଓ ସମାଜସେବୀମାନଙ୍କ ପ୍ରତି ଫକୀରମୋହନଙ୍କ ସମ୍ମାନ ଅତୁଟ ରହିଥିଲା । ତେଣୁ ସେମାନଙ୍କ ବିୟୋଗରେ ସେମାନଙ୍କର ଗୁଣାବଳୀର ପ୍ରଶଂସା କରି କବି ଅନେକଗୁଡ଼ିଏ ବ୍ୟକ୍ତି ସର୍ବସ୍ୱ କବିତା ରଚନା କରିଛନ୍ତି । ସେହି ବ୍ୟକ୍ତିମାନଙ୍କ ସଂପର୍କରେ ପରବର୍ତ୍ତୀ ସମୟରେ ଏକ ସ୍ୱତନ୍ତ୍ର ଆଲୋଚନା ପ୍ରଦତ୍ତ କରାଯିବାର ଉଦ୍ଦେଶ୍ୟ ରହିଥିବାରୁ ଏଠାରେ ସେ ସଂପର୍କରେ, କୌଣସି ଆଲୋଚନା କରାଗଲା ନାହିଁ । ଫକୀରମୋହନ ସମାଜର ପ୍ରତ୍ୟେକ ଘଟଣାରାଜିକୁ ନିଜର ଲେଖନୀ ମୁନରେ ଫୁଟାଇଅଛନ୍ତି । ଊନବିଂଶ ଶତାବ୍ଦୀର ଶେଷପାଦରେ ଇଂରାଜୀ ଶିକ୍ଷାପ୍ରାପ୍ତ ଆଧୁନିକ ଶିକ୍ଷିତଙ୍କର ମାତୃଭାଷା ପ୍ରତି ହୀନ ଦୃଷ୍ଟିଭଙ୍ଗୀ ସେ ଲକ୍ଷ୍ୟକରି ତାକୁ ପ୍ରତ୍ୟକ୍ଷରେ ବ୍ୟଙ୍ଗ କବିତା-ମାଧ୍ୟମରେ ସମାଲୋଚନା କରିଛନ୍ତି । ସମାଲୋଚକ ଡଃ ନରେନ୍ଦ୍ର ନାଥ ମିଶ୍ର କୁହନ୍ତି– "ତାଙ୍କ କବିତାରେ ସୌନ୍ଦର୍ଯ୍ୟଚେତନା ଅପେକ୍ଷା ସମାଜ ଚେତନା ଅଧିକ ବ୍ୟାପକ ଭାବରେ ପ୍ରକାଶ ପାଇଅଛି । ଯଦି କେହି ଊନବିଂଶ ଶତକର ଶେଷଭାଗ ଓ ବିଂଶ ଶତକର ଶେଷଭାଗ କେବଳ ଓଡ଼ିଶାର ନୁହେଁ, ସମଗ୍ର ପୃଥିବୀର ଚିତ୍ର ଓଡ଼ିଆ କବିତାରୁ ପାଇବାକୁ ଇଚ୍ଛା କରନ୍ତି, ତେବେ ରାଧାନାଥ ଓ ମଧୁସୂଦନଙ୍କ କବିତାରୁ ସେ ଯେଉଁ ଚିତ୍ର ପାଇବେ, ଫକୀରମୋହନଙ୍କ କବିତାରୁ ତାହାଠାରୁ ଯଥେଷ୍ଟ ପୁଷ୍କଳ ଚିତ୍ର ପାଇପାରିବେ ।"(୫) ସେଇଥିପାଇଁ ଫକୀରମୋହନଙ୍କ କବିତାଗୁଡ଼ିକର କଳାଗତ ମୂଲ୍ୟ ଅପେକ୍ଷା, ସାମାଜିକ ମୂଲ୍ୟ ଅଧିକ ସ୍ୱୀକୃତ ।

### ସମାଜ ସଂସ୍କାର

ଇଂରେଜମାନେ ଏ ଦେଶକୁ ଅଧିକାର କରିବାର ଦୀର୍ଘ ଚାଳିଶ ବର୍ଷ ପରେ ଫକୀରମୋହନଙ୍କର ଜନ୍ମ । ତାପୂର୍ବରୁ ଏ ଦେଶର ସାମାଜିକ, ଆର୍ଥନୀତିକ, ଧାର୍ମିକ ଓ ରାଜନୀତିକ ଅବସ୍ଥା ମରହଟ୍ଟାମାନଙ୍କର ଖିଆଲି ମନୋବୃତ୍ତି ଉପରେ ନିର୍ଭର କରୁଥିଲା । ମରହଟ୍ଟାମାନଙ୍କ ସମୟରେ ଓଡ଼ିଶାରେ ସ୍ଥିରତା ପରିବର୍ତ୍ତେ ଆତଙ୍କରାଜର ବିଭୀଷିକା ଜନମାନସକୁ ଆନ୍ଦୋଳିତ କରିଥିଲା । ତେଣୁ "୧୮୦୩ ସାଲରେ ଇଂରେଜମାନେ ଏ ଦେଶକୁ ଦଖଲ କରିବାପରେ ଦେଶରେ ରାଜନୈତିକ ସ୍ଥିରତା ଦେଖାଯିବା ସଙ୍ଗେ ସଙ୍ଗେ ସାଧାରଣ ଧନଜୀବନର ନିରାପତ୍ତା ପ୍ରତି ଶାସକ ଗୋଷ୍ଠୀର ଦୃଷ୍ଟି ରହିଲା । ଦୀର୍ଘକାଳ ଧରି ଅତ୍ୟାଚାରିତ, ଲାଞ୍ଛିତ ଗଣଜୀବନରେ ସ୍ଥିରତା ଲକ୍ଷିତ ହେଲା ।(୬) ଇଂରେଜମାନେ ଏ ଦେଶର କ୍ଷମତା ହାତକୁ ନେବାପରେ ଦୁଇଟି ବିଶେଷ ଘଟଣା ଓଡ଼ିଆ ଜାତିର ମେରୁଦଣ୍ଡ ଭାଙ୍ଗି ଦେଇଥିଲା । ପ୍ରଥମଟି ୧୮୬୬ ମସିହାରେ ଦେଖାଦେଇଥିବା ନଅଙ୍କ ଦୁର୍ଭିକ୍ଷ ଓ ୧୮୬୮-୬୯ ମସିହାରେ ବଙ୍ଗାଳୀମାନଙ୍କ ଦ୍ୱାରା

ଓଡ଼ିଆ ଭାଷା ବିଲୋପ ପାଇଁ ହୋଇଥିବା ହୀନ ପ୍ରଚେଷ୍ଟା । ଏତେବେଳକୁ ଫକୀରମୋହନ ସଂପୂର୍ଣ୍ଣ ଯୁବକ । ସମାଜର ବିଭିନ୍ନ ପାରିପାର୍ଶ୍ୱିକ ଅବସ୍ଥା ସଂପର୍କରେ ଆସି ସେ ମଧ୍ୟ ଅନେକ ଅଭିଜ୍ଞତାର ଅଧିକାରୀ । ଭାଷା ବିଲୋପ ଆନ୍ଦୋଳନ ବ୍ୟର୍ଥ ହେବାପରେ ଇଂରେଜମାନେ ଏ ଦେଶରେ ଆଧୁନିକ ଇଂରାଜୀ ଶିକ୍ଷାକୁ ଅଧିକ ଦ୍ରୁତତର କରିବାକୁ ଚେଷ୍ଟା କରିଛନ୍ତି । ଯାହା ଫଳରେ ଓଡ଼ିଶାର ଶିକ୍ଷିତମାନଙ୍କ ମନରେ ଏକ ନୂତନ ରୁଚିର ଅଭ୍ୟୁଦୟ ହୋଇଛି । ଏ ଜାତିର ପରଂପରା ଓ ଶିକ୍ଷାପ୍ରତି ସେମାନଙ୍କ ମନରେ ବିତୃଷ୍ଣାଭାବ ଆସିଛି । ଏମାନେ ରୂପରେ ଓଡ଼ିଆ ହେଲେ ମଧ୍ୟ ରୁଚିରେ ଇଂରେଜ ହେବାକୁ ଆଗ୍ରହ ପ୍ରକାଶ କରି କେବଳ ବିଦେଶୀ ପୁସ୍ତକ ପାଠ କରିବାରେ ମନୋନିବେଶ କରିଛନ୍ତି । ସେତେବେଳେ ଓଡ଼ିଶାରେ ସମାଜ ସଂସ୍କାର ପାଇଁ ଯେଉଁ କେତେଜଣ ଆଗଭର ହୋଇଥିଲେ ତନ୍ମଧ୍ୟରେ ଫକୀରମୋହନ ଅନ୍ୟତମ ।[୭] ପାଶ୍ଚାତ୍ୟ ଶିକ୍ଷାପ୍ରେମୀ ଓଡ଼ିଶାର ଯୁବକଙ୍କ ହାବଭାବ ଲକ୍ଷ୍ୟକରି ଫକୀରମୋହନ ଲେଖିଥିଲେ–

ବେଭାର ଦେଖୁଛି ଯେ ଲୋକଙ୍କର
ଦେଶୀ ଜିନିଷରେ ନାହିଁ ଆଦର
କେତେ ଲୋକ ଟଙ୍କା ପଇସା ଦେଇ
ଯାଆନ୍ତି ବିଲାତି ଜିନିଷ ନେଇ ।

(ମୁଁ ହାଟ ବାହୁଡ଼ା– ଅବସର ବାସରେ)

ସମାଜରେ ବ୍ରାହ୍ମଣମାନେ ହେଉଛନ୍ତି ନୀତିନିୟମ ନିର୍ଦ୍ଧାରକ । ତୀବ୍ର ରକ୍ଷଣଶୀଳତା ଓ ଭୂରି ଭୋଜନର ଏମାନେ ହେଉଛନ୍ତି ଏକ ଏକ ଜୀବନ୍ତ ବିଗ୍ରହ । ଏମାନଙ୍କଠାରେ ଦୟାମାୟାର ଲେଶମାତ୍ର ଚିହ୍ନ ନାହିଁ । ବିଧବା ନାରୀର ଆକୁଳ କ୍ରନ୍ଦନ ଏମାନଙ୍କ ହୃଦୟର ରୁଦ୍ଧକୋଠରୀରେ ପ୍ରବେଶ କରିପାରେ ନାହିଁ । ଧର୍ମଶାସ୍ତ୍ରର ଦ୍ୱାହି ଦେଇ ସମାଜରେ ବ୍ରାହ୍ମଣ ଅନ୍ୟାୟ ଓ ଅନୀତିକୁ ପରୋକ୍ଷରେ ପ୍ରଶ୍ରୟ ଦିଅନ୍ତି । ବିଧବାମାନଙ୍କର ପୁନଃବିବାହ ହେଲେ କାଳେ ସେମାନଙ୍କର ଦହି ଚୁଡ଼ା ଭାଗ ଶୂନ୍ୟରେ ମିଳାଇଯିବ, ସେଥିପାଇଁ ସେମାନେ ସତତ ବ୍ୟସ୍ତ ।[୮] ସମାଜରେ ପରିପୂର୍ଣ୍ଣ ଏହି କୁସଂସ୍କାର ବିଲୋପ ପାଇଁ ଫକୀରମୋହନ ସ୍ୱର ଉତ୍ତୋଳନ କରିଥିଲେ ।

ଏ ରକ୍ଷଣଶୀଳ ଓ ସ୍ୱାର୍ଥପର ସମାଜ ନାରୀକୁ କଳଙ୍କ ସାଗରରେ ନିକ୍ଷେପ କରେ । ନାରୀ ନିଜର ଜୀବିକା ଉପାର୍ଜନ ପାଇଁ ଦେହ ବ୍ୟବସାୟ କରେ । ସମାଜରେ ଭ୍ରଷ୍ଟାଚାର ଓ ଅନାଚାର ସ୍ରୋତ ଛୁଟି ଚାଲେ । ଏଥିପାଇଁ ନାରୀ ଦାୟୀ ନୁହେଁ, ଦାୟୀ ଏ ସମାଜ । ସମାଜ ତାକୁ ଉପେକ୍ଷା କରିନଥିଲେ, କୁସଙ୍ଗ ସଂସ୍ପର୍ଶରେ ଆସିନଥିଲେ

ତାର ଏପରି ଅଧୋଗତି ହୋଇ ନଥାନ୍ତା । ସମାଜର ଏହି ପତନଶୀଳ ଅବସ୍ଥା ଲକ୍ଷ୍ୟକରି ଫକୀରମୋହନ କହିଛନ୍ତି—

ମୋ ବିଶ୍ୱାସ ଏକା ତୋର ନାହିଁ କିଛି ଦୋଷ
ସମାଜ ଏଥକୁ ଦାୟୀ ଅଛନ୍ତି ଅବଶ୍ୟ
ସଂସର୍ଗ ଶିକ୍ଷାରେ ତୁହି ହେଲୁ ଏତେ ସରି
ସମାଜ ଉପେକ୍ଷା ତତେ କଲେ ବା କିପରି ?

(ବାରବିଳାସିନୀ-ଅବସରନାମରେ)

ପୁରୁଷ ପ୍ରଧାନ ସମାଜରେ ନାରୀମାନେ ପୁରୁଷମାନଙ୍କର କ୍ରୀତଦାସୀ ସଦୃଶ । ପରିବାରର କୌଣସି ଗୁରୁତ୍ୱପୂର୍ଣ୍ଣ ଘଟଣାରେ ନାରୀମାନଙ୍କର ଭୂମିକା ମୂଲ୍ୟହୀନ । କିନ୍ତୁ ନାରୀମାନଙ୍କର ସମାଜରେ ପୁରୁଷମାନଙ୍କ ପରି ଯେ ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି, ଆମେ ସେ କଥା ବିସ୍ମରଣ ହୋଇ ଯାଇଛି । ନାରୀମାନଙ୍କୁ ଉପଯୁକ୍ତ ସମ୍ମାନ ଦେଇ ନ ଶିଖିଲେ ସମାଜର ଉନ୍ନତି ଅସମ୍ଭବ । ଫକୀରମୋହନ ସମାଜର ପୁରୁଷମାନଙ୍କୁ ନାରୀମାନଙ୍କୁ ଉପଯୁକ୍ତ ସମ୍ମାନ ଦେବାକୁ ଅନୁରୋଧ କରିଛନ୍ତି । ନାରୀର ତପ୍ତ ଅଭିଶାପ ପୁରୁଷ ସମାଜକୁ କିପରି ଧ୍ୱଂସସ୍ତୂପରେ ପରିଣତ କରିପାରେ, ତାର ଜୀବନ୍ତ ପ୍ରତୀକ ସତୀ ଲୁକ୍ରେସିୟା । ସ୍ୱାମୀଙ୍କ ଅନୁପସ୍ଥିତିରେ ଟାର୍କୁଇନ୍ ବଂଶଜ ଯୁବରାଜ ସେକ୍‌ସଟସ୍ ବଳପୂର୍ବକ ଲୁକ୍ରେସିୟାଙ୍କ ସତୀତ୍ୱ ଅପହରଣ କରିବାରୁ ଇଟାଲୀର କିପରି ଶୋଚନୀୟ ପରିଣତି ହୋଇଥିଲା, ତାର ସୁନ୍ଦର ବ୍ୟାଖ୍ୟା କବି 'ସତୀ ଲୁକ୍ରେସିୟା' କବିତାରେ ପ୍ରକାଶ କରିଛନ୍ତି । ଇଟାଲୀର ସୌନ୍ଦର୍ଯ୍ୟବର୍ଦ୍ଧନକାରିଣୀ ଟାଇବାର ନଦୀ ତାର ସ୍ୱବର୍ଣ୍ଣ ବର୍ଣ୍ଣ ପରିହାର କରି ରକ୍ତରଙ୍ଗରେ ରଞ୍ଜିତ ହୋଇଯାଇଥିଲା । ଏହି ଘଟଣାରୁ ଧ୍ୱଂସ ହେଲା ଇଟାଲୀର କାରୁକାର୍ଯ୍ୟପୂର୍ଣ୍ଣ ରାଜପ୍ରାସାଦ ।

ନାରୀର ଦୁଇଟି ରୂପ । ଗୋଟିଏ ଗଠନାତ୍ମକ ଓ ଅପରଟି ଧ୍ୱଂସାତ୍ମକ । ପୁରୁଷ ଜାତିର ଅପକର୍ମ ପାଇଁ ଇଟାଲୀ ରାଜପ୍ରାସାଦ ଧ୍ୱଂସ ସ୍ତୂପରେ ପରିଣତ ହେଲା । 'ସତୀ ଲୁକ୍ରେସିୟା' ଏଥିପାଇଁ ଦାୟୀ ନୁହନ୍ତି । କିନ୍ତୁ କ୍ଲିଓପେଟ୍ରାର ରୂପାନଳ ବିଶାଳ ରୋମ ନଗରୀକୁ ଧ୍ୱଂସ କରିଦେଇଥିଲା । ଏଠାରେ କିନ୍ତୁ ନାରୀ ଧ୍ୱଂସର ପ୍ରତୀକ । ବଙ୍ଗୀୟ କବି ନବୀନଚନ୍ଦ୍ର ସେନ୍‌ଙ୍କ 'ଅବକାଶ ରଞ୍ଜିନୀ'ରେ 'କ୍ଲିଓପେଟ୍ରା' ନାମରେ ଯେଉଁ କବିତାଟି ଦେଖିବାକୁ ମିଳେ, ତାର ଭାବାର୍ଥ ଅନୁବାଦରେ ଉକ୍ତ କବିତାଟି ଫକୀରମୋହନ ରଚନା କରିଥିବା ପରି ଅନୁମିତ ହୋଇଥାଏ । ନବୀନଚନ୍ଦ୍ରଙ୍କ 'କ୍ଲିଓପେଟ୍ରା' ଏକ ବିରାଟ କବିତା । ଏଥିରେ ଗୋଟିଏ ଜାତିର ସଂପୂର୍ଣ୍ଣ ଇତିହାସ ଲିପିବଦ୍ଧ ହୋଇଛି । କିନ୍ତୁ ଫକୀରମୋହନଙ୍କ କବିତାଟି ଏହାର ସଂକ୍ଷିପ୍ତସାର ମାତ୍ର ।

ସେ ଯାହାହେଉ ସମାଜରେ ନାରୀ ଓ ପୁରୁଷ ଉଭୟଙ୍କର ଭୂମିକା ଅପରିହାର୍ଯ୍ୟ; ଏହି କଥାଟି ଫକୀରମୋହନ ପ୍ରକାଶ କରିବାକୁ ଚାହାନ୍ତି । ସମାଜର ପ୍ରତ୍ୟେକ ଘଟଣାରାଜି ଉପରେ ଆଲୋକପାତ କରି ସମାଜ ସଂସ୍କାର କରିବା ଥିଲା ଫକୀରମୋହନଙ୍କର ଉଦ୍ଦେଶ୍ୟ । ତେଣୁ ତାଙ୍କ କବିତା ସଂସାର ବହୁବିଧ ବୈଚିତ୍ର୍ୟପୂର୍ଣ୍ଣ ଘଟଣାବଳୀରେ ପରିପୂର୍ଣ୍ଣ । କବିତାକୁ ସେ ସୌଖୀନ କାର୍ଯ୍ୟଭାବରେ ନୁହେଁ ବରଂ ସେ ଏହାକୁ ସମାଜ ସଂସ୍କାରପାଇଁ ଏକ ଅମୋଘ ଅସ୍ତ୍ର ରୂପେ ବ୍ୟବହାର କରିଥିଲେ ।

## ବିଧବା ପ୍ରତି ସମ୍ବେଦନା

ଊନବିଂଶ ଶତାବ୍ଦୀ ସମଗ୍ର ଭାରତବର୍ଷରେ ଏକ ନବଜାଗରଣ ସମୟ । ବଙ୍ଗଳାର ସୁଯୋଗ୍ୟ ପୁତ୍ର ଇଂରାଜୀ ଶିକ୍ଷାପ୍ରାପ୍ତ ଆଧୁନିକ ଶିକ୍ଷିତ ରାଜା ରାମମୋହନ ରାୟଙ୍କ ପ୍ରତ୍ୟକ୍ଷ ଉଦ୍ୟମରେ ଏ ସମୟରେ ସାମାଜିକ ଜୀବନରେ କେତେକ ପରିବର୍ତ୍ତନ ସାଧିତ ହୋଇଥିଲା । ରକ୍ଷଣଶୀଳ ହିନ୍ଦୁ ସମାଜର ଅନେକ କୁସଂସ୍କାର ସମାଜକୁ ଅଧୋଗତିର ଚରମ ସୀମାରେ ଉପନୀତ କରାଇଥିଲା । ୧୮୩୦ ମସିହା ଜାନୁଆରୀ ୨୩ ତାରିଖରେ ରାଜା ରାମମୋହନ ରାୟ 'ବ୍ରାହ୍ମ ସମାଜ' ପ୍ରତିଷ୍ଠା କରନ୍ତି । ପରଂପରା ଅନୁସୃତ ବଦ୍ଧ କୁସଂସ୍କାର ଭାବରାଶିରେ ଯେତେବେଳେ ଏ ଦେଶ ପରିପୂର୍ଣ୍ଣ ହୋଇ ଉଠିଥିଲା, ସେତେବେଳେ ରାଜା ରାମମୋହନ ରାୟ ଭାରତୀୟ ଏକେଶ୍ୱରବାଦକୁ ପୁନଃପ୍ରତିଷ୍ଠା କରି ଏକ ନବଯୁଗ ଆଗମନର ଶୁଭବାର୍ତ୍ତା ପ୍ରଚାର କରିଥିଲେ ।[୯] ଏହି ବ୍ରାହ୍ମସମାଜର ମୁଖ୍ୟ ଉଦ୍ଦେଶ୍ୟ ଥିଲା, କୁସଂସ୍କାର ପରିପୂର୍ଣ୍ଣ ହିନ୍ଦୁ ସମାଜକୁ ଉଚିତ୍ ମାର୍ଗରେ ପରିଚାଳିତ କରିବା । ସେତେବେଳେ 'ବ୍ରାହ୍ମ ସମାଜ'ର ନୀତିଦ୍ୱାରା ସମଗ୍ର ଭାରତବର୍ଷ ଗଭୀର ଭାବରେ ପ୍ରଭାବିତ ହୋଇ ପଡ଼ିଥିଲା ।

ଏହି ବ୍ରାହ୍ମସମାଜ ସର୍ବପ୍ରଥମେ ବିଧବା ବିବାହ ସପକ୍ଷରେ ସ୍ୱର ଉତ୍ତୋଳନ କରି ରକ୍ଷଣଶୀଳ ହିନ୍ଦୁ ସମାଜରେ ଏକ ଆଲୋଡ଼ନ ସୃଷ୍ଟି କରିଥିଲା । ଏହି ବ୍ରାହ୍ମଧର୍ମର ପ୍ରଚାର ଯୋଗୁଁ ଓଡ଼ିଶା ମଧ୍ୟ କେତେକାଂଶରେ ପ୍ରଭାବିତ ହୋଇ କୁସଂସ୍କାର ଓ ରକ୍ଷଣଶୀଳତା ବିରୋଧରେ ସ୍ୱର ଉତ୍ତୋଳନ କରିଥିଲା । ବଙ୍ଗଳାରେ ଏହି ଆନ୍ଦୋଳନ ବ୍ୟାପକ ରୂପ ଗ୍ରହଣ କରିବାରୁ, ସେଠାରେ କେତେଜଣ ବିଶିଷ୍ଟ କବି ବିଧବା ଜୀବନର କରୁଣ ଇତିହାସ ଆଲୋଚନା କରି ବିଧବା ବିବାହ ସପକ୍ଷରେ ପ୍ରଚାର ଚଳାଇ ଥିଲେ । ସେମାନଙ୍କ ମଧ୍ୟରେ ବଙ୍ଗୀୟ କବି ନବୀନଚନ୍ଦ୍ର ସେନ ଅନ୍ୟତମ । ତାଙ୍କର ସମାଲୋଚକ କୁହନ୍ତି ନବୀନଚନ୍ଦ୍ରଙ୍କ ବିଧବା ସଂପର୍କୀୟ କବିତାଗୁଡ଼ିକରେ "ବିଧବାର ବ୍ୟର୍ଥଜୀବନ

ଓ ଯୌବନ, ତାର ପର ନିର୍ଭରଶୀଳତା ଓ ଅସହାୟତା, ଅବରୁଦ୍ଧ ମନର ମର୍ମନ୍ତୁଦ ହାହାକାର ଅତ୍ୟନ୍ତ ଆକର୍ଷଣୀୟଭାବେ ଏହା ମଧ୍ୟରେ ଅଭିବ୍ୟକ୍ତ ହୋଇଛି।"(୧୦)

ଓଡ଼ିଶାରେ ଫକୀରମୋହନ ବିଧବା ନାରୀମାନଙ୍କ ଦାରୁଣ ଯନ୍ତ୍ରଣାମୟ ଜୀବନ ଲକ୍ଷ୍ୟକରି ମର୍ମାହତ ହୋଇଛନ୍ତି। ଏହି ସମାଜର ଅନ୍ୟାୟ ଆଚରଣ ତାଙ୍କର ସହାନୁଭୂତିଶୀଳ ହୃଦୟକୁ ଦାରୁଣ ଆଘାତ ଦେଇଛି। ବିଧବାର ଦୋଷ କେଉଁଠି ସେ ଅନୁଭବ କରିପାରିନାହାନ୍ତି। ବାଲ୍ୟକାଳରୁ ନିରୀହା କନ୍ୟାଟିକୁ ଷାଠିଏ ବର୍ଷର ବୃଦ୍ଧ ହସ୍ତରେ ସମର୍ପଣ କରି ଦିଆଯାଏ, ଯେତେବେଳେ ସେ ବିବାହ କ'ଣ ଜାଣି ନଥାଏ। 'ବିବାହ' ଶବ୍ଦର ଆକ୍ଷରିକ ଅର୍ଥ ଉପଲବ୍ଧି କରିବାବେଳକୁ ସେ ହୋଇସାରିଥାଏ ବିଧବା। ଦ୍ୱିତୀୟଥର ବିବାହ ବନ୍ଧନରେ ଛନ୍ଦି ହେବାକୁ, ସମାଜ ତାକୁ ବାରଣ କରେ। ବିଚରା ନିରୀହା ଅବଳାର ଚକ୍ଷୁ ଲୋତକରେ ପୂର୍ଣ୍ଣ ହୋଇଯାଏ ବାଡ଼ି ପୋଖରୀ। ତାର ଅନ୍ତରର ବେଦନା କେହି ଥରେ ବୁଝିବାକୁ ଚେଷ୍ଟା କରେନା। କୌଣସି ଦୁର୍ବଳ ମୁହୂର୍ତ୍ତରେ ଯଦି କିଛି କୁକୀର୍ତ୍ତି କରି ବସେ ସମାଜର କୁତ୍ସାରଟନା ତାକୁ ସହ୍ୟ କରିବାକୁ ପଡ଼େ। ଜୀବନର ଅନ୍ୟ ଉପାୟ ନଦେଖି ଆତ୍ମହତ୍ୟାକୁ ନିଜର ପାଥେୟ କରିନିଏ। ବିଚରା ଅବଳା ଏକାଦଶୀ ଦିନ ନିର୍ଜଳା ଉପବାସ ରହିବ। ତାର ମନର ମରମ ବ୍ୟଥାର ସାନ୍ତ୍ୱନା ତାର ଦୁଇଟୋପା ଚକ୍ଷୁ ଜଳ। ଦରଦୀ କବି ଫକୀରମୋହନ ବିଧବାଟିର ଜୀବନଯାପନ ପ୍ରଣାଳୀ ବର୍ଣ୍ଣନା କରି ଲେଖିଛନ୍ତି–

ଆଜି ଏକାଦଶୀ ତିଥି ତା ପୁଣି ନିର୍ଜଳା
ସବୁ କଷ୍ଟ ସହି ସହି ପଡ଼ିଛି ଅବଳା।
ଶୁଖିଛି ହୃଦୟ କାନ୍ଦି କାନ୍ଦି ବହୁଦିନ
ଏତେ କଷ୍ଟେ ପଡ଼ି ମଧ୍ୟ ନେତ୍ର ଅଶ୍ରୁହୀନ
କାତରେ ପକାଏ ଉଷ୍ଣ ପବନ ନିଃଶ୍ୱାସ
ଅଭିଶାପ ବୋଲି ମୁହିଁ କରୁଛି ବିଶ୍ୱାସ

(ବିଧବାର ଅଭିଶାପ - ପୂଜାଫୁଲ)

ଉକ୍ତ କବିତାଟିର ଭାବସାମ୍ୟ ନବୀନ ଚନ୍ଦ୍ର ସେନଙ୍କ 'ବିଧବା କାମିନୀ'ରେ ଲକ୍ଷ୍ୟ କରାଯାଇଥାଏ।

ଏଖନଓ ଦେଖିଯେନ ନୟନେର କାଛେ
ଦୀନଭାବେ ମ୍ଳାନ ମୁଖେ ବସିୟା ଦୁଃଖିନୀ

ଭାବିତେଛେ ଏ ସଂସାରେ କାର ଭାବେ ବାଁଚେ
ନୀରବେ ବିରଳେ ବସି, କାନ୍ଦେ ଅନାଥିନୀ
ଏଖନଓ ଦେଖିଯେନ କାତର ନୟନେ
ଦୁଃଖିନୀ ଚାହିୟା ଆଛେ ଏ ଦୁଃଖୀର ପାନେ ।
କଥାନାହି ମୁଖେ କିନ୍ତୁ ଯୁଗଳ ନୟନେ
ବଲିଛେ ଲଜ୍ଜାୟ ଯାହା ମୁଖେ ନାହି ଆନେ ।

ପୁରୁଷପ୍ରଧାନ ସମାଜରେ ଷାଠିଏ ବର୍ଷ ବୃଦ୍ଧର ପୁନଃ ବିବାହକୁ ଏ ସମାଜ ସ୍ୱୀକୃତି ପ୍ରଦାନ କରେ, ମାତ୍ର ଷୋଡ଼ଶୀ ତରୁଣୀ ଥରେ ବିଧବା ହେବା ମାତ୍ରେ ତାର ପୁନର୍ବାର ବିବାହ ସମାଜରେ ଅସିଦ୍ଧ ବୋଲି ଘୋଷିତ ହୁଏ । ସମାଜର ପଚନଶୀଳ କୁସଂସ୍କାରପୂର୍ଣ୍ଣ ଏହି ମନୋବୃତ୍ତି ଉନ୍ନତ ସମାଜର ପରିପନ୍ଥୀ ନିଶ୍ଚୟ । ଫକୀରମୋହନ ସମାଜର ଏହି ରକ୍ଷଣଶୀଳ ମନୋବୃତ୍ତିକୁ କଠୋର ସମାଲୋଚନା କରିଛନ୍ତି ।

ଆମ ହିନ୍ଦୁ ସମାଜରେ ବ୍ରାହ୍ମଣମାନେ ଏକ ସ୍ୱତନ୍ତ୍ର ସ୍ୱୀକୃତି ଲାଭ କରିଛନ୍ତି । ସେମାନେ ହେଉଛନ୍ତି ନୀତିନିୟମର ପ୍ରବକ୍ତା ଓ ତାର ପ୍ରୟୋଗକର୍ତ୍ତା ମଧ୍ୟ । ଏମାନଙ୍କ ଚକ୍ଷୁରେ ବିଧବାମାନେ ମଣିଷ ନୁହନ୍ତି । ସମାଜର ଏକ ଉନ୍ନତ ଜୀବ ଭାବରେ ତାଙ୍କୁ ସ୍ୱୀକୃତି ଦିଅନ୍ତି ନାହିଁ । ରକ୍ଷଣଶୀଳ ବ୍ରାହ୍ମଣ ସମାଜ ହିନ୍ଦୁ ବିଧବା ବିବାହର ସଂପୂର୍ଣ୍ଣ ବିରୋଧୀ । ବିଧବା ନାରୀ ବେଶ୍ୟା ହୋଇ ଚାଲିଗଲେ ଏମାନଙ୍କର କୌଣସି ଆପତ୍ତି ନାହିଁ । ଅଥଚ ଦ୍ୱିତୀୟଥର ବିବାହ ଏମାନଙ୍କ ଚକ୍ଷୁରେ ଅସହ୍ୟ । ଫକୀରମୋହନ ଏହା ଲକ୍ଷ୍ୟକରି କହିଛନ୍ତି–

ଶାସନର ଯେତେ ବ୍ରାହ୍ମଣ ଅଛନ୍ତି
କରିବା ଗୋଟାଏ ସଭା
ରାଣ୍ଡ ଝିଅ ବୋହୂ ବେଶ୍ୟା ହୋଇଯାଉ
ତାହାକୁ ନ ଦେବା ବିଭା ।

(ରାମରଥ କଥା- ଅବସରବାସରେ)

ଏହି ସ୍ୱାର୍ଥପର ବ୍ରାହ୍ମଣମାନଙ୍କ ଚକ୍ଷୁରେ ବିଧବାବିବାହ ଯେତେ ବଡ଼ ବିଷୟ ନୁହେଁ, ତାହା ଅପେକ୍ଷା ଅଧିକ ଗୁରୁତ୍ୱ ସେମାନଙ୍କର ଭୂରିଭୋଜନ । ବିଧବାମାନେ ବିବାହ ହେଲେ ସେମାନଙ୍କୁ ଆଉ ଦହିଚୁଡ଼ା ମିଳିବ ନାହିଁ; ଭବିଷ୍ୟତର ଏହି ଆଶଙ୍କାରେ ଏମାନେ ମ୍ରିୟମାଣ ।

'ଚନ୍ଦ୍ରପ୍ରଭାର ନିର୍ଜଳା ଏକାଦଶୀ' କବିତାରେ ବିଧବାର କରୁଣ ଜୀବନ କାହାଣୀ ବର୍ଣ୍ଣିତ । ବିଶୁରଥ ଷାଠିଏ ବର୍ଷର ବୃଦ୍ଧ ହୋଇ ମଧ୍ୟ କନ୍ୟା ସୁନା ଦେଇ ରାମଚନ୍ଦ୍ର ମିଶ୍ରଙ୍କ ଆଠବର୍ଷ କନ୍ୟା ଚନ୍ଦ୍ରପ୍ରଭାକୁ ବିବାହ କରିଛନ୍ତି, ଯେତେବେଳେ କି 'ବିବାହ' ଶବ୍ଦର ଆଭିଧାନିକ ଅର୍ଥ ଚନ୍ଦ୍ରପ୍ରଭାକୁ ଜଣାନାହିଁ । ନିଷ୍ଠୁର ସମାଜ ସେହି ବିବାହକୁ ବୈଦିକ ବିବାହ ଭାବରେ ଗ୍ରହଣ କରିନେଲା । ବିବାହର ଗୋଟିଏ ବର୍ଷ ପରେ ନଅ ବର୍ଷର କନ୍ୟା ଚନ୍ଦ୍ରପ୍ରଭା ବୈଧବ୍ୟର ଦାରୁଣ ଯନ୍ତ୍ରଣାର ଶିକାର ହେଲା । ତାର ସମସ୍ତ ସୁଖର ଦିନ ଗୁଡ଼ିକରେ ପୂର୍ଣ୍ଣଚ୍ଛେଦ ପଡ଼ିଲା । ନଅବର୍ଷର ପିଲା ହବିଷାନ୍ନ ଭକ୍ଷଣ କଲା । ଏକାଦଶୀ ଦିନ ଉପବାସ କଲା । ସମାଜର ସୁଖଦିନ ଜାଣିବା ପୂର୍ବରୁ ତା କପାଳରୁ ସୁଖର ସମସ୍ତ ଆକର୍ଷଣ ଚିରଦିନ ପାଇଁ ଲୁପ୍ତ ହୋଇ ଗଲା । ଯେଉଁ ସମାଜ ନିରୀହା ଅବଳାଟିର ସମସ୍ତ ସୁଖ ସୌଭାଗ୍ୟ ଛଡ଼ାଇ ନେଲା, ସେ ସମାଜର ମଙ୍ଗଳ କଦାପି ସମ୍ଭବ ହୋଇପାରେନା । ଛୋଟ କଳିକାଟିର ଅଭିଶାପରେ ଏ ସମାଜର ଧ୍ୱଂସ ଅନିବାର୍ଯ୍ୟ ବୋଲି କବି ଦୃଢ଼ ମତ ପୋଷଣ କରିଛନ୍ତି ।[୧୧] 'ବିଧବାର ଅଭିଶାପ' କବିତାରେ କବିଙ୍କର ଏହି ସହାନୁଭୂତିଶୀଳ ମନୋଭାବର ମନୋଜ୍ଞ ପରିପ୍ରକାଶ ଘଟିଛି । ଏଗାରବର୍ଷ କନ୍ୟାଟି ଅଚାନକ ବୈଧବ୍ୟ ଯନ୍ତ୍ରଣା ଭୋଗିବାରୁ ଶାଶୁ ଓ ଶ୍ୱଶୁରଙ୍କ ଦ୍ୱାରା ବିତାଡ଼ିତା ହୋଇ ନିଜ କର୍ମ ଆଦରି ବାପ ଘରେ ଆଶ୍ରୟ ନେଇଛି । ତାର ବଡ଼ ଭାଉଜମାନେ ଯେତେବେଳ ହସ ଖୁସିରେ ଦିନ ଅତିବାହିତ କରୁଛନ୍ତି ସେତେବେଳେ ବିଚରା ନିରୀହାଟିର ଆଖି ଲୁହରେ ପଣତ ଭିଜିଯାଉଛି । କାର୍ଯ୍ୟରେ ସାମାନ୍ୟ ତ୍ରୁଟି ପରିଲକ୍ଷିତ ହେଲେ ଭାଉଜମାନଙ୍କର ଅକଥନୀୟ ଅତ୍ୟାଚାର ସହ୍ୟ କରିବାକୁ ପଡ଼େ । ଏକାଦଶୀଦିନ ଉପବାସରେ ମଧ୍ୟ ଘରର ଯାବତୀୟ କାର୍ଯ୍ୟ ସମ୍ଭାଳିବାକୁ ପଡ଼େ । ହିନ୍ଦୁ ଲଳନାମାନଙ୍କ ପ୍ରତି ଏପରି ଅତ୍ୟାଚାର ଭଗବାନଙ୍କ ପକ୍ଷେ ଅସହ୍ୟ ବୋଲି କବି ଦୃଢ଼ୋକ୍ତି ପ୍ରକାଶ କରିଛନ୍ତି । ଯେଉଁ ହିନ୍ଦୁଜାତି ନିରୀହା ପବିତ୍ରା ବିଧବା ପ୍ରତି ଅତ୍ୟାଚାର କରୁଛି, ସେ ଜାତିର ପତନ ଅବଶ୍ୟମ୍ଭାବୀ । ଯେତେବେଳେ ବୃଦ୍ଧ ବ୍ୟକ୍ତିକୁ ସାତଟା ସ୍ତ୍ରୀ ବିବାହ କରିବାର ସ୍ୱୀକୃତି ମିଳୁଛି, ସେତେବେଳେ ମାତ୍ର ଏଗାର ବର୍ଷ କନ୍ୟାଟିକୁ ଦ୍ୱିତୀୟ ଦାର ଗ୍ରହଣ କରିବାକୁ ଏତେ କଟକଣା କାହିଁକି ? ଯୌବନର ଲେଲିହାନ ଶିଖାରେ ଅସହ୍ୟ ହୋଇ ଥରେ ମାତ୍ର ତାର ପାଦ ଖସିଗଲେ ଏ ସମାଜ ତାକୁ କଳଙ୍କିତା, ପତିତା ଆଖ୍ୟା ଦେଉଛି କାହିଁକି ?[୧୨] ସନାତନ ବେଦ ବିଧି ଅନୁଯାୟୀ ବିଧବାର ଦ୍ୱିତୀୟଥର ବିବାହକୁ ସ୍ୱୀକୃତି ପ୍ରଦାନ କରାଯାଇଥିଲେହେଁ, ଭଣ୍ଡ ସମାଜପତିମାନେ ଏହି ନିୟମକୁ ସମ୍ମାନ ଦିଅନ୍ତି ନାହିଁ ବୋଲି କବି କ୍ଷୋଭ ପ୍ରକାଶ କରିଛନ୍ତି ।

କବିଙ୍କ କବିତାଗୁଡ଼ିକ ଅନୁଶୀଳନ କଲେ ବିଧବାମାନଙ୍କ ଦୁର୍ଦ୍ଦଶାରେ ତାଙ୍କର ହୃଦୟରେ କିପରି ଦାରୁଣ ଆଘାତ ଲାଗିଛି, ତାହା ସ୍ପଷ୍ଟ ଅନୁଭବ କରି ହୋଇଥାଏ। ଊନବିଂଶ ଶତାବ୍ଦୀରେ 'ବ୍ରାହ୍ମ ସମାଜ' ମାଧ୍ୟମରେ ବିଧବା ବିବାହକୁ ସମର୍ଥନ କରି ଯେଉଁ ଆନ୍ଦୋଳନ ରାଜା ରାମମୋହନ ରାୟ ଆରମ୍ଭ କରିଥିଲେ, ତାର ସୁଦୂରପ୍ରସାରୀ ଫଳ ସମଗ୍ର ଭାରତବର୍ଷରେ ଅନୁଭୂତ ହୋଇଥିଲା। ସେହି ଆନ୍ଦୋଳନର ପୃଷ୍ଠଭୂମି ଉପରେ ବିଧବାମାନଙ୍କୁ ସାମାଜିକ ସ୍ୱୀକୃତି ମିଳିଲା। କବି ଓ ସାହିତ୍ୟିକମାନେ ବିଧବାମାନଙ୍କର ଦାରୁଣ ଜୀବନ ଯନ୍ତ୍ରଣାକୁ ପାଥେୟ କରି କବିତା ମାଧ୍ୟମରେ ଜନ ଜାଗରଣ ଆଣିଲେ। ଏହି ଚେତନା ଦ୍ୱାରା ପ୍ରଭାବିତ ହୋଇ ଫକୀରମୋହନ ବିଧବା ବିବାହ ସପକ୍ଷରେ କବିତା ରଚନା କରି ବିଧବାମାନଙ୍କର ଜୀବନ ଯନ୍ତ୍ରଣାର ଚିତ୍ର କବିତାରେ ପ୍ରକାଶ କଲେ। ତାଙ୍କୁ ଅନୁସରଣ କରି ନନ୍ଦକିଶୋର ବଳ ପ୍ରଭୃତି ଉପନ୍ୟାସ ଓ କବିତା ପ୍ରଭୃତିରେ ଏହି ଚିରନ୍ତନ ସତ୍ୟର ପ୍ରକାଶ ଘଟାଇଲେ। ନନ୍ଦକିଶୋରଙ୍କ "ବାଲ୍ୟ ବିଧବା" କବିତାଟିରେ ବିଧବା ନାରୀର କରୁଣ ଦୃଶ୍ୟ ବର୍ଣ୍ଣିତ। ଫକୀରମୋହନ ଯେଉଁ ବୀଜଟି ପ୍ରୋଥିତ କରିଥିଲେ, ଦିନେ ସେହି ବୀଜଟି ବିରାଟ ମହୀରୁହରେ ପରିଣତ ହୋଇ, ତାର ସୁଶୀତଳ ଛାଇରେ ଶହ ଶହ କ୍ଳାନ୍ତ ପଥିକକୁ ଆଶ୍ରୟ ଦେଇଥିଲା।

## ଦଳିତ ମଣିଷ ସମାଜ ପ୍ରତି ସହାନୁଭୂତି

କବି ମାତ୍ରେହିଁ ସମ୍ବେଦନଶୀଳ। ସମାଜର ଦୁଃଖୀ ଦଳିତ ମାନବର ଆର୍ତ୍ତନାଦ ତାର ଚିନ୍ତା ଜଗତକୁ ଗଭୀର ପ୍ରଭାବିତ କରେ। ଆଶାଶୂନ୍ୟ, ନିରାଶ୍ରୟ, ଅବହେଳିତ ମଣିଷ ସମାଜକୁ ସେ କବିତା ମାଧ୍ୟମରେ ଆଶ୍ୱାସନାର ବାଣୀ ଶୁଣାଏ। ସେହିମାନଙ୍କ ଦୁଃଖ ଦୁର୍ବିପାକକୁ ଉପଜୀବ୍ୟ କରି ସେ ରଚନା କରେ କବିତା। ଦଳିତ ମଣିଷ ସମାଜ ପ୍ରତି ଫକୀରମୋହନଙ୍କ ହୃଦୟରେ ଥିଲା ଅହେତୁକ ଅନୁକମ୍ପା। ତାଙ୍କ ଜୀବନ ଚରିତରୁ ଜଣାଯାଇଥାଏ, ବିଭିନ୍ନ ରାଜାଙ୍କ ନିକଟରେ ଦେୱାନ ଭାବରେ କାର୍ଯ୍ୟ କରୁଥିବା ସମୟରେ ଦରିଦ୍ରମାନଙ୍କୁ ସାହାଯ୍ୟ କରିବାକୁ ଯାଇ ନିଜେ ଅସୁବିଧାର ସମ୍ମୁଖୀନ ହୋଇଥିଲେ।

କବିଙ୍କର ସତୀଲୁକ୍ରେସିୟା, ଭଣ୍ଡ ସନ୍ୟାସୀ, ବିଧବାର ଅଭିଶାପ, ଚନ୍ଦ୍ରପ୍ରଭାର ନିର୍ଜ୍ଜଳା ଉପବାସ, ହିନ୍ଦୁ ବିଧବା, ଉତ୍କଳ କୃଷକ, ପାଟୁଆ-ପାଟୁଈ, ଘରବାହୁଡ଼ା ବାଟୋଇ, ବିପନ୍ନ ନାବିକ, ସାଧୁ ସଂସର୍ଗ ପ୍ରଭୃତି କବିତାଗୁଡ଼ିକରେ କବିଙ୍କର ସହାନୁଭୂତିଶୀଳ ମନୋବୃତ୍ତିର ପରିଚୟ ମିଳିଥାଏ।

ସତୀ ଲୁକ୍ରେସିୟା କବିତାରେ ନିରୀହା, ଅସହାୟା ଲୁକ୍ରେସିୟାର କରୁଣ ପରିସ୍ଥିତି କବି ମନରେ ସହାନୁଭୂତିର ପ୍ରଲେପ ବୋଳିଛି । ସମାଜରେ ଚିର ଅବହେଳିତ ବିଧବା ମାନଙ୍କର କରୁଣ କାହାଣୀକୁ ଉପଜୀବ୍ୟ କରି ସେ କେବଳ କବିତା ରଚନା କରିନାହାନ୍ତି; ପରନ୍ତୁ ସାମାଜିକ ସଂସ୍କାର ଆଣିବା ନିମିତ୍ତ ଆପ୍ରାଣ ଉଦ୍ୟମ କରିଛନ୍ତି ମଧ୍ୟ । ବିଧବାମାନଙ୍କର ଦୁର୍ବିଷହ ଜୀବନର ତିକ୍ତ ଅନୁଭୂତି ସେ ମର୍ମେ ମର୍ମେ ଅନୁଭବ କରି ସେମାନଙ୍କ ପ୍ରତି ହିନ୍ଦୁ ସମାଜରେ ହେଉଥିବା ଅତ୍ୟାଚାର ବିରୋଧରେ ସ୍ୱର ଉତ୍ତୋଳନ କରିଛନ୍ତି ।

'ଉତ୍କଳ କୃଷକ' କବିତାରେ ଏ ସମାଜରେ ଚିର ଅବହେଳିତ କୃଷକ ସମାଜ ପ୍ରତି ତାଙ୍କର ସହାନୁଭୂତି ପ୍ରକାଶ ପାଇଛି । ଯେଉଁ କୃଷକ ଦିନ ରାତି ପରିଶ୍ରମ କରି ଏସଂସାରକୁ ଖାଦ୍ୟ ଯୋଗାଏ, ସେହି କୃଷକ ଯେତେବେଳେ ଉପବାସରେ ଘରେ ପଡ଼ିଥାଏ, ତା'ବିଷୟରେ ଏ ସମାଜ କୌଣସି ଚିନ୍ତା କରେ ନାହିଁ । ସାହୁକାର କଳନ୍ତର ପାଇଁ ତାର ଉତ୍ପାଦିତ ଶସ୍ୟକୁ ତା ନିକଟରୁ ଛଡ଼ାଇ ନିଏ । ଜାତୀୟତା ସମ୍ପର୍କରେ, ଦେଶର ଉନ୍ନତି ସମ୍ପର୍କରେ ଆମ ଦେଶର ବଡ଼ ବଡ଼ ନେତା ସଭା ସମିତିରେ ଅନର୍ଗଳ ଭାଷଣ ଦେଉଥିଲେ ମଧ୍ୟ, ଜାତିର ମେରୁଦଣ୍ଡ କୃଷକ ସମାଜର ଉନ୍ନତି ବିଷୟରେ ସମସ୍ତେ ନୀରବ । ହଣ୍ଟର ମଧ୍ୟ କୃଷକମାନଙ୍କ ସମ୍ପର୍କରେ ଅନୁରୂପ ମତ ଦେଇ କହିଛନ୍ତି – ଦୁର୍ଭାଗ୍ୟକୁ କୃଷକ ସର୍ବଦା ଋଣରେ ବୁଡ଼ି ରହିଥାଏ । ଜମିଦାର, ମହାଜନ ପ୍ରଭୃତି ଫସଲ ଅମଳ ସମୟରେ ତା ଉପରକୁ ଝାମ୍ପି ପଡ଼ିଥାନ୍ତି । ସେମାନଙ୍କ ଦାବୀ ପୂରଣ କରିବାକୁଯାଇ ତାର ଅର୍ଦ୍ଧାଧିକ ଶସ୍ୟ ଚାଲିଯାଏ । ଜୁନ୍‌ମାସ ବେଳକୁ ସେ କରଜ କରିବାକୁ ଆରମ୍ଭ କରିଦିଏ ।[୧୩] ଆଜି ପର୍ଯ୍ୟନ୍ତ ତାର ସମସ୍ୟାର ସମାଧାନ ସମ୍ପର୍କରେ କୌଣସି ବିଧିବଦ୍ଧ ନିୟମ ପ୍ରବର୍ତ୍ତନ କରାଯାଇ ନାହିଁ । କୃଷକ ସମାଜ ପ୍ରତି ଦେଶର ନେତୃତ୍ୱବୃନ୍ଦଙ୍କ ଏତାଦୃଶ୍ୟ କାର୍ଯ୍ୟକଳାପ ଲକ୍ଷ୍ୟକରି କବି ସହାନୁଭୂତି ପ୍ରକାଶ କରିଛନ୍ତି ।

ଦଳିତମାନଙ୍କ ଜୀବନର କାତର ଆର୍ତ୍ତନାଦ 'ଭଣ୍ଡ ସନ୍ୟାସୀ' କବିତାରେ ଅପୂର୍ବ ଭାବାଲୋକ ନେଇ ପ୍ରକାଶ ଲାଭ କରିଛି । ଦୁର୍ବିଷହ ଜୀବନ ମାନବକୁ ସମୟେ ସମୟେ ଭଣ୍ଡ ସନ୍ୟାସୀ ହେବାକୁ ପ୍ରେରଣା ଯୋଗାଇଥାଏ । କିନ୍ତୁ ବିବେକୀ ବ୍ୟକ୍ତି ଏହି ପ୍ରଲୋଭନ ଠାରୁ ଦୂରେଇ ରହି ଆଦର୍ଶମାନବର ପରିଚୟ ପ୍ରଦାନ କରିଥାଏ । 'ଘରବାହୁଡ଼ା ବାଟୋଇ' କବିତାଟି କବିଙ୍କର ଏକ ଅନବଦ୍ୟ ସୃଷ୍ଟି । ପଲ୍ଲୀର ସରଳ ମାନବର ସ୍ନେହ ଓ ସୌହାର୍ଦ୍ଦ୍ୟ ଉକ୍ତ କବିତାରେ ପ୍ରକାଶ ଲାଭ କରିଛି । ଉପବାସରେ ଥାଇ ମଧ୍ୟ ନିରୀହା ତରୁଣୀଟିର ପ୍ରବାସୀ ଫେରନ୍ତା ସ୍ୱାମୀ ପ୍ରତି ଅତୁଟ ଭକ୍ତି ଓ ଉପବାସୀ ପିଲାଙ୍କର ପିତାଙ୍କ

ପ୍ରତି ଗଭୀର ଶ୍ରଦ୍ଧାଭାବ କବିଙ୍କୁ ବିମୁଗ୍ଧ କରିଛି । ଦରିଦ୍ର ହେଲେ ବି ସେମାନଙ୍କ ମନର ବିରାଟପଣିଆ ତାଙ୍କୁ ବିରାଟକରି ତୋଳିଛି; ତେଣୁ ସେମାନେ ଚିରଦିନ ବିରାଟ ହୋଇରହିଗଲେ ଜଗତ ସମ୍ମୁଖରେ । ବିପନ୍ନ ନାବିକ କବିତାଟିରେ ନାବିକଟିର ଅସହାୟ ଅବସ୍ଥା ଓ ନଦୀଗର୍ଭରେ ସମ୍ପୂର୍ଣ୍ଣ ପରିବାରର ସଲିଳ ସମାଧି କବି ମନରେ ସହାନୁଭୂତି ଜାଗ୍ରତ କରିଛି । ଯେଉଁ ନଦୀ ତାର୍ ଜୀବିକା ଅର୍ଜନର ଥିଲା ପ୍ରଧାନ ଅବଲମ୍ବନ, ସେହି ନଦୀ ଜଳରେ ସବଂଶ ସମାଧି ଲାଭ କବି ମନରେ ଦାରୁଣ ବ୍ୟଥା ସୃଷ୍ଟି କରିଛି ।

ଆମ ସମାଜରେ 'ବେଶ୍ୟା' ସମସ୍ତଙ୍କର ଘୃଣାର ପାତ୍ର । ସମାଜରେ ତା ପ୍ରତି କାହାର ସହାନୁଭୂତି ନାହିଁ । କିନ୍ତୁ ଦରଦୀ କବିଙ୍କ ମତରେ ନିରୀହା ଅବଳାକୁ ତା'ର ବିଳାସିନୀ କିଏ ସଜାଇଲା ? ଏଇ ସମାଜ - ଏହି ସମାଜର ନିଷ୍ଠୁରତା ଓ ବିରାଗଭାବ ତାକୁ ଠେଲି ଦେଇଛି ବେଶ୍ୟାବୃତ୍ତି କରିବାକୁ । ଯଦି ପ୍ରଥମରୁ ତାର ଗତିରୋଧ କରାଯାଇଥାନ୍ତା କିମ୍ବା ବେଶ୍ୟା ହସ୍ତରେ ପଡ଼ିବା ପୂର୍ବରୁ ତାକୁ ଉଦ୍ଧାର କରାଯାଇ ପାରିଥାନ୍ତା, ତାହେଲେ ତାର ଏପରି ଅଧଃପତନ ଘଟିନଥାନ୍ତା । ଏ ସମାଜର ସହାନୁଭୂତିହୀନତା ତାକୁ ପଙ୍କିଳ ପଥକୁ ଯିବାକୁ ବାଧ କରିଛି । ପାହାଡ଼-ପର୍ବତ ଓ ନିବିଡ଼ ଅରଣ୍ୟରେ ବାସ କରୁଥିବା ଶିକ୍ଷା, ସଭ୍ୟତାହୀନ ପାତୁଆ ପାତୁଈ ଜୀବନକୁ ନେଇ ସେ ମଧ୍ୟ କବିତା ରଚନା କରିବାକୁ ଭୁଲିନାହାନ୍ତି । ଏହିପରି ଭାବରେ କବି ସମାଜରେ ଓ ସମାଜ ବାହାରେ ବାସ କରୁଥିବା ଅବହେଳିତ ମାନବ ଜୀବନ ପ୍ରତି ସହାନୁଭୂତି ପ୍ରକାଶ କରିଛନ୍ତି ।

## ପ୍ରକୃତି ପ୍ରତି ଦୃଷ୍ଟିକୋଣ

ଯୁଗେ ଯୁଗେ ପ୍ରକୃତି କବି ଓ ଭାବୁକମାନଙ୍କୁ ଅପୂର୍ବ ଉପାଦାନ ଯୋଗାଇ ଆସିଛି । ବେଦରେ ପ୍ରକୃତି ଶକ୍ତି ଭାବରେ ଓ କାବ୍ୟ ଯୁଗରେ ପ୍ରକୃତିକୁ ନାୟକ ନାୟିକାମାନଙ୍କର ଉଦ୍ଦୀପନା ବିଭାବ ଭାବରେ କଳ୍ପନା କରାଯାଇଛି । ଆଧୁନିକ ଯୁଗରେ ପ୍ରକୃତି ଶାନ୍ତ ଓ ଏହାର ପରିବେଶରେ କବି ନିଜକୁ ହଜାଇ ଦେଇଛନ୍ତି । ପ୍ରକୃତିବାଦୀ ରଷୋ ପ୍ରକୃତି ସୁନ୍ଦର ଓ ସୌନ୍ଦର୍ଯ୍ୟମୟ ବୋଲି ଘୋଷଣା କଲେ । ପ୍ରକୃତି 'ନିର୍ବିକାର ଓ ସ୍ୱାଧୀନ । ସ୍ୱଚ୍ଛନ୍ଦତାବାଦୀ (ରୋମାଣ୍ଟିକ) କବିତାର ମୁଖ୍ୟ ଆଦର୍ଶ ଥିଲା ପ୍ରକୃତି ସହିତ ମାନବର ନିବିଡ଼ ସମ୍ପର୍କ ସ୍ଥାପନ । ଏହି ପ୍ରକୃତି ମାନବାତ୍ମାକୁ କ୍ଷୁଦ୍ରତା ମଧ୍ୟରୁ ଅନନ୍ତ ଆଡ଼କୁ ଘେନିଯାଏ । ଏହିଥିରୁ କବିଙ୍କର ମାନସିକ ଭାବ ଓ ଅନୁଭୂତି କଳାତ୍ମକ ରୂପ ନେଇ ଆତ୍ମପ୍ରକାଶ ଘଟିଛି । ପ୍ରକୃତିର ରୂପ ଓ ଗୁଣ ସହିତ ମାନବ ଜୀବନ ତୁଳିତ ହୋଇଛି । ଯେତେବେଳେ କବିତା କାବ୍ୟ ଜଗତର ବିରାଟ ପ୍ରାସାଦ ତ୍ୟାଗ କରି

ସାଧାରଣ ମାନବ ଜୀବନକୁ ଓହ୍ଲାଇ ଆସିଛି, ସେତେବେଳେ କାବ୍ୟ ପରିବର୍ତ୍ତେ ସୃଷ୍ଟି ଲାଭ କରିଛି ଅସଂଖ୍ୟ ଗୀତି କବିତା। ଏହି 'ଗୀତି କବିତା' ପ୍ରକୃତିର ଏକ ନୂତନ ରୂପ ଉଦ୍‌ଘାଟନ କରିଛି, ଯାହା ମାନବ ଜୀବନ ଓ ମାନବର ମାନସିକ ପରିସ୍ଥିତି ସହିତ ନିବିଡ଼ ସମ୍ପର୍କ ସ୍ଥାପନ କରିଛି। ଫକୀରମୋହନଙ୍କ କବିତା ପ୍ରକୃତିର ଏହି ବିଭାବକୁ ନେଇ ରଚିତ।

'ନିଦାଘ ନିଶୀଥ ସ୍ୱପ୍ନ', 'ଡାଆଣୀ ଆଲୁଅ', 'ବୃକ୍ଷବଟିକା', 'ଗୋଲାପ ସୁନ୍ଦରୀ', 'ପ୍ରଜାପତି', 'ସ୍ୱଭାବର ନବଭାବ' ପ୍ରଭୃତି କବିତାଗୁଡ଼ିକରେ ପ୍ରକୃତି ପ୍ରତି ଏକ ବିଶେଷ ଦୃଷ୍ଟିଭଙ୍ଗୀ ପ୍ରକାଶିତ। 'ନିଦାଘ ନିଶୀଥ ସ୍ୱପ୍ନ' କବିତାରେ କବି ପ୍ରଥମେ ଏକ ଶାନ୍ତ ମଧୁର ପରିବେଶର ସୂଚନା ପ୍ରଦାନ କରିଛନ୍ତି। ଗ୍ରୀଷ୍ମଋତୁର ବାସ୍ତବ ଚିତ୍ରପ୍ରଦାନ ସଙ୍ଗେସଙ୍ଗେ ରାତ୍ରିର ଭୟଙ୍କାରିତା ସମ୍ପର୍କରେ ବର୍ଣ୍ଣନା ପ୍ରସଙ୍ଗରେ କବି ଏକ ସ୍ୱପ୍ନ ବୃତ୍ତାନ୍ତ ଅବତାରଣା କରିଛନ୍ତି। ମାନବ ଜୀବନ ସହିତ ପ୍ରକୃତିର ବିଭିନ୍ନ ବସ୍ତୁକୁ ତୁଳନାତ୍ମକ ଦୃଷ୍ଟିରୁ ଆଲୋଚନା ପ୍ରସଙ୍ଗରେ କଳାମେଘକୁ ମୃତ୍ୟୁ, ଧୂଳିଆ ମେଘ ସହିତ ଆପଦ ବିପଦ, ଧୂମକେତୁକୁ ପାଷାଣ୍ଡ ଦୁଷ୍ଟ ଓ ପ୍ରଭାକର ଜ୍ୟୋତିକୁ ପୂର୍ଣ୍ଣବ୍ରହ୍ମ ମହାଜ୍ୟୋତି ରୂପେ କବି କଳ୍ପନା କରିଛନ୍ତି -

କଳାମେଘ ଯାହା କରୁଅଛ ନିରୀକ୍ଷଣ
ଅଟଇ ଯେ ଏହା ନାମ ଅକାଳ ମରଣ
× × ×
ଏହିସବୁ ମେଘ ନାମ ଆପଦ ବିପଦ
× × ×
ଧୂମକେତୁ ବୁଝିଅଛ ଯାହା ଅନୁମାନେ
ଦାମ୍ଭିକ ପାଷାଣ୍ଡ ଦୁଷ୍ଟ ସେହି ଲୋକମାନେ
× × ×
ଯେଉଁ ପ୍ରଭାକର ଜ୍ୟୋତି ଦେଖିଲ ଆକାଶେ
ପୂର୍ଣ୍ଣ ବ୍ରହ୍ମ ମହାଜ୍ୟୋତି ଜଗତେ ବିକାଶେ

(ନିଦାଘ ନିଶୀଥ ସ୍ୱପ୍ନ-ପୁଷ୍ପମାଳା)

ସନ୍ଧ୍ୟା ସମୟର ଏକ ଚମତ୍କାର ଚିତ୍ର ପ୍ରଦାନ କରାଯାଇଛି ସନ୍ଧ୍ୟାବେଳେ ବିଦେଶୀର ଚିନ୍ତା' କବିତାରେ। ପ୍ରାରମ୍ଭରୁ ଆମ ନିତି ଦିନିଆ ଜୀବନର ଏକ ନିଛକ ଚିତ୍ର ପ୍ରଦତ୍ତ ହୋଇଛି। ସନ୍ଧ୍ୟା ଆଗମନରେ କୁଆମାନେ ରାବ କରି ନିଜ ନିଜର

ନୀଡ଼କୁ ପ୍ରତ୍ୟାବର୍ତ୍ତନ କରୁଥାଆନ୍ତି । ଗ୍ରାମ୍ୟ ବଧୂଗଣ କଳସୀପୂର୍ଣ୍ଣ ଜଳ ସହିତ ଗୃହକୁ ଫେରୁଥିବା ସମୟରେ କଣେଇ କଣେଇ ରାସ୍ତାର ଦୁଇ ପାର୍ଶ୍ୱକୁ ନିରୀକ୍ଷଣ କରୁଥାନ୍ତି । ଚଷାପୁଅ ବିଲକାମ ସାରି ଘରକୁ ଫେରିଆସୁଛି । ବାଦୁଡ଼ି ଓ ପେଚା ଉଲ୍ଲାସରେ ଡେଣା ଝାଡ଼ିବାକୁ ଆରମ୍ଭ କରୁଛନ୍ତି । ବିଦାୟୀ ସୂର୍ଯ୍ୟଙ୍କ ଶେଷ ରଶ୍ମିରେ ପଶ୍ଚିମ ଆକାଶ ଚିତ୍ରିତ ହୋଇଯାଇଛି । ଏହି ସମୟରେ ଜଣେ ବିଦେଶୀ ବୈତରଣୀ ନଦୀ କୂଳରେ ବସି ସୂର୍ଯ୍ୟଙ୍କର ଗତି ସହିତ ମାନବ ଜୀବନକୁ ତୁଳନା କରୁଛି । ସୂର୍ଯ୍ୟଙ୍କର ଉଦୟ ସହିତ ମାନବର ଜନ୍ମ, ମଧ୍ୟାହ୍ନ ସହିତ ଯୌବନ ଓ ବିଦାୟୀ ସୂର୍ଯ୍ୟଙ୍କ ସହିତ ମାନବର ବୃଦ୍ଧାବସ୍ଥାର ତୁଳନାତ୍ମକ ଚିତ୍ର ପ୍ରଦତ୍ତ ହୋଇଛି । ସଂକ୍ଷେପରେ କହିଲେ ଉକ୍ତ କବିତାଟିରେ ମାନବର ଜୀବନ ଦର୍ଶନ ନୁହେଁ ବରଂ ପଲ୍ଲୀର ଏକ ବାସ୍ତବ ଚିତ୍ର ପ୍ରଦାନ କରାଯାଇଛି । ସନ୍ଧ୍ୟା ଆଗମନର ଆଉ ଗୋଟିଏ ସୁନ୍ଦର ଚିତ୍ର ପ୍ରଦାନ କରାଯାଇଛି 'ନିଦାଘ ସନ୍ଧ୍ୟାରେ କାଠଯୋଡ଼ି କୂଳ ପଥର ବନ୍ଧ' କବିତାରେ ।

'ସ୍ୱଭାବର ନବଭାବ' ଓ 'ପ୍ରଜାପତି' କବିତା ଦୁଇଟିରେ କବିଙ୍କର ସୌନ୍ଦର୍ଯ୍ୟପ୍ରିୟ ମନର ପରିପ୍ରକାଶ ଘଟିଛି । ବସନ୍ତ ଋତୁରେ କାନନ ମାନଙ୍କରେ ପୁଷ୍ପର ସୌରଭ ଚତୁର୍ଦ୍ଦିଗରେ ଖେଳି ବୁଲେ । ଧୀର ସମୀରରେ ବୃକ୍ଷଗଣ ନୃତ୍ୟଛନ୍ଦରେ ଦଣ୍ଡାୟମାନ । ଶାରଦୀୟ ଆକାଶ ବିଚିତ୍ର ବର୍ଣ୍ଣରେ ବର୍ଣ୍ଣାୟିତ ହୋଇ ଚିତ୍ତ ବିମୋହନ କରୁଛନ୍ତି । କୋକିଳର କାକଳୀ ଓ ଭ୍ରମରର ମୃଦୁଗୁଞ୍ଜନ କର୍ଣ୍ଣରେ ସୁଧା ଢାଳି ଦେବା ପରି ଅନୁଭବ ହେଉଛି ।

କୋକିଳ କାକଳୀ ବ୍ୟାପ୍ତ ବନସ୍ଥଳୀ
ଦିଏ କର୍ଣ୍ଣେ ସୁଧା ଢାଳି
ପ୍ରଫୁଲ୍ଲ ପୁଷ୍ପରେ ଗୁଣୁ ଗୁଣୁ ସ୍ୱରେ
ଭ୍ରମନ୍ତି ବନେ ଭୃଙ୍ଗାଳୀ

(ସ୍ୱଭାବର ନବଭାବ-ପୂଜାଫୁଲ)

ପ୍ରକୃତି ସହିତ ନିଜକୁ ଏକାତ୍ମ କରିଦେଲେ, ମାନବ ହୋଇଯାଏ ପ୍ରକୃତିର ଏକ ଅଭିନ୍ନ ସତ୍ତା । ତା'ରି କ୍ରୋଡ଼ରେ ସେ ହସିଖେଳି ବୁଲେ, ନିଜର ଦୁଃଖ ଜଣାଏ ଓ ତା'ଠାରୁ ସେ ସାନ୍ତ୍ୱନା ପାଇ ନିଜର ସନ୍ତାପ ହରାଏ । ବୃଦ୍ଧାବସ୍ଥାରେ ଜ୍ଞାତି-ପରିଜନ ବିଚ୍ଛିନ୍ନ ଫକୀରମୋହନଙ୍କ ନିମିତ୍ତ ଏକମାତ୍ର ସାନ୍ତ୍ୱନାର ସ୍ଥଳୀ ଥିଲା ପ୍ରକୃତିର ବିଭିନ୍ନ ବିଭବ । ଏହି ପ୍ରକୃତିକୁ ସେ ନିଜର ଅନ୍ତରଙ୍ଗ କରି ନେଇଥିଲେ ଓ ଜୀବନର ସମସ୍ତ

ଗ୍ଲାନି ଭୁଲିଥିଲେ ପ୍ରକୃତିର ସ୍ନେହ ସ୍ପର୍ଶ ପାଇ । ପ୍ରକୃତି ମଧ୍ୟରେ ସେ ଉପଲବ୍ଧି କରିଥିଲେ ନିଜର ଅତୀତ, ବର୍ତ୍ତମାନ ଓ ଭବିଷ୍ୟତ । ତେଣୁ ବ୍ୟକ୍ତି ଫକୀରମୋହନ ଓ ପ୍ରକୃତି ଗୋଟିଏ ସମାନ୍ତରାଳ ଭାବରେ ଗତି କରିଛନ୍ତି ତାଙ୍କ କବିତା ଗୁଡ଼ିକରେ । କେତେବେଳେ ପ୍ରକୃତି ମଧ୍ୟରେ ମାନବ ଜୀବନର ଗୂଢ଼ ରହସ୍ୟ ଉଦ୍‌ଘାଟନ କରିବାକୁ ଚାହିଁଛନ୍ତି ତ ଆଉ କେତେବେଳେ ଚାହିଁଛନ୍ତି ପ୍ରକୃତିର ସୁନ୍ଦର ରୂପରେ ମାନବର ବହିଃପ୍ରକୃତି ବିଶ୍ଳେଷଣ କରିବାକୁ । ତେଣୁ ଫକୀରମୋହନଙ୍କ କବିତାରେ ପ୍ରକୃତି ବିଭିନ୍ନ ସମୟରେ ବିଭିନ୍ନ ରୂପନେଇ ଆତ୍ମପ୍ରକାଶ କରିଛି ।

### ପ୍ରେମବୋଧ :

ଫକୀରମୋହନଙ୍କ କବିତାର ସୃଷ୍ଟି ଗଭୀର ପ୍ରେମବୋଧରୁ । ପ୍ରେମ ମାନବକୁ କରେ ମହାନ ଓ ପବିତ୍ର । ପ୍ରେମ ମଧ୍ୟରେ ଫୁଟି ଉଠେ ଜୀବନ ଓ ଜଗତର ଦ୍ୟୁତି । ଦ୍ୱିତୀୟା ପତ୍ନୀ କୃଷ୍ଣାକୁମାରୀଙ୍କ ଆବିର୍ଭାବ, କବିଙ୍କ ଜୀବନରେ ଆଣିଛି ଗଭୀର ପରିବର୍ତ୍ତନ । ତେଣୁ ତାଙ୍କ ତିରୋଭାବରେ ସେ ହୋଇଛନ୍ତି ଦିଗହରା ଓ କିଂକର୍ତ୍ତବ୍ୟ-ବିମୂଢ଼ । 'ପୁଷ୍ପମାଳା' କବିତା ସଂକଳନର ଉତ୍ସର୍ଗ ପତ୍ରଟି କବି ପତ୍ନୀଙ୍କ ଉଦ୍ଦେଶ୍ୟରେ ରଚନା କରିଛନ୍ତି ।[୧୫]

ଫକୀରମୋହନଙ୍କ କବିତା ଜଗତର ଯଦି କେଉଁ ବିଭାଗଟି ଅଧିକ ଆକର୍ଷଣୀୟ ଓ ମନୋମୁଗ୍ଧକର ହୋଇଥାଏ, ତାହା ହେଉଛି ତାଙ୍କ ଅନାବିଳ ପତ୍ନୀପ୍ରେମକୁ ନେଇ ରଚିତ କବିତାବଳୀ । ପତ୍ନୀଙ୍କ ତିରୋଭାବରେ ବାକ୍‌ଶୂନ୍ୟ କବି ତେଣୁ 'ଉତ୍ସର୍ଗ ପତ୍ର'ରେ ଲେଖିଛନ୍ତି-

ମୋତେ ଛାଡ଼ି ଯାଇଅଛ ମାନୁନାହିଁ ମନ
ପୃଥ୍ୱୀପୂର୍ଣ୍ଣ ତୁମ୍ଭ ଛାୟା ଦେଖୁଛି ନୟନ ।

ତାଙ୍କର ଅଧିକାଂଶ କବିତାଗୁଡ଼ିକରେ ହତାଶବାଦୀ ଦୃଷ୍ଟିକୋଣର ପରିଚୟ ମିଳୁଥିଲେ ମଧ୍ୟ, ତା'ରି ମଧ୍ୟ ଦେଇ ପତ୍ନୀପ୍ରେମର ନୀରବ ଫଲ୍‌ଗୁ ପ୍ରବାହିତ । ସାହାଡ଼ା ଗଛର କ୍ରନ୍ଦନ, ହସି ହସି ଗଲା ମତେ କନ୍ଦେଇ କନ୍ଦେଇ, ବିରହୀ ହଳଦୀବସନ୍ତ, ଆଉ କି ଦେଖିବି ସେହି ସହାସ୍ୟ ବଦନ ପ୍ରଭୃତି 'କବିତାଗୁଡ଼ିକ ତାଙ୍କ ପତ୍ନୀଙ୍କ ସ୍ମୃତିକୁ ନେଇ ରଚିତ । ବାଗାଡ଼ମ୍ବର ପରିବର୍ତ୍ତେ ସହଜ ସରଳ ଭାଷାରେ ପତ୍ନୀଙ୍କ ପ୍ରତି ଥିବା ବିମଳ ପ୍ରେମ ଏଗୁଡ଼ିକରେ ପ୍ରକାଶ ଲାଭ କରିଛି ।

ଫକୀରମୋହନଙ୍କ ପ୍ରେମବୋଧକୁ କେବଳ ପତ୍ନୀଙ୍କ ସ୍ମୃତି ମଧ୍ୟରେ ସୀମାବଦ୍ଧ କରିଦେଲେ, ତାଙ୍କ କବିତାଗୁଡ଼ିକର ଉପଯୁକ୍ତ ମୂଲ୍ୟାୟନ ହୋଇପାରିଲା ବୋଲି କୁହାଯାଇ ନପାରେ । ଦୂରଦୃଷ୍ଟିସମ୍ପନ୍ନ ଫକୀରମୋହନଙ୍କ ଏହି ପ୍ରେମବୋଧ ପ୍ରସାରିତ ହୋଇଯାଇଛି ଆତ୍ମୀୟଙ୍କ ବିଚ୍ଛେଦଠାରୁ ମାତୃଭୂମି, ମାତୃଭାଷା ଓ ଜାତୀୟ ଜୀବନ ପର୍ଯ୍ୟନ୍ତ । ତେଣୁ ଫକୀରମୋହନଙ୍କ ପ୍ରେମବୋଧକୁ ଆମେ ମୁଖ୍ୟତଃ ଦୁଇ ଭାଗରେ ବିଭକ୍ତ କରିପାରିବା । ଯଥା - ବ୍ୟକ୍ତିଗତ ପ୍ରେମ ଓ ଜାତୀୟ ପ୍ରେମ ।

ବ୍ୟକ୍ତିଗତ ପ୍ରେମବୋଧ୍ ମଧ୍ୟରେ ତାଙ୍କ ପତ୍ନୀଙ୍କ ବିରହ, ମୃତପୁତ୍ର ମନୋମୋହନ ଓ ପିତାମହୀ କୁଚିଳା ଦେଈଙ୍କ ବିଚ୍ଛେଦରେ ରଚିତ କବିତାଗୁଡ଼ିକୁ ଅନ୍ତର୍ଭୁକ୍ତ କରିପାରିବା । ଜାତୀୟ ପ୍ରେମବୋଧ ମଧ୍ୟରେ ଦେଶ, ଜାତି, ଧର୍ମ, ଭାଷା ପ୍ରଭୃତିକୁ ନେଇ ରଚିତ କବିତାଗୁଡ଼ିକୁ ଅନ୍ତର୍ଗତ କରିପାରିବା ।

ଫକୀରମୋହନଙ୍କ ଏହି ଶ୍ରେଣୀୟ କବିତାଗୁଡ଼ିକରେ ସ୍ୱାର୍ଥ ଅପେକ୍ଷା ତ୍ୟାଗର ପରିଚୟ ଅଧିକ୍ ମିଳିଥାଏ । ଗୋଟିଏ ନାରୀର ପ୍ରେମ କିପରି ଜଣେ ବ୍ୟକ୍ତିକୁ ବିରାଟ ଓ ମହାନ କରି ତୋଳେ ତାର ନିଛକ ଉଦାହରଣ ଫକୀରମୋହନଙ୍କ କବିତା । 'ମୋ କ୍ଷୁଦ୍ର ତାରା' କବିତାଟିରେ କବି ହୃଦୟର ଅଶ୍ଳଳ ଅଭିବ୍ୟକ୍ତି ସମଗ୍ର କବିତାଟିକୁ କାରୁଣ୍ୟମୟ କରି ଦେଇଛି । ପତ୍ନୀଙ୍କ ପ୍ରତି ପ୍ରେମନିଷ୍ଠା ଓ ଐକାନ୍ତିକ ଶ୍ରଦ୍ଧା ତାଙ୍କ କବିତାର ଛତ୍ରେ ଛତ୍ରେ ଉପଲବ୍ଧି ହୋଇଥାଏ । ଏହି ପ୍ରେମସ୍ୱର୍ଗୀୟ ପ୍ରେମ । ସେମାନଙ୍କ ଦେହ ମଧ୍ୟରେ ଯୋଜନ ଯୋଜନ ବ୍ୟବଧାନ ରହିଥିଲେ ମଧ୍ୟ ମନର ବ୍ୟବଧାନ କିନ୍ତୁ ଶୂନ୍ୟ । କବିଙ୍କର ଜାତୀୟ ପ୍ରେମ, ଭାଷା ପ୍ରେମ ପ୍ରଭୃତି କିପରି ପ୍ରକାଶ ଲାଭ କରିଛି ପରବର୍ତ୍ତୀ ସମୟରେ ତାର ଆଲୋଚନା କରାଯିବ । ଏଠାରେ ପ୍ରସଙ୍ଗ କ୍ରମେ ତାର ସୂଚନା ପ୍ରଦାନ କରାଗଲା ମାତ୍ର ।

**ହାସ୍ୟ ଓ ବ୍ୟଙ୍ଗ ବୋଧ :**

ଓଡ଼ିଆ ସାହିତ୍ୟରେ ଫକୀରମୋହନ ଯେତେଗୁଡ଼ିଏ ପରମ୍ପରା ସୃଷ୍ଟି କରିଛନ୍ତି, ବୋଧହୁଏ ଅନ୍ୟ କାହା ଭାଗ୍ୟରେ ଏହି ସଫଳତାର ଅଧିକାରୀ ହେବା ସମ୍ଭବ ନୁହେଁ । କି ପଦ, କି ଗଦ୍ୟ ପ୍ରତ୍ୟେକ କ୍ଷେତ୍ରରେ ସେ ନୂତନତାର ବାର୍ତ୍ତାବହ । ହାସ୍ୟ ଓ ବ୍ୟଙ୍ଗବୋଧ ଫକୀରମୋହନ ସାହିତ୍ୟର ବିଶିଷ୍ଟ ବୈଶିଷ୍ଟ୍ୟ । ତାଙ୍କର ପ୍ରଥମ ବ୍ୟଙ୍ଗ କାବ୍ୟ ପ୍ରକାଶ ପାଏ ୧୮୯୨ ମସିହାରେ 'ଉତ୍କଳ ଭ୍ରମଣଂ' ରଚନାରୁ । ଏହା ପୂର୍ବରୁ ଓଡ଼ିଆ ସାହିତ୍ୟରେ ହାସ୍ୟରସର ଯେଉଁ ସ୍ୱରୂପ ବ୍ରଜନାଥ ବଡ଼ଜେନା, କବିସୂର୍ଯ୍ୟ ବଳଦେବ ରଥ, ବସ୍ତାଦାସ ପ୍ରଭୃତିଙ୍କ ରଚନାରେ ଦୃଷ୍ଟିଗୋଚର ହୋଇଥିଲା ତାହା

ପ୍ରକୃତ ହାସ୍ୟରସ ଉପଯୋଗୀ ନୁହେଁ। ଏଗୁଡ଼ିକରେ ଜବରଦସ୍ତ ହସାଇବାର ପ୍ରବୃତ୍ତି ନିହିତ ଥିବାରୁ ଏହା କୌଣସି ଚିରନ୍ତନ ମୂଲ୍ୟ ଦାବୀ କରିବାକୁ ସମର୍ଥ ହୋଇପାରିନାହିଁ। କିନ୍ତୁ ହାସ୍ୟରସର ପ୍ରକୃତ ସ୍ୱରୂପ ଆମେ ଉପଲବ୍ଧି କଲୁ ପ୍ରଥମେ ଫକୀରମୋହନଙ୍କ ସାହିତ୍ୟରେ ।

ଫକୀରମୋହନଙ୍କ 'ଉତ୍କଳ ଭ୍ରମଣଂ', 'ମୁ ହାଟ ବାହୁଡ଼ା', 'ଯମରାଜଙ୍କ ଦରବାର', 'କବିର କଳିହୁଡ଼ୀ ସ୍ତ୍ରୀ', 'ଶନିବାର' ପ୍ରଭୃତି କାବ୍ୟ କବିତାରେ ବିଶୁଦ୍ଧ ହାସ୍ୟରସର ଉଦାହରଣ ସୁସ୍ପଷ୍ଟ। ତାଙ୍କ ସାମସମୟିକ ଓ ପରବର୍ତ୍ତୀ ସମୟରେ ଅନେକ ଲେଖକ ନିଜର ସୃଷ୍ଟି ମଧ୍ୟରେ ହାସ୍ୟରସର ପରିବେଷଣ କରିଥିଲେ ମଧ୍ୟ, ଫକୀରମୋହନଙ୍କ ପରି ଗୌରବର ଅଧିକାରୀ ସେମାନେ ହୋଇପାରି ନାହାନ୍ତି। କାରଣ 'ଏମାନେ ହାତରେ ବେତ ଧରି ସମାଜକୁ ଶାସନ କରିବାକୁ ବାହାରିଛନ୍ତି, କିନ୍ତୁ ସେନାପତି ସମାଜର ପିଠି ଆଉଁସେଇ, ମୁହଁରେ ହସ ଫୁଟାଇ, କିନ୍ତୁ ଆଖିରେ ଆଙ୍ଗୁଠିଗେଞ୍ଜି ତାହାହିଁ କରିଛନ୍ତି। ଫଳରେ ଯେତେବେଳେ ଅନ୍ୟମାନଙ୍କ ଲେଖା ଏକ ଅର୍ଥରେ ହୋଇଛି ସାଧାରଣ ପ୍ରଚାରମୂଳକ ସାହିତ୍ୟ, ସେତେବେଳେ ସେନାପତିଙ୍କର ସେଇ ପ୍ରଚାର ଭାବାପନ୍ନ ଲେଖା ଶ୍ରେଷ୍ଠ ସାହିତ୍ୟ ସମ୍ପଦରେ ବିଭୂଷିତ ହୋଇଉଠିଛି। ୧୬।

ସମାଜ ସଂସ୍କାର ଓ ଜାତୀୟ ଚେତନା ଉଦ୍ରେକ କରିବା ଥିଲା ଫକୀରମୋହନଙ୍କର ପ୍ରଥମ ଉଦ୍ଦେଶ୍ୟ। ହାସ୍ୟ ଓ ବ୍ୟଙ୍ଗ କବିତା ମାଧ୍ୟମରେ ସମାଜରେ ପ୍ରଚଳିତ କୁସଂସ୍କାର, ଆଧୁନିକ ଶିକ୍ଷିତ ଯୁବକଙ୍କର ଏ ଦେଶ ତଥା ଭାଷା ପ୍ରତି ଥିବା ହୀନ ମନୋଭାବକୁ ସେ ପ୍ରକାଶ କରିଛନ୍ତି। ଊନବିଂଶ ଶତାବ୍ଦୀର ଶେଷ ଭାଗ ଓ ବିଂଶ ଶତାବ୍ଦୀର ପ୍ରଥମ ପାଦରେ ଆଧୁନିକ ଇଂରାଜୀ ଶିକ୍ଷିତ ଯୁବକମାନଙ୍କ ମନରେ ଏ ଭାଷା ପ୍ରତି ଏକ ପ୍ରକାର ହୀନ ମନୋବୃତ୍ତି ପ୍ରକାଶ ପାଇଥିଲା। ନିଜ ଭାଷା ଓ ସାହିତ୍ୟ ପରିବର୍ତ୍ତେ ଇଂରାଜୀ ସାହିତ୍ୟ ପାଠ କରିବାକୁ ଏମାନଙ୍କ ମନରେ ପ୍ରବଳ ଆଗ୍ରହ ଜାତ ହୋଇଥିଲା। ଶିକ୍ଷିତ ଯୁବକମାନଙ୍କର ଏହି ପ୍ରକାର ମନୋବୃତ୍ତିକୁ କବି ତୀକ୍ଷ୍ଣ ବ୍ୟଙ୍ଗୋକ୍ତି କରିଛନ୍ତି 'ଉତ୍କଳ ଭ୍ରମଣଂ' କାବ୍ୟରେ। 'ମୁଁ ହାଟ ବାହୁଡ଼ା' କବିତାରେ ମଧ୍ୟ ସେହି ଏକ ଭାବ ପ୍ରକାଶିତ। ଫକୀରମୋହନ ପାଶ୍ଚାତ୍ୟ ଶିକ୍ଷା ଓ ସଭ୍ୟତାକୁ ବିଦେଶୀ ମାଲ ଏବଂ ପ୍ରାଚ୍ୟ ବା ଭାରତୀୟ ସଭ୍ୟତା ଓ ଶିକ୍ଷାକୁ ଦେଶୀ ମାଲ ଭାବରେ ବର୍ଣ୍ଣନା କରିଛନ୍ତି। ପାଶ୍ଚାତ୍ୟ ସଭ୍ୟତା ଦ୍ୱାରା ପ୍ରଭାବିତ ହୋଇ ଏ ଦେଶର ଯୁବକ ନିଜର ପରମ୍ପରା ଓ ସଭ୍ୟତା ଭୁଲିଛି। ପିତାଙ୍କର ଅର୍ଥ ଖର୍ଚ୍ଚ କରି ଇଂରାଜୀ ସାହିତ୍ୟ ପାଠ କରୁଛି। ମାତ୍ର ସଂସ୍କୃତ ପୁରାଣ ସାହିତ୍ୟ ପାଠ କରିବାକୁ ଘୃଣା କରୁଛି। ଇଂରାଜୀ ଶିକ୍ଷିତଙ୍କର ଏହି

ମୋହ ଦେଶୀ ସାହିତ୍ୟ, ଚର୍ଚ୍ଚା କରିବାକୁ ଯାଇ ଫକୀରମୋହନଙ୍କୁ ଅପଦସ୍ତ କରିଛି । ତେଣୁ ସେ କ୍ଷୋଭ ପ୍ରକାଶ କରିଛନ୍ତି ମୁଁ ହାଟ ବାହୁଡ଼ା କବିତାରେ ।

କବିତା ନାମରେ ଅକବିତା ସୃଷ୍ଟି କବିଙ୍କ ମନରେ ଦାରୁଣ ଆଘାତ ଦେଇଛି । ସମାଜ ଜୀବନର ଅଧୋଗତି ପାଇଁ ଏହି ପ୍ରକାର କବିତା ଅନେକ ପରିମାଣରେ ଦାୟୀ । ତେଣୁ କବି 'ଯମରାଜାର ଦରବାର' କବିତା ମାଧ୍ୟମରେ ଏହି ଅକବି ଓ ଅକବିତାକୁ ବ୍ୟଙ୍ଗୋକ୍ତି କରିବା ସଙ୍ଗେ ସଙ୍ଗେ ଯମରାଜାଙ୍କ ଦ୍ୱାରା କଠିନ ଦଣ୍ଡରେ ଦଣ୍ଡିତ କରିଛନ୍ତି । ଗୁଣାନୁଯାୟୀ କାର୍ଯ୍ୟ ନକଲେ ପ୍ରତିପଦରେ ଅପଦସ୍ତ ହେବାକୁ ହୁଏ, ଏହି କଥା ପ୍ରକାଶ ପାଇଛି ତାଙ୍କର 'ଗଦର୍ଭର ସୂକ୍ଷ୍ମ ବୁଦ୍ଧି' କବିତାରେ । ପ୍ରତ୍ୟେକ ବ୍ୟକ୍ତି ନିଜର ଦକ୍ଷତା ଓ ଗୁଣାନୁଯାୟୀ କାର୍ଯ୍ୟ ନକରି ବଡ଼ ହେବାକୁ ଚେଷ୍ଟା କରିବା ବୋକାମୀର ପରିଚୟ । କୁକୁରର କାର୍ଯ୍ୟକୁ ଅନୁସରଣ କରିବାରୁ ଗଧ ମାଲିକଠାରୁ ଉପହାର ସ୍ୱରୂପ ପାଇଛି ବେତର ପ୍ରହାର । ନିଜର ପରିସ୍ଥିତି ଓ ଆସନ ନିରୂପଣ କରିବାରେ ଅକ୍ଷମ ହେଲେ ପ୍ରାଣୀ ଏହି ପ୍ରକାର ଅସୁବିଧାର ସମ୍ମୁଖୀନ ହୁଅନ୍ତି ବୋଲି କବି ଚେତାଇ ଦେଇ ବ୍ୟଙ୍ଗୋକ୍ତି କରିଛନ୍ତି -

ଯାହାର ଯେ କାମ ନିରୂପିତ ଅଛି
ତାହାକୁ ସେ କାମ ସାଜେ
ନ ଜାଣିଲା ଲୋକ ତହିଁ ହାତ ଦେଲେ
ପିଠିରେ ପାଞ୍ଚଣ ବାଜେ ।
(ଗଦର୍ଭର ସୂକ୍ଷ୍ମ ବୁଦ୍ଧି-ଅବସର ବାସରେ)

'ଭୂଆଁ ବିରାଡ଼ି ଓ କାଳିଆ କୁକୁର' କବିତାରେ ଅନ୍ୟାୟ ତଥା ଚୋରୀକୁ ଘୃଣା କରାଯିବା ସଙ୍ଗେ ସଙ୍ଗେ ହାସ୍ୟରସ ମାଧ୍ୟମରେ କୃତକର୍ମର ପ୍ରାୟଶ୍ଚିତ କରିଛି ଭୁଆଁ ବିରାଡ଼ି । କବି ସଂସାର ଚିର ଅବହେଳିତ । ପିଲାଙ୍କ ପାଇଁ କ୍ଷୀର ଟୋପାଏ ଯୋଗାଡ଼ କରିବାକୁ ସେ ଅକ୍ଷମ । ସାହୁକାରର ଗଞ୍ଜଣା, ଘରଣୀର ଛଳୋକ୍ତି, ପିଲାମାନଙ୍କର ଦାବୀ ତାକୁ କବିତା ଲେଖାରୁ ନିବୃତ୍ତ କରିପାରେନା । ସେ କାହାରିକୁ ଠକାଇ ନପାରିବାରୁ ଶୁଖିଲା ଭାତ ଖାଇ କବିତା ଲେଖେ । ନିଜେ କାନ୍ଦି ଦୁନିଆକୁ ହସାଏ । ସ୍ତ୍ରୀର ଛଳୋକ୍ତି-

ଭାତ ଶୁଖିଗଲା ଆସ ବାବୁ ଭଲା
ତୁଚ୍ଛା ତୁଚ୍ଛା ଯାଅ ଖାଇ

ଶୋଇଲେ ସକଳେ ବସିବ ନିରୋଳେ
କବିତା ଲେଖିବା ପାଇଁ ।
(କବିର କଳିହୁଡ଼ୀ ସ୍ତ୍ରୀ-ଅବସର ବାସରେ)

ପରିମାଣ ଦୃଷ୍ଟିରୁ ସ୍ୱଳ୍ପ ହେଲେ ମଧ୍ୟ କବିଙ୍କର ହାସ୍ୟ ଓ ବ୍ୟଙ୍ଗ କବିତାଗୁଡ଼ିକର ଗୁଣାତ୍ମକ ମୂଲ୍ୟକୁ ଅସ୍ୱୀକାର କରାଯାଇନପାରେ । ପାଠକ ସମାଜକୁ ହସେଇ ହସେଇ ତାରି ମାଧ୍ୟମରେ ତୀବ୍ର ବ୍ୟଙ୍ଗୋକ୍ତି କରିବାର କୌଶଳ ଫକୀରମୋହନଙ୍କୁ ଯେପରି ଜଣାଥିଲା, ତାହା ବାସ୍ତବରେ ଅନନ୍ୟ ସାଧାରଣ । ଏହି ତୀକ୍ଷ୍ଣ ବ୍ୟଙ୍ଗବାଣ କେବଳ ସମାଜ ସଂସ୍କାର ପାଇଁ ଉଦ୍ଦିଷ୍ଟ ନଥିଲା, ପରନ୍ତୁ ମାତୃଭୂମି ଓ ମାତୃଭାଷାକୁ ଉପଯୁକ୍ତ ମର୍ଯ୍ୟାଦା ପ୍ରଦାନ କରିବାକୁ ଅଭିପ୍ରେତ ଥିଲା । ପ୍ରତ୍ୟକ୍ଷ ଭାବରେ ନକହି, ସେହି କଥାକୁ ପରୋକ୍ଷରେ କହି ସମାଜ ଆଖିରେ ଟିପ ମାରି ସେ ବାସ୍ତବ ସତ୍ୟଟି ଦେଖାଇ ଦେବାର ଯେଉଁ କୌଶଳ ଆୟତ୍ତ କରିଥିଲେ, ପ୍ରାୟ ନଅଟି ଦଶନ୍ଧି ପରେ ମଧ୍ୟ ସେହି କୌଶଳର ଯଥାରୀତି ପ୍ରୟୋଗ ହୋଇ ନପାରିବା କମ୍ ବିସ୍ମୟକର କଥା ନୁହେଁ ।

**ବେଦନାବୋଧ :**

କବି କେବଳ ନିଜକୁ ଦେଖେ ନାହିଁ, ଦେଖେ ମଧ୍ୟ ଜଗତକୁ । ବିଶ୍ୱ ଯେତେବେଳେ ଆନନ୍ଦମୟ, ସେତେବେଳେ ତା କବିତାରୁ ଝରିପଡ଼େ ଆନନ୍ଦର ମନ୍ଦାକିନୀ ଧାରା । ମାତ୍ର ଜଗତ ଯେତେବେଳେ ଶୋକାଚ୍ଛନ୍ନ, ଜଗତର ଦୁଃଖ ସେତେବେଳେ କବି ହୃଦୟ ତନ୍ତ୍ରୀରେ ଅନୁରଣିତ ହୋଇଉଠେ । ଜଗତର ବେଦନାବୋଧ ରୂପାନ୍ତରିତ ହୁଏ କବିର ବେଦନାବୋଧରେ । ତା' ଲେଖନୀରୁ ଝରିପଡ଼େ ବେଦନାବୋଧର ଉଷ୍ମ ପ୍ରସ୍ରବଣ । ଜୀବନ ଓ ଜଗତ ଏକାକାର ହୋଇଉଠେ ତା ଦୃଷ୍ଟିରେ । ସେ ହୁଏ ସ୍ରଷ୍ଟା ଓ ଦ୍ରଷ୍ଟା । ଦୃଷ୍ଟିର ଦିଗ୍‌ବଳୟ ଲମ୍ବିଯାଏ ମୂଳ ଉତ୍ସ ସନ୍ଧାନରେ । ସନ୍ଧାନୀ ଚକ୍ଷୁରେ ତାର ଧରାପଡ଼ିଯାଏ ଜଗତର ନିତ୍ୟ-ଅନିତ୍ୟ, ସୁଖ-ଦୁଃଖ ଓ ହସକାନ୍ଦ । କବିତା କେତେବେଳେ ସୁମଧୁର ଅର୍କେଷ୍ଟ୍ରା ତୋଳେ ତ ଆଉ କେତେବେଳେ ତୋଳେ କରୁଣ ରାଗିଣୀର ବେହାଗ । ସେତିକିବେଳେ ହୁଏ କବିତାର ରୂପଗତ ଓ ଭାବଗତ ପରିବର୍ତ୍ତନ ।

ଫକୀରମୋହନ ଥିଲେ ଜଣେ ସମ୍ବେଦନଶୀଳ କବି । ଅନ୍ୟ ଦୁଃଖରେ ସେ ଥିଲେ ଧୈର୍ଯ୍ୟହରା । ତେଣୁ ସାମାନ୍ୟ ତୁଚ୍ଛ ପ୍ରାଣୀଟିର ଦୁଃଖ, ତାଙ୍କ କବି ହୃଦୟକୁ ଆନ୍ଦୋଳିତ କରୁଥିଲା । ଯଦି କ୍ରୌଞ୍ଚ ମିଥୁନ ଯୁଗଳ ମଧ୍ୟରୁ ବ୍ୟାଧ ଶରାହତ ଏକ

ପକ୍ଷୀର ଦାରୁଣ ଦୃଶ୍ୟରେ ବାଲ୍ମୀକି ରାମାୟଣ ପରି ଏକ ମହାକାବ୍ୟ ରଚନା କରିପାରନ୍ତି, ତେବେ ଗୋଟିଏ ପ୍ରାଣୀର ଦାରୁଣ ଦୁଃଖରେ କବିତାଟିଏ ରଚନା କରିବା ଅସମ୍ଭବ ହେବ କାହିଁକି ? କବିଙ୍କର 'ବିରହୀ ହଳଦୀ ବସନ୍ତ' କବିତାଟିର ପୃଷ୍ଠଭୂମିରେ ଏହି ଦୃଶ୍ୟଟି ରହିଛି । କବି ନିଜ ଆତ୍ମଜୀବନରେ ସ୍ୱୀକାର କରିଛନ୍ତ "ଅନେକ ମାସ ପର୍ଯ୍ୟନ୍ତ ମନ ଦେଇ ଦେଖିଛି । ପ୍ରତିଦିନ ସକାଳ ଠିକ୍ ୯ଟା ସମୟରେ ଯୋଡ଼ିଏ ହଳଦି ବସନ୍ତ ଆସି ପୁଷ୍ପୋଦ୍ୟାନ ମଧ୍ୟରେ କ୍ରୀଡ଼ାରତ ଥାନ୍ତି । ସେ ବିଷୟରେ ଗୋଟିଏ କବିତା ଲେଖିଲି ।[୧୭] ଏହି କବିତାଟିର ପାଦ ଟୀକାରେ ସେ ସ୍ପଷ୍ଟ ଉଲ୍ଲେଖ କରିଛନ୍ତି, ସ୍ତ୍ରୀ ପକ୍ଷୀଟିର ବିଚ୍ଛେଦରେ ଉପବାସରେ ପୁରୁଷ ପକ୍ଷୀଟି ପ୍ରାଣତ୍ୟାଗ କରିଥିବାର ବିଷୟ କବିବର ରାଧାନାଥ ରାୟ ବାହାଦୂର ପ୍ରତ୍ୟକ୍ଷ କରିଅଛନ୍ତି ।[୧୮] କବିଙ୍କର 'ବିରହୀ ହଳଦୀ ବସନ୍ତ' କବିତାଟି ବିଶ୍ୱର ଯେକୌଣସି ଶ୍ରେଷ୍ଠ ଶୋକଗୀତିକା ସହିତ ତୁଳନୀୟ ହୋଇପାରେ । ଏହାର ଭାବ ଯେପରି କରୁଣ ରସାଶ୍ରିତ, ଭାଷା ମଧ୍ୟ ଅନୁରୂପ କରୁଣ ଭାବ ଉଦ୍ରେକ କାରୀ । ସାମାନ୍ୟ ପକ୍ଷୀଟିର ଦାମ୍ପତ୍ୟ ପ୍ରେମକୁ କବି ପ୍ରଶଂସା ନକରି ରହିପାରି ନାହାନ୍ତି । ଯେ ନିଜର ପ୍ରିୟା ପାଇଁ ପ୍ରାଣ ଦେଇପାରେ, ସେ ପ୍ରକୃତ ପ୍ରେମିକ ନୁହେଁତ ଆଉ କ'ଣ ?

ଦୁଃସହ କାନ୍ତା ଶୋକେ ତେଜିଲା ପ୍ରାଣ
ମାନବେ ଦେଇଗଲା କି ଦିବ୍ୟଜ୍ଞାନ
କ୍ଷୁଦ୍ର ସେ ବିହଙ୍ଗମ ତିର୍ଯ୍ୟଗ ଜାତି
କାହୁଁ ଶିଖିଲା ଜାୟା ପ୍ରେମ ଏ ନୀତି ?
ପତ୍ନୀ ସକାଶେ ଦେଲା ନିଜ ଜୀବନ
ଦାମ୍ପତ୍ୟ ପ୍ରଣୟକୁ ବୋଲଇ ଧନ୍ୟ ।

(ବିରହୀ ହଳଦୀବସନ୍ତ-ଅବସର ବାସରେ)

'ଯୀଶୁକ୍ରୁଶ' କବିତାରେ ପାଷାଣ୍ଡମାନଙ୍କ ବର୍ବରୋଚିତ କାର୍ଯ୍ୟଦ୍ୱାରା ଗୋଟିଏ ନିରୀହ ମାନବର ଅକାଳ ମୃତ୍ୟୁ କବି ହୃଦୟରେ ବେଦନାବୋଧ ସୃଷ୍ଟି କରିଛି । ସ୍ୱାମୀ ନେପୋଲିୟନ୍‌ଙ୍କ ସୁଖପାଇଁ ଯୋସେଫାଇପ ଯେଉଁ ଆତ୍ମତ୍ୟାଗର ଜ୍ୱଳନ୍ତ ଦୃଷ୍ଟାନ୍ତ ଦେଖାଇଛନ୍ତି, ପୃଥିବୀ ଇତିହାସରେ ତାହା ବିରଳ । କିମ୍ବଦନ୍ତୀ କୁହେ "ଭାବୀ ବଂଶଧର କାମନାରେ ନେପୋଲିୟନ୍ ଅଷ୍ଟ୍ରିଆର ରାଜକୁମାରୀ ମେରୀ ଲୁଇଙ୍କୁ ବିବାହ କରିଥିଲେ(୧୯) ମଧ୍ୟ ଯୋସେଫାଇନ୍ ଦୁଃଖିତ ସ୍ୱାମୀଙ୍କୁ ସୁଖ ସଂସାର ଗଢ଼ିବାର ପ୍ରତିବନ୍ଧକ ନହେବା ପାଇଁ ନିଜର ଦୁଃଖକୁ ଅନ୍ତରରେ ଚାପି ନୀଳ ସାଗରର ନୀଳ

ଢେଉରେ ପୋତ ମେଲି ଦେଇଥିଲେ ।[୨୦] ଗୋଟିଏ ନାରୀର କରୁଣ ଜୀବନ ଓ ଅସହାୟତା ପ୍ରତି କବି ହୃଦୟରେ ଗଭୀର ସମବେଦନା ସୃଷ୍ଟି ହୋଇଛି । 'କପୋତ ସଙ୍ଗୀତ'ରେ କବିଙ୍କର ନିଜ ଜୀବନ ଦର୍ଶନ ପ୍ରତିଫଳିତ ହୋଇଥିଲେ ମଧ୍ୟ ପକ୍ଷୀଟିର ଦାରୁଣ ଦୁର୍ଦ୍ଦଶା ତାଙ୍କ ମନରେ ବେଦନାବୋଧ ଜାଗ୍ରତ କରିଛି ।

ବାଲ୍ୟକାଳରୁ ପିତାମାତା ହରାଇ ବଡ଼ବାପା ଓ ମା'ଙ୍କର ନିର୍ଯ୍ୟାତନାରେ ବଢ଼ି ଆସିଥିବା ଫକୀରମୋହନ ଦୁଃଖକୁ ନିଜର ସାଥୀ କରିନେଇଥିଲେ ମଧ୍ୟ ଦୁଃଖର ଯନ୍ତ୍ରଣା କିପରି ମର୍ମନ୍ତୁଦ, ତାହା ସେ ହୃଦୟରେ ଅନୁଭବ କରିଥିଲେ । ତେଣୁ ଅନ୍ୟର ଦୁଃଖ ଦେଖି ସେ ଅଶ୍ରୁବିଗଳିତ ହୋଇ ପଡ଼ିବା ସ୍ୱାଭାବିକ । ବିଧବା ନାରୀର କରୁଣ କ୍ରନ୍ଦନ, ଅତ୍ୟାଚାରିତା ଜୀବନ, ବିପନ୍ନ ନାବିକର ଅସହାୟତାବୋଧ, ପତିତା ନାରୀର ସକରୁଣ ଜୀବନ, ଉତ୍କଳ କୃଷକର ଅବହେଳିତ ଜୀବନ, ପିତାମହୀଙ୍କ ସ୍ନେହ ପ୍ରଭୃତି ଯାବତୀୟ ଅନୁଭୂତି ତାଙ୍କ ସହାନୁଭୂତିଶୀଳ ହୃଦୟକୁ ଗଭୀର ବେଦନାବୋଧରେ ଭାରାକ୍ରାନ୍ତ କରିଛି । ତାଙ୍କ କବିତା କେବଳ ହସର ସାଥୀ ନୁହେଁ, ଦୁଃଖର ସାଥୀ ଓ ଯନ୍ତ୍ରଣାର ସାଥୀ । ଜୀବନ ଦର୍ଶନ ଅପେକ୍ଷା ଜୀବନର ମୂଲ୍ୟବୋଧ କଳନା କରିବାକୁ ତାଙ୍କର କବିତାଗୁଡ଼ିକ ଅଭିପ୍ରେତ ହୋଇଥିବାରୁ ତାହା ସାର୍ବଜନୀନ ହୋଇପାରିଛି ।

## ମାନବିକତାବୋଧ

ଦରଦୀ କବି ଫକୀରମୋହନଙ୍କ ମାନବିକତାବୋଧ ତାଙ୍କର ଅଧିକାଂଶ କବିତାରେ ଦୃଷ୍ଟିଗୋଚର ହୋଇଥାଏ । ଈଶ୍ୱରଙ୍କ ସୃଷ୍ଟିରେ ମାନବ ଏକ ଶ୍ରେଷ୍ଠ ଜୀବ ଭାବରେ ସ୍ୱୀକୃତି ଲାଭ କରିଛି । ପରସ୍ପର ପ୍ରତି ଭ୍ରାତୃତ୍ୱ, ସ୍ନେହ ଓ ସୌହାର୍ଦ୍ଦ୍ୟ ପ୍ରଦର୍ଶନ କରିବା ମାନବର ଶ୍ରେଷ୍ଠ ଗୁଣ । କାରଣ ମାନବର ମସ୍ତିଷ୍କ ଅନନ୍ତ ଶକ୍ତିର ଆଧାର ଓ ଏହା ପ୍ରଗତି କରି ଚରମ ସୀମାରେ ଉପନୀତ ହୁଏ, ଯେତେବେଳେ ମାନବିକ ଗୁଣର ଯଥାର୍ଥ ମହିମା ପ୍ରକଟିତ ହୁଏ । ଏହି ମାନବିକ ମୂଲ୍ୟବୋଧ ବା ମାନବବାଦ ମାନବ ମସ୍ତିଷ୍କକୁ ଏକ ଅନନ୍ତର ମାନ୍ୟତାରେ ମଣ୍ଡିତ କରିପାରେ[୨୧] ମାନବତା ଗୁଣର ଶ୍ରେଷ୍ଠ ବିକାଶରେ ।

ଫକୀରମୋହନ ମାନବକୁ ତାର ଅଧିକାର ଓ ମାନବୋଚିତ ଗୁଣର ବିକାଶ ପାଇଁ ସାହାଯ୍ୟ କରିଛନ୍ତି । ତାଙ୍କ ଦୃଷ୍ଟିରେ ପ୍ରତ୍ୟେକ ମାନବ ସମାନ । ସାମାନ୍ୟ ଗରୀବ କୃଷକ, ବାରବନିତା ପାଇଁ ତାଙ୍କ ହୃଦୟରେ ଯେଉଁ ପରିମାଣରେ ସ୍ନେହ ଗଚ୍ଛିତ ଥିଲା, ରାଜପ୍ରାସାଦ ବାସିନୀ ଓ ଧନୀ ସମ୍ଭ୍ରାନ୍ତଶାଳୀ ବ୍ୟକ୍ତିଙ୍କ ପାଇଁ ସେହି ପରିମାଣରେ ସ୍ନେହ ଅତୁଟ ରହିଥିଲା । ବିଧବା ନାରୀର ଅନ୍ତର ବେଦନା ଏ ସମାଜ କେବେ ହୃଦୟଙ୍ଗମ

କରେ ନାହିଁ। ଯୌବନର ପ୍ରାରମ୍ଭରେ ସେ ସ୍ୱାମୀକୁ ହରାଇ ଯେଉଁ ବିଚ୍ଛେଦ ଯନ୍ତ୍ରଣା ଅନୁଭବ କରେ, ତାହା ଅନୁଭବୀ ବ୍ୟତୀତ ଅନ୍ୟ କିଏ ବା ଅନୁଭବ କରିପାରିବ ? କିନ୍ତୁ ମାନବିକତାବୋଧ ଥିବା ଯେକୌଣସି ବ୍ୟକ୍ତିଙ୍କୁ ବିଧବାର ଏହି ଦାରୁଣ ଯନ୍ତ୍ରଣା ଦୁଃଖ ଦେବ ନିଶ୍ଚୟ । ଫକୀରମୋହନ ଥିଲେ ସେହିପରି ଜଣେ ସମ୍ବେଦନଶୀଳ ମଣିଷ । ବିଧବା ସପକ୍ଷରେ ସେ ଏହି ରକ୍ଷଣଶୀଳ ସମାଜ ବିରୋଧରେ ବ୍ୟଙ୍ଗୋକ୍ତି କରିଛନ୍ତି ।

'କପୋତ ସଙ୍ଗୀତ' ଓ 'ବିରହୀ ହଳଦୀବସନ୍ତ' କବିତା ଦୁଇଟିରେ କବି ହୃଦୟର ମାନବିକବୋଧ କଳାତ୍ମକ ରୂପ ନେଇ ଆତ୍ମପ୍ରକାଶ କରିଛି । କୃଷକ ଅବହେଳିତ ଜୀବନ ଲକ୍ଷ୍ୟ କରି ସେ ସହାନୁଭୂତି ପ୍ରକାଶ କରିଛନ୍ତି । ପତିତା ନାରୀକୁ ପ୍ରଥମେ ବ୍ୟଙ୍ଗୋକ୍ତି କରିଥିଲେ ମଧ୍ୟ, ପରବର୍ତ୍ତୀ ପର୍ଯ୍ୟାୟରେ ତାର ଅଧଃପତନ ପାଇଁ ଏ ସମାଜ ମୁଖ୍ୟତଃ ଦାୟୀ ବୋଲି କଠୋରବାଣୀ ଶୁଣାଇଛନ୍ତି । ଏହିପରି ଭାବରେ ତାଙ୍କର ସମଗ୍ର କବିତା ରାଜ୍ୟକୁ ଅନୁଶୀଳନ କଲେ ତାଙ୍କ କାବ୍ୟ କବିତାଗୁଡ଼ିକରେ ମାନବିକବୋଧର ଭୂରି ଭୂରି ପରିଚୟ ମିଳିପାରିବ ।

## ଧର୍ମବୋଧ ଓ ବିଶ୍ୱଧର୍ମ

ଜୀବନର ଶେଷ ମୁହୂର୍ତ୍ତରେ ଫକୀରମୋହନ ଅନେକ ଆଧ୍ୟାତ୍ମିକ ଭାବ ସମ୍ବଳିତ କବିତା ରଚନା କରିଯାଇଅଛନ୍ତି । ଧର୍ମକ୍ଷେତ୍ରରେ ଫକୀରମୋହନ ଥିଲେ ଉଦାର ଭାବାପନ୍ନ । ସେ କୌଣସି ନିର୍ଦ୍ଦିଷ୍ଟ ଧର୍ମକୁ ପ୍ରଶ୍ରୟ ଦେଇ ନଥିଲେ କିମ୍ବା କୌଣସି ନିର୍ଦ୍ଦିଷ୍ଟ ଧର୍ମ ମତବାଦର ପୃଷ୍ଠପୋଷକ ମଧ୍ୟ ନଥିଲେ । ତାଙ୍କର ଧର୍ମବୋଧ ଦେଶ, କାଳ, ନିର୍ବିଶେଷରେ ବିଶ୍ୱଧର୍ମବୋଧରେ ରୂପାନ୍ତରିତ ହୋଇଛି । ସଂକୀର୍ଣ୍ଣ ଧର୍ମାନ୍ଧତାଠାରୁ ଦୂରରେ ରହି ବିବେକାନୁମୋଦିତ କାର୍ଯ୍ୟ ସାଧନରେ ସେ ବ୍ରତୀ ଥିବାରୁ କୌଣସି ନିର୍ଦ୍ଦିଷ୍ଟ ଧର୍ମମତବାଦ ପ୍ରତି ତାଙ୍କର ଆଗ୍ରହ ନଥିଲା । ସେ ନିଜର ଧର୍ମମତବାଦ ସଂପର୍କରେ କହିଛନ୍ତି 'ଅବସର ବାସରେ'ର ମୁଖବନ୍ଧରେ– "ଏଥିରେ ଧର୍ମନୀତି ସମ୍ବନ୍ଧୀୟ କେତେଗୁଡ଼ିଏ କବିତା ଥିଲେ ମଧ୍ୟ ସେ ସମସ୍ତ ସର୍ବବାଦୀ ସମ୍ମତ ଅଟେ । ଏହାକୁ କି ହିନ୍ଦୁ, କି ମୁସଲମାନ, କି ଖ୍ରୀଷ୍ଟାନ୍ କାହାରି ପକ୍ଷରେ ପାଠ ବିଷୟରେ ଆପତ୍ତି ଥିବାର କାରଣାଭାବ ।[୨୨] ଫକୀରମୋହନଙ୍କ ଏହି ସ୍ୱୀକାରୋକ୍ତିରୁ ତାଙ୍କର ଧର୍ମମତ ସଂପର୍କରେ ସୂଚନା ମିଳିଥାଏ ।

ଫକୀରମୋହନ ସଂସ୍କାରମୁକ୍ତ ଧର୍ମବିଶ୍ୱାସର ପକ୍ଷପାତୀ ଥିଲେ । ବିଶ୍ୱର ପ୍ରତ୍ୟେକ ସ୍ତରରେ ସେ ଈଶ୍ୱରଙ୍କ ସତ୍ତା ଅନୁଭବ କରୁଥିଲେ । ଏ ବିଶ୍ୱ ଯେ ଚିର ରହସ୍ୟମୟ, ଏହା ସେ ସର୍ବଦା ଅନୁଭବ କରୁଥିଲେ । ସେ ନାସ୍ତିକ ନଥିଲେ । ପ୍ରତ୍ୟେକ କାର୍ଯ୍ୟରେ

ଈଶ୍ୱରଙ୍କ ଆଦେଶ କାର୍ଯ୍ୟକାରୀ ହେଉଛି ବୋଲି ସେ ବିଶ୍ୱାସ କରୁଥିଲେ। ତେଣୁ 'ଆତ୍ମଜୀବନ ଚରିତ'ରେ ଲେଖିଛନ୍ତି "ଅଥଚ ମାତୃପିତୃହୀନ, ଚିରରୋଗୀ ମୁଁ ଜୀବନକାଳରେ ବିବିଧ ପ୍ରକାର ଭୟଙ୍କର ବିପଦ-ସଙ୍କୁଳ-ଅବସ୍ଥା ଅତିକ୍ରମ କରି ସଂପ୍ରତି ଜରାଜୀର୍ଣ୍ଣ ଦୁର୍ବଳ ହସ୍ତରେ ମୋହର ଦୀର୍ଘ ଜୀବନର ଅସାର ଚରିତ ଲେଖିବାକୁ ବସିଅଛି। ଏହା କାହାର ଆଦେଶ, କାହାର ଅନୁଗ୍ରହ ଓ ସହାୟତା ? ଗୋଟିଏ କ୍ଷୁଦ୍ରତମ ଦୂର୍ବାଦଳର ସୃଷ୍ଟି ମଧ୍ୟ ଉଦ୍ଦେଶ୍ୟବିହୀନ ନୁହେଁ। କି ଉଦ୍ଦେଶ୍ୟ ସାଧନ ସକାଶେ ଭଗବାନ ମୋତେ ଏତେକାଳ ଜୀବିତ ରଖାଇଅଛନ୍ତି ?"(୨୩) ଫକୀରମୋହନଙ୍କର ଏହି ପ୍ରଗାଢ଼ ଧର୍ମବିଶ୍ୱାସ ତାଙ୍କୁ ଏକ ଆଧ୍ୟାତ୍ମିକ ମଣିଷର ପରିଚୟ ପ୍ରଦାନ କରିଛି। ଧର୍ମପ୍ରତି ତାଙ୍କର ନିର୍ବିକାର ଓ ଉଦାର ଦୃଷ୍ଟିଭଙ୍ଗୀ ଯୋଗୁଁ ସେ ସମୟେ ସମୟେ ନାସ୍ତିକ ବୋଲି ମନେ ହୋଇଥାନ୍ତି, ବାସ୍ତବରେ ସେ ନାସ୍ତିକ ନଥିଲେ।

କବିଙ୍କ ଦୃଷ୍ଟିରେ ଈଶ୍ୱର ଏକ। କିନ୍ତୁ ଅଜ୍ଞାନ ମାନବ ତାଙ୍କୁ ବିଭିନ୍ନ ନାମରେ ଓ ରୂପରେ ପୂଜା କରେ। ମୁସଲମାନ ଆଲ୍ଲା ରୂପରେ, ଶୈବ ଶିବ ରୂପରେ, ଗାଣପତ୍ୟ ଗଣପତି ରୂପେ ବା ଅନ୍ୟ କେହି ଲର୍ଡ଼ ଗର୍ଡ଼ ରୂପେ ପ୍ରାର୍ଥନା କରୁଛି। କେହି ଜିହୋବା କହୁଛିତ କିଏ କହୁଛି ଯୋବ। ତାଙ୍କର କୌଣସି ଗୋଟିଏ ନିର୍ଦ୍ଦିଷ୍ଟ ନାମ ନାହିଁ। ସେ ଗୁଣାତୀତ, କାଳାତୀତ ଓ ସର୍ବାତୀତ। ସେ ପୁଣି ସତ୍ୟ, ନିତ୍ୟ, ଶିବ, ସର୍ବଭୂତ ଆଚ୍ଛାଦିତ। ପୁଣି ସେ ଅନ୍ତର୍ଯ୍ୟାମୀ, ସର୍ବେଶ୍ୱର, ସର୍ବବିଦ୍ୟମାନ। ବିଶ୍ୱବ୍ରହ୍ମାଣ୍ଡର ସୃଷ୍ଟି, ସ୍ଥିତି ଓ ସଂହାରକର୍ତ୍ତା। ତେଣୁ ତାଙ୍କୁ କୌଣସି ନିର୍ଦ୍ଦିଷ୍ଟ ନାମ ଦେଇ ଡକାଯାଇ ନପାରେ–

କି ନାମେ ଭଜିବି ପାରୁନାହିଁ ସ୍ଥିର କରି
ଏତିକି ଜାଣୁଛି ମୋର ସର୍ବମୟ ହରି
ସକଳ ନାମର ମହାପ୍ରଭୋ ସୃଷ୍ଟିକାରୀ
ଆପଣେ ସେ ହେବେ ବୋଲ କେଉଁ ନାମଧାରୀ ?

(ସର୍ବବାଦୀ ସମ୍ମତ ନାମ – ଅବସର ବାସରେ)

ତେଣୁ ଫକୀରମୋହନଙ୍କର ଧର୍ମବୋଧ ଦେଶ, କାଳର ସୀମିତ ପରିସୀମାର ଊର୍ଦ୍ଧ୍ୱରେ। ଯେପରି ପ୍ରତ୍ୟେକ ନଦୀର ଉଦ୍ଦେଶ୍ୟ ସାଗର ସହିତ ଏକାକାର ହୋଇଯିବା; ଅନୁରୂପ ଭାବରେ ଯେ ଯେଉଁ ମାର୍ଗଦେଇ ଗତି କଲେ ମଧ୍ୟ ସେହି ଏକ ପରମେଶ୍ୱରଙ୍କ ନିକଟରେ ସମସ୍ତେ ମିଳିତ ହେବେ। ସେଇଥିପାଇଁ ହିନ୍ଦୁମାନଙ୍କର ଆରାଧ୍ୟ ଦେବତା କୃଷ୍ଣ ଓ ଖ୍ରୀଷ୍ଟିଆନମାନଙ୍କର ପରମଦେବତା ଖ୍ରୀଷ୍ଟଙ୍କୁ କବି ଏକ ଓ ଅଭିନ୍ନ ଭାବରେ

ପରିକଳ୍ପନା କରିଛନ୍ତି ତାଙ୍କର 'କୃଷ୍ଣ ଏବଂ ଖ୍ରୀଷ୍ଟ କବିତାରେ।' ଉକ୍ତ କବିତାଟିରେ ଧର୍ମବୋଧ ଅପେକ୍ଷା ମାନବିକତାବୋଧର ଅଧିକ ପରିଚୟ ମିଳିଥାଏ। କାରଣ ଯୀଶୁଖ୍ରୀଷ୍ଟଙ୍କୁ ଏ ମାନବ ଜାତି ଯେତେ ନିର୍ଯ୍ୟାତନା ଦେଲେ ମଧ୍ୟ, ଅଭିଶାପ ପରିବର୍ତ୍ତେ ସେ ପ୍ରଭୁଙ୍କୁ ପ୍ରାର୍ଥନା କରିଛନ୍ତି, ସେମାନଙ୍କୁ କ୍ଷମା ପ୍ରଦାନ କରିବାକୁ। ଯୀଶୁ ଜଗତର ହିତ ପାଇଁ ନିଜର ସମସ୍ତ କଷ୍ଟ ପାଶୋରି ଦେଇଥିଲେ। ତାଙ୍କ ରକ୍ତରେ ଜନସାଧାରଣଙ୍କ ଦୁର୍ଗତି ଧୋଇ ହୋଇଯିବାକୁ ପ୍ରାର୍ଥନା କରୁଥିଲେ। ଭାଗବତ ଓ ବାଇବେଲର ଚରିତ ସମାନ। ଏକ ତୁଳନାତ୍ମକ ଆଲୋଚନା କରି କହିଛନ୍ତି ଉଭୟ କୃଷ୍ଣ ଓ ଯୀଶୁ ପଶୁପାଳ ଗୃହରେ ଜନ୍ମଲାଭ କରିଥିଲେ ଏବଂ ଜଗତ ଉଦ୍ଧାର ନିମିତ୍ତ ନିଜକୁ ମାନବଜାତିର କଲ୍ୟାଣ ଉଦ୍ଦେଶ୍ୟରେ ଉତ୍ସର୍ଗ କରିଥିଲେ। କୃଷ୍ଣ ଯେପରି ଗୁରୁପୁତ୍ରଙ୍କୁ ଉଦ୍ଧାର କରି ନିଜର ମହନୀୟତା ପ୍ରକାଶ କରିଥିଲେ, ଯୀଶୁ ସେହିପରି ଏକାଧିକ ବ୍ୟକ୍ତିଙ୍କୁ ଜୀବନ ପ୍ରଦାନ କରିଥିଲେ। କୃଷ୍ଣ ଓ ଯୀଶୁ ଜଗତରେ ପରିପୂର୍ଣ୍ଣ ହୋଇଥିବା ଶତ ଶତ ପାପୀଙ୍କୁ ଉଦ୍ଧାର କରିବାକୁ ଘୋଷଣା କରିଥିଲେ। ଖ୍ରୀଷ୍ଟ ଓ କୃଷ୍ଣ ଉଭୟ 'ଈଶ' ନାମରେ କଥିତ। କୁରୁକ୍ଷେତ୍ର ଯୁଦ୍ଧରେ ଶ୍ରୀକୃଷ୍ଣ ଅର୍ଜୁନଙ୍କୁ ବିଶ୍ୱରୂପ ପ୍ରଦର୍ଶନ କରିଥିବା ପରି ଯୋନ ଓ ପିତାଙ୍କୁ ମଧ୍ୟ ଯୀଶୁଖ୍ରୀଷ୍ଟ ଐଶୀରୂପ ଦର୍ଶନ କରାଇଥିଲେ। ଶ୍ରୀକୃଷ୍ଣ ଅର୍ଜୁନଙ୍କ ନିକଟରେ ତତ୍ତ୍ୱ ବ୍ୟାଖ୍ୟାନବେଳେ ସ୍ୱକ୍ଷୋକ୍ତି କରିଥିଲେ ମୁଁ ଅନନ୍ତ, ଜଗତର ଆଦି, ମଧ୍ୟ ଓ ଅନ୍ତ। ସେହିପରି ଯୀଶୁଖ୍ରୀଷ୍ଟ ନିଜକୁ ପ୍ରଥମ, ଶେଷ ଓ ଜଗତ ନିୟନ୍ତା ବୋଲି ଘୋଷଣା କରିଥିଲେ। ଶ୍ରୀକୃଷ୍ଣ ତ୍ରିଶୂଳ ଶରରେ ଦେହତ୍ୟାଗ କରିଥିଲେ ଓ ଯୀଶୁ କ୍ରୁଶବିଦ୍ଧ ହୋଇ ମୃତ୍ୟୁବରଣ କରିଥିଲେ। ସେଥିପାଇଁ ଫକୀରମୋହନ ଲେଖିଛନ୍ତି–

ଖ୍ରୀଷ୍ଟକୃଷ୍ଣ ଦୁଇଜଣ ଅଟନ୍ତି ସମାନ
ଭାଗବତ, ବାଇବେଲ ସେଥିର ପ୍ରମାଣ
ଅଟନ୍ତି ଏ ଦୁଇ ପ୍ରଭୁ ଧର୍ମ ଅବତାର
ବେନି ଜନେ କର ଯୋଡ଼ି କରେ ନମସ୍କାର।

(କୃଷ୍ଣ ଏବଂ ଖ୍ରୀଷ୍ଟ – ଅବସରବାସରେ)

ଈଶ୍ୱରଙ୍କ ମହିମା ପ୍ରଚାର ଉଦ୍ଦେଶ୍ୟରେ ଯୀଶୁ ଜନ୍ମଲାଭ କରିଥିଲେ। ସେ ତାଙ୍କର କଷ୍ଟ ନିମିତ୍ତ ଯେତିକି ଉଦ୍‌ବିଗ୍ନ ନୁହନ୍ତି, ତତୋଽଧିକ ଉଦ୍‌ବିଗ୍ନ ପ୍ରଭୁଙ୍କ ମହିମା କିପରି ଚତୁର୍ଦ୍ଦିଗରେ ପ୍ରଚାରଲାଭ କରିବ।[୨୪] ଏପରି ମହନୀୟ ଆଦର୍ଶ ବୋଧହୁଏ ଅନ୍ୟ କେହି ପ୍ରଚାର କରିଯାଇନାହାନ୍ତି। 'ତୁକାରାମ' କବିତାରେ ତୁକାରାମଙ୍କ ମହନୀୟ ଆଦର୍ଶ ଓ ପ୍ରଭୁଙ୍କ ପ୍ରତି ଅଟଳ ନିଷ୍ଠା ପ୍ରକାଶ ଲାଭ କରିଛି। ଏପରିକି ଛତ୍ରପତି ଶିବାଜୀଙ୍କ ଅନୁରୋଧ ମଧ୍ୟ ସେ ପ୍ରତ୍ୟାଖ୍ୟାନ କରିଦେଇଛନ୍ତି।

'ଶ୍ରୀ ଚୈତନ୍ୟଦେବଙ୍କ ସଂକୀର୍ତ୍ତନ' କବିତାଟିରେ କବିଙ୍କର ସମନ୍ୱୟ ଧର୍ମିତା ଭାବ ପ୍ରକାଶପାଇଛି । ଭେଦାଭେଦ ଓ ଜାତିପ୍ରଥା ମାନବସୃଷ୍ଟ । କୋରାନ୍, ବାଇବେଲ୍, ବେଦ ପ୍ରତ୍ୟେକ ଶାସ୍ତ୍ରର ଉଦ୍ଦେଶ୍ୟ ବ୍ରହ୍ମଲାଭ । ସର୍ବଘଟରେ ଚିଦାନନ୍ଦ ବିଦ୍ୟମାନ । ତେଣୁ କେହି ଘୃଣ୍ୟ ବା କେହି ଉତ୍କୃଷ୍ଟ ନୁହନ୍ତି । ଧର୍ମ ସମ୍ମୁଖରେ ସମସ୍ତେ ସମାନ ।

ଦେଖନ୍ତୁ କୋରାନ୍, ଫେଇ, ବାଇବେଲ, ବେଦ
ସମସ୍ତଙ୍କ ଲକ୍ଷ୍ୟ ବ୍ରହ୍ମ-ନାହିଁ ଭେଦାଭେଦ ।
× × ×
ସର୍ବଘଟେ ସ୍ଥିତ ଚିଦାନନ୍ଦ ଭଗବାନ
ଗୀତା, ଭାଗବତ ଶାସ୍ତ୍ର ସେଥିର ପ୍ରମାଣ

(ଶ୍ରୀ ଚୈତନ୍ୟଦେବଙ୍କ ସଂକୀର୍ତ୍ତନ – ଅବସରବାସରେ)

ତାଙ୍କର ଧର୍ମମତ ସଂପର୍କରେ ସମାଲୋଚକ ଚିତ୍ତରଞ୍ଜନ ଦାସ କୁହନ୍ତି– ଇସଲାମର ବିଶ୍ୱାସ, ଯୀଶୁ ପ୍ରଚାରିତ ପ୍ରେମ, ଗୌତମଙ୍କର ବୈରାଗ୍ୟ ଓ ଶ୍ରୀଚୈତନ୍ୟଙ୍କର ଭକ୍ତି– ଏକାଧାରରେ ଏହି ଚାରିଟିଯାକର ଯୋଗ୍ୟ ହେଲେ ଯାଇ ସ୍ୱର୍ଗର ଅଧିକାର ଲାଭ ସମ୍ଭବ ବୋଲି କବି ଘୋଷଣା କରିଛନ୍ତି । × × × ବିଶ୍ୱାସ, ବୈରାଗ୍ୟ, ପ୍ରେମ ଓ ଭକ୍ତିକୁ ଫକୀରମୋହନ ଧର୍ମର ଚତୁଷ୍ପଦ ବୋଲି ସ୍ୱୀକାର କରିଛନ୍ତି । ଏହି ସମନ୍ୱୟଟି ଲାଗି ସିଏ ଇସ୍‌ଲାମ ଧର୍ମରୁ ବିଶ୍ୱାସ ଆଣିଛନ୍ତି, ବୌଦ୍ଧଧର୍ମରୁ ବୈରାଗ୍ୟ ଆଣିଛନ୍ତି, ଚୈତନ୍ୟ ମାର୍ଗରୁ ଭକ୍ତି ଏବଂ ଖ୍ରୀଷ୍ଟଧର୍ମରୁ ପ୍ରୀତିକୁ ଆଣି ଏକାଠି ଗୋଳିବାକୁ ଚେଷ୍ଟା କରିଛନ୍ତି । ପଞ୍ଚସଖାଙ୍କ ପରେ ଏପରି ଏକ ସମନ୍ୱୟ ଭାବନା ହୁଏତ ଓଡ଼ିଶାର ସାହିତ୍ୟରେ ଅନ୍ୟତ୍ର ଦେଖିବାକୁ ମିଳିବ ନାହିଁ ।[୨୪]

ଫକୀରମୋହନ ପ୍ରତ୍ୟେକ ଧର୍ମର ସାରତତ୍ତ୍ୱ ଗ୍ରହଣ କରି ଏକ ନୂତନ ମାର୍ଗର ସନ୍ଧାନ ଦେଇଛନ୍ତି, ତାହା ହେଉଛି ଜାତିପ୍ରଥା ଊର୍ଦ୍ଧ୍ୱରେ ରହି ପ୍ରତ୍ୟେକ ମାନବ ନିଜକୁ ଭ୍ରାତୃ ବନ୍ଧନରେ ଆବଦ୍ଧ କରିପାରିଲେ, ସେହି ନିତ୍ୟ କାଳଜୟୀ ଈଶ୍ୱରଙ୍କ ସାନ୍ନିଧ୍ୟ ଲାଭ କରିବାକୁ ମାନବ ସମାଜ ସମର୍ଥ ହୋଇପାରିବ । ସଂକୀର୍ଣ୍ଣତା ଓ ଧର୍ମାନ୍ଧତା ଊର୍ଦ୍ଧ୍ୱରେ ରହି ସେ ଏହି ଯେଉଁ କବିତାଗୁଡ଼ିକ ରଚନା କରିଛନ୍ତି, ତାହା ହୋଇପାରିଛି ସାର୍ବକାଳିକ ଓ ସାର୍ବଜନୀନ ।

### ଜାତୀୟତାବୋଧ

ଯେଉଁ କବିଙ୍କ ରଚନାରେ ଜାତିର ସମସ୍ୟା, ଆଶା-ଆକାଂକ୍ଷା ଯଥାର୍ଥ ରୂପ ନେଇ ପ୍ରକାଶ ଲାଭ କରିଥାଏ, ସେହିଁ ପ୍ରକୃତ ଜାତୀୟ କବି । ତେଣୁ କୁହାଯାଇଥାଏ

"କବିତା କେବଳ କବିଙ୍କ ଉପରେ ନିର୍ଭର କରେ ନାହିଁ । ଜାତୀୟ ମାନସ ଓ ଏହି ଜାତୀୟ ମାନସ ସୃଷ୍ଟ ଆଧାତ୍ମିକ, ବୌଦ୍ଧିକ ତଥା ନନ୍ଦନତାତ୍ତ୍ୱିକ ପରଂପରା ଓ ପରିବେଶ ଉପରେ ମଧ୍ୟ ନିର୍ଭର କରିଥାଏ ।[୨୬] ଜାତୀୟବାଦୀ କବି ଜାତି ଇତିହାସର ବାର୍ତ୍ତାବହ, ଜାତୀୟଚେତନାର ଉଗ୍ର ପୁରୋଧା । ଏହି କବି ଜାତୀୟ ଇତିହାସ, ସଂସ୍କୃତି ଓ ରାଜନୀତିକୁ ବିଶ୍ଳେଷଣପୂର୍ବକ ସୁପ୍ତ ଜନମାନସରେ ଜାତୀୟତାର ନବରଙ୍ଗ ଖେଳାଇଥାଏ । ତେଣୁ ଯଥାର୍ଥରେ କୁହାଯାଇଥାଏ "ଗୋଟିଏ ଜାତିର ସାଂସ୍କୃତିକ, ତଥା ରାଜନୀତିକ କାର୍ଯ୍ୟକଳାପ, ଆକାଂକ୍ଷା ଓ ରୁଚିର ଜୀବନ୍ତ ପରିପ୍ରକାଶ ହିଁ ଜାତୀୟତା ।"[୨୭]

ନିଜ ଜାତି ଓ ମାତୃଭୂମିର ପରାଧୀନତାର ତିକ୍ତ ଅନୁଭୂତି ଫକୀରମୋହନ ନିଜେ ଅଙ୍ଗେ ଲିଭାଇଥିଲେ । ବ୍ୟକ୍ତିଗତ ସ୍ୱାର୍ଥ ଊର୍ଦ୍ଧ୍ୱରେ ରହି, ମାତୃଭୂମି ତଥା ମାତୃଭାଷାର ଉନ୍ନତି କଳ୍ପେ ନିଜକୁ ଉତ୍ସର୍ଗ କରି ଦେଇଥିଲେ । କବିତା ମାଧ୍ୟମରେ ଜନମାନସରେ ଜାତୀୟଭାବ ସୃଷ୍ଟି କରିବା ଥିଲା ତାଙ୍କର ପ୍ରଧାନ ଉଦ୍ଦେଶ୍ୟ । ସେଥିପାଇଁ ସେ ପ୍ରସଙ୍ଗକ୍ରମେ ଅନ୍ୟ ଜାତିମାନଙ୍କର ଜାତୀୟତାର ଉଦାହରଣ ଦେଇଛନ୍ତି । ତାଙ୍କ ଦୃଷ୍ଟିରେ ସମଗ୍ର ଭାରତବର୍ଷ ଏକ ଓ ଅଭିନ୍ନ । ସେ ଉତ୍ତମ ରୂପେ ହୃଦୟଙ୍ଗମ କରିଥିଲେ ଉତ୍କଳ ଭାରତର ଏକ ଅଂଶବିଶେଷ ଓ ଏହା କୌଣସି ପ୍ରକାର ଭାରତବର୍ଷର ଜାତୀୟ ସ୍ରୋତରୁ ବିଚ୍ୟୁତ ହୋଇ ନପାରେ । ଯେତେବେଳେ ଜାତୀୟଭାବନା ଖଣ୍ଡ ବିଖଣ୍ଡିତହୁଏ, ସେତେବେଳେ ଜାତି ହୁଏ ପରାଧୀନ । ଏହାର ଆତ୍ମରକ୍ଷାର ଶକ୍ତି ଲୋପ ପାଏ । ଯଥାର୍ଥରେ ଡଃ ମିଶ୍ର କୁହନ୍ତି- "ଜାତୀୟତା ଏକ ସଂପୂର୍ଣ୍ଣ ବସ୍ତୁ । ଏହା କୌଣସି ପ୍ରକାର ଖଣ୍ଡିତ ଆକାଂକ୍ଷା ଓ ଅଭିରୁଚିର ବିକ୍ଷିପ୍ତ ପ୍ରକାଶ ନୁହେଁ । ଏକ ଦିଗରେ ଯେପରି ଏହା କାଳରେଖାରେ ଅତୀତ ସହିତ ବର୍ତ୍ତମାନ ଓ ଭବିଷ୍ୟତକୁ ସଂଲଗ୍ନ କରେ, ଦେଶର ପ୍ରାକୃତିକ ଭୂଗୋଳ ସହିତ ମାନସିକ ଭାବାବେଶରେ ଦେଶବାସୀଙ୍କ ହୃଦୟକୁ ଏକାତ୍ମ କରେ, ସେଇପରି ଭାଷା, ସଂସ୍କୃତି, ଆର୍ଥିକ ଜୀବନ, ସାମାଜିକ ଚଳଣି- ଏ ସମସ୍ତ ଦିଗରୁ ଦେଶବାସୀଙ୍କ ମନକୁ ଏକ ସାମଞ୍ଜସ୍ୟ ସମନ୍ୱୟ ସୂତ୍ରରେ ଗ୍ରଥିତ କରେ ।[୨୮] ଏକତା ଭାବହିଁ ଜାତୀୟତାର ପ୍ରାଣ । ସେଇଥିପାଇଁ ଫକୀରମୋହନ ଉତ୍କଳର 'ସ୍ୱାଧୀନତା ମାଧ୍ୟମରେ ଦେଖିଛନ୍ତି, ସମଗ୍ର ଭାରତର ସ୍ୱାଧୀନତା' । ଜନ୍ମଭୂମି ତାଙ୍କ ପକ୍ଷରେ ଏକ ପବିତ୍ର ସ୍ଥାନ । ମାନବର ଜନ୍ମ, ଲୀଳାକ୍ଷେତ୍ର ଏହି ମାତୃଭୂମି । ଜନ୍ମଭୂମି ପ୍ରତି ତାଙ୍କର ଯେଉଁ ଅଶେଷ ମୋହ ଥିଲା, ତାହା ସେ ପ୍ରକାଶ କରିଛନ୍ତି, 'ଜନ୍ମଭୂମି' କବିତାରେ ।[୨୯]

ଉତ୍କଳୀୟମାନଙ୍କର ପରମୁଖାପେକ୍ଷିତା ଲକ୍ଷ୍ୟ କରି ସେ ବ୍ୟଥିତ ହୋଇଛନ୍ତି । ଉତ୍କଳରେ ପ୍ରାଚୁର୍ଯ୍ୟର ଅଭାବ ନଥିବା ସତ୍ତ୍ୱେ ଉତ୍କଳୀୟମାନଙ୍କର ଅନ୍ୟ ନିକଟରେ ନତଜାନୁ ହୋଇ ହାତ ପାତିବା ଦୁଃଖର ବିଷୟ ନିଶ୍ଚୟ । ବିଦେଶୀ ପାଠ ଅଧ୍ୟୟନ କରି

ଗୋଟିଏ ଦସ୍ତଖତ ପରିବର୍ତ୍ତେ କେତୋଟି ଟଙ୍କା ଆଣି, ଯେଉଁ ଉତ୍କଳୀୟମାନେ ନିଜକୁ ଭାଗ୍ୟବାନ ମନେ କରୁଛନ୍ତି, ସେହିମାନେହିଁ ପ୍ରକୃତ ଜାତିବିରୋଧୀ। ରାଜଭାଷା ଶିକ୍ଷାକରି ଅନ୍ୟର ଗୋଲାମୀ କଲେ ସମ୍ମାନ ବଢ଼େ ନାହିଁ। ଆମର ଇତିହାସ, ଆମ ଶିଳ୍ପକଳା ଓ କର୍ମନିପୁଣତାର ଢେର ଢେର ଉଦାହରଣ ରହିଛି। ପୂର୍ବେ ଇଉରୋପୀୟ ଲଳନାଗଣ ଉତ୍କଳୀୟଙ୍କ ଦ୍ୱାରା ନିର୍ମିତ ବସ୍ତ୍ର ପରିଧାନ କରିବାକୁ ଆଗ୍ରହ ପ୍ରକାଶ କରୁଥିଲେ; ମାତ୍ର ଏବେ ସେହି ଉତ୍କଳୀୟ ମାଞ୍ଚେଷ୍ଟରରୁ ଖଣ୍ଡେ କନା ପାଇବା ନିମିତ୍ତ ଲାଳାୟିତ। ଶସ୍ୟଶ୍ୟାମଳା ଉତ୍କଳର ସନ୍ତାନ ମୁଠାଏ ନିଜପାଇଁ ଦାନା ଯୋଗାଡ଼ କରିବାକୁ ଅକ୍ଷମ। ମହାରାଜ ଯୁଧିଷ୍ଠିର ରାଜସୂୟ ଯଜ୍ଞକରି ଘୋଷଣା କରିଥିଲେ ଉତ୍କଳୀୟମାନେ ମହାବୀର। ଅଥଚ ସେହି ମାଟିର ସନ୍ତାନ ଯୁଦ୍ଧକ୍ଷେତ୍ରରେ ରଙ୍ଗପାଗ ଦେଖି ଭୟଭୀତ ହେବା ଲଜ୍ଜାର କଥା ନୁହେଁକି ? ବାଣିଜ୍ୟ ବ୍ୟବସାୟରେ ଯେଉଁ ଜାତି ଉନ୍ନତିର ଚରମ ସୋପାନରେ ଅଧିଷ୍ଠିତ ହୋଇପାରିଥିଲା, ଆଜି ବିଦେଶୀମାନେ ତାଙ୍କର ଆସନ ଦଖଲ କରିନେବାରୁ ନୀରବଦ୍ରଷ୍ଟା ହୋଇ ବସିରହିବା ଘୋର ପରିତାପର ବିଷୟ। ଆମ ଓଳି ତଳେ ଲୁଣ ଗଦା ହୋଇଥିବାବେଳେ ଆମେ ଲିଭରପୁରରୁ ଲୁଣ ଆମଦାନୀ କରୁଛୁ। ଆମ ତନ୍ତୀବଂଶଙ୍କର ସର୍ବନାଶ କରି ମାଞ୍ଚେଷ୍ଟରରୁ ବସ୍ତ୍ର କ୍ରୟ କରି ନିଜକୁ ଗୌରବାନ୍ୱିତ ମନେ କରୁଛୁ। ଜାତିର ମୁକ୍ତି ଓ ସ୍ୱାଧୀନତା ପାଇଁ ସମସ୍ତେ ଏକଯୁଟ ହୋଇ କାର୍ଯ୍ୟ ନକଲେ ପଶ୍ଚାତରେ ନିଶ୍ଚୟ ଅନୁତାପ କରିବାକୁ ହେବ।[୩୦]

ରିଂ ଲିଡର ବୋଲାଉଥିବା ଫକୀରମୋହନ ଜାତି ଓ ଦେଶର ଦୁର୍ଗତି ନାଶ ପାଇଁ ମନ୍ଦ୍ରବାଣୀରେ ଆହ୍ୱାନ ଜଣାଇଛନ୍ତି। ସ୍ୱର୍ଣ୍ଣପ୍ରସୂ ଏହି ଦେଶରେ କୌଣସି ପଦାର୍ଥର ଅଭାବ ନାହିଁ। ଯାହା ଅଭାବ, ତାହା କେବଳ ମନୋବଳ। ଫଳ, ଜଳରେ ଯେଉଁ ମାଟି ଭରପୂର ତାରି ସନ୍ତାନଗଣ ଦୁଃଖରେ କାଳାତିପାତ କରିବା, ଆଶ୍ଚର୍ଯ୍ୟର ବିଷୟ ନୁହେଁ କି ? ଏମାନଙ୍କର ଜାତି ଅଭିମାନ ନଥିବାରୁ ପ୍ରତିଯୋଗିତା କ୍ଷେତ୍ରରେ ସର୍ବଦା ପଛରେ ପଡ଼ିଯାଇଛନ୍ତି। ନିଜ ମାତାର ସମ୍ମାନ ରକ୍ଷା ଯେ ଜାଣେ ନାହିଁ, ତାର ପ୍ରାପ୍ୟ ଅନ୍ୟଠାରୁ ଅପମାନ। ଦେଶ ଓ ଜାତିର ଉନ୍ନତି କଳ୍ପେ ଏକମନପୂର୍ବକ କାର୍ଯ୍ୟ କଲେ, ମାନବ ନିଶ୍ଚୟ ବଡ଼ ହୋଇପାରିବ।[୩୧]

ଏ ସଂସାର ଏକ କର୍ମସ୍ଥଳୀ। ପ୍ରତିଯୋଗିତାରେ ଯେ ପଛରେ ପଡ଼ିଯାଏ, ତାର ଭବିଷ୍ୟତ ଉନ୍ନତିର ମାର୍ଗ ଚିରଦିନ ପାଇଁ ବନ୍ଦ ହୋଇଯାଏ। ଏଣୁ ସଂସାର ସମରରେ ଭୀତତ୍ରସ୍ତ ନହୋଇ ସାହସପୂର୍ବକ ଗତି କଲେ ସମସ୍ତ ବାଧାବିଘ୍ନ ଆପେ ଆପେ ଦୂରୀଭୂତ ହୋଇଯାଇଥାଏ। ଦେଶରେ ପ୍ରଚଳିତ କୁସଂସ୍କାର, ଅନ୍ଧବିଶ୍ୱାସର ଅନ୍ଧାନୁସରଣ

ନକରି ତାର ପ୍ରତିରୋଧ କରିବାକୁ ସେ ଆହ୍ୱାନ ଦେଇଛନ୍ତି । 'ଶରୀର ପତନ' ବା 'କାର୍ଯ୍ୟସାଧନ'– ଏହି ପ୍ରତିଜ୍ଞା କରି ଜୀବନଯୁଦ୍ଧରେ ଅଗ୍ରସର ହେଲେ ପ୍ରତ୍ୟେକ କ୍ଷେତ୍ରରେ ବିଜୟର ଟୀକା ସୁନିଶ୍ଚିତ । କାର୍ଯ୍ୟ ସାଧନାର୍ଥେ ଦେଶାନ୍ତର ଯିବାକୁ ହେଲେ ପଶ୍ଚାତ୍‌ପଦ ହେବା ଅନୁଚିତ । ଦୁର୍ଲ୍ଲଭ ମାନବ ଜନ୍ମ ନେଇ ପଶୁପରି କାର୍ଯ୍ୟ କରିବା ସର୍ବଦା ନିନ୍ଦନୀୟ ।[୩୨] ଅତୀତ ଅତୀତରେ ରହିଯାଉ । ପୂର୍ବପୁରୁଷଙ୍କର ନିର୍ଦ୍ଦେଶିତ ପଥକୁ ପାଥେୟ କରି ଜୀବନଯୁଦ୍ଧରେ ଅଗ୍ରସର ହେଲେ ସମସ୍ତ କାର୍ଯ୍ୟ ଅବିଳମ୍ବେ ସାଧିତ ହୋଇପାରିବ । ତେଣୁ ସେ 'ଉତ୍‌ଥାନ ସଙ୍ଗୀତ'ରେ ଜାତିର ଦୁର୍ଦ୍ଦଶା ବର୍ଣ୍ଣନା ସଙ୍ଗେ ସଙ୍ଗେ ସମସ୍ତଙ୍କୁ ଏକତ୍ରିତ ହୋଇ କାର୍ଯ୍ୟ କରିବାକୁ ନିର୍ଦ୍ଦେଶ ଦେଇଛନ୍ତି । ବିଦେଶୀ ଭାଷା ପଢ଼ିବା ଅନ୍ୟାୟ ନୁହେଁ, ମାତ୍ର ତାଦ୍ୱାରା ନିଜର ପ୍ରକୃତି ଓ ସ୍ୱଭାବ ଭୁଲି ଅନ୍ୟକୁ ଅନ୍ଧାନୁସରଣ କରିବା ମୂର୍ଖତାର ପରିଚୟ । 'ଭାଇକଳି' କବିତାରେ ବ୍ୟକ୍ତିସ୍ୱାର୍ଥ, ଜାତିଆଣ ମନୋଭାବ ପରିତ୍ୟାଗପୂର୍ବକ ସାମୂହିକ କାର୍ଯ୍ୟ ସାଧନରେ ବ୍ରତୀ ହେବାକୁ ଅନୁରୋଧ କରାଯାଇଛି ।

ଭାରତୀୟମାନଙ୍କୁ 'ଜାପାନ' କବିତା ମାଧ୍ୟମରେ ଉଦ୍‌ବୋଧନ ଦିଆଯାଇଛି । ୧୯୦୪-୦୫ ମସିହାରେ ରୁଷ ସହିତ ଜାପାନର ଯେଉଁ ଭୟଙ୍କର ଯୁଦ୍ଧ ହୋଇଥିଲା, ସେଥିରେ ଜାପାନବାସୀ ଯେଉଁ ଦେଶ ଭକ୍ତି ଓ ଜାତିପ୍ରୀତିର ପରାକାଷ୍ଠା ପ୍ରଦାନ କରିଛନ୍ତି, ତାହା ବିଶ୍ୱ ଇତିହାସରେ ବିରଳ । ବୃଦ୍ଧମାତା ତାର ଏକମାତ୍ର ପୁତ୍ରକୁ ସୈନିକ ବେଶରେ ସଜାଇ ଦେଇ ରଣାଙ୍ଗନକୁ ପଠାଇ ଦେଇଛି । ନବଯୌବନୀ ରମଣୀ ନିଜ ସ୍ୱାମୀ ମଥାରେ ବିଜୟଟୀକା ପିନ୍ଧାଇଦେଇ, ସର୍ବାଙ୍ଗରେ ବିଭିନ୍ନ ଅସ୍ତ୍ରଶସ୍ତ୍ରରେ ସୁଶୋଭିତ କରି ହସି ହସି ସ୍ୱାମୀକୁ ନିର୍ଦ୍ଦେଶ ଦେଉଛି ଯୁଦ୍ଧକ୍ଷେତ୍ରରେ ଶତ୍ରୁ ଧ୍ୱଂସ କରିବାକୁ । ଏହାଠାରୁ ଆଉ କି ଅଧିକ ଜାତୀୟପ୍ରୀତି ସେମାନଙ୍କଠାରୁ ଆଶା କରାଯାଇପାରେ ? ତେଣୁ ଜାତୀୟ କବି ଫକୀରମୋହନ ଜାପାନବାସୀଙ୍କୁ ଅନୁରୋଧ କରିଛନ୍ତି ଭାରତୀୟଙ୍କୁ ଦେଶପ୍ରେମ ଶିକ୍ଷାଦେବାକୁ । ଭାରତୀୟମାନଙ୍କୁ କବି ଆହ୍ୱାନ କରିଛନ୍ତି, ଜାପାନବାସୀଙ୍କ ଠାରୁ ଦେଶପ୍ରେମ ଶିକ୍ଷା କରି ନିଜର ମାତୃଭୂମିର ସ୍ୱାଧୀନତା ନିମିତ୍ତ ଆତ୍ମବଳି ଦେବାକୁ ।[୩୩]

ଇଂରେଜମାନେ ଏ ଦେଶର ଶାସନଭାର ନିଜ ହାତକୁ ନେବାପରେ, ଦେଶର ସମସ୍ତ ଗୌରବ ଓ ଶ୍ରେଷ୍ଠ ପଦାର୍ଥ ନିଜ ଦେଶକୁ ନେଇ ଯାଉଥିବା ସମୟରେ ହିନ୍ଦୁମାନେ କେବଳ ମଟମଟ କରି ସେମାନଙ୍କ ଆଡ଼କୁ ଚାହିଁ ରହିଛନ୍ତି ଯାହା ।

ବିଦେଶକୁ ଯାଇ ନିଜେ ଉପାର୍ଜନ କରି ନ ଶିଖିଲେ, ଦେଶର ଉନ୍ନତି କଦାପି ସମ୍ଭବ ହୋଇପାରିବ ନାହିଁ ।

ଫକୀରମୋହନ ଅନେକ ଜାତୀୟତାମୂଳକ କବିତା ରଚନା କରିଥିଲେ ମଧ୍ୟ ବେଳେବେଳେ ଏହାର ପ୍ରଚାର ଧର୍ମିତା କବିତାର ମହତ୍ତ୍ୱ ହାନି କରିଥିବା ପରି ଅନୁମିତ ହୋଇଥାଏ । ସମାଲୋଚକ ମହାନ୍ତି କୁହନ୍ତି– "ମାତ୍ର ତାହାଙ୍କର ସ୍ୱଦେଶ ପ୍ରୀତିମୂଳକ ବହୁ କବିତା ବିଶେଷ ପରିମାଣରେ ପ୍ରଚାରମୂଳକ ହୋଇ ପଡ଼ିଥିବାରୁ ତାହା ଉଚ୍ଚକୋଟିର କାବ୍ୟରୂପ ଲାଭ କରିପାରିନାହିଁ ।"[୩୪] ତଥାପି ଜାତିର ଅଧଃପତନ ସମୟରେ ସେ ଯେଉଁ ଜାତୀୟତାର ବାଣୀ ଏ ଦେଶକୁ ଶୁଣାଇଛନ୍ତି, ତାହା ତାଙ୍କୁ ଏକ ଜାତୀୟବାଦୀ କବି ଭାବରେ ସ୍ୱୀକୃତି ଦେଇଛି । କବିତା ମାଧ୍ୟମରେ ଜନମାନସରେ ଜାତୀୟଭାବ ସୃଷ୍ଟିକରି ଦେଶ ଓ ଜାତିକୁ ପରାଧୀନତା କବଳରୁ ମୁକ୍ତି କରିବାପାଇଁ ସେ ଯେଉଁ ବୀରୋଚିତ ପଦକ୍ଷେପ ନେଇଥିଲେ, ତାହାହିଁ ତାଙ୍କୁ ଓଡ଼ିଶା ତଥା ଓଡ଼ିଆ ସାହିତ୍ୟରେ ଚିରଦିନ ପାଇଁ ବଞ୍ଚାଇ ରଖିବ, ଏଥିରେ ସନ୍ଦେହ ନାହିଁ ।

## ଭାଷାପ୍ରୀତି ଓ ଉତ୍କଳୀୟତାବୋଧ

୧୮୬୬ ମସିହାରେ ସଂଘଟିତ ନ'ଅଙ୍କ ଦୁର୍ଭିକ୍ଷ, ୧୮୬୯ ମସିହାର ଭାଷା ସୁରକ୍ଷା ଆନ୍ଦୋଳନ ଓ ଏ ଦେଶରେ ଆଧୁନିକ ଶିକ୍ଷାର ବିସ୍ତାର ସଙ୍ଗେ ସଙ୍ଗେ ଏ ଦେଶର ଜନସାଧାରଣଙ୍କ ମାନସ ରାଜ୍ୟରେ ଏକ ଭାବବିପ୍ଳବ ସଂଘଟିତ ହୋଇଥିଲା । ଏହିଥିରୁ ଉଚ୍ଚଶିକ୍ଷିତମାନଙ୍କ ମନରେ ଜାତୀୟଚେତନାର ପ୍ରଥମ ତରଙ୍ଗ ସୃଷ୍ଟିଲାଭ କରିଥିଲା । ପଡ଼ୋଶୀ ଦେଶର ଅଗ୍ରଗତି ଓ ଉତ୍କଳୀୟଙ୍କର ଦୁରବସ୍ଥା, ସମାଜ ସଚେତନ କେତେଜଣ ବ୍ୟକ୍ତିଙ୍କ ମଧ୍ୟରେ ଏକ ଆଲୋଡ଼ନ ସୃଷ୍ଟି କରିଥିଲା । ଉତ୍କଳ ଭାଷା ଓ ଉତ୍କଳୀୟଙ୍କର ଏକତ୍ରୀକରଣ ପାଇଁ ଏମାନେ ପ୍ରଥମେ ଅଗ୍ରସର ହୋଇଥିଲେ । ଜାତୀୟ ଜୀବନ ସ୍ରୋତ ସହିତ ଜନସାଧାରଣଙ୍କୁ ସାମିଲ କରିବା ନିମିତ୍ତ ବିଭିନ୍ନ ପତ୍ରପତ୍ରିକା, ସାଧାରଣ ସଭା ମାଧ୍ୟମରେ ଉଦ୍ୟମ କରାଯାଇଥିଲା । ଯେଉଁ କେତେଜଣ ମୁଷ୍ଟିମେୟ ବ୍ୟକ୍ତି ଏ କ୍ଷେତ୍ରରେ ନିଜକୁ ଉତ୍ସର୍ଗ କରିଥିଲେ, ସେମାନଙ୍କ ମଧ୍ୟରେ ଫକୀରମୋହନ ଅନ୍ୟତମ ।

'ଓଡ଼ିଆ ଭାଷାରେ ଉତ୍ତମ ପାଠ୍ୟପୁସ୍ତକର ଅଭାବ'– ବଙ୍ଗାଳୀମାନଙ୍କର ଏହି ଆହ୍ୱାନର ପ୍ରତ୍ୟୁତ୍ତର ଦେବାକୁ ଯାଇ ଫକୀରମୋହନ ରଚନା କରିଥିଲେ ଭାରତ ଇତିହାସ, ଭୂଗୋଳ ଇତ୍ୟାଦି ପାଠ୍ୟପୁସ୍ତକ । ମାତୃଭାଷାର ଉନ୍ନତି ସାଧନ କରିବାକୁ

ଯାଇ ସେ ପ୍ରତିଷ୍ଠା କଲେ 'ମୁଦ୍ରଣ ଯନ୍ତ୍ର'। ସେ କବିତା ରଚନା କରିବା ସମୟରେ ତାଙ୍କ ସମ୍ମୁଖରେ ଦୁଇଟି ଆଦର୍ଶ ରହିଥିଲା। ପ୍ରଥମଟି ମାତୃଭାଷାର ଉନ୍ନତି ଓ ଦ୍ୱିତୀୟଟି ମାତୃଭୂମିର ମହତ୍ତ୍ୱରକ୍ଷା। ସେ ଉତ୍ତମରୂପେ ଅନୁଭବ କରିଥିଲେ, ମାତୃଭାଷାର ଉନ୍ନତି ନହେଲେ ଦେଶ ତଥା ବ୍ୟକ୍ତିର ଉନ୍ନତି ଅସମ୍ଭବ। କଟକ ଆଲୋଚନା ସଭାର ଚତୁର୍ଥ ଅଧିବେଶନରେ ସେ ଯେଉଁ ଭାଷଣ ଦେଇଥିଲେ, ସେଥିରେ ଉତ୍କଳୀୟମାନଙ୍କୁ ମାତୃଭାଷା ପ୍ରତି ଶ୍ରଦ୍ଧାବାନ ହେବାକୁ ଉଦ୍‌ବୋଧନ ଦେଇଥିଲେ– "ସାହିତ୍ୟ ଜାତିର ଜୀବନ, ଜାତିର ବଳ, ଜାତିର ପଦ ମର୍ଯ୍ୟାଦା, ରକ୍ଷାର ଏକମାତ୍ର ଅବଲମ୍ବନ। ଯେଉଁ ଦେଶର ଯେଉଁ ଜାତିର ସାହିତ୍ୟ ଉନ୍ନତ ନୁହେଁ, ସେ ଦେଶବାସୀଙ୍କର ଏଇ ସମସ୍ତ ମାର୍ଗ ଅତି ସଂକୀର୍ଣ୍ଣ। × × × ପୃଥିବୀର ଇତିହାସ ଆଲୋଚନା କରି ଦେଖନ୍ତୁ, ପୃଥିବୀର କୌଣସି ଜାତି ପରକୀୟା ଭାଷା ବଳରେ ପ୍ରକୃତ ଉନ୍ନତି ଲାଭ କରିବାକୁ ସକ୍ଷମ ହୋଇନାହିଁ।"(୩୫) ଯେଉଁ ଜାତି ମାତୃଭାଷାର ମର୍ଯ୍ୟାଦା ରଖି ଜାଣେ ନାହିଁ, ସେ ଜାତିର ଉନ୍ନତି ଅସମ୍ଭବ। ମାତୃଭାଷାର ଉନ୍ନତି ନହେଲେ, ଦେଶର ଉନ୍ନତି ହେବ ନାହିଁ କିମ୍ବା ଦୁର୍ଗତି ମଧ୍ୟ ଘୁଞ୍ଚିବ ନାହିଁ। ଜାତି ବଡ଼ ହୁଏ ମାତୃଭାଷାର ସ୍ୱାଭିମାନ ନେଇ। ପର ପସରା ଆବୋରି କାର୍ଯ୍ୟ କଲେ ମଣିଷ ହୁଏ ହୀନ, ନୀଚ। ସେଥିପାଇଁ ସେ ସ୍ପଷ୍ଟୋକ୍ତି କରିଛନ୍ତି–

ନ କରିଲେ ମାତୃଭାଷାର ଉନ୍ନତି
ଘୁଞ୍ଚିବ କି କେବେ ଦେଶର ଦୁର୍ଗତି।

(ଉତ୍‌ଥାନ ସଙ୍ଗୀତ – ଅବସରବାସରେ)

କେତେକ ଇଂରାଜୀ ଶିକ୍ଷିତ ଆଧୁନିକ ଯୁବକଙ୍କର ମାତୃଭାଷା ପ୍ରତି ହୀନ ମନୋଭାବ ଓ ଇଂରାଜୀ ଶିକ୍ଷାର ଅନ୍ଧାନୁସରଣ ଲକ୍ଷ୍ୟକରି ସେ ବ୍ୟଥିତ ହୋଇ 'ମୁଁ ହାଟ ବାହୁଡ଼ା' ଓ 'ଉତ୍କଳ ଭ୍ରମଣଂ' କାବ୍ୟରେ ସେମାନଙ୍କୁ ବ୍ୟଙ୍ଗୋକ୍ତି କରିଥିଲେ।(୩୬) ଗୋଟିଏ ଜାତିର ମାନସିକ ଅଭିବୃଦ୍ଧି ଘଟେ ତାର ଭାଷା ଓ ସାହିତ୍ୟର ଉନ୍ନତିରେ। ଜାତୀୟତାର ବିକାଶ ଘଟେ ସାହିତ୍ୟର ବିକାଶରେ। ଅନ୍ୟ ଭାଷା ଶିକ୍ଷା କରିବା ଅପରାଧ ନୁହେଁ; କିନ୍ତୁ ଅନ୍ୟଭାଷା ଶିକ୍ଷା କରିବା ସଙ୍ଗେ ସଙ୍ଗେ ମାତୃଭାଷାକୁ ସଂପୂର୍ଣ୍ଣ ପରିତ୍ୟାଗ କରିବା ଅମାନବିକତାର କାର୍ଯ୍ୟ, ଆଜି ଇଂରାଜୀ ଭାଷା ପୃଥିବୀର ଶ୍ରେଷ୍ଠ ଭାଷା ଭାବରେ ପରିଗଣିତ ହେବାର ଏକମାତ୍ର କାରଣ ସେମାନଙ୍କର ନିଜ ଭାଷା ପ୍ରତି ଗଭୀର ସମ୍ମାନବୋଧ ଓ ଭାଷାପ୍ରୀତି। ପଡ଼ୋଶୀ ବଙ୍ଗଳା ଭାଷା ମଧ୍ୟ ପ୍ରାଦେଶିକ ଭାଷା ତୁଳନାରେ ଅନେକ ପାଦ ଆଗରେ। ତେବେ ପ୍ରଶ୍ନ ଉଠେ, ଆମ ମାତୃଭାଷାର ଏପର

ଅଧୋଗତି କାହିଁକି ? ଏହାର ଏକମାତ୍ର ଉତ୍ତର, ଏପର୍ଯ୍ୟନ୍ତ ଆମମାନଙ୍କ ମଧ୍ୟରେ ଜାତିପ୍ରୀତି ଓ ଭାଷାପ୍ରୀତି ଜାଗ୍ରତ ହୋଇନାହିଁ, କି ହେବାର ସୁଯୋଗ ମଧ୍ୟ ଦେଉ ନାହୁଁ। ଯେଉଁ କବି ଜାତି ସଚେତନ, ଭାଷା ସଚେତନ, ତା ଚକ୍ଷୁରେ କିନ୍ତୁ ନିଜ ଭାଷା ଓ ଭୂମି ଗରୀୟସୀ। ଫକୀରମୋହନଙ୍କ ମାତୃଭାଷା ଓ ମାତୃଭୂମି ପ୍ରୀତି ଅତୁଳନୀୟ। ଗୋଟିଏ ଦୁଇଟି ପଦ ଦେଖନ୍ତୁ।

ପଢ଼ିଲି ନାନା ଦେଶ ଭାଷା     କାହିଁତ ନ ପୂରିଲା ଆଶା
ହେଉ ପଛକେ ସେ ନିକୃଷ୍ଟ     ମୋ ମାତୃଭାଷା ମୋତେ 'ଶ୍ରେଷ୍ଠ'
ଦେଖିଲି ବୁଲି ବହୁ ଦୂର     କାଞ୍ଚି କାମାକ୍ଷା କାନପୁର
ପାଇଲି ନାହିଁ ଘୂରି ଘୂରି     ମୋ ମାତୃଭୂମିର ମାଧୁରୀ।

(ପଦ୍ୟମାଳା–ପୂଜାଫୁଲ)

ଫକୀରମୋହନଙ୍କର ଧାରଣା ଥିଲା, ମାତୃଭାଷାର ପ୍ରସାଦ ଯୋଗୁଁ ମନୁଷ୍ୟ ଜ୍ଞାନ, ବିଦ୍ୟା, ସୁଖ, ଭାଗ୍ୟର ଅଧିକାରୀ ହୋଇଥାଏ। ଭକ୍ତି, ଶ୍ରଦ୍ଧା, ସ୍ନେହ, ମାୟା ପ୍ରଭୃତି ସ୍ୱର୍ଗୀୟଧନର ଅଧିକାରୀ ହେଉଛି ମାତୃଭାଷା। ଯେଉଁ ମାନବ ମାତୃଭାଷାର ସେବାରେ ନିଜକୁ ଉତ୍ସର୍ଗ କରିଥାଏ ତାର ଜୀବନ ଧନ୍ୟ।

କେବଳ ମାତୃଭାଷା ନୁହେଁ, ମାତୃଭୂମି ପ୍ରତି ଥିଲା ତାଙ୍କର ଗଭୀର ଭକ୍ତି ଓ ଶ୍ରଦ୍ଧା। ବିଚ୍ଛିନ୍ନ ଉତ୍କଳର ଦୁର୍ଦ୍ଦଶା ଦର୍ଶନ କରି ସେ ମ୍ରିୟମାଣ ହୋଇପଡ଼ିଥିଲେ। କୁଳବୃଦ୍ଧ ମଧୁସୂଦନ ବିଚ୍ଛିନ୍ନ ଉତ୍କଳକୁ ଏକତ୍ର କରିବା ନିମିତ୍ତ ଯେଉଁ ଉଦ୍ୟମ କରିଥିଲେ ସେଥିପାଇଁ ଏ ଜାତିର ଇତିହାସରେ ତାଙ୍କ ନାମ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ରହିବ। କିନ୍ତୁ ମଧୁସୂଦନଙ୍କ ପୂର୍ବରୁ ଫକୀରମୋହନ ଉତ୍କଳର ଦୁରବସ୍ଥା ହୃଦୟଙ୍ଗମ କରି କବିତା ମାଧ୍ୟମରେ ବିଚ୍ଛିନ୍ନ ଉତ୍କଳର ଅବସ୍ଥା ଏ ଜାତି ସମ୍ମୁଖରେ ଉପସ୍ଥାପନ କରିଥିଲେ। ୧୯୧୩ ମସିହାରେ ଓଡ଼ିଶାର ଖଣ୍ଡିତାଂଶକୁ ଲକ୍ଷ୍ୟକରି ମଧୁସୂଦନ କହିଥିଲେ "ମୁଣ୍ଡ ଏକ ସ୍ଥାନରେ, ହାତ ଏକ ସ୍ଥାନରେ, ପାଦ ଏକ ସ୍ଥାନରେ ପଡ଼ି ରହିଅଛି। ଏହି ଅବସ୍ଥାକୁ କେହି ମନୁଷ୍ୟର ସୁସ୍ଥ ଅବସ୍ଥା ବୋଲି କହି ନପାରେ। ଉପେନ୍ଦ୍ର ଭଞ୍ଜଙ୍କ ପରି ମସ୍ତକ ଗଞ୍ଜାମରେ ଉତ୍କଳ ମାତାଙ୍କ ଗଣ୍ଡିରୁ ବିଚ୍ଛିନ୍ନ ହୋଇ ପଡ଼ି ରହିଅଛି। ଯଦି ଏ ଦେଶର ମିଳନ ହୁଏ, ତେବେ ଏ ଦେଶର ଅନ୍ତଃକରଣ କ'ଣ ହେବ ? ନଈରେ ଯେପରି ଜୁଆର ହୋଇଥାଏ, ପୁଣି ଭଟ୍ଟା ହୋଇଗଲେ ପାଣି ସବୁ ସ୍ଥାନେ ସ୍ଥାନେ ରହିଯାଏ, ସେଇପରି ଓଡ଼ିଶାରେ ଦିନେ ଜୁଆର ଅବସ୍ଥା ଥିଲା। କିନ୍ତୁ ବର୍ତ୍ତମାନ ଭଟ୍ଟା ଅବସ୍ଥାରେ ସ୍ଥାନେ ସ୍ଥାନେ ମଳାଏ ମଳାଏ ପାଣି ରହିଲା ପରି ଦେଶଟା ଏଠାରେ ଖଣ୍ଡେ

ସେଠାରେ ଖଣ୍ଡେ ହୋଇ ପଡ଼ି ରହିଅଛି । ଯେପରି ସେହି ସମସ୍ତ ଜଳାଶୟକୁ ପୁଣି ଏକତ୍ର କରିବାକୁ ହେଲେ, ଜୁଆର ଆବଶ୍ୟକ, ସେହିପରି ଏ ଦେଶକୁ ଏକତ୍ର କରିବାକୁ ହେଲେ ସର୍ବତ୍ର ଜାତୀୟଭାବର ଜୁଆର ଉଠେଇବାକୁ ହେବ ।"[୩୭] ୧୯୧୩ ମସିହାରେ ମଧୁସୂଦନ ଛିନ୍ନଭିନ୍ନ ଉତ୍କଳକୁ ଦେଖି ଯେଉଁ ମତପୋଷଣ କରିଥିଲେ, ଏହାର ଦୀର୍ଘ ୨୨ ବର୍ଷ ପୂର୍ବରୁ ଅର୍ଥାତ୍ ୧୮୯୧ ମସିହାରେ 'ଉତ୍କଳ ଭ୍ରମଣଂ' ରଚନା କରିବା ସମୟରେ ଖଣ୍ଡିତାଂଶ ଉତ୍କଳକୁ ଲକ୍ଷ୍ୟକରି ଫକୀରମୋହନ ଅନୁରୂପ ମନ୍ତବ୍ୟ ପ୍ରଦାନ କରିଥିଲେ ।[୩୮] ୧୯୦୩ ମସିହାରେ ବିଚ୍ଛିନ୍ନ ଉତ୍କଳର ଏକତ୍ରୀକରଣ ନିମିତ୍ତ ମଧୁସୂଦନ ଦାସଙ୍କ ନେତୃତ୍ୱରେ 'ଉତ୍କଳ ସମ୍ମିଳନୀ' ଗଠିତ ହେବାଦ୍ୱାରା ଉତ୍କଳରେ ଜାତୀୟଚେତନା ଅନ୍ୟ ଏକ ମୋଡ଼ ନେଇ ଗତି କରିଥିଲା । ସେ ସମୟରେ ଅନେକ କବି, ସାହିତ୍ୟିକ ଓ ରାଜନୀତିକ ନେତା ଏକ ସ୍ୱତନ୍ତ୍ର ଉତ୍କଳ ଗଢ଼ିବାର ସ୍ୱପ୍ନ ନେଇ ନିଃସ୍ୱାର୍ଥପର ଭାବରେ କାର୍ଯ୍ୟ କରିଥିଲେ । ୧୯୧୫ ମସିହାରେ ଫକୀରମୋହନ 'ଛିନ୍ନଭିନ୍ନ ଜନ୍ମଭୂମି' ନାମରେ ଗୋଟିଏ ଜାତୀୟ ଚେତନା ସମ୍ବଳିତ କବିତା ମୁକୁର ୧୦ମ ଭାଗ ପୌଷ ୯ମ ସଂଖ୍ୟାରେ ପ୍ରକାଶ କରିଥିଲେ, ଯାହା ତତ୍କାଳୀନ ଯୁବମାନସକୁ ଗଭୀର ଭାବରେ ପ୍ରଭାବିତ କରିଥିଲା । ଉତ୍କଳାବସ୍ଥା ଲକ୍ଷ୍ୟକରି ସେ କହିଥିଲେ–

ଚାରିଆଡ଼େ ପଡ଼ିଅଛି ଉନ୍ନତି ଚହଳ
ନିଦ୍ରିତ କି ରହିଥିବ ଉତ୍କଳ କେବଳ ?
× × × × × ×
ଗୁରୁଭୁଜ ପରି କଟା ଯାଇ ଖଣ୍ଡ ଖଣ୍ଡ
ଜୀବନ ବିକଳ ହେଉଛନ୍ତି ଲଣ୍ଡଭଣ୍ଡ
ମୁଣ୍ଡଟା ରହିଲା ପାଶେ ଆଉ ପାଶେ ଗୋଡ଼
ଅଲଗା ରହିଲା ବାହୁ ଲାଗୁନାହିଁ ଯୋଡ଼

(ଛିନ୍ନ ଭିନ୍ନ ଜନ୍ମଭୂମି- ପରିଶିଷ୍ଟ କବିତାବଳୀ)

ଆଧୁନିକ ଯୁଗ ଜୀବନ ସଂଗ୍ରାମର ଯୁଗ । ସଂଗ୍ରାମ କ୍ଷେତ୍ରରେ ଯେ ଥରେ ପଛରେ ପଡ଼ିଯାଏ, ତାର ପରାଜୟ ସୁନିଶ୍ଚିତ । ଫକୀରମୋହନ ଭାରତର ଅନ୍ୟାନ୍ୟ ପ୍ରାଦେଶିକ ରାଜ୍ୟମାନଙ୍କ ସହିତ ଉତ୍କଳକୁ ତୁଳନାକରି ଏହା କିପରି ଅନ୍ୟ ରାଜ୍ୟ ତୁଳନାରେ ଅନେକ ପାଦ ପଛରେ ରହିଛି, ତାହା ଦେଖାଇ ଦେଇଛନ୍ତି । କଠିନ ପରିଶ୍ରମ ଓ ଜାତୀୟଚେତନା ଆମ୍ଭ ଉନ୍ନତର ମାର୍ଗକୁ ପ୍ରସାରିତ କରେ । ପଡ଼ୋଶୀ ଦେଶମାନଙ୍କ ସଂପର୍କରେ ସେ କହିଛନ୍ତି–

ଅଙ୍ଗବଙ୍ଗବାସୀ ପଞ୍ଜାବୀ ପାରସୀ
ମରହଟ୍ଟା ନିରନ୍ତରେ
ଦୃଢ଼ କରି ବ୍ରତ ଧାବନ୍ତି ସନ୍ତତ
ଆତ୍ମ ଉନ୍ନତିମାର୍ଗରେ
ଦେଖ ଗ୍ରାମଗ୍ରାମ ଜୀବନ ସଂଗ୍ରାମ
ଲାଗିଅଛି ସର୍ବସ୍ଥଳେ
ସେହିମହାଭାବ କେବଳ ଅଭାବ
ଦେଖୁଛି ମୁଁ ତ ଉତ୍କଳେ

(ଲାଗ ଲାଗ - ଅବସରବାସରେ)

ଆମ ମନ ମଧ୍ୟରେ ସୃଷ୍ଟି ହୋଇଥିବା ଭେଦାଭେଦ ଉଚ୍ଚନୀଚ ପ୍ରଥା ଆମ ମାନଙ୍କର ଅଧୋଗତିର କାରଣ । ସମସ୍ତ ଉତ୍କଳୀୟ ପରସ୍ପର ଭ୍ରାତୃ ସ୍ନେହରେ କୋଳାଗ୍ରତ ହୋଇ ଏକ ମନ-ପୂର୍ବକ ମାତୃଭୂମିର ଉନ୍ନତି କାର୍ଯ୍ୟରେ ଅଗ୍ରସର ହେଲେ, ଦେଶର ଦୁର୍ଗତି ନାଶ ହୋଇଯିବ । ଆମ ଚକ୍ଷୁ ସମ୍ମୁଖରେ ଅନ୍ୟ ଦେଶ ଯେପରି ଭାବରେ ଉନ୍ନତି ସାଧନ କ୍ଷେତ୍ରରେ ଅଗ୍ରଗତି ଲାଭ କରିପାରିଛି, ଆମେ କିନ୍ତୁ ସେପରି ନହୋଇ ପାରିବାର ଏକମାତ୍ର କାରଣ, ଆମମାନଙ୍କ ମଧ୍ୟରେ ପରସ୍ପର ପ୍ରତି ଥିବା ତିକ୍ତ ମନୋଭାବ । ବ୍ୟକ୍ତିଗତ ସ୍ୱାର୍ଥ ଉର୍ଦ୍ଧ୍ୱରେ ସମୂହ ସ୍ୱାର୍ଥପାଇଁ କାର୍ଯ୍ୟ କଲେ, ଉତ୍କଳର ନିଶ୍ଚୟ ଉନ୍ନତି ହୋଇପାରିବ । ଫକୀରମୋହନଙ୍କ ଭାଷାରେ–

ଆସନ୍ତୁ ଭାଇ ଭାଇ ମିଳି ସମସ୍ତେ
ବିସର୍ଜି ଭେଦବୁଦ୍ଧି ପବିତ୍ର ଚିତ୍ତେ
ବସି ଜନନୀ ମାତୃଭୂମି କୋଳରେ
ମିଳି ସମସ୍ତ ଭାଇ ଏକ ସଙ୍ଗରେ
ପାଞ୍ଚିବା ହେଉ ମାତୃଭୂମି ଉନ୍ନତି
ଖଣ୍ଡନ ହେଉ ଦେଶବାସୀ ଦୁର୍ଗତି ।

(ପ୍ରେମ ସଙ୍ଗୀତ-ଅବସରବାସରେ)

କବିତାରେ କେବଳ ଫକୀରମୋହନ ଏହା କହିନାହାଁନ୍ତି; କାର୍ଯ୍ୟକ୍ଷେତ୍ରରେ ସେ ତାର ପ୍ରମାଣ ମଧ୍ୟ ଦେଇଛନ୍ତି । ତାଙ୍କର ଜାତୀୟଚେତନାମୂଳକ କବିତା ଗୁଡ଼ିକରେ ମାତୃଭୂମି ଓ ମାତୃଭାଷା ପ୍ରତି ତାଙ୍କର ଆକୁଳତା, ଉତ୍କଣ୍ଠା ଓ ଆହତ ପ୍ରାଣର ଆର୍ତ୍ତନାଦ ପ୍ରକାଶଲାଭ କରିଛି । ତାଙ୍କ ଚକ୍ଷୁରେ ଉତ୍କଳର ଧୂଳିକଣା ବି ପବିତ୍ର । ଉତ୍କଳର ଭାଷା

ଗୌରବମୟ ଭାଷା । ଉତ୍କଳମାଟିରେ ଯେପରି ପୂର୍ବପୁରୁଷଙ୍କ ବୀରତ୍ୱର ଚିହ୍ନ ଜୀବନ୍ତ ରହିଛି, ସେହିପରି ଏହି ଭାଷାରେ ସାରଳା ଦାସ, ବଳରାମ ଦାସ, ଦୀନକୃଷ୍ଣ, ଉପେନ୍ଦ୍ର ଭଞ୍ଜ, ଅଭିମନ୍ୟୁ ପ୍ରଭୃତି କାବ୍ୟକବିତା ରଚନା କରି, ଭାଷାର ମହତ୍ତ୍ୱ ବୃଦ୍ଧି କରିଛନ୍ତି । ଏହିପରି ଗରୀୟସୀ ମାଟି ଓ ମହନୀୟ ଭାଷାର ବଂଶଧର ହୋଇ ସମସ୍ତ ଉତ୍କଳୀୟ ହୃତଗୌରବ ଫେରାଇ ଆଣିବାକୁ ବଦ୍ଧପରିକର ହେଲେ, ଭାରତବର୍ଷରେ ଉତ୍କଳୀୟ ସେମାନଙ୍କ ପୂର୍ବମହତ୍ତ୍ୱ ପୁଣି ଫେରିପାଇବେ, ଏଥିରେ ସନ୍ଦେହ ନାହିଁ ।

**ବ୍ୟକ୍ତିତ୍ୱର ଉପାସନା**

ଫକୀରମୋହନଙ୍କ କର୍ମମୟ ଜୀବନର ଗଭୀର ଅନୁଭୂତି ମାନବ ଚରିତ୍ର ଅନୁଧ୍ୟାନ କରିବା ନିମିତ୍ତ ଅପୂର୍ବ ସୁଯୋଗ ଦେଇଥିଲା । ସେହିଁ ଓଡ଼ିଶାର ପ୍ରଥମ ଗଣକବି, ଯେ ବିଭିନ୍ନ ଚରିତ୍ର ଅଧ୍ୟୟନ କରି ଏକ ଚରିତ୍ରମୂଳକ ଖଣ୍ଡକାବ୍ୟ "ଉତ୍କଳ ଭ୍ରମଣଂ" ଲେଖିବାକୁ ପ୍ରଥମେ ସମର୍ଥ ହୋଇପାରିଥିଲେ । ଉତ୍କଳର ସଂଖ୍ୟାଧିକ ଚରିତ୍ରମାନଙ୍କ ଜୀବନୀ ଓ କୃତିତ୍ୱ ପ୍ରଥମଥର ପାଇଁ ତାଙ୍କ ଲେଖନୀରେ ଫୁଟି ଉଠିଥିଲା । ଜୀବନ ସଂପର୍କରେ ଓ ବ୍ୟକ୍ତି ସଂପର୍କରେ ସେପରି ଗଭୀର ଅନୁଭୂତି ନ ଆସିଲେ, ଜଣେ କେବେ ସାହସ କରି କୌଣସି ଚରିତ୍ର ଉପରେ ମନ୍ତବ୍ୟ ପ୍ରଦାନ କରିନପାରେ । ତାଙ୍କର 'ଉତ୍କଳ ଭ୍ରମଣଂ' ଓ ଏକାଧିକ କବିତାରେ ଉତ୍କଳ ତଥା କେତେକ ବିଦେଶୀ ଚରିତ୍ରମାନଙ୍କ ସଂପର୍କରେ ଟୀକା ଟିପ୍ପଣୀ ପ୍ରଦାନ କରାଯାଇଛି । ପ୍ରସଙ୍ଗକ୍ରମେ କେତେକ ଐତିହାସିକ ଚରିତ୍ର ଚିତ୍ରଣ କରିବାକୁ ସେ ଭୁଲିନାହାଁନ୍ତି । ବିଭିନ୍ନ ବ୍ୟକ୍ତିଙ୍କ ସଂପର୍କରେ ତାଙ୍କର ଯେଉଁ ଧାରଣା ଥିଲା, ତାହା ସେ ବିନା ଦ୍ୱିଧାରେ ପ୍ରକାଶ କରିଛନ୍ତି ।

ଫକୀରମୋହନ ଥିଲେ ଜଣେ ଚିହ୍ନରା ଗ୍ରାହକ । ସେ ତାଙ୍କ କାବ୍ୟ କବିତାରେ ଗୁଣୀଲୋକମାନଙ୍କର ଯେପରି ବନ୍ଦନା କରିଛନ୍ତି, ସେହିପରି କରିଛନ୍ତି ମଧ୍ୟ ଖଳଲୋକମାନଙ୍କର ନିନ୍ଦା । ଐତିହାସିକ ଚରିତ୍ରମାନଙ୍କ ମଧ୍ୟରେ 'କଳାପାହାଡ଼'ର ନିଷ୍ଠୁରତା, ଯୋଷେଫାଇନରଙ୍କ ପତିପ୍ରେମ, କ୍ଲିଓପେଟ୍ରାଙ୍କର ପ୍ରତିହିଂସା ପରାୟଣତା, ଲୁକ୍ରେସିୟାଙ୍କ ସତୀତ୍ୱ, ଯୀଶୁଖ୍ରୀଷ୍ଟଙ୍କ ମହାନୁଭବତା, ଶ୍ରୀଚୈତନ୍ୟଙ୍କ ଶୁଦ୍ଧରାଗାନୁଗାଧର୍ମ ଓ ଭ୍ରାତୃତ୍ୱପ୍ରୀତି, ଶାକ୍ତସିଂହଙ୍କ ବୈରାଗ୍ୟଭାବ, ତାରାବାଈଙ୍କର ସାହସ ଓ ପତିପ୍ରେମ ପ୍ରଭୃତି ଚମତ୍କାର ଭାବରେ ବର୍ଣ୍ଣନା କରାଯାଇଛି । ଏହାବ୍ୟତୀତ କୃଷ୍ଣ, ପାଣ୍ଡବ ଓ କୌରବ, ଦ୍ରୌପଦୀ, ଶକୁନି ପ୍ରଭୃତି କେତେକ ପୌରାଣିକ ଚରିତ୍ର ଉପରେ ସାମାନ୍ୟ ଆଲୋକପାତ କରାଯାଇଛି । କିନ୍ତୁ ତାଙ୍କର ବୈଶିଷ୍ଟ୍ୟ ପ୍ରକଟିତ ହୋଇଥାଏ ଉତ୍କଳର ବ୍ୟକ୍ତିବିଶେଷଙ୍କ ଚରିତ୍ର ଚିତ୍ରଣରେ । ପ୍ରସଙ୍ଗକ୍ରମେ ନିମ୍ନରେ କେତେକ ଚରିତ୍ରମାନଙ୍କ ସଂପର୍କରେ ଆଲୋଚନା କରାଗଲା ।

'ଉତ୍କଳ ଭ୍ରମଣଂ' ଚରିତ୍ର ଚିତ୍ରଣ ଆଲୋଚନା ପ୍ରସଙ୍ଗରେ ଯେଉଁ ଚରିତ୍ରଗୁଡ଼ିକର ଆଲୋଚନା କରାଯାଇଛି ତନ୍ମଧ୍ୟରୁ ଅନେକ ଚରିତ୍ର ତାଙ୍କର କ୍ଷୁଦ୍ରକବିତା ମଧ୍ୟରେ ସ୍ଥାନ ପାଇଛନ୍ତି । 'ଉତ୍କଳ ଭ୍ରମଣଂ'ରେ ପାଞ୍ଚଟି ଇଂରେଜ ଚରିତ୍ର ସ୍ଥାନପାଇଛନ୍ତି । ସେମାନେ ହେଲେ ଯଥାକ୍ରମେ ଉଡ୍‌ବରନ୍ ସାହେବ, ମେକ୍‌ଡୋନାଲ, ଲର୍ଡ୍ କନିମରା, ଜନ୍ ବୀମସ ଓ ରେଭେନ୍‌ସା ସାହେବ । ଏହାବ୍ୟତୀତ ମହାରାଜା ରାମଚନ୍ଦ୍ରଦେବ, ରାଜାରାମ, ଗଙ୍ଗା ନାରାୟଣ, ଭଗବାନ ଦାସ, ଚୈତନ୍ୟ ଚରଣ ଦେ, ହରୀଶ ସର୍କାର, ରାଧାଚରଣ ଦାସ, ଗୋବିନ୍ଦ ଚରଣ ପଟ୍ଟନାୟକ, ଶିବନାରାୟଣ ନାୟକ, ଚନ୍ଦ୍ର ମହାରଣା, ହରି ଦାସ, ଆର୍ତ୍ତତ୍ରାଣ ସଦାଶିବ ନନ୍ଦ, ଗଣପତି ଭୋଳାନାଥ, ପାର୍ବତୀ ମା, ରାଧାଶ୍ୟାମ ନରେନ୍ଦ୍ର, ନନ୍ଦ କିଶୋର ଦାସ, ରାଧାନାଥ ରାୟ, ଗୌରୀଶଙ୍କର ରାୟ, ରାମଶଙ୍କର ରାୟ, ମଧୁସୂଦନ ରାଓ, ମଧୁସୂଦନ ଦାସ, ଶଶୀଭୂଷଣ ରାୟ, ବିଶ୍ୱନାଥ କର, ପୁରୁଷୋତ୍ତମ ରଥ, ବିହାରୀ ଲାଲ, ଯୋଗେଶ ଚନ୍ଦ୍ର ରାୟ, ପ୍ୟାରୀମୋହନ ଆଚାର୍ଯ୍ୟ, ସୁଦାମ ଚନ୍ଦ୍ର, ବୈଦ୍ୟନାଥ, ନନ୍ଦ କିଶୋର ବଳ, ମୃତ୍ୟୁଞ୍ଜୟ କାବ୍ୟତୀର୍ଥ, ବ୍ରଜସୁନ୍ଦର, ପ୍ୟାରୀସେନ, ଦାମୋଦର, ସୀତାନାଥ, ଜଗମୋହନ ଲାଲା, ନରେନ୍ଦ୍ର ସରକାର, ଗଦେଇ ତିହାଡ଼ି, ପଠାଣି ସାଆନ୍ତେ, ରାଜା ଭାଗୀରଥ ମହେନ୍ଦ୍ର, ବନମାଳୀ, ଦୀନବନ୍ଧୁ ମହେନ୍ଦ୍ର, ସୁଲକ୍ଷଣା ଦେବୀ, ରାମଚନ୍ଦ୍ର ବୀରବର, ମୁନିପାଳ, ମହେନ୍ଦ୍ର ଦେବ, ରାଜା ସୁତ୍ରଳ ଦେବ, ନୀଳମଣି ବିଦ୍ୟାରତ୍ନ, ସଚିଦାନନ୍ଦ ତ୍ରିଭୁବନ ଦେବ, ହରିଦାସ, ଶରଚ୍ଚନ୍ଦ୍ର ବାନାର୍ଜୀ, କିଶୋରୀ ଚରଣ, ଜଗବନ୍ଧୁ ମହାପାତ୍ର, ଦୀନବନ୍ଧୁ ମିଶ୍ର, ମୃତ୍ୟୁଞ୍ଜୟ ତର୍କ ପଞ୍ଚାନନ, ରଘୁ ମିଶ୍ର, ବିନାୟକ ମିଶ୍ର, ଜୟରଥ, ସୁଦର୍ଶନ ଦାସ, ମୋହନ ଦାସ, ହୟଗ୍ରୀବ ଦାସ, ଚତୁର୍ଭୁଜ, ଭଗବାନ ଦାସ, ରାମକୃଷ୍ଣ ପାଟଯୋଶୀ, ନାରାୟଣ ଦାସ, ଗୋପାଳ ପ୍ରତିହାରୀ, ସଦାଶିବ ମିଶ୍ର, ମହାମହୋପାଧ୍ୟାୟ ଗୋପାଳ ଚନ୍ଦ୍ର ପ୍ରହରାଜ, ଆନନ୍ଦ ମିଶ୍ର, କାଞ୍ଚନ ମଞ୍ଜରୀ, ଭଗବତୀ ଚଟ୍ଟୋପାଧ୍ୟାୟ, ବିକ୍ରମ ଦେଓ, ଚିନ୍ତାମଣି ମହାନ୍ତି, ଗଙ୍ଗାଧର ମେହେର ପ୍ରଭୃତ ଅନେକ ଚରିତ୍ରାବଳୀ ସଂପର୍କରେ ଆଲୋକପାତ କରାଯାଇଛି । ଗୋଟିଏ କ୍ଷୁଦ୍ରକାବ୍ୟ ମଧ୍ୟରେ ଏତେଗୁଡ଼ିଏ ଚରିତ୍ରଙ୍କ ଚାରିତ୍ରିକ ମହତ୍ତ୍ୱ ପ୍ରତିପାଦନ କରିବା ସହଜସାଧ୍ୟ ନୁହେଁ । ତେଣୁ ପରବର୍ତ୍ତୀ ସମୟରେ ରଚିତ କବିଙ୍କ ଅନେକ ଏକକ ଚରିତ୍ର ସଂପର୍କରେ ମତାମତକୁ ଆଲୋଚନା କରାଯାଉଛି । ମହାରାଜା କୃଷ୍ଣ ସିଂହ ସ୍ୱଇଚ୍ଛାରେ ସିଂହାସନ ପରିତ୍ୟାଗପୂର୍ବକ ବାଣୀ ସେବାରେ ନିଜକୁ ନିୟୋଜିତ କରି ଉତ୍କଳ ସାହିତ୍ୟକୁ ଅନେକଗୁଡ଼ିଏ ଅମୂଲ୍ୟ ରତ୍ନ ପ୍ରଦାନ କରିଯାଇଛନ୍ତି ବୋଲି କବି ତାଙ୍କର ପ୍ରଶଂସା କରିଛନ୍ତି । ଉକ୍ତ କବି ମଧୁସୂଦନ ରାଓ ଥିଲେ ପରମ ଧାର୍ମିକ ଓ ବ୍ରହ୍ମ ଉପାସକ । ତାଙ୍କର ବୁଦ୍ଧି, କବିତ୍ୱ ଓ ପରୋପକାର ଯୋଗୁଁ ସେ ଆଜି ବିଖ୍ୟାତ

ହୋଇପାରିଛନ୍ତି ବୋଲି ଫକୀରମୋହନ 'ଅବକାଶବାସରେ'ରେ ମଧୁସୂଦନ ରାଓ କବିତାରେ ପ୍ରକାଶ କରିଛନ୍ତି । ପଦ୍ମନାଭ ନାରାୟଣ ଦେବ ଗଜପତି ବଂଶଧର ଥିଲେ ମଧ୍ୟ ଜଣେ ବିଖ୍ୟାତ କବି, ନାଟ୍ୟକାର ଓ ଅତିଥି ପରାୟଣତା ପାଇଁ ପ୍ରସିଦ୍ଧି ଲାଭ କରିଛନ୍ତି । କୁଳବୃଦ୍ଧ ମଧୁସୁଦନ ଦାସ ପ୍ରଥମେ ଉତ୍କଳୀୟମାନଙ୍କ ମଧ୍ୟରେ ଜାତୀୟତାର ବାଣୀ ପ୍ରଚାର କରିଥିଲେ । ସମଗ୍ର ଉତ୍କଳ ପାଇଁ ସେ ଯେଉଁ ତ୍ୟାଗ ସ୍ୱୀକାର କରିଛନ୍ତି, ତାହା ଅନନ୍ୟ ସାଧାରଣ । ଫକୀରମୋହନଙ୍କ ଭାଷାରେ–

ଗୋଟାଦେଶ ପାଇଁ ଭାଳୁଛି ଜଣେ
ଏ କଥା ଯେ କାଳେ ପଡ଼େ ମୋ ମନେ
ହୃଦୟରେ ମୋର ହୁଏ ପ୍ରତ୍ୟୟ
ଦୈବଶକ୍ତି ଏହା ଅଟେ ନିଶ୍ଚୟ ।

(ମଧୁସୂଦନ ଦାସ ସି.ଆଇ.ଇ - ଅବକାଶବାସରେ)

ଉତ୍କଳ ଜାତିର ମଙ୍ଗୁଆଳ ମଧୁସୂଦନ ଦେଶର ଉନ୍ନତି ପାଇଁ ଲକ୍ଷ ଲକ୍ଷ ଟଙ୍କା ଫୋପାଡ଼ି ଦେଇଛନ୍ତି । ଉତ୍କଳର ବୈଶିଷ୍ଟ୍ୟ ଦେଶ ବାହାରେ ପ୍ରଚାର କରିବା ନିମିତ୍ତ ଉତ୍କଳର ଚାରୁକଳାର ପ୍ରଚାର ପାଇଁ ନିଜକୁ ଉତ୍ସର୍ଗ କରିଛନ୍ତି । 'ତୁକାରାମ' କବିତାରେ ତୁକାରାମଙ୍କ ଚରିତ୍ର ଓ ଗୁଣାବଳୀର ବର୍ଣ୍ଣନା କରାଯାଇଛି । ଦାମୋଦର ପଟ୍ଟନାୟକଙ୍କ କବିତ୍ୱ, ଉଦାର ମାନବିକତା, ଭାଷାପ୍ରୀତି ସଂପର୍କରେ 'ଶ୍ରୀ ଦାମୋଦର ପଟ୍ଟନାୟକ' କବିତାରେ ଆଲୋଚନା କରାଯାଇଛି । କବି ଅନ୍ନପୂର୍ଣ୍ଣା ଓ ମାଧବୀ ଦେବୀ ଦୁଇଜଣ ନାରୀ କବି । ବୈଷ୍ଣବୀୟ ଭକ୍ତିପୂର୍ଣ୍ଣ କବିତା ରଚନା କରି ପ୍ରସିଦ୍ଧି ଲାଭ କରିଥିବାରୁ ପ୍ରତାପରୁଦ୍ର ସେମାନଙ୍କୁ ଗଭୀର ଭକ୍ତି କରୁଥିବାର ଉଲ୍ଲେଖ 'ଶ୍ରୀମତୀ ମାଧବୀଦେବୀ' କବିତାରେ କରାଯାଇଛି । ନୀଳମଣି ବିଦ୍ୟାରତ୍ନଙ୍କ ଜ୍ଞାନ ଓ ଉତ୍କଳ ଭାଷାଭାଷୀଙ୍କୁ ଏକତ୍ରିତ କରିବାକୁ ତାଙ୍କର ଆପ୍ରାଣ ଉଦ୍ୟମକୁ କବି ପ୍ରଶଂସା କରିଛନ୍ତି । ସେତେବେଳେ ସେ ରକ୍ଷଣଶୀଳ ସମାଜ ବିରୋଧରେ ବିଧବା ବିବାହ ପାଇଁ ଉଦ୍ୟମ କରି ସାହସିକତାର ପରିଚୟ ପ୍ରଦାନ କରିଛନ୍ତି । 'ଉପେନ୍ଦ୍ର ଭଞ୍ଜଙ୍କ ସ୍ୱପ୍ନଦର୍ଶନ' କବିତାଟିରେ କବି ସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କୁ ବୀଣାପାଣୀଙ୍କର ସ୍ୱପ୍ନାଦେଶ ଓ ତଦ୍ଦ୍ୱାରା ତାଙ୍କର କବି ପ୍ରସିଦ୍ଧି ଲାଭ ହେବାର ଉଲ୍ଲେଖ କରାଯାଉଛି । ରାଜା ବୈକୁଣ୍ଠନାଥ ଦେ ବାହାଦୂର 'ଉତ୍କଳଭୂମି' ଓ ଉତ୍କଳଭାଷା'ର ଉନ୍ନତି ନିମିତ୍ତ ଯେଉଁ ଉଦ୍ୟମ କରିଥିଲେ, ତାହା ପ୍ରଶଂସାଯୋଗ୍ୟ । ଉତ୍କଳଭାଷାର ଉନ୍ନତି ଉପଲକ୍ଷେ ଅନେକ ସଂପତ୍ତି ଦାନ କରିବା ସଙ୍ଗେ ସଙ୍ଗେ ତାଙ୍କର ପ୍ରତ୍ୟକ୍ଷ ଉଦ୍ୟମ ଯୋଗୁଁ ଉତ୍କଳଭୂମିର ଏକତ୍ରୀକରଣ ସମ୍ଭବ ହୋଇପାରିଥିଲା ବୋଲି

'ବୈକୁଣ୍ଠନାଥ ଦେ ବାହାଦୂର' କବିତାରେ କୁହାଯାଇଛି । 'ମହାମହୋପାଧ୍ୟାୟ ସ୍ୱାମୀ ବ୍ରହ୍ମାନନ୍ଦ ପୁରୀ' କବିତାରେ ତାଙ୍କର ଜ୍ଞାନ, ବିଦ୍‌ବତ୍ତା, ଚଟ୍ଟଗ୍ରାମରେ କାତ୍ୟାୟିନୀ ମହାଦେବୀଙ୍କୁ ସାଧନା କରି ସିଦ୍ଧିଲାଭ ଓ ଅସଂଖ୍ୟ ଶିଷ୍ୟଙ୍କର ଗୁରୁହେବାର ସୌଭାଗ୍ୟଲାଭ ବିଷୟ ବର୍ଣ୍ଣିତ । ଚୈତନ୍ୟଦେବଙ୍କ ଖ୍ୟାତି ଉତ୍କଳ ଇତିହାସରେ ପ୍ରସିଦ୍ଧିଲାଭ କରିଥିବା ପରି ବ୍ରହ୍ମାନନ୍ଦ ପୁରୀଙ୍କ ଖ୍ୟାତି ଚଟ୍ଟଗ୍ରାମ ଇତିହାସରେ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇରହିଛି ।

ମଧୁସୂଦନଙ୍କ ମୃତ୍ୟୁ ବିଚ୍ଛେଦରେ 'ସ୍ୱର୍ଗୀୟରାୟ ମଧୁସୂଦନ ରାଓ' କବିତା ରଚିତ । ଏଥିରେ ଫକୀରମୋହନ ତାଙ୍କର ଏକ ପତ୍ନୀବ୍ରତ, ସନ୍ତାନମାନଙ୍କ ପ୍ରତି ବାତ୍ସଲ୍ୟମମତା, ଅତିଥି ଓ ଦୁଃଖୀମାନଙ୍କ ସେବାକୁ ଜୀବନର ପରମବ୍ରତ ଭାବରେ ଗ୍ରହଣ କରିଥିଲେ ବୋଲି ଉଲ୍ଲେଖ କରିଛନ୍ତି । ଉତ୍କଳ ବ୍ରାହ୍ମସମାଜର ସେ ଥିଲେ କେନ୍ଦ୍ରବିନ୍ଦୁ । ତାଙ୍କର ଗୃହ ଥିଲା ପବିତ୍ର ମହର୍ଷିଙ୍କ ଆଶ୍ରମ ପରି । ସତ୍ୟ, ନ୍ୟାୟ ଓ ଧର୍ମର ମୂର୍ତ୍ତିମନ୍ତ ପ୍ରତୀକ ଥିଲେ ମଧୁସୂଦନ । 'ସ୍ୱର୍ଗୀୟ ଅବଦୁଲ ଅଜିଜ୍' କବିତାରେ ବାଲେଶ୍ୱର ବାସୀ ପ୍ରଖର ଜ୍ଞାନୀ ଅଜିଜଙ୍କର ଅକାଳ ମୃତ୍ୟୁରେ ଶୋକପ୍ରକାଶ ପାଇଛି । 'କବି ଯୁଗଳ' କବିତାଟିରେ ଗଙ୍ଗାଧର ଓ ଚିନ୍ତାମଣି ମହାନ୍ତିଙ୍କ ସଂପର୍କରେ ଉଲ୍ଲେଖ କରାଯାଇଛି । ଗଙ୍ଗାଧର ଥିଲେ ସ୍ୱଭାବ କବି । ସେମାନଙ୍କ କବିତାର ଧର୍ମ ସଂପର୍କରେ ଫକୀରମୋହନ ଲେଖିଛନ୍ତି–

ଏକ ପୁତ୍ର ହସ୍ତେ ଅଛି ଶୁଦ୍ଧ ପୁଷ୍ପହାର
ଅନ୍ୟ ହସ୍ତେ ମହାମୂଲ୍ୟ ଭାବ-ଅଳଙ୍କାର
(କବି ଯୁଗଳ - ପରିଶିଷ୍ଟ କବିତାବଳୀ)

'ରାଧାନାଥ-ରାୟ-ବାହାଦୂର' କବିତାରେ କବିବର ରାଧାନାଥଙ୍କ ମହତ୍ତ୍ୱ ପ୍ରଚାରିତ ହୋଇଛି । ରାଧାନାଥଙ୍କୁ କବି 'ଶାପ ଭ୍ରଷ୍ଟ ଦେବତା' ଭାବରେ ପରିକଳ୍ପନା କରିଛନ୍ତି । ମଣିଷମାତ୍ରକେ କିଛିନା କିଛି ଦୋଷର ଅଧିକାରୀ; ମାତ୍ର ରାଧାନାଥଙ୍କ ଆତ୍ମା ସଂପୂର୍ଣ୍ଣ ନିର୍ଦ୍ଦୋଷ ବୋଲି ଫକୀରମୋହନ ସ୍ୱୀକାର କରିଛନ୍ତି–

ପଙ୍କରେ ପଙ୍କଜ ଯଥା ସ୍ୱଭାବେ ନିର୍ମଳ
ଗାଆନ୍ତୁ ଉତ୍କଳବାସୀ ରାଧାନାଥ ନାମ
(ରାଧାନାଥ ରାୟ ବାହାଦୂର - ପରିଶିଷ୍ଟ କବିତାବଳୀ)

ରାଧାନାଥଙ୍କ ପରଲୋକ ଗମନରେ ଫକୀରମୋହନଙ୍କ ମନରେ ଦାରୁଣ ଖେଦ ଜାତ ହୋଇଛି । ତାଙ୍କର ମୃତ୍ୟୁକୁ ସେ ସାଧାରଣ ମୃତ୍ୟୁ ଭାବରେ ଗ୍ରହଣ କରିପାର

ନାହାଁନ୍ତି । ତାଙ୍କ ମତରେ ରାଧାନାଥ ଆଜି ମରଧାମ ତ୍ୟାଗ କରି ସ୍ୱର୍ଗଧାମକୁ ଯାତ୍ରା କରିଛନ୍ତି । 'ସ୍ୱର୍ଗୀୟ ହେମଚନ୍ଦ୍ର' କବିତାଟି ହେମଚନ୍ଦ୍ରଙ୍କ ଅକାଳ ବିୟୋଗରେ ରଚିତ । ଛଅବର୍ଷ କାଳ ବିଲାତରେ ଶିକ୍ଷାଲାଭ କରି ସ୍ୱଦେଶକୁ ଫେରିବା ସମୟରେ ସମୁଦ୍ରର ଅତଳ ଜଳରାଶିରେ ଚିରଦିନ ପାଇଁ ସଲିଳ ସମାଧି ନେଇଥିଲେ । ତାଙ୍କ ମୃତ୍ୟୁରେ ଫକୀରମୋହନ ଲେଖିଛନ୍ତି–

ଉତ୍କଳ ଜନନୀକୋଳୁ ଗୋଟିଏ ମାଣିକ୍ୟ
ବୁଡ଼ିଗଲା ଏହାଠାରୁ ଦୁଃଖକି ଅଧିକ ।
(ସ୍ୱର୍ଗୀୟ ହେମଚନ୍ଦ୍ର - ପରିଶିଷ୍ଟ କବିତାବଳୀ)

ଫକୀରମୋହନ ତାଙ୍କର କବିତାଗୁଡ଼ିକରେ ଏହିପରି ବହୁ ବ୍ୟକ୍ତିତ୍ୱଙ୍କର ଉପାସନା କରିଛନ୍ତି । ଯେଉଁମାନଙ୍କର ଗୁଣାବଳୀ ଦ୍ୱାରା ଉତ୍କଳଭାଷା, ସାହିତ୍ୟ ଓ ଉତ୍କଳଭୂମି ଉପକୃତ ହୋଇଛି, ସେମାନଙ୍କୁ ସେ ପ୍ରଶଂସା କରିଛନ୍ତି ଓ ଯାହାଦ୍ୱାରା ଆମ ସଂସ୍କୃତି, ସମାଜ ଓ ଭାଷାର ଅପକର୍ଷ ଘଟିଛି, ସେମାନଙ୍କୁ ସେ ତୀବ୍ର ବ୍ୟଙ୍ଗୋକ୍ତି କରିଛନ୍ତି 'ଉତ୍କଳ ଭ୍ରମଣଂ'ରେ । ବାହାରୁ ଦେଖି ସେ କୌଣସି ବ୍ୟକ୍ତିର ନିନ୍ଦା ବା ପ୍ରଶଂସା କରିନାହାଁନ୍ତି । ସେ ଉପଲବ୍ଧି କରିଥିଲେ, ବାହ୍ୟରୂପ ମାନବର ପ୍ରକୃତ ରୂପ ନୁହେଁ । ତେଣୁ ମାନବର ଅନ୍ତର୍ନିହିତ ଗୁଣାବଳୀ ଉପଲବ୍ଧି କରି ସେ କେତେବେଳେ ପ୍ରଶଂସାରେ ମୁଖରିତ ତ ଆଉ କେତେବେଳେ ନିନ୍ଦାଗାନରେ ଶତଜିହ୍ୱ ହୋଇଛନ୍ତି ।

## ମାନବେତର ସହାନୁଭୂତି

ଫକୀରମୋହନ କେବଳ ମାନବଜୀବନ, ପ୍ରକୃତି ଆଦିକୁ ନେଇ କବିତା ରଚନା କରିନାହାନ୍ତି, ପରନ୍ତୁ ସେ ମଧ୍ୟ ପଶୁପକ୍ଷୀ, ପୁଷ୍ପ ଏପରିକି ପାହାଡ଼ରେ ବସବାସ କରୁଥିବା ପାତୁଆ ପାଟୋଇଙ୍କ ଜୀବନକୁ ନେଇ ସୁନ୍ଦର ସୁନ୍ଦର କବିତାମାନ ରଚନା କରିଅଛନ୍ତି । ଯିଏ ପ୍ରକୃତ କବି ତା ନିକଟରେ ସୁନ୍ଦର ଓ କୁତ୍ସିତ ମଧ୍ୟରେ କୌଣସି ପାର୍ଥକ୍ୟ ନାହିଁ । ସେ କୁତ୍ସିତ ମଧ୍ୟରେ ସୁନ୍ଦର, ବିନ୍ଦୁ ମଧ୍ୟରେ ସିନ୍ଧୁର ଦର୍ଶନ କରିଥାଏ । ସାଧାରଣ ଚକ୍ଷୁରେ ଯାହା ସାଧାରଣ ବସ୍ତୁ, କବି ଚକ୍ଷୁରେ ତାହା ଅସାଧାରଣ । ସେଇଥିପାଇଁ କବି ଦୃଷ୍ଟିରେ ଥାଏ ଏକ ସ୍ୱତନ୍ତ୍ରତା । ଏହି ସ୍ୱତନ୍ତ୍ରତା ଯୋଗୁଁ ସେ ସାଧାରଣ ବ୍ୟକ୍ତିଠାରୁ ଅଲଗା ଭାବରେ ବାରି ହୋଇ ପଡ଼ିଥାଏ । ସେ ହୁଏ କବି ବା ସାହିତ୍ୟିକ । ଫକୀରମୋହନଙ୍କର ଥିଲା ଏହିପରି ଏକ କବି ଦୃଷ୍ଟି । ସମାଜ ଓ ସମାଜ ବାହାର ଅନେକ କୁତ୍ସିତ ଓ ଅସାଧାରଣ ବିଷୟକୁ ନେଇ ସେ କବିତା ରଚନା କରିଛନ୍ତି । ତେଣୁ ଫକୀରମୋହନଙ୍କର କବିତାଗୁଡ଼ିକ ଏକ ଦେଶଦର୍ଶୀ ଦୋଷ-ଦୁଷ୍ଟ

ନୁହେଁ । ମାନବ ଜୀବନର ବିଭିନ୍ନ ବିଭାବ ସଙ୍ଗେ ସଙ୍ଗେ ମାନବେତର ସହାନୁଭୂତି ତାଙ୍କ କବିତାରେ ସ୍ପଷ୍ଟ ପ୍ରତିଫଳିତ ।

'ପୁଷ୍ପମାଳା'ର 'ପିଞ୍ଜରା ପକ୍ଷୀ' କବିତାରେ ପକ୍ଷୀ ମାଧ୍ୟମରେ କବି ମାନବ ଜୀବନ ଦର୍ଶନ ଚମତ୍କାର ଭାବରେ ବର୍ଣ୍ଣନା କରିଛନ୍ତି । 'ଚକୁଆ ଚକୋଇ କଥା', 'ଚାତକ ପକ୍ଷୀ', 'ସାହାଡ଼ା ଗଛର କ୍ରନ୍ଦନ' ପ୍ରଭୃତି କବିତାରେ ନିଜ ଜୀବନ ଦର୍ଶନ ପ୍ରତିଫଳିତ । 'ଯୁଗ୍ମ କୁସୁମ' କବିତାଟିରେ କୁସୁମଦ୍ଵୟ ପ୍ରତି କବି ମନର ସହାନୁଭୂତି ପ୍ରକାଶିତ । 'କପୋତ ସଙ୍ଗୀତ' କବିତାରେ କପୋତୀର ବିଚ୍ଛେଦରେ କପୋତ ମନରେ ଯେଉଁ ଦାରୁଣ ଖେଦ ଜାତ ହୋଇଛି, ତାହା କଳାତ୍ମକ ଭାବରେ ପ୍ରକାଶ ପାଇଛି । 'କପୋତ କପୋତୀ' କବିତାରେ ସେମାନଙ୍କ ଆନନ୍ଦମୟ ଜୀବନଯାପନର ଚିତ୍ର ବର୍ଣ୍ଣିତ । 'ଗୋଲାପ ସୁନ୍ଦରୀ' କବିତାରେ ଗୋଲାପ ପୁଷ୍ପଟି ପ୍ରତି କବି ହୃଦୟର ସମବେଦନା ପ୍ରକାଶ ଲାଭ କରିଛି । 'ଗଙ୍ଗଶିଉଳୀ'ର କ୍ଷଣସ୍ଥାୟୀ ଜୀବନ ଚିତ୍ର ଦେବାକୁ ଯାଇ କବି କହିଛନ୍ତି–

ରଜନୀରେ ଉପବନରେ
ମେଲି ସୌନ୍ଦର୍ଯ୍ୟ ହାଟ
ଅଙ୍ଗ ଢାଳି ଢାଳି କରୁଛି
ବୃକ୍ଷ ଶିଖରେ ନାଟ
ଆହା ! ଆହା ! ନିଶି ଶେଷରେ
ବୃକ୍ଷୁଁ ପଡ଼ିବ ଝଡ଼ି
ଧୂଳି ଧୂସରିତ ହେବ ସେ
ଭୂମି ଉପରେ ପଡ଼ି

(ଗଙ୍ଗ ଶିଉଳୀ - ଅବସରବାସରେ)

'ବିରହୀ ହଳଦୀବସନ୍ତ' କବିତାଟିରେ ପୁରୁଷ ପକ୍ଷୀଟିର ନିର୍ମଳ ପତ୍ନୀପ୍ରେମର ଉଜ୍ଜ୍ୱଳ ଦୃଷ୍ଟାନ୍ତ ପ୍ରଦତ୍ତ ହୋଇଛି । ପକ୍ଷୀଟିର ଜାୟାପ୍ରେମ କବିଙ୍କୁ ବିସ୍ମୟ ଚକିତ କରିଛି । 'ରଜନୀଗନ୍ଧା' କବିତାଟିରେ ସରଳ ଓ ନିରାଡ଼ମ୍ବର ରଜନୀଗନ୍ଧାକୁ ପ୍ରଶଂସା କରାଯାଇଛି । ଅରଣ୍ୟରେ ପର୍ବତ ଉପରେ ବସବାସ କରୁଥିବା ପାତୁଆ ପାତୋଇଙ୍କର ଦାଂପତ୍ୟ ପ୍ରେମ ଓ ଆନନ୍ଦମୟ ଜୀବନର ଚିତ୍ର 'ପାତୁଆ ପାତୋଇ' କବିତାରେ ବର୍ଣ୍ଣିତ । ସଭ୍ୟ ସମାଜର ବହୁଦୂରରେ ରହିଥିଲେ ମଧ୍ୟ ସେମାନଙ୍କର ପବିତ୍ର ପ୍ରେମ ଯେକୌଣସି ସଭ୍ୟଜାତିର ଅନୁକରଣଯୋଗ୍ୟ । 'ବୁଢ଼ା ହରିଣ' କବିତାରେ ବାର୍ଦ୍ଧକ୍ୟ ଜୀବନର

ବାସ୍ତବ ଚିତ୍ର ପ୍ରକାଶିତ । କବି ସାଧାରଣ ମାନବ ଓ ହରିଣ ମଧ୍ୟରେ କୌଣସି ପାର୍ଥକ୍ୟ ଦେଖିପାରିନାହାନ୍ତି । ମାନବ ଯେପରି ପ୍ରତ୍ୟେକ କାର୍ଯ୍ୟରେ ନିଜ ସ୍ୱାର୍ଥକୁ ଉଚ୍ଚତର ମର୍ଯ୍ୟାଦା ପ୍ରଦାନ କରିଥାଏ, ଅନୁରୂପ ଭାବରେ ଅରଣ୍ୟରେ ପ୍ରାଣୀଜଗତରେ ବିଚରଣ କରୁଥିବା ହରିଣ ମଧ୍ୟ ସ୍ୱାର୍ଥପର । ବିରାଡ଼ି, କୁକୁର, ବଣି ଚଢ଼େଇ ପ୍ରଭୃତି ଅନେକ ପ୍ରାଣୀ ଓ ପକ୍ଷୀମାନଙ୍କର ଜୀବନକୁ ନେଇ ଫକୀରମୋହନ କବିତା ରଚନା କରି ସଫଳତା ଅର୍ଜନ କରିଛନ୍ତି ।

## ପଲ୍ଲୀବୋଧ

ପଲ୍ଲୀଜୀବନର ବାସ୍ତବ ଚିତ୍ର ପ୍ରଦାନ କରିବାରେ ଫକୀରମୋହନଙ୍କର ସିଦ୍ଧହସ୍ତତାର ପରିଚୟ ମିଳିଥାଏ । ପଲ୍ଲୀକୁ ଟିକି ନିଖି ଅନ୍ୱେଷଣ କରି ତାର ପ୍ରକୃତ ରହସ୍ୟ ଉଦ୍‌ଘାଟନ କରିବାରେ ଫକୀରମୋହନ ଅପ୍ରତିଦ୍ୱନ୍ଦ୍ୱୀ । ଅବଶ୍ୟ ପରବର୍ତ୍ତୀ ସମୟରେ ଏ କ୍ଷେତ୍ରରେ ଫକୀରମୋହନଙ୍କ ଉତ୍ତର ଦାୟାଦ ଭାବରେ ପଲ୍ଲୀକବି ନନ୍ଦ କିଶୋରଙ୍କ ମହତ୍ତ୍ୱ ସ୍ୱୀକାର୍ଯ୍ୟ । ପଲ୍ଲୀର ବିଷୟବସ୍ତୁ ପଲ୍ଲୀ କବିତାର ସାରାଂଶ । ରୂପ ନଗରର କାହାଣୀ, ଆଡ଼ମ୍ବରପୂର୍ଣ୍ଣ ରାଜ ପ୍ରାସାଦର ଚରିତ୍ର ଏହାର ପରିସର ମଧ୍ୟକୁ ଆସିବାକୁ ସଂପୂର୍ଣ୍ଣ ଅଯୋଗ୍ୟ । ଏହାର ବିଷୟବସ୍ତୁରେ "ଖାନ୍‌ଦାନ୍ ଘରର ବୁନିଆଦି ବା ରାଜପ୍ରାସାଦର ମହାପ୍ରସାଦ କିମ୍ବା କଳ୍ପିତ ସ୍ୱର୍ଗରାଜ୍ୟର ଅସରନ୍ତି ଭୋଗ-ବିଭବ କିଛି ନାହିଁ । ଯାହାକିଛି ଅଛି, ସେ ସବୁ କେବଳ ପଲ୍ଲୀର; ଯାହା ପଲ୍ଲୀପ୍ରାଣ ସହିତ ସମତାଳରେ ଗତି କରିବାକୁ ସମର୍ଥ । କଥାବସ୍ତୁଟି ପଲ୍ଲୀକଣ୍ଠର ଅବାରିତ ହୃଦୟ ସଙ୍ଗୀତଠାରେ କେନ୍ଦ୍ରୀଭୂତ ।"(୩୯) ଓଡ଼ିଶା ଏକ ପଲ୍ଲୀ ବହୁଳ ରାଜ୍ୟ । ଏ ପଲ୍ଲୀ ରାଜ୍ୟରେ ବାସ କରୁଥିବା ପଲ୍ଲୀ ଅଧିବାସୀଙ୍କ ଜୀବନ ବହୁ ଘଟଣା ଦୁର୍ଘଟଣାରେ ପରିପୂର୍ଣ୍ଣ । ଏପରି ଏକ ବିଶାଳ ରାଜ୍ୟର କୋଟି କୋଟି ଅଧିବାସୀଙ୍କ ଜୀବନରୁ ଉପାଦାନ ଗ୍ରହଣ କରାଯାଇ ପଲ୍ଲୀ କବିତା ରଚନା କରିବାରେ କୌଣସି ପ୍ରତିବନ୍ଧକ ନାହିଁ । ଯଥାର୍ଥରେ ମାୟାଧର ମାନସିଂ କୁହନ୍ତି- 'ପଞ୍ଚନଦର ସରଳ କୃଷକର ଛୋଟ ଛୋଟ ଆଶା ଆକାଂକ୍ଷା ଯଦି ଋକ୍‌ବେଦ ସୃଷ୍ଟି କରିପାରେ, ତେବେ ଉତ୍କଳର ଦେଢ଼କୋଟି ପ୍ରାଣର ଦୈନନ୍ଦିନ ସୁଖ-ଦୁଃଖରୁ ଯଥେଷ୍ଟ କବିତା ଲାଭ କରାଯାଇପାରେ ବୋଲି ଆଶା କରିବା ଧୃଷ୍ଟତା ହେବ ନାହିଁ ।'(୪୦)

ଜଣେ ପ୍ରଥମ ଶ୍ରେଣୀୟ କବିର ସର୍ବପ୍ରଧାନ କର୍ତ୍ତବ୍ୟ ହେଲା ସେ ସାଧାରଣ ଜୀବନରୁ ଘଟଣା ଓ ଉପାଦାନ ଗ୍ରହଣ କରି ଲୋକ ଭାଷାରେ ତାହା ପ୍ରକାଶ କରିବା ଉଚିତ୍ ।(୪୧) ମଧ୍ୟଯୁଗୀୟ କାବ୍ୟରେ ପଲ୍ଲୀପ୍ରତି କବିମାନଙ୍କର ଯେଉଁ ଦୃଷ୍ଟି ପଡ଼ିଛି, ତାହା

ବିଳାସୀ ଦୃଷ୍ଟି । ଅବଶ୍ୟ ସେ ସମୟର ସାମାଜିକ ପରିବେଶ କବିଙ୍କୁ କଳ୍ପନାବିଳାସୀ କରିବାକୁ ବାଧ କରିଛି । ଏପରିକି ରାଧାନାଥ ଓ ମଧୁସୂଦନ ଏହି ପ୍ରଭାବରୁ ସଂପୂର୍ଣ୍ଣ ମୁକ୍ତ ନୁହନ୍ତି । ପ୍ରଥମ ଥର ପାଇଁ ଫକୀରମୋହନ ପଲ୍ଲୀର ହସକାନ୍ଦ ଅନୁଭବ କରି ସାଧାରଣ ଜୀବନରୁ ଉପାଦାନ ଗ୍ରହଣ କରି କବିତା ତଥା ତାଙ୍କର ଅନ୍ୟାନ୍ୟ କୃତିଗୁଡ଼ିକରେ ପଲ୍ଲୀ ପରିବେଶ ସୃଷ୍ଟି କଲେ। ପଲ୍ଲୀର ସାଧାରଣ ନରନାରୀଙ୍କ ପ୍ରେମ-ମିଳନ, ଶ୍ରମ, ଅର୍ଥାଭାବ, ସୌହାର୍ଦ୍ଦ୍ୟ, ପ୍ରତାରଣା, ଲୋଭ, ଆତ୍ମତ୍ୟାଗ, ସାରଲ୍ୟ, ମିଥ୍ୟାଚାର, ଆଶାଭଙ୍ଗ ଓ ବ୍ୟର୍ଥତା; ବିଶ୍ୱାସ ଓ ଅବିଶ୍ୱାସ ପ୍ରଭୃତି ତୁଚ୍ଛାତିତୁଚ୍ଛ ବିଷୟବସ୍ତୁଗୁଡ଼ିକୁ ଫକୀରମୋହନଙ୍କ ଲେଖନୀ ଦକ୍ଷତାର ସହିତ ଚିତ୍ରଣ କରିଅଛି ।[୪୨] ତାଙ୍କର ଉପନ୍ୟାସ ଓ କ୍ଷୁଦ୍ରଗଳ୍ପଗୁଡ଼ିକୁ ଛାଡ଼ିଦେଲେ ପଲ୍ଲୀପ୍ରତି ତାଙ୍କର ଯେଉଁ ଅଶେଷ ମୋହ ଥିଲା ତାହା ତାଙ୍କର କେତୋଟି କବିତାରେ ପ୍ରକାଶଲାଭ କରିଛି ।

ତାଙ୍କର 'ପୁଷ୍ପମାଳା' କବିତା ସଂକଳନରେ 'ସନ୍ଧ୍ୟାବେଳେ ବିଦେଶୀର ଅନୁଚିନ୍ତା' କବିତାଟିରେ ପଲ୍ଲୀର ଗୋରୁ ବାହୁଡ଼ିବା ଚିତ୍ର ଓ ଅସ୍ତଗାମୀ ସୂର୍ଯ୍ୟଙ୍କର ରମଣୀୟ ଚିତ୍ର ସୁନ୍ଦର ଭାବରେ ବର୍ଣ୍ଣନା କରାଯାଇଛି । 'ଅବସରବାସରେ' କବିତା ସଂକଳନରେ କେତେଗୁଡ଼ିଏ ପଲ୍ଲୀ କବିତା ଦୃଷ୍ଟିଗୋଚର ହୋଇଥାଏ । ଉନବିଂଶ ଶତାବ୍ଦୀର ଶେଷାର୍ଦ୍ଧରେ ପଲ୍ଲୀ ଓ ସହର ସଭ୍ୟତା ମଧ୍ୟରେ ଯୋଗସୂତ୍ର ରକ୍ଷାକରିବା ପାଇଁ ଯେଉଁ ଉଦ୍ୟମ ହୋଇଥିଲା, ତାର ପ୍ରତିଫଳନ ଫକୀରମୋହନଙ୍କ କେତୋଟି କବିତାରେ ପରିଦୃଷ୍ଟ ହୁଏ । ସମାଲୋଚକ ଗଦାଧର ମିଶ୍ର ଫକୀରମୋହନଙ୍କର ଏହି ବୈଶିଷ୍ଟ୍ୟ ଉପରେ ଆଲୋକପାତ କରି କୁହନ୍ତି ଗ୍ରାମ୍ୟ ସଂସ୍କୃତିର ଗାଉଁଲୀ ପରିବେଶ ସହିତ ସହରୀ ସଭ୍ୟତାର ଅପୂର୍ବ ସଂଯୋଗ ସେନାପତି ସାହିତ୍ୟର ଏକ ପ୍ରଧାନ ଦିଗ । ପ୍ରୌଢ଼ କବିଙ୍କ ବୁଦ୍ଧିଦୀପ୍ତ ପର୍ଯ୍ୟବେକ୍ଷଣରୁ ଏହିପରି ପ୍ରତୀକାତ୍ମକ ଭାବନା ବହୁ କବିତାରେ ରୂପନେଇ ତାଙ୍କ ପଲ୍ଲୀ ଚେତନାର ବିଶେଷତ୍ୱ ପ୍ରମାଣିତ କରୁଛି । ପଲ୍ଲୀର ଏହି ସରଳତା ପ୍ରତି ଗଭୀର ଆସକ୍ତି ଶାଶ୍ୱତିକାର ସ୍ୱର୍ଣ୍ଣ ସ୍ୱାକ୍ଷର ନେଇ ନିତିଦିନିଆ ଚନ୍ଦ୍ରାଲୋକ ଭଳି ତାଙ୍କ କବିତାରେ ଆହ୍ଲାଦ ପରିବେଷଣ କରିଥାଏ, ନାଗରିକ ସଭ୍ୟତାର ପରିପାଟୀ ପଲ୍ଲୀର ପ୍ରାଣସ୍ପର୍ଶୀ ଇଙ୍ଗିତକୁ ବଳିଯାଇପାରେ ନାହିଁ ।[୪୩] ପଲ୍ଲୀର ସରଳତା ଆନନ୍ଦ ମଧୁର ଜୀବନ ତାଙ୍କର ସନ୍ଧାନୀ ଚକ୍ଷୁରେ ଠିକ୍ ଧରାପଡ଼ିଛି । ପଲ୍ଲୀକୋଳରେ ବଢ଼ି ଉଠିବାର ଜୀବନ କେତେ ଆନନ୍ଦମୟ ସେ ଠିକ୍ ଅନୁଭବ କରିଥିଲେ । ସେଇଥିପାଇଁ ତାଙ୍କର 'ମୋ ଗ୍ରାମ ମଲ୍ଲୀକାଶପୁର' କବିତାରେ ସ୍ୱଗ୍ରାମ୍ୟ ପ୍ରୀତିର ଗଭୀରତା ସଂପର୍କରେ ସୂଚନା ପ୍ରଦାନ କରିଛନ୍ତି ।[୪୪] କବି ସଚ୍ଚିଦାନନ୍ଦ ରାଉତରାୟ ଫକୀରମୋହନଙ୍କର ଏହି କବିତାଦ୍ୱାରା ପ୍ରଭାବିତ ହୋଇ 'ଛୋଟ ମୋର ଗାଁଟି' କବିତା ରଚନା କରିଥିବା

ଅସମ୍ଭବ ନୁହେଁ। ଫକୀରମୋହନ ଯେପରି ଗ୍ରାମରେ ଅନ୍ତିମ ଜୀବନ ଅତିବାହିତ କରିବାକୁ ଆକାଂକ୍ଷା ପ୍ରକାଶ କରିଛନ୍ତି, କବି ନନ୍ଦକିଶୋର ଓ ଗୋଦାବରୀଶ ମିଶ୍ର ମଧ୍ୟ ସେହିପରି ଶେଷ ଜୀବନ ଗ୍ରାମର ସେହି ଶାନ୍ତ ସରଳ ମନୋରମ ପରିବେଶ ମଧ୍ୟରେ କଟାଇବାକୁ ମନସ୍ଥ କରିଛନ୍ତି।

ଫକୀରମୋହନଙ୍କ 'ଭଗ୍ନ ଶିବ ମନ୍ଦିର' କବିତାଟିରେ ଗ୍ରାମୀଣ ସଂସ୍କୃତ ତଥା ସମୟର କାଳଚକ୍ରରେ ଏହାର ଜୀର୍ଣ୍ଣତାର ଚିତ୍ର ପ୍ରଦତ୍ତ। ଗ୍ରାମ୍ୟବଧୂଗଣଙ୍କ ସନ୍ଧ୍ୟା ସମୟରେ ସନ୍ଧ୍ୟା ଆଳତିଠାରୁ ଆରମ୍ଭ କରି ପଲ୍ଲୀବାସୀଙ୍କର ଆଧାତ୍ମିକତାର ଚମତ୍କାର ଚିତ୍ର ଏଥିରେ ପ୍ରଦତ୍ତ। ମାଇକେଲ ମଧୁସୂଦନ ଦତ୍ତଙ୍କ 'ନିଶାକାଳେ ନଦୀତୀରେ ବଟବୃକ୍ଷ ତଳେ ଶିବ ମନ୍ଦିର' କବିତାଟିରେ ମଧ୍ୟ ଗ୍ରାମ୍ୟ ସନ୍ଧ୍ୟାର ମନୋରମ ଚିତ୍ର ପ୍ରଦତ୍ତ। 'ଶ୍ମଶାନ' କବିତାରେ ମଧ୍ୟ ପଲ୍ଲୀବାସୀଙ୍କର ଶେଷ ଜୀବନର କରୁଣ ପରିସମାପ୍ତିକୁ ଚମତ୍କାର ଭାବରେ ବର୍ଣ୍ଣନା କରାଯାଇଛି। ମାଇକେଲ ମଧୁସୂଦନ ଦତ୍ତଙ୍କ 'ଶ୍ମଶାନ' କବିତା ସହିତ ଏହାର କେତେକାଂଶରେ ଭାବସାମ୍ୟ ପରିଲକ୍ଷିତ ହୋଇଥାଏ।[୪୫] 'ନିଦାଘ ସନ୍ଧ୍ୟାରେ କାଠଯୋଡ଼ିକୂଳ ପଥରବନ୍ଧ' କବିତାରେ ଆନନ୍ଦପୁରର ସନ୍ଧ୍ୟା ଆଗମନର ଶୋଭାର ଯେପରି ଚିତ୍ର ପ୍ରଦତ୍ତ କରାଯାଇଛି, ତାହା ଯେକୌଣସି ପଲ୍ଲୀ ସନ୍ଧ୍ୟା ଆଗମନୀ ଚିତ୍ର ସହିତ ତୁଳନୀୟ ହୋଇପାରେ। 'ଡାଆଣି ଆଲୁଅ' କବିତାରେ କବିଙ୍କର ଶୈଶବ ସ୍ମୃତି ବର୍ଣ୍ଣନା ହେବା ସଙ୍ଗେ ସଙ୍ଗେ ସହର ସଭ୍ୟତା ସଂଘର୍ଷରେ ଆସିବାଦ୍ୱାରା ଗ୍ରାମର ସରଳତା ପରିବର୍ତ୍ତେ ନିଷ୍ଠୁରତାର ଆବିର୍ଭାବ ଓ ପଲ୍ଲୀର କ୍ରବବର୍ଦ୍ଧିଷ୍ଣୁ ନିରସତା, କର୍କଶତା, ଅମାନବିକତାର ଚିତ୍ର ପରିସ୍ଫୁଟିତ।

'ଉତ୍କଳ କୃଷକ' କବିତାରେ ପଲ୍ଲୀକୃଷକ ଜୀବନର କରୁଣ ଚିତ୍ର ପ୍ରଦତ୍ତ ହେବା ସଙ୍ଗେ ସଙ୍ଗେ କୃଷକମାନଙ୍କର ବହୁବିଧ ସମସ୍ୟା ସଂପର୍କରେ ଆଲୋଚନା କରାଯାଇଛି। ପରିଶିଷ୍ଟ କବିତାବଳୀରେ 'ଚାଷୀର ଆନନ୍ଦ' କବିତାରେ ଆଗାମୀ ଭବିଷ୍ୟତ ଯୋଜନାରେ ଚାଷୀମନର ଆନନ୍ଦଭାବକୁ ସୁନ୍ଦରଭାବରେ ଫକୀରମୋହନ ବର୍ଣ୍ଣନା କରିଛନ୍ତି। 'ଚାଷୀର ଆନନ୍ଦ' କବିତାର ଭାବଗତ ଐକ୍ୟ ନନ୍ଦକିଶୋରଙ୍କ 'ଉତ୍କଳ କୃଷକ' କବିତାଟିରେ ପରିଦୃଷ୍ଟ ହୋଇଥାଏ। ପ୍ରତ୍ୟେକ ଜାତିର ଆଦିମ ସଭ୍ୟତାହିଁ ପଲ୍ଲୀ ସଭ୍ୟତା। ତେଣୁ ଏହି ପଲ୍ଲୀ ଜୀବନର ବାସ୍ତବଚିତ୍ର ଫକୀରମୋହନଙ୍କ ଲେଖନୀରେ ଜୀବନ୍ତରୂପ ନେଇ ପ୍ରକାଶ ଲାଭ କରିଛି। ଶ୍ରୀମତୀ ପ୍ରେମଲତା ଦେବୀ ଫକୀରମୋହନଙ୍କ ପଲ୍ଲୀଚେତନା ସଂପର୍କରେ ମତପ୍ରଦାନ କରି କୁହନ୍ତି, "ପଲ୍ଲୀ ଅଧ୍ୟୁଷିତ ଜନତାର ସାରଲ୍ୟ, ଶ୍ରମ, ପ୍ରେମ ମିଳନ, ଆନନ୍ଦ, ଉତ୍ସବ, ବ୍ୟର୍ଥତା, ଗ୍ଲାନି, ଉଦାରତା, ବିଶ୍ୱାସ, ଅନ୍ଧବିଶ୍ୱାସ, କୁସଂସ୍କାର

ପ୍ରଭୃତି ବହୁ ଅପରିହାର୍ଯ୍ୟ ବାସ୍ତବ ଘଟଣାର ବିବରଣୀ ଫକୀରମୋହନଙ୍କ ଲେଖନୀରେ ଦକ୍ଷତାର ସହିତ ଚିତ୍ରିତ ହୋଇଛି । ପଲ୍ଲୀର ନିରାଡ଼ମ୍ବର ଜୀବନଚିତ୍ର ଓ ପଲ୍ଲୀ ତାଙ୍କ କବିତାରେ ଏକ ବିଶିଷ୍ଟ ଆସନ ଅଧିକାର କରିଅଛି । ଉତ୍କଳର ଆଦିମ ସଭ୍ୟତା, ପଲ୍ଲୀ ମଣ୍ଡିତ ଓ ପଲ୍ଲୀ ଜୀବନ ନିର୍ଯ୍ୟାସରେ ପରିପୁଷ୍ଟ ।"[୪୬] ଫକୀରମୋହନ ଠିକ୍ ଜାଣିଥିଲେ ପଲ୍ଲୀବିନା ନଗର ସଭ୍ୟତା ମୂଲ୍ୟହୀନ ଓ ପଲ୍ଲୀକୁ ବାଦ୍‌ଦେଲେ ଉତ୍କଳୀୟ ସଂସ୍କୃତି ତଥା ସମାଜ କଳ୍ପନାତୀତ । ପଲ୍ଲୀଜୀବନ ସହିତ ନିଜକୁ ଖାପଖୁଆଇ ଚଳାଇ ନପାରିଲେ ପଲ୍ଲୀ ସହିତ ନିଜକୁ ସାମିଲ କରି ନପାରିଲେ, ପଲ୍ଲୀର ମାଧୁରିମା ଅନୁଭବ କରିବା ସଂପୂର୍ଣ୍ଣ ଅସମ୍ଭବ । ପଲ୍ଲୀରେ ଉପାଦାନ ଅନେକ, କିନ୍ତୁ ତାଙ୍କୁ ଉପଭୋଗ କରିପାରିବା ଭଳି ମାନସିକ ପ୍ରସ୍ତୁତି ଆବଶ୍ୟକ । ଯାହାର ଏହି ମାନସିକ ପ୍ରସ୍ତୁତି ନାହିଁ ତା ହସ୍ତରେ ପଲ୍ଲୀର ମାଧୁରିମା ବିପର୍ଯ୍ୟସ୍ତ ହୋଇଯିବା ଅସମ୍ଭବ ନୁହେଁ । କିନ୍ତୁ ଫକୀରମୋହନଙ୍କ ଦୃଷ୍ଟି ଥିଲା ପଲ୍ଲୀ ଅଭିମୁଖୀ । ତେଣୁ ତାଙ୍କ ହସ୍ତରେ ଏହି ପଲ୍ଲୀ ନୂତନ ରୂପ ନେଇ ଆମ ସମ୍ମୁଖରେ ନୂତନ ସ୍ୱାଦ ପରିବେଷଣ କରିପାରିଛି ।

## ଶିଶୁ କବିତା

ଶିଶୁକବିତା ରଚନାକ୍ଷେତ୍ରରେ ଫକୀରମୋହନ ସେନାପତି ନିଜର ସିଦ୍ଧହସ୍ତତାର ପରିଚୟ ପ୍ରଦାନ କରିଛନ୍ତି । ଆଜିର ଶିଶୁ ଆସନ୍ତାକାଲିର ନାଗରିକ ଓ ଦେଶର ରକ୍ଷକ । ଗୋଟିଏ ଦେଶର ଶିଶୁ ସେ ଦେଶର ଗର୍ବ ଓ ଗୌରବର ପ୍ରତୀକ । ଶିଶୁମାନଙ୍କୁ ଉପଯୁକ୍ତ ଶିକ୍ଷାପ୍ରଦାନ ଓ ସେମାନଙ୍କ ମାନସିକ ଶକ୍ତିର ବିକାଶ ଦେଶର ସର୍ବପ୍ରଧାନ କର୍ତ୍ତବ୍ୟ । ସେଥିପାଇଁ ପୃଥିବୀର ପ୍ରତ୍ୟେକ ଦେଶ ଶିଶୁମାନଙ୍କର ଉପଯୁକ୍ତ ବିକାଶ ପାଇଁ ଧ୍ୟାନ ଦେଇଥାନ୍ତି । ଶିଶୁମାନଙ୍କର ବିକାଶପାଇଁ ଓ ସେମାନଙ୍କୁ ଯଥାର୍ଥ ଶିକ୍ଷା ଦେବା ପାଇଁ ଶିଶୁ ଗୀତ ରଚନା କରାଯାଇଥାଏ । ଯେକୌଣସି ବ୍ୟକ୍ତି ଶିଶୁଗୀତ ରଚନା କରିପାରନ୍ତି ନାହିଁ । ସେଥିପାଇଁ ଶିଶୁ ଗୀତ ସଂପର୍କରେ ବିଶ୍ୱକବି ରବୀନ୍ଦ୍ରନାଥ ଠାକୁର କୁହନ୍ତି– "ସଦ୍ୟ କୃଷି କରାଯାଇଥିବା ମାଟିର ଯେଉଁ ସୁବାସ କିମ୍ବା କୋମଳମତି ଶିଶୁର କୋମଳ ଶରୀରର ଯେଉଁ ସ୍ନେହ ଉଦ୍‌ବେଳକ ସୁବାସ ଆଘ୍ରାଣ କରାଯାଏ, ତାହାସହିତ କୌଣସି ଫୁଲ, ଚନ୍ଦନ, ଗୋଲାପ ଜଳ, ଅତର ଅଥବା ଧୂପର ସୁଗନ୍ଧ ଆଦୌ ତୁଳନା କରାଯାଇ ନପାରେ । ସମସ୍ତ ସୁଗନ୍ଧ ମଧ୍ୟରେ ଯେପରି ଏକ ଅଲୌକିକ ଆଦିମତା ନିହିତ, ଶିଶୁଗୀତ ମଧ୍ୟରେ ସେପରି ଏକ ଆଦିମ ସୌକୁମାର୍ଯ୍ୟ ନିହିତ । ସେହି ମାଧୁର୍ଯ୍ୟକୁ ବାତ୍ସଲ୍ୟରସ ନାମରେ ନାମିତ କରାଯାଇପାରେ । ତାହା ଉତ୍କଟ ନୁହେଁ, ପ୍ରଗାଢ଼ ନୁହେଁ, ତାହା ଅତି ସ୍ନିଗ୍ଧ ସାରସ ଏବଂ ଯୁକ୍ତିସଙ୍ଗତିବିହୀନ ।[୪୭] ଏହି

ଶିଶୁଗୀତର ସାର୍ଥକ ସ୍ରଷ୍ଟା ଭାବରେ ଫକୀରମୋହନ ଓ ମଧୁସୂଦନ ଓଡ଼ିଆ ସାହିତ୍ୟରେ ପ୍ରଥମ ଦିଗ୍‌ଦର୍ଶକ ।

କୋମଳମତି ଶିଶୁ ବାଲ୍ୟକାଳରେ ଭଲମନ୍ଦ ଜାଣି ନଥାଏ । ସୁ ଓ କୁ ମଧ୍ୟରେ ତା' ନିକଟରେ କୌଣସି ପାର୍ଥକ୍ୟ ନଥାଏ । ସେହି ସମୟରେ ସେ ଯେଉଁ ଶିକ୍ଷା ପାଇଥାଏ, ତାକୁ ପାଥେୟ କରି ସେ ଭବିଷ୍ୟତ ପଥର ସନ୍ଧାନ କରିଥାଏ । ଉଚିତ କର୍ମ ଓ ଉଚିତ ମାର୍ଗରେ ପରିଚାଳିତ ହେଲେ, ଶିଶୁ ଏ ଦେଶର ଜଣେ ଭବିଷ୍ୟତର ସୁନାଗରିକ ହୋଇପାରିବ, ଏଥିରେ ସନ୍ଦେହ ନାହିଁ । ଫକୀରମୋହନ ତେଣୁ ଶିଶୁମାନଙ୍କୁ ଉପଦେଶ ଦେବା ନିମିତ୍ତ ଗଦର୍ଭର ସୂକ୍ଷ୍ମ ବୁଦ୍ଧି, ଚାନ୍ଦମଣିର ଅଙ୍ଗା, ଶଙ୍ଖୀ ବିରାଡ଼ି ଓ ବଣି ପକ୍ଷିଣୀ, ଭୁଆଁ ବିରାଡ଼ି ଓ କାଳିଆ କୁକୁର ପ୍ରଭୃତି କବିତା ରଚନା କରିଛନ୍ତି ।

ଯୋଗ୍ୟତାନୁଯାୟୀ ପ୍ରତ୍ୟେକ ବ୍ୟକ୍ତି ନିଜର କର୍ତ୍ତବ୍ୟ କରିବା ଉଚିତ୍ । ଯଦି କୌଣସି ବ୍ୟକ୍ତି ନିଜ ପରିସୀମା ବାହାରେ କାର୍ଯ୍ୟ କରେ, ସେ ଅନ୍ୟମାନଙ୍କ ଦ୍ୱାରା ହାସ୍ୟାସ୍ପଦ ହୋଇଥାଏ । ତେଣୁ ଗଧ କୁକୁରର କାର୍ଯ୍ୟ ଅନୁସରଣ କରିବାକୁ ଯାଇ, ମାଲିକଙ୍କଠାରୁ ପ୍ରହାର ମାଡ଼ରେ ଜର୍ଜ୍ଜରିତ ହୋଇଛି । କୁକୁରସିନା ରାତିରେ ଭୁକିଲେ କିମ୍ବା ମାଲିକ ଉପରେ ଲାଞ୍ଜ ପିଟିଲେ ଶୋଭା ପାଇବ, କିନ୍ତୁ ଗଧ ଯଦି ସେହିପରି କାର୍ଯ୍ୟ କରେ, ତାର ପ୍ରାପ୍ୟ ପ୍ରହାର ବ୍ୟତୀତ ଅନ୍ୟ କଣ ହୋଇପାରେ ? ଉପଦେଶ ଦେଇ ଫକୀରମୋହନ କହିଛନ୍ତି—

ଅକର୍ତ୍ତବ୍ୟ କାମ      କଲେ ପିଲାମାନେ<br>
    ଖାଇବ ଏପରି ମାଡ଼<br>
ଯାହାର ଯେ କାମ      ନିରୂପିତ ଅଛି<br>
    ତାହାକୁ ସେ କାମ ସାଜେ<br>
ନ ଜାଣିଲା ଲୋକ      ତହିଁ ହାତ ଦେଲେ<br>
    ପିଠିରେ ପାଞ୍ଚଣ ବାଜେ ।

'ଚାନ୍ଦମଣିର ଅଙ୍ଗା' କବିତାରେ ସେହିପରି ଶିଶୁମାନଙ୍କୁ ଉପଦେଶ ପ୍ରଦାନ କରାଯାଇଛି । ଶରୀର ସହିତ ମନର ସ୍ଥିରତା ନରହିଲେ ମାନବ କୌଣସି କାର୍ଯ୍ୟରେ ସଫଳ ହୋଇନପାରେ । ଚାନ୍ଦର କିଛିନାକିଛି ପ୍ରତ୍ୟେକ ଦିନ ପରିବର୍ତ୍ତନ ଘଟିଥାଏ । ଏହି ପରିବର୍ତ୍ତନ ଯୋଗୁଁ ସେ କୌଣସି ନିର୍ଦ୍ଦିଷ୍ଟ ଦ୍ରବ୍ୟ ବ୍ୟବହାର କରିବାକୁ ସମର୍ଥ ହୋଇପାରେନା । ଠିକ୍ ସେହିପରି ତାର ଚଞ୍ଚଳମତିତା ଯୋଗୁଁ ମଧ କୌଣସି ନିର୍ଦ୍ଦିଷ୍ଟ ଦ୍ରବ୍ୟ ପ୍ରତି ଆଗ୍ରହ ପ୍ରକାଶ କରିପାରୁନଥିବାରୁ, ସେ କୌଣସି ପଦାର୍ଥ ବ୍ୟବହାର

କରିପାରେ ନାହିଁ । 'ଶଙ୍ଖୀ ବିରାଡ଼ି ଓ ବଣି ପକ୍ଷିଣୀ କବିତାରେ ବଣିର ବୁଦ୍ଧିମତାକୁ ପ୍ରଶଂସା କରାଯାଇଛି । ନିଜର ସୂକ୍ଷ୍ମବୁଦ୍ଧି ଦ୍ୱାରା କାର୍ଯ୍ୟହାସଲ କରିବା ବୁଦ୍ଧିମାନର କର୍ତ୍ତବ୍ୟ । ଉପସ୍ଥିତି ବୁଦ୍ଧି ପ୍ରୟୋଗ କରିନପାରିଲେ ମନୁଷ୍ୟ ବାରମ୍ଵାର ବିପଦର ସମ୍ମୁଖୀନ ହୋଇଥାଏ । ବଣି ନିଜର ବାକ୍‌ଚାତୁରୀ ଓ ବୁଦ୍ଧିବଳରେ ନିଜ ଶିଶୁଟିକୁ ବିରାଡ଼ି ହସ୍ତରୁ ରକ୍ଷାକରିବାକୁ କ୍ଷମ ହୋଇପାରିଛି । ତେଣୁ ଫକୀରମୋହନ ବଳବନ୍ତ ଶତ୍ରୁ ହସ୍ତରୁ ନିଜର କୌଶଳଦ୍ୱାରା ଉଦ୍ଧାର ପାଇବାକୁ ଉପଦେଶ ଦେଇଛନ୍ତି ।[୪୮] 'ଭୁଆଁ ବିରାଡ଼ି ଓ କାଳିଆ କୁକୁର' କବିତାରେ ଚୋରୀକୁ ଘୃଣା କରାଯାଇଛି । କାରଣ ଚୋର ସବୁଦିନ ସୁଖରେ ଜୀବନ ନିର୍ବାହ କରି ନପାରେ । ବରଂ ନିଜର ପରିଶ୍ରମ ଅନୁଯାୟୀ ଯେତିକି ମିଳିବ, ତାହାହିଁ ଯଥେଷ୍ଟ । ଚୋରିକରି ଧରାପଡ଼ି ପ୍ରହାର ମାଡ଼ରେ ଜର୍ଜ୍ଜରିତ ହେବା ଅପେକ୍ଷା ନିଜର କ୍ଷମତାରେ ଯେତିକି ଉପାର୍ଜନ ହୋଇପାରିବ, ତାକୁହିଁ ନେଇ ସନ୍ତୁଷ୍ଟ ରହିବା ଉଚିତ୍ । ଭୁଆ ବିରାଡ଼ିର ଚୋରୀ ପ୍ରକୃତି ଯୋଗୁଁ ସେ ମାଡ଼ଖାଇ ଦରମରା ହୋଇଛି । କିନ୍ତୁ କୁକୁର ଚୋରୀକୁ ଘୃଣା କରି ପ୍ରଶଂସାର ପାତ୍ର ହୋଇଛି । ଏହି କଥାକୁ ଫକୀରମୋହନ ସୁନ୍ଦର ଭାବରେ ଉକ୍ତ କବିତାଟିରେ ବର୍ଣ୍ଣନା କରିଛନ୍ତି ।[୪୯]

ଫକୀରମୋହନଙ୍କ ଶିଶୁ କବିତାଗୁଡ଼ିକ ଅନେକ ସମୟରେ ବୁଦ୍ଧିଦୀପ୍ତ ହୋଇଥିବାରୁ ଶିଶୁ ଉପଯୋଗୀ ହୋଇପାରିନାହିଁ । ସମାଲୋଚକ ସାମଲ କୁହନ୍ତି– ଭକ୍ତକବି ମଧୁସୂଦନ ରାଓ ଓ ବ୍ୟାସକବି ଫକୀରମୋହନ ସେନାପତି ପ୍ରଥମେ ଶିଶୁ ସାହିତ୍ୟ ସୃଷ୍ଟିକରି ଶିଶୁମାନଙ୍କର କଳ୍ପନା ଶକ୍ତିକୁ ଜାଗ୍ରତ କରାଇବାର ଚେଷ୍ଟା କରିଥିଲେ । ମାତ୍ର ସେମାନଙ୍କର ଏହି ଶ୍ରେଣୀୟ ସାହିତ୍ୟ ବିଶେଷ ଭାବରେ ବୁଦ୍ଧିଦୀପ୍ତ ଓ ଯୁକ୍ତି ରସାଣିତ । ସେଗୁଡ଼ିକ ବିଶେଷ ଭାବରେ ମାନବିକ ଅବବୋଧ ଓ ଆଧ୍ୟାତ୍ମିକ ଚିନ୍ତାଧାରାରେ ଭାରାକ୍ରାନ୍ତ ।[୫୦] ତଥାପି ଶିଶୁ କବିତା କ୍ଷେତ୍ରରେ ସେମାନେ ପ୍ରଥମେ ଭିତ୍ତିପ୍ରସ୍ତର ସ୍ଥାପନ କରିଥିବାରୁ ନିଶ୍ଚିତ ଭାବରେ ପ୍ରଶଂସାର ପାତ୍ର ।

## ଉପସଂହାର

ଫକୀରମୋହନଙ୍କ କବିତାର ଦିଗ୍‌ବଳୟ ସୁଦୂରପ୍ରସାରୀ । ଏମିତି କୌଣସି ଉପାଦାନ ନାହିଁ, ଯାହା ତାଙ୍କ କବିତାରେ ଅଲଭ୍ୟ । ଜୀବନର ପ୍ରତ୍ୟେକଟି ଦିଗ ତାଙ୍କ କବିତାଗୁଡ଼ିକୁ ବାସ୍ତବବାଦୀ କରି ତୋଳିଛି । ଜୀବନରେ ଯେଉଁ ପଦାର୍ଥଗୁଡ଼ିକର ଆବଶ୍ୟକତା ରହିଛି ପ୍ରତ୍ୟେକଟିକୁ ସେ ଲେଖନୀ ମୁନରେ କଳାତ୍ମକ ରୂପ ଦେଇ

ପାରିଛନ୍ତି । ଶିଶୁ କବିତାଠାରୁ ଆରମ୍ଭ କରି ମାନବେତର ଜୀବ ପର୍ଯ୍ୟନ୍ତ ପ୍ରତ୍ୟେକଟିକୁ ସେ ସୂକ୍ଷ୍ମ ଅନୁଭବ ଦେଇ ବିଚାର କରିଛନ୍ତି । ତାଙ୍କ କବିତାଗୁଡ଼ିକର ବିଶିଷ୍ଟ ଗୁଣ ହେଲା ଅନୁଭବର ଗଭୀରତା । ସମାଜ ଜୀବନରେ ଯେଉଁଗୁଡ଼ିକର ଆବଶ୍ୟକତା ସେ ଉପଲବ୍ଧି କରିଛନ୍ତି, ତାକୁ ସେ ରୂପାୟିତ କରିଛନ୍ତି ତାଙ୍କ କବିତାରେ । ସାଧାରଣ ଭାବରେ ମନୋରଞ୍ଜନ ନିମିତ୍ତ ତାଙ୍କ କବିତାଗୁଡ଼ିକ ଉଦ୍ଦିଷ୍ଟ ନୁହେଁ । ପରନ୍ତୁ ତାଙ୍କର ପ୍ରତ୍ୟେକ କବିତାଗୁଡ଼ିକର ଏକ ଏକ ସାମାଜିକ ମୂଲ୍ୟ ରହିଛି । ଏଣୁ ତାଙ୍କ କବିତାଗୁଡ଼ିକୁ ଆଲୋଚନା କଲାବେଳେ କଳାତ୍ମକ ଦିଗ ଅପେକ୍ଷା ସାମାଜିକ ଦିଗକୁ ବିଶେଷ ଭାବରେ ଅନୁଧ୍ୟାନ କରିବା ଉଚିତ ହେବ ।



# ସହାୟକ ସୂଚୀ


୧. ଫକୀରମୋହନ ଗ୍ରନ୍ଥାବଳୀ - ୧ମ ଭାଗ, ୨ୟ ସଂ.-୧୯୬୩।
କବି - ପୁଷ୍ପମାଳା, ପୃ-୨୩୫, କଟକ ଷ୍ଟୁଡ଼େଣ୍ଟସ୍ ଷ୍ଟୋର, ବାଲୁବଜାର, କଟକ

୨. ଏଜନ୍ : କବିତା-ଦିଗବିଜୟୀ ବୀର। ପୃ-୪୦୦

୩. ସରକାର ବାହାଦୂର ଜଲେ ଦୟା ଭାରି
ପ୍ରଜାସ୍ୱତ୍ୱ ଆଇନଟା କରିଦେଲେ ଜାରି
କୃଷକର ବଢ଼ିଗଲା ଗୋଟାଏ ଜୀବିକା
ରେଜେଷ୍ଟରୀ ଅଫିସରେ ଜମି କିଣାବିକା
ସବୁଦିନେ ଟାଣଟୁଣ ଘରେ ନାହିଁ ଭାତ
ଜମି ଖଣ୍ଡି ବିକିବାକୁ ବଢ଼ାଇଲା ହାତ
ଗଲା ଅଙ୍କ ପୁଅ ବାହା ବିକିଥିଲା ମାଣେ
ବାପ ଶୁଦ୍ଧି ବେଳେ କେତେ ବିକିଲା କେ ଜାଣେ ?
ବାକୀ ଖଣ୍ଡକରେ ହେଲା ଭାରି ଟାଣଟୁଣ
ମାଘ ଫଗୁଣରେ ଘରେ ନାହିଁ ଲେମ୍ବୁଲୁଣ
ଭାଗରେ ଲଗାଇ ଦେଲା ଜମା ଦେଢ଼ମାଣ
ହଡ଼ା ହଳକର ହାଲ ଏଥୁ ସବୁ ଜାଣ
ବାହାରିଲା ଘର ଛାଡ଼ି ଲାଗିବାକୁ ମୂଲ
ଜୟ ! ଜୟ ! ପ୍ରଜାସ୍ୱତ୍ୱ ହରିହରି ବୋଲ
ଫ : ମୋ ଗ୍ରନ୍ଥାବଳୀ। ୧ମ ଭାଗ, ୨ୟ ସଂ. ଉତ୍କଳ କୃଷକ, ପୃ-୪୧୦

୪. ହେ ସମାଜ। କରୁଅଛ ଯେଉଁ ଅତ୍ୟାଚାର
ନିଶ୍ଚୟ ହେବଟି ପରଲୋକରେ ବିଚାର
ଆକାଶେ ଅଛନ୍ତି ଧର୍ମ ନ ଯାଅ ପାଶୋରି
ଦିବା ନିଶି ଜଗିଛନ୍ତି ଧର୍ମ ଦଣ୍ଡଧରି (ଚନ୍ଦ୍ରପ୍ରଭାର ନିର୍ଜଳା ଏକାଦଶୀ)
ଫ.ମୋ. ଗ୍ରନ୍ଥାବଳୀ ୧ମ ଭା-ପୃ. ୪୨୪

୫. ଆଧୁନିକ ଓଡ଼ିଆ କାବ୍ୟଧାରା : ଡଃ ନରେନ୍ଦ୍ରନାଥ ମିଶ୍ର। ୧ମ ପ୍ର-୧୯୬୪, ପୃ-୨୧୭. ବିଶ୍ୱଭାରତୀ ଶାନ୍ତି ନିକେତନ।

୬. ଆଧୁନିକ ସାହିତ୍ୟ ସନ୍ଦର୍ଶନ - ଦେବେନ୍ଦ୍ର ମହାନ୍ତି । ପୃ. ୮୬, ୩ୟ ପ୍ରକାଶ- ୧୯୭୩ ।

୭. The movement for social reform began under the leadership of Babu Bhagaban Chandra Das. Fakirmohan Senapati, The Maharaja of Mayurbhanj Mr. M.S. Das and Madhusudan Rao. These leaders dedicated their lives to the cause of their country.

History of Orissa - H. K. Mahatab, Vol-II, P-451-52. Prajatantra Prachar Samittee, Cuttack 11th Edition.

୮. ରାଣ୍ଡ ବାହା ହେଲେ ଆଉ କେହି କିଂପା
ଦେବେ ବ୍ରାହ୍ମଣ ଭୋଜନ ?
ତାହା ହେଲେ ନନା ଏକା ବେଳକରେ
ଉଠିଯିବ ଅରଜନ
ଶୁଣିଲା ବେଳରୁ ଏହି କଥାଟା ମୁଁ
ବୁଲାଇ ଦେଉଛି ମଥା ।
ଦହି ଚୁଡ଼ା ଯେବେ ବନ୍ଦ ହୋଇଯିବ
ସରିଲା ବ୍ରାହ୍ମଣ କଥା । (ରାମରଥ କଥା)

ଫ.ମୋ. ଗ୍ରନ୍ଥାବଳୀ : ୧ମ ଭାଗ, ୨ୟ ସଂ.-୧୯୬୩, ପୃ-୪୨୨ ।

୯. ଓଡ଼ିଆ ସାହିତ୍ୟର ଇତିହାସ (୧୮୦୩-୧୯୨୦) । ଡଃ ନଟବର ସାମନ୍ତରାୟ, ପୃ. ୩୨୦ । ପ୍ରକାଶକ ଡଃ ନଟବର ସାମନ୍ତରାୟ, ଭୁବନେଶ୍ୱର । ଲାବଣ୍ୟଭବନ, ସାମନ୍ତରାପୁର୨ୟ ସଂ-୧୯୮୩ ।

୧୦. ଆଧୁନିକ ବାଂଲା ଗୀତି କବିତା - ଜୀବେନ୍ଦ୍ର ସିଂହରାୟ । ପୃ-୧୨୪ । ପ୍ରାଇମା ପବ୍ଲିକେଶନ ୧୦ ଶ୍ୟାମାଚରଣ ଦେ ଷ୍ଟ୍ରୀଟ୍ କଲିକତା-୧୨ । ୧୯୬୫ ।

୧୧. ହେ ସମାଜ ! କରୁଅଛ ଯେଉଁ ଅତ୍ୟାଚାର
ନିଶ୍ଚୟ ହେବଟି ପରଲୋକରେ ବିଚାର
× × × ×
ଯେ କଷ୍ଟଟା ଦେଉଅଛ ନିର୍ଦ୍ଦୋଷୀ କନ୍ୟାକୁ
ନିଶ୍ଚୟ ନିଶ୍ଚୟ ହେବ ଫଳ ଭୁଞ୍ଜିବାକୁ । (ଚନ୍ଦ୍ରପ୍ରଭାର ନିର୍ଜଳା ଏକାଦଶୀ)

ଫ. ମୋ. ଗ୍ରନ୍ଥାବଳୀ : ୧ମ ଭାଗ - ୧୯୬୩ । ପୃ-୪୨୪.୨୫ । କଟକ ଷ୍ଟୁଡ଼େଣ୍ଟସ୍ ଷ୍ଟୋର ବାଲୁବଜାର କଟକ ।

୧୨. ପୁରୁଷଟା ବିଭା ହୋଇପାରେ ସାତବାର
ଅବଳା ବେଳକୁ ଯେତେ ଶାସ୍ତ୍ରର ବିଚାର
ସନାତନ ବେଦ ବିଧି ଶୁଣିଛ କି କାନେ
ମହାଜ୍ଞାନୀ ବୋଲି ଟଳିପଡ଼ ଅଭିମାନେ
(ବିଧବାର ଅଭିଶାପ-ପୂଜାଫୁଲ)
ଫ.ମୋ. ଗ୍ରନ୍ଥାବଳୀ : ୧ମ ଭାଗ, ପୃ. ୫୪୬ ।

୧୩. Orissa (Appendix) W. W. Hunter, Page-48. London.

୧୪. ଆଧୁନିକ ଓଡ଼ିଆ କବିତାରେ ପଲ୍ଲୀଚେତନା ଓ କବି ବିଦ୍ୟୁତପ୍ରଭା - ଶ୍ରୀମତୀ ପ୍ରେମଲତା ଦେବୀ । ପୃ.-୯ (୧୯୮୪ ମସିହାରେ ପିଏଚ୍.ଡ଼ି. ପାଇଁ ପ୍ରସ୍ତୁତ ସନ୍ଦର୍ଭ ଓ ଉତ୍କଳ ବିଶ୍ୱବିଦ୍ୟାଳୟରେ ସଂରକ୍ଷିତ)

୧୫. ମୋ କୁଟୀର ରାଣୀ କୃଷ୍ଣକୁମାରୀ ସୁନ୍ଦରୀ
ଜୀବନ ବଲ୍ଲଭା ପ୍ରାଣପ୍ରିୟା ସହଚରୀ
ଛାଡ଼ି ଯାଇଅଛ ମୋର ନୟନ ପ୍ରତିମା
ମିଶାଇ ହୃଦୟ ରକ୍ତେ ସେ ଗୁଣ ଗାରିମା
× × × ×
ମଧ୍ୟେ ବ୍ୟବଧାନ କୋଟି କୋଟି ପାରାବାର
କିପରି ମୁଁ ଦେବି 'ପୁଷ୍ପମାଳା' ଉପହାର ।
ଫ. ମୋ. ଗ୍ରନ୍ଥାବଳୀ-୧ମ ଭାଗ, ୨ୟ ସଂ. ୧୯୬୩, ଉତ୍ସର୍ଗ ପତ୍ର ପୁଷ୍ପମାଳା, ପୃ-୨୩୩ ।

୧୬. ଓଡ଼ିଆ ସାହିତ୍ୟର ଇତିହାସ (୧୮୦୩-୧୯୨୦) ଡଃ ନଟବର ସାମନ୍ତରାୟ, ୨ୟ ସଂ. ୧୯୮୩, ପୃ-୪୧୨ । ପ୍ରକାଶକ ଡଃ ନଟବର ସାମନ୍ତରାୟ, ଲାବଣ୍ୟଭବନ, ସାନ୍ତରାପୁର ଭୁବନେଶ୍ୱର ।

୧୭. ଆତ୍ମଜୀବନ ଚରିତ - ଫକୀରମୋହନ ସେନାପତି, ୬ଷ୍ଠ ମୁଦ୍ରଣ ୧୯୬୧ । ପୃ.-୨୧୨ ।

୧୮. ଫ.ମୋ. ଗ୍ରନ୍ଥାବଳୀ, ୧ମ ଭାଗ, ୨ୟ ସଂ.-୧୯୬୩ । ପୃ. ୩୭୪ କବିତା ବିରହୀ ହଳଦୀବସନ୍ତ 'ପାଦଟୀକା' ।

୧୯. ନେପୋଲିୟନ ଓ ଯୋସେଫାଇନ୍ । ମୂଳଲେଖା - ସ୍ୱର୍ଗତ ଗୋପାଳ କାନୁନ୍‌ଗୋ, ସଂଗ୍ରହ ଓ ସଂପାଦନା - ଯତୀନ୍ଦ୍ର କୁମାର ଦାସ । 'ସମ୍ବାଦ' ୧୯ ଡିସେମ୍ବର ୧୯୮୭ । ପୃ.-୧୦ ।

୨୦. ସ୍ୱାମୀ ପାଇଁ ସ୍ୱାମୀ ତ୍ୟାଗ କଲେ ଯୋଷେଫିନା
ତେଜିଲେ ସଂପତ୍ତି ସର୍ବ ବିଳାସ ବାସନା
ବୋଇତ ସାଗରେ ଭାସି
ଗଲା ଘେନି ରୂପରାଶି
ଫରାସୀ ଗଗନ ତାରା ହେଲା ଅସ୍ତମିତ
ଇତିହାସେ ସତୀ କଥା ରହିଲା ଚିତ୍ରିତ ।
ଫ. ମୋ ଗ୍ରନ୍ଥାବଳୀ : ୧ମ ଭାଗ-୨ୟ ସଂ.-୧୯୬୩ । ଯୋଷେଫାଇନ୍ - ପୁଷ୍ପମାଳା-ପୃ.-୨୪୩ ।

୨୧. ଆଧୁନିକ କବିତା ୩ୟ ଖଣ୍ଡ ପ୍ରଧାନ ସଂପାଦକ ଡଃ ଓମ ପ୍ରକାଶ ଶର୍ମା (ଅଂଗ୍ରେଜୀ କବିତା - ଆଧୁନିକ ଯୁଗ - ସୁଧାକର ପାଣ୍ଡୟ) ପୃଷ୍ଠା-୩୦ । ୧ମ ପ୍ରକାଶ-୧୯୭୨ । ସାହିତ୍ୟ ସମାରୋହ ୩୩, ଫିରୋଜ ଶାହରୋଡ଼୍, ନୂଆଦିଲ୍ଲୀ ।

୨୨. ଫ.ମୋ. ଗ୍ରନ୍ଥାବଳୀ । ୧ମ ଭାଗ । ଅବସରବାସରେର ମୁଖବନ୍ଧ । ୨ୟ ସଂ.- ୧୯୬୩ । କଟକ ଷ୍ଟୁଡ଼େଣ୍ଟସ୍ ଷ୍ଟୋର୍ ।

୨୩. ଆତ୍ମଜୀବନ ଚରିତ - ଫକୀରମୋହନ ସେନାପତି ୧୯୬୧ । ପୃ.-୬-୭ ।

୨୪. କରନ୍ତେ ପ୍ରଚାର ତୁମ୍ଭ ମହିମା
ହେ ପ୍ରଭୋ! ନାହିଁ ମୋ କଷ୍ଟର ସୀମା
ହେଉ କଷ୍ଟ ପଛେ ନାହିଁ ଆପତ୍ତି
ଘୁଞ୍ଚାଉନ୍ତୁ ଲୋକ ଗଣ ଦୁର୍ଗତି । (ଯୀଶୁକ୍ରୁଶ-ଅବସର ବାସରେ)
ଫ.ମୋ. ଗ୍ରନ୍ଥାବଳୀ : ୧ମ ଭାଗ । ପୃ-୩୪୩ । ୨ୟ ସଂ.-୧୯୬୩ ।

୨୫. ଓଡ଼ିଆ ସାହିତ୍ୟର ସାଂସ୍କୃତିକ ବିକାଶ ଧାରା - ଚିତ୍ତରଞ୍ଜନ ଦାସ । ପୃ. ୨୩୧, ୧ମ ସଂ-୧୯୮୧ । ଓଡ଼ିଶା ରାଜ୍ୟ ପାଠ୍ୟପୁସ୍ତକ ପ୍ରଣୟନ ଓ ପ୍ରକାଶନ ସଂସ୍ଥା ଭୁବନେଶ୍ୱର ।

୨୬. The work of the poet depends not only on himself and his age, but on the mentality of the nation to which he belongs and the spiritual, aesthetic tradition and environment which it creates for him.

The Future of Poetry - Sri Aurobindo, Page-53. Sri Aurobindo Ashram, Pondicheri-1953.

୨୭. Encyclopaedia Americana-Vol. 19, Page-744, 1954.

୨୮. ଆଧୁନିକ ଓଡ଼ିଆ କାବ୍ୟଧାରା - (ଆଦିପର୍ବ) ନରେନ୍ଦ୍ରନାଥ ମିଶ୍ର । ପୃ. ୯୭-୯୮ । ୧ମ ସଂ.-୧୯୬୪ । ବିଶ୍ୱଭାରତୀ, ଶାନ୍ତି ନିକେତନ ।

୨୯. କାହିଁ ମୋ ଜନମ ଲାଭ କାହିଁ ଲୁପ୍ତ ଦେହ?
କାହିଁ ମୋର ଲୀଳାସ୍ଥଳୀ ମଧୁମୟ ଗେହ?
ଜୀବନ ଜୀବିକା କାହିଁ ପୂର୍ଣ୍ଣ ମନସ୍କାମ?
ପବିତ୍ର ମୋ ଜନ୍ମଭୂମି ସୁଖମୟ ଧାମ । (ଜନ୍ମଭୂମି)
ଫ.ମୋ. ଗ୍ରନ୍ଥାବଳୀ - ୧ମ ଭାଗ-ପୃ. ୫୩୯, ୨ୟ ସଂ.-୧୯୬୩ ।

୩୦. ଉଠ ଉଠ ଭାଇ ବେଳ ବହିଯାଇ
ନାହିଁଟି ଭାଳ ମନରେ
କରିବୁ ଉପାୟ ଯହିଁ କଷ୍ଟମୟ
ହୋଇପାରେ ସହଜରେ । (ଉତ୍କଳ ଭୂମି)
ଫ.ମୋ. ଗ୍ରନ୍ଥାବଳୀ - ୧ମ ଭାଗ, ପୃ.-୩୬୯ ।

୩୧. ତେବେ କିଂପା ମାତ! ତୋ ପୁତ୍ରେ ନିତାନ୍ତ
ହେଉଛନ୍ତି ହୀନମାନ?
ଜାଣିଲି ନିକର କେବଳ ତାଙ୍କର
ନାହିଁ ଜାତି ଅଭିମାନ ।
ମାତାକୁ ସମ୍ମାନ ନ କରେ ଯେ ଜାଣ
ସେହିତ ଅଧମ ସୁତ
ସେହି ସର୍ବ ସ୍ଥାନେ ଥାଏ ଅପମାନେ
ସମାଜରେ ଅନାଦୃତ । (ଜନ୍ମଭୂମି)
ଫ. ମୋ. ଗ୍ରନ୍ଥାବଳୀ । ୧ମ ଭାଗ-ପୃ. ୩୬୯ ।

୩୨. ଶୁଣ ଶୁଣ ବାପା ମୋ ନିବେଦନ
ସାଧିବ କର୍ତ୍ତବ୍ୟ ଦେଇ ଜୀବନ
ପଛ ଘୁଞ୍ଚା ଦେଲେ କାର୍ଯ୍ୟ ସାଧନେ
କିବା ପ୍ରୟୋଜନ ସେହି ଜୀବନେ (ଉତ୍କଳ ଯୁବକ)
ଫ. ମୋ. ଗ୍ରନ୍ଥାବଳୀ, ୧ମ ଭା. ପୃ-୪୨୧ ।

୩୩. ହେ ଜାପାନ ! ତୁମ୍ଭେ ପୂର୍ବ ଅଞ୍ଚଳ ଇଂଲଣ୍ଡ
ଦେଖାଇଲ ଜଗତକୁ ମହିମା ପ୍ରଚଣ୍ଡ
× × ×
ଦେଖାଇଲ ଯେଉଁ ଚିତ୍ର ଋଷିଆ ସମରେ
ଇତିହାସ ସାକ୍ଷ୍ୟ ଦେବ ସୁବର୍ଣ୍ଣ ଅକ୍ଷରେ
ଏକ ପୁତ୍ରା ବୃଦ୍ଧ ମାତା ଦେଶରକ୍ଷା ପାଇଁ
ପ୍ରାଣତ୍ୟାଗ କରିପାରେ, ନିଦର୍ଶନ କାହିଁ ?
ସ୍ୱାମୀକୁ ଯୁବତୀ ଭାର୍ଯ୍ୟା ଅସ୍ତ୍ରରେ ମଣ୍ଡାଇ
ପଠାଇ ବୋଲୁଛି ଯାଅ ଶତ୍ରୁ ମାର ଯାଇ
× × ×
ହେ ଜାପାନ ! ଦେଶପ୍ରେମ ଦିଅ ଶିକ୍ଷାଦାନ
ନ ଭୁଲୁ ଭାରତ ବର୍ଷ ବୁଦ୍ଧ ଜନ୍ମସ୍ଥାନ । (ଜାପାନ)
ଫ. ମୋ. ଗ୍ରନ୍ଥାବଳୀ-୧ମ ଭାଗ । ପୃ.-୩୬

୩୪. ସୃଷ୍ଟି ଓ ସମୀକ୍ଷା - ଜାନକୀ ବଲ୍ଲଭ ମହାନ୍ତି । ପୃ.-୫୯
୧ମ ସଂ.-୧୯୬୪ । ଦାସବ୍ରଦର୍ସ୍, ବ୍ରହ୍ମପୁର ।

୩୫. ମୁକୁର - ସପ୍ତମ ଭାଗ- ୧ମ ସଂଖ୍ୟା - ବୈଶାଖ ୧୩୧୯ ସାଲ ଅପ୍ରେଲ ୧୯୧୨ ।

୩୬. ଯେଉଁ ପାଠ ପଢ଼ିବାରେ ଦେଇଅଛ ମନ
ନ ବିଚାର ସେତ ନୁହେଁ ତୁମ୍ଭ ଗଣ୍ଠିଧନ
× × ×
ଘୃଣା କରୁଅଛ ମାତୃଭାଷା ପଢ଼ିବାକୁ
ହାୟ ହାୟ ଲାଜ କଥା କହିବି କାହାକୁ
ବୋଲିବ କଙ୍ଗାଳି ତୁମ୍ଭ ଘରେ ପାଠନାହିଁ
ଆପେ ଲେଖ, ଆପେ ପଢ଼, ରଖ ପୁଅ ପାଇଁ । (ଉତ୍କଳ ଭ୍ରମଣଂ)
ଫ. ମୋ. ଗ୍ରନ୍ଥାବଳୀ ୧ମ ଭାଗ, ୨ୟ ସଂ.- ପୃ.-୨୧୦-୧୧.
ଦେଶୀ ସାହିତ୍ୟ ଯେ ବଣିଜ କଲା
ଜାଣିଥିବ ସେହି ଲୋକଟା ମଲା
ଲାଭକଥା ଭାଇ ଥାଉ ପଛକୁ
ବୁଡ଼ାଇ ବସିବ ନିଜ ମୂଳକୁ । (ମୁଁ ହାଟ ବାହୁଡ଼ା)
ଫ. ମୋ. ଗ୍ରନ୍ଥାବଳୀ ୧ମ ଭାଗ । ପୃ.-୪୧୮ ।

୩୭. ଉତ୍କଳ ଗୌରବ ମଧୁସୂଦନ ଦାସ - ନବ କିଶୋର ଦାସ
ପୃ.-୬୮, ୧ମ ସଂ.-୧୯୫୦, ଉତ୍କଳ ବିଶ୍ୱବିଦ୍ୟାଳୟ ।

୩୮. ମାତ୍ର ଆହା ଏହି ଦେଶ ହୋଇ ଖଣ୍ଡ ଖଣ୍ଡ
ସକଳ ସୌନ୍ଦର୍ଯ୍ୟ ହୋଇଅଛି ଲଣ୍ଡଭଣ୍ଡ
ଦକ୍ଷିଣଟା କମାମାନେ ବସିଛନ୍ତି ମାଡ଼ି
ଉତ୍ତରଟା ଗଲାଣିତ ବଙ୍ଗାଳୀଙ୍କ ବାଡ଼ି
ପଶ୍ଚିମ ଦିଗର କଥା ବୋଇଲେ ନ ସରେ
ପଡ଼ିଲାଣି ମରହଟ୍ଟା ପଶ୍ଚିମା ଭାଗରେ ।

(ଉତ୍କଳ ଭ୍ରମଣଂ)

ଫ.ମୋ. ଗ୍ରନ୍ଥାବଳୀ - ୧ମ ଭାଗ, ୨ୟ ସଂ-୧୯୬୩ । ପୃ.-୨୦୧ ।

୩୯. ଓଡ଼ିଆ ପଲ୍ଲୀ ସାହିତ୍ୟ - ଡଃ ନଟବର ସାମନ୍ତରାୟ, ପୃ.-୨ ।
ପ୍ରକାଶକ - ଗନ୍ଧର୍ବ ଶତପଥୀ, ବଡ଼ଦାଣ୍ଡ ସାହି ଭୁବନେଶ୍ୱର-୧୯୭୦ ।

୪୦. ଓଡ଼ିଶାର ଗାଉଁଲୀଗୀତ - ଡଃ ମାୟାଧର ମାନସିଂ, ୧ମ ପ୍ର-୧୯୫୧,
ପୃ.-୭୫ । ଗ୍ରନ୍ଥମନ୍ଦିର କଟକ ।

୪୧. The Poet should choose incidents and situations from common life and relate them so far as possible in a selection of language really used by men.
Critical Idioms. Romanticism - By L.R. Furst. P.-52, Methuen & Co. Ltd.-1971.

୪୨. ବ୍ୟଥା ଓ ବାସ୍ତବତାର କବି ଫକୀରମୋହନ - ନବ ଯୁଗର କବି ଓ କାବ୍ୟଧାରା- ଡଃ ଜାନକୀବଲ୍ଲଭ ମହାନ୍ତି । ୧ମ ସଂ.-୧୯୭୭, ପୃ.-୨୭ । ଗ୍ରନ୍ଥମନ୍ଦିର, କଟକ ।

୪୩. ମାମୁଁ ଉପନ୍ୟାସରେ ସେନାପତି ସମାଜ ଚିତ୍ରର ସଫଳତା– ଗଦାଧର ମିଶ୍ର ।
ଝଙ୍କାର-ମାର୍ଚ୍ଚ ୧୯୮୪ । ପୃ.-୧୦୮୩ ।

୪୪. ମୋ କାନକୁ ଶୁଭେ ତାହା ନାମ ସୁମଧୁର
ସେ କ୍ଷୁଦ୍ର ଗ୍ରାମର ନାମ ମଲ୍ଲିକାଶ ପୁର
ବିଧି ବଶେ ମୁଁ ବିଦେଶେ କରୁଛି ଭ୍ରମଣ
ନିଭିବ କି ସେ ଗ୍ରାମରେ ଅନ୍ତିମ ଜୀବନ ।

୪୫. ମଧୁସୂଦନ ଦତ୍ତଙ୍କ ବର୍ଣ୍ଣନା -
କି ସୁନ୍ଦର ଅଟ୍ଟାଳିକା କି କୁଟୀର ବାସୀ

କି ରାଜା କି ପ୍ରଜା ହେଥା ଉଭୟର ଗତି
ଜୀବନେର ସ୍ରୋତଃ ପଡ଼େ ଏ ସାଗରେ ଆସି
ଗହନ କାନନେ ବାୟୁ ଉଡ଼ାୟ ଯେମିତି

ଫକୀରମୋହନଙ୍କ ବର୍ଣ୍ଣନା -

ରାଜା ମହାରାଜା ଭିକ୍ଷୁକ ଜ୍ଞାନୀ
ସାହୁ ବ୍ୟବସାୟୀ କୃପଣ ଦାନୀ
ଶ୍ମଶାନ ନକରେ ବାଛ ବିଚାର
ସମସ୍ତଙ୍କୁ କରେ ଏକ ଆକାର ।

ଫ.ମୋ. ଗ୍ରନ୍ଥାବଳୀ । ୧ମଭାଗ, ପୃ-୪୫୫ । ୨ୟ ସଂସ୍କରଣ

୪୬. ଆଧୁନିକ ଓଡ଼ିଆ କବିତାରେ ପଲ୍ଲୀଚେତନା ଓ କବି ବିଦ୍ୟୁତ ପ୍ରଭା - ଶ୍ରୀମତୀ ପ୍ରେମଲତା ଦେବୀ । ପୃ.-୫୮ । (୧୯୮୪ ମସିହା ପିଏଚ୍.ଡ଼ି. ପାଇଁ ପ୍ରସ୍ତୁତ ନିର୍ବନ୍ଧ ଓ ଉତ୍କଳ ବିଶ୍ୱବିଦ୍ୟାଳୟରେ ସଂରକ୍ଷିତ ।

୪୭. ଲୋକ ସାହିତ୍ୟ-ରବୀନ୍ଦ୍ରନାଥ ଠାକୁର । ନୂତନ ସଂସ୍କରଣ, ପୃ.-୫୦ । ବିଶ୍ୱଭାରତୀ ଶାନ୍ତି ନିକେତନ ।

୪୮. ବଣି ବିରାଡ଼ିର ଯାବନ୍ତପ୍ରସଙ୍ଗ
ଶୁଣିଲ ପିଲା ସକଳେ
ବଳବନ୍ତ ଶତ୍ରୁ ହାତରୁ ଉଦ୍ଧାର
ପାଆନ୍ତି ଲୋକ କୌଶଳେ । (ଶଙ୍ଖୀ ବିରାଡ଼ି ଓ ବଣି ପକ୍ଷିଣୀ)

ଫ.ମୋ. ଗ୍ରନ୍ଥାବଳୀ - ୧ମ ଭାଗ, ୨ୟ ସଂ. ପୃ.-୩୭୯ ।

୪୯. ଚୋରାମାଲ ଭାଇ ଦୁଇଦିନ ପାଇଁ
ପଛକୁ ହୁଏ ସେ ଶଲ
ଗତର ଖଟାଇ ଅଇଁଠା ପତର
ସହସ୍ର ଗୁଣରେ ଭଲ । (ଭୁଆ ବିରାଡ଼ି ଓ କାଳିଆ କୁକୁର)

ଫ. ମୋ. ଗ୍ରନ୍ଥାବଳୀ, ୧ମ ଭାଗ । ପୃ. ୩୮୧ ।

୫୦. କାନ୍ତକବି ସୃଷ୍ଟି ସମୀକ୍ଷା - ସଂ. ଅପୂର୍ବ ରଞ୍ଜନ ରାୟ ।
ଶିଶୁ ସାହିତ୍ୟ ଓ କାନ୍ତକବି - ଅଧ୍ୟାପକ ବୈଷ୍ଣବ ଚରଣ ସାମଲ ।
୧ମ ପ୍ରକାଶ-୧୯୭୭, ପୃ.-୧୪୭ । ଲାର୍କ ବୁକ୍ସ ।

# ଷଷ୍ଠ ପରିଚ୍ଛେଦ

## ଫକୀରମୋହନଙ୍କ କବିତାର ଆଙ୍ଗିକ ବୈଚିତ୍ର୍ୟ

ଫକୀରମୋହନଙ୍କ ବିଶାଳ ସାହିତ୍ୟ ଜଗତ ବୈଚିତ୍ର୍ୟପୂର୍ଣ୍ଣ । ବିଭିନ୍ନ ରଙ୍ଗରେ ରଞ୍ଜିତ ହୋଇ ଏହି ଏକକ ସ୍ରଷ୍ଟାଙ୍କର ବିଶାଳ କାବ୍ୟସୌଧ ଆଧୁନିକ ଓଡ଼ିଆ ସାହିତ୍ୟର ବିକାଶ କ୍ଷେତ୍ରରେ ଏକ ମାଇଲ୍ ଖୁଣ୍ଟ, ଯାହା ଏବେ ମଧ୍ୟ ଅନତିକ୍ରମଣୀୟ । ଗଦ୍ୟ ଓ ପଦ୍ୟ - ଉଭୟ କ୍ଷେତ୍ରରେ ସେ ନୂତନତାର ବାର୍ତ୍ତାବହ । ତାଙ୍କ ଦୃଷ୍ଟିରେ କବି ଏକ ସ୍ୱତନ୍ତ୍ର ଜୀବ ନୁହେଁ । ଏ ଜଗତରେ ସମସ୍ତେ କବି । ପ୍ରତିଭା ଦ୍ୱାରା କେହିବା ବିଶିଷ୍ଟ କବିର ଆସନ ଅଳଙ୍କୃତ କରେତ, ଆଉ କେହି ଅଧ୍ୟବସାୟ ଓ ପ୍ରତିଭା ଅଭାବରୁ ଲୋକ ଅନ୍ତରାଳରେ ଚିରଦିନ ପାଇଁ ରହିଯାଏ ।

ଏହି ପ୍ରତିଭାଧର କବି, କବିତାକ୍ଷେତ୍ରରେ ପ୍ରଥମଥର ପାଇଁ ଯେଉଁ ନୂତନତାର ବାର୍ତ୍ତା ପ୍ରଚାର କରିଥିଲେ, ପରବର୍ତ୍ତୀ ସମୟରେ ଓଡ଼ିଶାର ଅନେକ କବି ତାଙ୍କ ଦ୍ୱାରା ପ୍ରଭାବିତ ହୋଇ ଓଡ଼ିଆ କବିତାକୁ ଏକ ନିର୍ଦ୍ଦିଷ୍ଟ ମାର୍ଗରେ ପରିଚାଳିତ କରିବାକୁ କ୍ଷମ ହୋଇପାରିଥିଲେ । ଫକୀରମୋହନଙ୍କ କବିତାର ଆଙ୍ଗିକ ବୈଚିତ୍ର୍ୟ ଆଲୋଚନା କଲାବେଳେ, ତାଙ୍କର ଏହି ବିଶେଷତ୍ୱଟି ସ୍ୱତଃ ଆଖିରେ ଧରାପଡ଼ିଯାଇଥାଏ । ଗୀତିକବିତାର ସ୍ରଷ୍ଟାଭାବରେ ଅନେକ ନୂତନତ୍ୱର ଅଧିକାରୀ ସେ । ସମାଜ ଜୀବନ ସହିତ ତାଙ୍କର ଘନିଷ୍ଠ ସମ୍ପର୍କ ଥିବାରୁ ତାଙ୍କର କବିତା ଗୁଡ଼ିକରେ ସମାଜର ବିଭିନ୍ନ ସମସ୍ୟା ପ୍ରତିଫଳିତ ହୋଇଥାଏ । ଅବଶ୍ୟ ଏହା ସତ୍ୟ ଯେ, ସାହିତ୍ୟରେ ସମାଜ ପ୍ରତିଫଳିତ ହୁଏ । କାରଣ ସାହିତ୍ୟ ମଧ୍ୟ ସମାଜ ସୃଷ୍ଟ ।(୧) ତେଣୁ ସାମାଜିକ ଦ୍ୱନ୍ଦ୍ୱ, ସମସ୍ୟା, ଘାତ, ପ୍ରତିଘାତ ଅପୂର୍ବ କଳାତ୍ମକ ରୂପ ନେଇ ଫକୀରମୋହନଙ୍କ କବିତାଗୁଡ଼ିକରେ ପ୍ରକାଶ ଲାଭ କରିଛି । ସମାଜ ଜୀବନକୁ ଗଭୀର ଭାବରେ ଦେଖିବାର ପ୍ରୟାସହିଁ ଉକ୍ତ କବିତାଗୁଡ଼ିକୁ କରିଛି ସାର୍ବଜନୀନ ।

ଗୀତି କବିତାର ସମସ୍ତ ବୈଶିଷ୍ଟ୍ୟ ନେଇ ତାଙ୍କର କବିତା ଗୁଡ଼ିକ ଭାବଗର୍ଭକ ଓ ଗୀତିମୁଖର । କବିତାର ସମସ୍ତ ବିଭାଗ ମଧ୍ୟରେ ଗୀତିକବିତା ସର୍ବୋତ୍କୃଷ୍ଟ ସ୍ଥାନ ଦାବୀ

କରେ । ସାଧାରଣତଃ ଗୀତିକବିତାରେ ବ୍ୟକ୍ତିଗତ ଅନୁଭୂତିର ଅଭିବ୍ୟକ୍ତି ଘଟିଥାଏ । ଏହାର ପ୍ରକାଶଭଙ୍ଗୀ ସରଳ ଓ କ୍ଷୁଦ୍ରାବୟବ ହେବା ଉଚିତ ।[୨] ଏହି ଦୃଷ୍ଟିରୁ ବିଚାର କଲେ ଫକୀରମୋହନଙ୍କ କବିତାଗୁଡ଼ିକ ଗୀତି କବିତାର ଆସନ ଲାଭ କରିବାକୁ ହକ୍‌ଦାର । ଭାବର ସହଜ ଓ ସରଳ ଅଭିବ୍ୟକ୍ତି ତାଙ୍କର ପ୍ରତ୍ୟେକ କବିତାର ଗୋଟିଏ ଗୋଟିଏ ସାଧାରଣ ବୈଶିଷ୍ଟ୍ୟ ।

### ବର୍ଣ୍ଣନାତ୍ମକ କବିତା

ବର୍ଣ୍ଣନାତ୍ମକ କବିତାର ପ୍ରଧାନ ବୈଶିଷ୍ଟ୍ୟ ହେଉଛି ଗଳ୍ପକଥନ ଶୈଳୀ । ଏହାର ଆୟତନ ଯେପରି ଦୀର୍ଘ, ସେହିପରି ଗଠନ ରୀତି, ଚରିତ୍ର ଓ ଘଟଣାରାଜି ବୈଚିତ୍ର୍ୟପୂର୍ଣ୍ଣ । କାବ୍ୟ, ଗାଥା ପ୍ରଭୃତି ଏହି ବର୍ଣ୍ଣନାତ୍ମକ କବିତାର ଅନ୍ତର୍ଭୁକ୍ତ ହୋଇପାରେ ।[୩] ଫକୀରମୋହନଙ୍କ କ୍ଲିଓପେଟ୍ରା, ଯୋଷେଫାଇନ୍ ପ୍ରଭୃତି ଗାଥା କବିତାର ଆଲୋଚନା ପରିସରଭୁକ୍ତ ହେଲେ ମଧ୍ୟ ବର୍ଣ୍ଣନାତ୍ମକ କବିତାର ସମସ୍ତ ଗୁଣ ଏଥିରେ ବିଦ୍ୟମାନ । ସେହିପରି 'ଉତ୍କଳ' ଭ୍ରମଣଂ'; 'ମୁଁ ହାଟ ବାହୁଡ଼ା' କବିତା ପ୍ରଭୃତିକୁ ବର୍ଣ୍ଣନାତ୍ମକ କବିତା ଆଖ୍ୟା ପ୍ରଦାନ କରାଯାଇପାରେ ।

### ଗାଥା କବିତା

ଫକୀରମୋହନ ସେନାପତିଙ୍କୁ ଯଥାର୍ଥରେ ଓଡ଼ିଆ ଗାଥା କବିତାର ସ୍ରଷ୍ଟା କହିଲେ ଅତ୍ୟୁକ୍ତି ହେବନାହିଁ । ଗାଥା କବିତା କୌଣସି ଚରିତ୍ର, କିମ୍ବଦନ୍ତୀ, ସାମାଜିକ ସମସ୍ୟା, ଏପରିକି ଉଭଟ ବିଷୟକୁ ନେଇ ରଚିତ ହୋଇପାରେ । ଗୀତି କବିତା ଅନ୍ତର୍ଭୁକ୍ତ ହେଲେ ମଧ୍ୟ ଏହାର କଳେବର ତୁଳନାତ୍ମକ ଭାବରେ ଦୀର୍ଘ । ଏଥିରେ କବିର ବ୍ୟକ୍ତିଗତ ଭାବନା ପ୍ରକାଶିତ ହେବାର ଅବକାଶ ନଥାଏ । ଶୈଳୀ ଆଳଙ୍କାରିକ ହେବା ଅନୁଚିତ । କବି ପ୍ରକୃତି ଜଗତର ବିଭିନ୍ନ ଘଟଣା ଓ ମନୁଷ୍ୟର ଅବସ୍ଥା ମଧ୍ୟରେ ସାମ୍ୟ ଦେଖି, ଅନେକ ସମୟରେ ତାର ତୁଳନା କରିବାକୁ ଯାଇ ସେ ଯେଉଁ କବିତା ସୃଷ୍ଟି କରିବସେ, ତାହା ଗାଥା କବିତାର ରୂପ ପରିଗ୍ରହ କରିଥାଏ । କେତେକ କ୍ଷେତ୍ରରେ ଉପମା, ରୂପକର ପ୍ରୟୋଗ ଗାଥା କବିତାରେ କରାଯାଇଥାଏ । "ଏହା ପରିସମାପ୍ତିକୁ ଆକର୍ଷଣୀୟ କରିବା ସଙ୍ଗେ ସଙ୍ଗେ ଆବେଦନକୁ ତୀବ୍ରତର କରେ; ଗାଥାକାର ଶ୍ରୋତାକୁ ଛାଡ଼ିବା ପୂର୍ବରୁ ତା ମନରେ ଏକ ଗଭୀର ରେଖାପାତ ମଧ୍ୟ କରିପାରେ" ।[୪] ଗାଥାକବି ସମାଜ, ପ୍ରକୃତି ଓ ପ୍ରାଣୀ ଜଗତରୁ ଅନେକ ଉପାଦାନ ସଂଗ୍ରହ କରି କବିତା ରଚନା କରିଥାଏ । ନିଜେ ଦୂରରେ ରହିଲେ ମଧ୍ୟ, କବିର ସହାନୁଭୂତି ମନ, ନିର୍ଦ୍ଦିଷ୍ଟ କବିଙ୍କ

ଠିକ୍ ଚିହ୍ନାଇ ଦେଇଥାଏ । ଛନ୍ଦ ମାଧ୍ୟମରେ କଥା କହିବାର ପ୍ରବଣତାରୁ ଗାଥା କବିତାର ସୃଷ୍ଟି । କୌଣସି ନିର୍ଦ୍ଦିଷ୍ଟ ଭୂଖଣ୍ଡ ମଧ୍ୟରେ ଏହାର କଥାବସ୍ତୁ ସୀମିତ ନ ହୋଇପାରେ । ପରନ୍ତୁ ବିଶ୍ୱର ପ୍ରେମ-ପ୍ରଣୟ, ଯୁଦ୍ଧ ପ୍ରଭୃତିର ବିଷୟବସ୍ତୁ ଏହାର ପରିସୀମାଭୁକ୍ତ ହୋଇପାରେ । ସମୟେ ସମୟେ ଅବାସ୍ତବ ଘଟଣାବଳୀକୁ ନେଇ ଗାଥା କବିତା ମଧ୍ୟ ରଚିତ ହୋଇଥାଏ । ଶୈଳୀ ଦୃଷ୍ଟିରୁ ଏହା ସହଜ ଓ ସରଳ ଏବଂ ସର୍ବଜନବୋଧ୍ୟ ।[୫]

ଓଡ଼ିଶାରେ ଗାଥା କବିତାର ପରମ୍ପରା ଅତୀବ ପ୍ରାଚୀନ । ସମାଲୋଚକ ସୂର୍ଯ୍ୟନାରାୟଣ ଦାସ କୁହନ୍ତି "କାଳିଙ୍ଗୀ ପ୍ରାକୃତ" ବୋଲି ଅଭିହିତ ଭାଷାରେ ଉତ୍କୀର୍ଣ୍ଣ ଖାରବେଳଙ୍କ ହାତୀ ଗୁମ୍ଫା ଶିଳାଲେଖରେ ଗାଥାର ସନ୍ଧାନ କରାଯାଇପାରେ ।[୬] ସାରଳାଦାସଙ୍କ ଠାରୁ ଆରମ୍ଭ କରି ବର୍ତ୍ତମାନ ଯୁଗ ପର୍ଯ୍ୟନ୍ତ ଓଡ଼ିଆ ସାହିତ୍ୟରେ ଗାଥା କବିତାର ପରମ୍ପରା ଚଳିଆସୁଛି । ସାଧାରଣତଃ ଗାଥାକୁ ପୌରାଣିକ ଗାଥା, ଐତିହାସିକ ଗାଥା, ସାମାଜିକ ଗାଥା ପ୍ରଭୃତି ବିଭିନ୍ନ ବିଭାଗରେ ବିଭକ୍ତ କରାଯାଇପାରେ ।

ପୁରାଣର ବିଷୟବସ୍ତୁକୁ ଅବଲମ୍ବନ କରି ପୌରାଣିକ ଚରିତ୍ର ଅନୁସରଣରେ ପୌରାଣିକ ଗାଥା କବିତା ରଚିତ ହୋଇଥାଏ । ଏଥିରେ ପୁରାଣର ବିଷୟବସ୍ତୁର କଙ୍କାଳମାତ୍ର ଥାଏ । କଳ୍ପନାର ରକ୍ତ, ମାଂସ, ଦେଇ କବି ଏହାକୁ ଜୀବନ ପ୍ରଦାନ କରିଥାନ୍ତି । ଏହି ଦୃଷ୍ଟିରୁ ଫକୀରମୋହନଙ୍କ ବେଣୀ ସଂହାର, ଯାଜ୍ଞବଲ୍କ୍ୟ ଓ ମୈତ୍ରେୟୀ ସମ୍ବାଦ ପ୍ରଭୃତିକୁ ପୌରାଣିକ ଗାଥା କବିତାର ଅନ୍ତର୍ଭୁକ୍ତ କରାଯାଇପାରେ ।

କିମ୍ବଦନ୍ତୀ, ଇତିହାସର ବିଷୟବସ୍ତୁକୁ ନେଇ ଐତିହାସିକ ଗାଥା କବିତା ରଚିତ ହୋଇଥାଏ । ଅନେକ ସମୟରେ ଇତିହାସର ଚରିତ୍ର ଓ ସେମାନଙ୍କର କାର୍ଯ୍ୟକଳାପ ଗାଥା କବିତାର ଉପଜୀବ୍ୟ ବିଷୟବସ୍ତୁ ଭାବେ ଗୃହୀତ ହୋଇଥାଏ । ଫକୀରମୋହନ ଅନେକ ଐତିହାସିକ ଗାଥା କବିତାର ସ୍ରଷ୍ଟା ଭାବରେ ସମ୍ମାନାର୍ହ । ତାଙ୍କର ଯୋଷେଫାଇନ୍, କ୍ଲିଓପେଟ୍ରା, ସତୀ ଲୁକ୍ରେସିୟା, ତାରାବାଈ, ନେପୋଲିୟନ ବୋନାପାର୍ଟ, ଉତ୍କଳର ବିଗତ ଗୌରବ, ଲାଗଲାଗ କଳାପାହାଡ଼ ପ୍ରଭୃତି ଐତିହାସିକ ଗାଥା କବିତା । ଯୋଷେଫାଇନ୍ ଗାଥା କବିତାରେ ଯୋଷେଫାଇନ୍‌ର ନିର୍ମଳ ପତିପ୍ରେମ, କ୍ଲିଓପେଟ୍ରାରେ ନାରୀର ପ୍ରତିହିଂସା ପରାୟଣ ମନୋଭାବ, ସତୀଲୁକ୍ରେସିୟା କବିତାରେ ଲୁକ୍ରେସିୟାଙ୍କର ସତୀତ୍ୱ ଓ କଳାପାହାଡ଼ରେ କଳାପାହାଡ଼ର ଧ୍ୱଂସାତ୍ମକ କାର୍ଯ୍ୟାବଳୀର ବର୍ଣ୍ଣନା କରାଯାଇଛି । କବିଙ୍କ ଯୋଷେଫାଇନ୍ କବିତାଟି ନେପୋଲିୟନ ବୋନାପାର୍ଟ ପୁସ୍ତକର ଅନୁସରଣରେ ରଚିତ ହୋଇଥିବା ପରି ମନେ ହୋଇଥାଏ ।[୭]

ସମାଜ ଜୀବନରେ କବିତା ରଚନା ପାଇଁ ବହୁ ଉପାଦାନ ରହିଛି । ବିଶିଷ୍ଟ କବିମାନେ ଏହିଥିରୁ ଉପାଦାନ ସଂଗ୍ରହ କରି ତାକୁ କଳାତ୍ମକ ରୂପ ପ୍ରଦାନ କରିଥାନ୍ତି । ଫକୀରମୋହନ ଥିଲେ ଜଣେ ସମାଜ ସଚେତନ ବ୍ୟକ୍ତି । ସମାଜ ଜୀବନର ବିଭିନ୍ନ କୁସଂସ୍କାର, ଅନ୍ଧ ପରମ୍ପରା ଲକ୍ଷ୍ୟ କରି ସେ ବିଚଳିତ ହୋଇଛନ୍ତି । ଏହିଥିରୁ ସେ ଉପାଦାନ ସଂଗ୍ରହ କରି ଯେଉଁ କବିତାମାନ ରଚନା କରିଛନ୍ତି, ତାକୁ ସାମାଜିକ ଗାଥା କବିତା ନାମରେ ନାମିତ କରାଯାଇପାରେ । ସାଧୁ ସଂସର୍ଗ, ରାମରଥ କଥା, ଚନ୍ଦ୍ରପ୍ରଭାର ନିର୍ଜଳା ଏକାଦଶୀ, ବିଧବାର ଅଭିଶାପ, ଉତ୍କଳ କୃଷକ, ବାର ବିଳାସିନୀ, ହିନ୍ଦୁ ବିଧବା ପ୍ରଭୃତି କବିତାଗୁଡ଼ିକୁ ସାମାଜିକ ଗାଥା କବିତାର ଶ୍ରେଣୀଭୁକ୍ତ କରାଯାଇପାରେ । ଫକୀରମୋହନଙ୍କ ସାଧୁସଂସର୍ଗ କବିତା ସହିତ ରବୀନ୍ଦ୍ରନାଥଙ୍କ କଥା ଓ କାହିନୀର ଅଭିସାର କବିତାର ସାମଞ୍ଜସ୍ୟ ପରିଲକ୍ଷିତ ହୋଇଥାଏ । ୮ । ଗାଥା କବିତା ରଚନା କ୍ଷେତ୍ରରେ ଫକୀରମୋହନ ପ୍ରଥମ ମୌଳିକ ଗାଥା କବିତାର ସ୍ରଷ୍ଟା । ଗୋଦାବରୀଶ ମିଶ୍ରଙ୍କ ପରି ଫକୀରମୋହନ ଗାଥା କବିତା କ୍ଷେତ୍ରରେ ସର୍ବଶ୍ରେଷ୍ଠ ବିନ୍ଧାଣୀ ନହେଲେ ମଧ୍ୟ, ଏ କ୍ଷେତ୍ରରେ ସେ ଯେ ଗୋଦାବରୀଶଙ୍କ ଅଗ୍ରଜ, ଏହା ଅସ୍ୱୀକାର କରାଯାଇନପାରେ ।

**ଶୋକ ଗୀତି**

ସାଧାରଣତଃ ସ୍ମୃତିଚାରଣ ଉଦ୍ଦେଶ୍ୟରେ ଶୋକଗୀତି ରଚନା କରାଯାଇଥାଏ । କୌଣସି ବ୍ୟକ୍ତିଙ୍କ ମୃତ୍ୟୁ ପରେ ତାଙ୍କର କାର୍ଯ୍ୟକଳାପର ପ୍ରଶଂସା କରାଯାଇ ଏହା ଲିଖିତ ହୋଇଥାଏ । ୯ । ଫକୀରମୋହନ ତାଙ୍କର ଅନେକ ବନ୍ଧୁଙ୍କର ବିଚ୍ଛେଦରେ ଏକାଧିକ ଶୋକ କବିତା ରଚନା କରିଛନ୍ତି । ଭାଷା ଦୃଷ୍ଟିରୁ ଏହା ଯେପରି ସରଳ, ଭାବ ଦୃଷ୍ଟିରୁ ମଧ୍ୟ ହୃଦୟ ବିଦାରକ । କବିବର ରାଧାନାଥ ରାୟ ଓ ମଧୁସୂଦନ ରାଓ ଥିଲେ ତାଙ୍କ ସାହିତ୍ୟିକ ଜୀବନର ଦୁଇଜଣ ବିଶିଷ୍ଟ ବନ୍ଧୁ । ସେମାନଙ୍କ ମୃତ୍ୟୁରେ କବି ଗଭୀର ଭାବରେ ବ୍ୟଥିତ ହୋଇଛନ୍ତି ଓ ସେମାନଙ୍କ ସ୍ମୃତି ରୋମନ୍ଥନ ଉଦ୍ଦେଶ୍ୟରେ ସେ ରଚନା କରିଛନ୍ତି 'ରାଧାନାଥ ରାୟ ବାହାଦୂର' ଓ 'ସ୍ୱର୍ଗୀୟ ରାୟ ମଧୁସୂଦନ ରାଓ ବାହାଦୂର' କବିତା ଦୁଇଟି । ଭାବ ଦୃଷ୍ଟିରୁ କବିତା ଦୁଇଟି କିପରି ହୃଦୟ ବିଦାରକ, ନିମ୍ନୋକ୍ତ କେତୋଟି ପଙ୍କ୍ତିରୁ ତାହା ସ୍ପଷ୍ଟ ଭାବେ ଜଣାପଡ଼ିବ ।

ଆସ ଦେବ କନ୍ୟାଗଣ ଦେଇ ହୁଳହୁଳି
ଯାଉଛନ୍ତି ରାଧାନାଥ ନେଉନ୍ତୁ ସଂଖୋଳି

ଶାପଭ୍ରଷ୍ଟ ଦେବତା ସେ ଆସିଥିଲେ ମର୍ତ୍ତ୍ୟ
ଯାଉଛନ୍ତି ସ୍ୱୀୟ କାର୍ଯ୍ୟ କରି ସମାପତ
× × ×
ସ୍ୱଭାବରେ କଳୁଷିତ ମାନବ ଚରିତ୍ର
ରାଧାନାଥ ଆତ୍ମା ଥିଲା ନିର୍ଦ୍ଦୋଷ ପବିତ୍ର ।
ମାନବ ସମାଜେ ଥିଲା ଧରି ଦେବ ବଳ
ପଙ୍କରେ ପଙ୍କଜ ଯଥା ସ୍ୱଭାବେ ନିର୍ମଳ
ଗାଆନ୍ତୁ ଉତ୍କଳ ବାସୀ ରାଧାନାଥ ନାମ
ମରଧାମ ତେଜି ଯାଉଛନ୍ତି ସ୍ୱର୍ଗଧାମ
(ରାଧାନାଥ ରାୟ ବାହାଦୂର-ପରିଶିଷ୍ଟ କବିତାବଳୀ)

ସେହିପରି 'ସ୍ୱର୍ଗୀୟ ରାୟ ମଧୁସୂଦନ ରାଓ ବାହାଦୂର" କବିତାଟିରେ ଭକ୍ତକବି ମଧୁସୂଦନଙ୍କ ନିର୍ମଳ ଚରିତ୍ର, ବନ୍ଧୁ ବତ୍ସଳତା ଓ ଓଡ଼ିଆ ସାହିତ୍ୟକୁ ତାଙ୍କର ମଧୁମୟ ଦାନ ସମ୍ପର୍କରେ ଉଲ୍ଲେଖ କରାଯାଇ ସ୍ମୃତିଚାରଣ କରାଯାଇଅଛି ।

କେତେ ତପସ୍ୟାର ଫଳେ ଉତ୍କଳ ଜନନୀ
ଲଭିଥିଲେ ଏକମାତ୍ର ପୁତ୍ର ଗୁଣମଣି
ଉତ୍କଳରେ ଯାହା ନାମ ଖ୍ୟାତ ଗ୍ରାମେ ଗ୍ରାମେ
ସେ ମଧୁସୂଦନ ବର୍ତ୍ତମାନ ସ୍ୱର୍ଗଧାମେ
ପ୍ରଗାଢ଼ ଶାସ୍ତ୍ରୀୟ ଜ୍ଞାନେ ପରସେବା ବ୍ରତେ
ଦେଶ ଉପକାରେ ଲାଗି ରହିବା ସତତେ
ଏକାନ୍ତ ଈଶ୍ୱର ନିଷ୍ଠା ଧର୍ମ ଆଚରଣେ
ସେ ମଧୁ ସମାନ ଆଉ ଦେଖିନାହିଁ ଜଣେ
(ସ୍ୱର୍ଗୀୟ ରାୟ ମଧୁସୂଦନ ରାଓ ବାହାଦୂର-ପରିଶିଷ୍ଟ କବିତାବଳୀ)

ଏହା ବ୍ୟତୀତ ତାଙ୍କର 'ସ୍ୱର୍ଗୀୟ ଅବଦୁଲ ଅଜିଜ୍', ବାମଣ୍ଡାର ସ୍ୱର୍ଗୀୟ ମହାରାଜା ସଚିଦାନନ୍ଦ ତ୍ରିଭୁବନ ଦେବ, ସ୍ୱର୍ଗତ ସଚ୍ଚିଦାନନ୍ଦ ତ୍ରିଭୁବନ ଦେବ, ସ୍ୱର୍ଗୀୟ ହେମଚନ୍ଦ୍ର, ମହାମହୋପାଧ୍ୟାୟ ସ୍ୱାମୀ ବ୍ରହ୍ମାନନ୍ଦ ପୁରୀ, ପିତାମହୀ, ମୃତ ଶିଶୁପୁତ୍ର ମନୋମୋହନ ପ୍ରଭୃତି ଗୋଟିଏ ଗୋଟିଏ ସାର୍ଥକ ଶୋକ ଗୀତିକା ।

ଶୋକ ଗୀତିକାର ମୁଖ୍ୟରସ 'କରୁଣରସ' । ତତ୍‌ସମ ଭାଷା ପରିବର୍ତ୍ତେ ସହଜ ସରଳ ଭାଷା ଶୋକଗୀତିକାରେ ପ୍ରୟୋଗ କରିବା ଉଚିତ, ଯାହା କରୁଣ ରସ ପ୍ରକାଶ

ନିମିତ୍ତ ଏକାନ୍ତ ଉପଯୋଗୀ। ଏହି ଦୃଷ୍ଟିରୁ ବିଚାର କଲେ ଫକୀରମୋହନଙ୍କ ଶୋକ ଗୀତିକା ଗୁଡ଼ିକ ଏକ ଏକ ସାର୍ଥକ କଳା ସୃଷ୍ଟି।

## ରୂପକ କବିତା

ରୂପକ କବିତା ରଚନାକ୍ଷେତ୍ରରେ ଫକୀରମୋହନ ସଫଳତାର ଅଧିକାରୀ। ପ୍ରାକୃତିକ ବସ୍ତୁ କିମ୍ବା ଅପ୍ରାକୃତିକ ଏକ ବସ୍ତୁକୁ ରୂପକ ଭାବରେ ଗ୍ରହଣ କରି କବିତା ରଚନା କରିବାକୁ ରୂପକ କବିତା କୁହାଯାଇଥାଏ। ରୂପକ ମାଧ୍ୟମରେ ମନୋଭାବ ପ୍ରକାଶ କରିବା କବି ଚାତୁରୀ। ଫକୀରମୋହନଙ୍କ ବିରହୀ ହଳଦୀବସନ୍ତ, କପୋତ ସଙ୍ଗୀତ, ଭୁଆଁ ବିରାଡ଼ି ଓ କାଳିଆ କୁକୁର, ସାହାଡ଼ାଗଛର କ୍ରନ୍ଦନ, ଶଙ୍ଖୀ ବିରାଡ଼ି ଓ ବଣି ପକ୍ଷିଣୀ, ବୁଢ଼ାପଳାଶ ପ୍ରଭୃତି ଏକ ଏକ ରୂପକ କବିତା। ଏହି କବିତାଗୁଡ଼ିକରେ କେତେବେଳେ କବି ମାନବ ଜୀବନର ବୈଚିତ୍ର୍ୟକୁ ପ୍ରକାଶ କଲାବେଳେ ଅନ୍ୟ କେତେବେଳେ ମାନବ ଜୀବନ ସହିତ ପ୍ରାକୃତିକ ବସ୍ତୁକୁ ତୁଳନା କରିଛନ୍ତି। ପୁଣି କେତେବେଳେ ମାନବେତର ଚରିତ୍ର, ପଶୁପକ୍ଷୀଙ୍କ ନିକଟରେ ମାନବ ସମାଜର ନିର୍ମଳ ସାଧୁତା ଓ ସରଳ ତଥା ସଚ୍ଚା ପ୍ରେମର ଚିତ୍ର ଦୃଷ୍ଟିଗୋଚର ହୋଇଥାଏ, ତା'ର ଉଦାହରଣ ଦେଇଛନ୍ତି।

## ଚତୁର୍ଦ୍ଦଶପଦୀ କବିତା

ଆମେ ଯାହାକୁ 'ଚତୁର୍ଦ୍ଦଶ ପଦୀ' କବିତା ନାମରେ ନାମିତ କରିଛୁ ଇଂରାଜୀରେ ତାକୁ 'ସନେଟ' କୁହାଯାଏ। ଇଟାଲୀୟ ସନେଟୋ (Sonetto) ରୁ ଏହାର ଉତ୍ପତ୍ତି ଓ ତାର ଅର୍ଥ ଏକ କ୍ଷୁଦ୍ର ଧ୍ୱନି। ବିଭିନ୍ନ ଦେଶରେ ଏହାର ଆଙ୍ଗିକ ଭିନ୍ନ ଧରଣର। ଇଟାଲୀୟ ସାହିତ୍ୟରେ ଏକାଦଶ ଅକ୍ଷରରେ ଚତୁର୍ଦ୍ଦଶ ପଦୀ କବିତାକୁ ସନେଟ୍ ଆଖ୍ୟା ଦିଆଯାଇଥିଲା।

ସାଧାରଣତଃ ଏହି ଚତୁର୍ଦ୍ଦଶ ପଦୀ କବିତାର କଳେବର ଦୁଇ ଭାଗରେ ବିଭକ୍ତ। ପ୍ରଥମ ଆଠ ପଦରେ କବିତାର ବର୍ଣ୍ଣିତ ବିଷୟବସ୍ତୁ ସମ୍ପର୍କରେ ବର୍ଣ୍ଣନା ଓ ଶେଷ ଛ'ପଦରେ କବିର ବିଶ୍ଳେଷଣାତ୍ମକ ଅଭିବ୍ୟକ୍ତି କଳାତ୍ମକ ଭାବରେ ପ୍ରକାଶ ଲାଭ କରିଥାଏ। ବାହ୍ୟ ରୂପରେ ଏପରି ବିଭକ୍ତ ହୋଇଥିଲେ ବି ସନେଟ୍ ଏକ ସ୍ୱୟଂସମ୍ପୂର୍ଣ୍ଣ କବିତା।' ୧୦।

ତ୍ରୟୋଦଶ ଶତାବ୍ଦୀରୁ ଇଟାଲୀରେ ସନେଟର ଉଦ୍ଭାବନ ହୋଇଥିଲେ ମଧ୍ୟ, ଏହାର ସୁଷ୍ଠୁ ବିକାଶ ସାଧିତ ହୋଇଥିଲା ଇଂରାଜୀ ସାହିତ୍ୟରେ ଷୋଡ଼ଶ ଶତାବ୍ଦୀରେ।

ପ୍ରାଚୀନ ସନେଟ୍ ମୁଖ୍ୟତଃ ଭାବକୈନ୍ଦ୍ରିକ ଥିବାବେଳେ, ଆଧୁନିକ ସନେଟ୍‌ରେ ବିଶେଷ ଭାବରେ ବ୍ୟକ୍ତି ସ୍ୱାତନ୍ତ୍ର୍ୟ ପରିଲକ୍ଷିତ ହୋଇଥାଏ । ଆଧୁନିକ କବି ସନେଟ୍‌ର ଆଙ୍ଗିକ ବା ରଚନାପଦ୍ଧତି ଉପରେ ବିଶେଷ ଗୁରୁତ୍ୱ ଆରୋପ କରନ୍ତି ନାହିଁ । ଯଥାର୍ଥରେ ଟି.ଏସ୍. ଇଲିଅଟ୍ କୁହନ୍ତି – "ସନେଟ୍ ହେଉଛି ଅନୁଭୂତିର ଏକ ପ୍ରକାଶର ମାଧ୍ୟମ । ନିର୍ଦ୍ଦିଷ୍ଟ ଏକ ଶୃଙ୍ଖଳା ବା ରଚନା ରୀତିର ନିୟମ ଉପରେ ଏହା ନିର୍ଭରଶୀଳ ନୁହେଁ, ବରଂ କବିଙ୍କର ବ୍ୟବହାରଗତ ସାର୍ଥକତା ଉପରେ ଏହା ସମ୍ପୂର୍ଣ୍ଣ ନିର୍ଭର କରିଥାଏ । । ୧୧ । ସମାଲୋଚକ ଭାବଗ୍ରାହୀ ମିଶ୍ର କୁହନ୍ତି "ଛନ୍ଦର ବାହ୍ୟ ସଂହତି ସହିତ ଭାବର ଅନ୍ତଃ ସଂହତିର ମିଳନ ସନେଟ୍‌ର ପ୍ରକୃଷ୍ଟ ରୀତି, ଜଟିଳତା ଓ କୃତ୍ରିମତା ତୁଳନାରେ ସନେଟ୍ ରଚନାରେ ସୂକ୍ଷ୍ମ ସଂହତି ଓ ଉଚ୍ଚକୋଟୀର ଭାବଧାରା ଅଧିକ ।[୧୨]

ଊନବିଂଶ ଶତାବ୍ଦୀର ଶେଷ ଭାଗରେ ଓଡ଼ିଶାରେ ଇଂରାଜୀ ଶିକ୍ଷାର ପ୍ରସାର ପରେ ଓଡ଼ିଆ ସାହିତ୍ୟରେ ସନେଟ ରଚନା ବିସ୍ତାର ଲାଭ କରିଛି । ଭକ୍ତକବି ମଧୁସୂଦନ ଓଡ଼ିଆ ସାହିତ୍ୟରେ ପ୍ରକୃତ ଚତୁର୍ଦ୍ଦଶପଦୀ କବିତାର ସ୍ରଷ୍ଟା । ତାଙ୍କ ପରେ ଅନ୍ୟ ଯେଉଁ କେତେଜଣ ସ୍ରଷ୍ଟା ଏହି ଧାରାକୁ ସମୃଦ୍ଧଶାଳୀ କରିଛନ୍ତି, ସେମାନଙ୍କ ମଧ୍ୟରେ ବ୍ୟାସକବି ଫକୀରମୋହନ ସେନାପତି ଅନ୍ୟତମ । ତାଙ୍କର ଅନେକ ଚତୁର୍ଦ୍ଦଶପଦୀ କବିତା 'ଅବସରବାସରେ', 'ଧୂଳି', 'ପୂଜାଫୁଲ' ପ୍ରଭୃତି କବିତା ସଂକଳନରେ ସନ୍ନିବେଶିତ ହୋଇଛି । ବସ୍ତୁତଃ ଏଗୁଡ଼ିକ ସନେଟ୍ ରୀତି ଗ୍ରହଣ କରିନାହାନ୍ତି, କିନ୍ତୁ ଭାବର ମହତ୍ତର ପ୍ରତିଫଳନ ଦୃଷ୍ଟିରୁ ଚତୁର୍ଦ୍ଦଶ ପଦର ସୀମିତ ପରିବେଶ ମଧ୍ୟରେ ଏହି ସୃଷ୍ଟି ଆଦରଣୀୟ ।[୧୩]

ଫକୀରମୋହନଙ୍କ କବିତା ବିବିଧ ଅନୁଭୂତିର ପୁଷ୍କଳ ପରିପ୍ରକାଶ । 'ଅବସର ବାସରେ' କବିତା ସଂକଳନର ଗୋଟିଏ ପ୍ରାର୍ଥନା, ହରି ସର୍ବସ୍ୱ, ମାନବ ଅବସ୍ଥା, ତୁମ୍ଭଙ୍କୁ ଅନାଇ, ସ୍ମୃତିର ଛାୟା ପ୍ରଭୃତି କବିତାଗୁଡ଼ିକରେ କବିଙ୍କର ଆତ୍ମ ସମର୍ପଣ ଭାବ ପ୍ରକାଶ ପାଇଛି ।[୧୪] ସେହିପରି ଦୟାବତୀ, ଦୂରେ, ଶେଷ ମିଳନ, ହତାଶପାନ୍ଥ ଓ ଋଷିପୁତ୍ର, ମୃତ୍ୟୁର କରାଳ ମୂର୍ତ୍ତି, ଜୀବନେ ବିଡ଼ମ୍ବନା ପ୍ରଭୃତି ଚତୁର୍ଦ୍ଦଶପଦୀ କବିତାଗୁଡ଼ିକରେ କବିଙ୍କର ବ୍ୟକ୍ତିଗତ ଜୀବନର ଦୁଃଖ ଦୁର୍ଦ୍ଦଶା ତଥା ଶାରୀରିକ ଓ ମାନସିକ ଅବସ୍ଥାର ଚିତ୍ର ପ୍ରଦତ୍ତ ହୋଇଛି । ଯୁବକ ଶରଚ୍ଚନ୍ଦ୍ର, ମଧୁସୂଦନ ରାଓ, ଶ୍ରୀ ଦାମୋଦର ପଟ୍ଟନାୟକ, ନୀଳମଣି ବିଦ୍ୟାରତ୍ନ ପ୍ରଭୃତି କବିତାରେ ବନ୍ଧୁ ସ୍ମୃତିଚାରଣ କରାଯାଇଛି । 'ଧୂଳି' କବିତା ସଂକଳନର ପ୍ରେମ, ବୁଦ୍ଧର ଭାବନା, ବିଷ୍ଣୁ ଚତୁର୍ଭୁଜ, ଦିଅଦେଖା, ଚରମଚିନ୍ତା, ସମ୍ବଳ, ଈଶ୍ୱର କାହାନ୍ତି, ଉଦାସୀ କବିତାଗୁଡ଼ିକରେ

ଭଗବାନଙ୍କର ମହତ୍ତ୍ୱ ବର୍ଣ୍ଣନା ସଙ୍ଗେ ସଙ୍ଗେ ଐଶୀ ଭକ୍ତିର ଚରମ ନିଦର୍ଶନ ପ୍ରକାଶ ପାଇଛି । 'ପୂଜାଫୁଲ' କବିତା ସଂକଳନର 'ଜୀର୍ଣ୍ଣ ପଲ୍ଲବର ଆଶୀର୍ବାଦ', ତୁମ୍ଭ ପଦେ ସ୍ଥାନ, ଶେଷଦିନ କବିତାଗୁଡ଼ିକୁ ଚତୁର୍ଦ୍ଦଶପଦୀ କବିତା ନାମରେ ନାମିତ କରାଯାଇପାରେ । ଏହା ବ୍ୟତୀତ କେତେକ କବିତାରେ ପ୍ରକୃତି ପ୍ରତି ନୂତନ ଦୃଷ୍ଟିଭଙ୍ଗୀ, ବ୍ୟକ୍ତିଗତ ଭାବ ଓ ଐତିହାସିକ କୀର୍ତ୍ତିର ପୁନଃ ଅବଲୋକନର ଆଭାସ ପ୍ରତିଫଳିତ । ସେଗୁଡ଼ିକ ମଧ୍ୟରେ ପ୍ରଜାପତି, କାଠଯୋଡ଼ିବନ୍ଧ, ଶକୁନି-ମଚ୍ଛରା, ଗ୍ରୀଷ୍ମରାତ୍ର, ବିଦେଶୀନି ବାଳିକାର ଛାୟାଚିତ୍ର, ଗିରିନଦୀ ପ୍ରଭୃତି ପ୍ରଧାନ ।

ଫକୀରମୋହନଙ୍କ ଚତୁର୍ଦ୍ଦଶପଦୀ କବିତାଗୁଡ଼ିକୁ ଆଲୋଚନା କଲେ ଏହା ସ୍ପଷ୍ଟ ହୋଇଥାଏ ଯେ, ସେ ସନେଟ୍‌ର ନୀତି ନିୟମକୁ ସ୍ୱୀକାର କରିନାହାନ୍ତି କିମ୍ବା ରଚନା ରୀତିର ଅନୁସରଣ ମଧ୍ୟ କରିନାହାନ୍ତି । ତଥାପି ସେ ସେହି କବିତା ମାଧ୍ୟମରେ ଯେଉଁ ମହାନ୍ ଭାବ ବ୍ୟକ୍ତ କରିଛନ୍ତି, ତାହାହିଁ ତାଙ୍କ କବିତାଗୁଡ଼ିକର ଚରମ ବୈଶିଷ୍ଟ୍ୟ । ଆଙ୍ଗିକ ରୀତି କବିତାର ବଡ଼କଥା ନୁହେଁ, ବରଂ ଭାବପ୍ରକାଶର ନିପୁଣତା କବିତାକୁ କରେ କାଳଜୟୀ । ଏହି ଦୃଷ୍ଟିକୋଣରୁ ଫକୀରମୋହନଙ୍କ ଚତୁର୍ଦ୍ଦଶପଦୀ କବିତାଗୁଡ଼ିକ ଗୋଟିଏ ଗୋଟିଏ ସଫଳ ସୃଷ୍ଟି ।

## କ୍ଲାସିକ

ଫକୀରମୋହନ କ୍ଲାସିକ୍ କାବ୍ୟର ସ୍ରଷ୍ଟା ନ ହେଲେ ବି ତାଙ୍କର କେତୋଟି କବିତାରେ କ୍ଲାସିକ ସାହିତ୍ୟର ବୈଶିଷ୍ଟ୍ୟ ପରିଲକ୍ଷିତ ହୋଇଥାଏ । 'କ୍ଲାସିକ୍' ଶବ୍ଦର ପ୍ରାଥମିକ ବ୍ୟାଖ୍ୟା ସମୟରେ, ଏହାକୁ ଏକ ଉଚ୍ଚତର ବ୍ୟକ୍ତିବିଶେଷଙ୍କ ଶ୍ରେଣୀରୂପେ ଗ୍ରହଣ କରାଯାଉଥିଲା । ଯେଉଁ ବ୍ୟକ୍ତି ଅଧିକ କର ଦେଉଥିଲା ତାଙ୍କୁ 'କ୍ଲାସିକ୍‌ସ' ବୋଲି କୁହାଯାଉଥିଲା । ତେଣୁ କ୍ଲାସିକ୍ ଲେଖକମାନେ ସେତେବେଳେ ଥିଲେ ଏହି ଶ୍ରେଣୀର ।(୧୫) ପରବର୍ତ୍ତୀ ସମୟରେ ବ୍ୟାଖ୍ୟାକାରମାନେ 'କ୍ଲାସିକ୍' ଶବ୍ଦର ନୂତନ ବ୍ୟାଖ୍ୟା କଲେ ମଧ୍ୟ ମୂଳ ବ୍ୟାଖ୍ୟାରୁ ତାହା ସଂପୂର୍ଣ୍ଣ ବିଚ୍ୟୁତ ହୋଇପାରିଲା ନାହିଁ । ଉଚ୍ଚତର ନୀତିବାଦୀ ଓ ଚିରନ୍ତନ ଆବେଦନ ଥିବା ଲେଖାଗୁଡ଼ିକୁ କ୍ଲାସିକ୍ ସୃଷ୍ଟି ଭାବରେ ଗ୍ରହଣ କରାଗଲା ।

ଆବେଦନ ଦୃଷ୍ଟିରୁ ଯାହା ସାର୍ବଜନୀନ, ଯାହାର ଏକ ଚିରନ୍ତନ ମୂଲ୍ୟ ରହିଛି, ତାହା କ୍ଲାସିକ୍ ରଚନାର ଅନ୍ତର୍ଭୁକ୍ତ ହୋଇପାରେ । ଏହି ଦୃଷ୍ଟିରୁ ଫକୀରମୋହନଙ୍କର କେତୋଟି କବିତା ଆବେଦନ ଦୃଷ୍ଟିରୁ ସାର୍ବଜନୀନ ଓ ସେଗୁଡ଼ିକର ଏକ ଚିରନ୍ତନ

ମୂଲ୍ୟ ରହିଛି ବୋଲି ସ୍ୱୀକାର କରାଯାଇପାରେ। 'ପୁଷ୍ପମାଳା' କବିତା ସଂକଳନର ଜୀବନ ନଦୀ, ନୀରବ ପ୍ରେମ, ବାସୀଫୁଲ, ମୋ କ୍ଷୁଦ୍ରତାରା, ସାହାଡ଼ା ଗଛର କ୍ରନ୍ଦନ ପ୍ରଭୃତି କବିତାଗୁଡ଼ିକ କ୍ଲାସିକ୍ କବିତାର ଅନ୍ତର୍ଭୁକ୍ତ ହୋଇପାରେ। ବ୍ୟକ୍ତିଗତ ଭାବୋଚ୍ଛ୍ୱାସ ବା ବ୍ୟକ୍ତିଗତ ଅଭିବ୍ୟକ୍ତି କ୍ଲାସିକ୍ ସୃଷ୍ଟିର ପରିପନ୍ଥୀ ହେଲେ ମଧ୍ୟ ଉକ୍ତ କବିତାଗୁଡ଼ିକରେ ଏକ କାଳଜୟୀ ଆବେଦନ ରହିଥିବାରୁ ଏହାକୁ କ୍ଲାସିକ୍ ସୃଷ୍ଟି ଅନ୍ତର୍ଗତ କରାଯିବାରେ କୌଣସି ପ୍ରତିବନ୍ଧକ ନାହିଁ। 'ନୀରବ ପ୍ରେମ' କବିତାରେ ପ୍ରକୃତି ସହିତ ମାନବୀୟ ପ୍ରକୃତିର ଚମତ୍କାର ସାମଞ୍ଜସ୍ୟ ପରିକଳ୍ପନା କରାଯାଇଛି। ଜୀବନ ନଦୀ କବିତାରେ ମାନବ ଜୀବନକୁ ନଦୀର ବିଭିନ୍ନ ଉତ୍‌ଥାନ ପତନ ସହିତ ତୁଳନା କରାଯାଇ ଏକ ସାର୍ବଜନୀନ ସତ୍ୟକୁ ସ୍ୱୀକାର କରାଯାଇଛି। 'ମୋ କ୍ଷୁଦ୍ରତାରା' କବିତାଟି କବିଙ୍କର ବ୍ୟକ୍ତିଗତ ଅନୁଭୂତିର ପରିପ୍ରକାଶ ହେଲେ ମଧ୍ୟ ବିଶ୍ୱର ଯେକୌଣସି ବିରହୀ ମାନବର ଅନ୍ତର୍ବେଦନା ସହିତ ଉକ୍ତ କବିତାଟିର ଭାବସାମ୍ୟ ଅନୁଭୂତ ହୋଇପାରେ।

'ଅବସର ବାସରେ' କବିତା ସଂକଳନର ଗଙ୍ଗଶିମଳୀ, ବିରହୀ ହଳଦୀବସନ୍ତ, ରଜନୀଗନ୍ଧା, ପାନ୍ଥ, ରାଜାତ ଫକୀର, ଶ୍ମଶାନ ପ୍ରଭୃତି କବିତାଗୁଡ଼ିକ କ୍ଲାସିକ୍ ସାହିତ୍ୟର ଚମତ୍କାର ବୈଶିଷ୍ଟ୍ୟ ନେଇ ଆତ୍ମପ୍ରକାଶ କରିଛି। ମାତ୍ର କେତୋଟି ଘଣ୍ଟା ନିମିତ୍ତ ଗଙ୍ଗଶିମଳୀ ଫୁଲର ସ୍ଥିତି, ଜନମାନସରେ ଏକ ଅଭୁଲା ସ୍ମୃତି ଆଙ୍କି ଦେଇଯାଏ। ପୃଥିବୀର ପ୍ରତ୍ୟେକ ବସ୍ତୁର ଆରମ୍ଭ, ବିକାଶ ଓ ପରିସମାପ୍ତି ରହିଛି। କିନ୍ତୁ ଜୀବନର ଏହି ଅଳ୍ପାୟୁ ମଧ୍ୟରେ ଜୀବ ସୃଷ୍ଟି ବିନାଶ ପ୍ରାପ୍ତ ହେଲେ ମଧ୍ୟ, ତାର ସୁଗୁଣ ଚିରଦିନ ମାନବର ସ୍ମୃତି ପଥରେ ଜୀବିତ ହୋଇ ରହେ। କାଳର ସର୍ବଗ୍ରାସୀ ଆକ୍ରମଣରୁ କେହି ମୁକ୍ତ ନୁହନ୍ତି। ମୁକ୍ତ ନୁହନ୍ତି ମଧ୍ୟ ଗଙ୍ଗଶିମଳୀ ଓ ବିଳାସ ପରିପୂର୍ଣ୍ଣ ରାଜପ୍ରାସାଦରେ ବର୍ଦ୍ଧିତା ରାଜକୁମାରୀ। ଏହି ଚିରନ୍ତନ ସତ୍ୟଟି ପ୍ରକାଶ ଲାଭ କରିଛି 'ଗଙ୍ଗ ଶିମଳୀ' କବିତାଟିରେ। ସାମାନ୍ୟ ଗୋଟିଏ ପକ୍ଷୀ ଜୀବନର କରୁଣ ଇତିହାସ କବି ଲେଖନୀରେ କିପରି ଜୀବନ୍ତରୂପ ନେଇପାରେ, କବିର ସମ୍ବେଦନଶୀଳ ହୃଦୟକୁ ବ୍ୟଥିତ କରିପାରେ ତାର ନିଛକ ଉଦାହରଣ 'ବିରହୀ ହଳଦୀବସନ୍ତ' କବିତାଟି। ସାଧାରଣ ଦୃଷ୍ଟିରେ ଯାହା ହେୟ, କବି ଦୃଷ୍ଟିରେ ତାହା ଶ୍ରେୟ। ରଜନୀଗନ୍ଧା ପୁଷ୍ପଟିର ସୌରଭ ସାମୟିକ ହେଲେ ମଧ୍ୟ ତାର ଏକ ଆକର୍ଷଣ ଶକ୍ତି ରହିଛି। ମାତ୍ର କେତୋଟି ମୁହୂର୍ତ୍ତପାଇଁ ତାର ଆବିର୍ଭାବ ଜନମାନସରେ ଏକ ଅଭୁଲା ଛାପ ରଖି ଝଡ଼ିପଡ଼େ। ମାନବଜୀବନ ମଧ୍ୟ ରଜନୀଗନ୍ଧା ପରି କ୍ଷଣ ଭଙ୍ଗୁର। ଏହି କ୍ଷଣଭଙ୍ଗୁର ଜୀବନର ସମୟସୀମା ମଧ୍ୟରେ ମାନବ ଏପରି କାର୍ଯ୍ୟ କରିବା ଉଚିତ, ଯାହା ତାର ମୃତ୍ୟୁ ପରେ ମଧ୍ୟ ତାର ସ୍ମୃତିକୁ ଜୀବିତ ରଖିବାକୁ

ସମର୍ଥ ହୋଇପାରିବ । 'ଲୋକଚିହ୍ନା' କବିତାରେ ମାନବ ମନର ସୂକ୍ଷ୍ମ ରହସ୍ୟକୁ ବିଶ୍ଳେଷଣ କରାଯାଇଛି । 'ଶ୍ମଶାନ' କବିତାରେ ଶ୍ମଶାନର ଏକ ସାର୍ବଜନୀନ ସତ୍ୟର ଆବିଷ୍କାର ପାଇଁ ଉଦ୍ୟମ ହୋଇଛି ।

ଦେହ ମିଳନ ଅପେକ୍ଷା, ଦେହାତୀତ ମିଳନ ଚିରନ୍ତନ ଓ ସେହି ମିଳନରେ ଯେଉଁ ଅଲୌକିକ ଆନନ୍ଦ ପ୍ରାପ୍ତି ହୁଏ, ତାହା ଲୌକିକ ଜଗତର ଆନନ୍ଦଠାରୁ ଯଥେଷ୍ଟ ଊର୍ଦ୍ଧ୍ୱରେ । ଏହି ସତ୍ୟଟି ପ୍ରକାଶିତ ହୋଇଛି 'ମହାଧାମରେ ମିଳନ' କବିତାଟିରେ । 'ଯୋଗୀ' କବିତାଟିରେ ମଧ୍ୟ ସଂସାରର ଏକ ବାସ୍ତବ ଚିତ୍ର ପ୍ରଦର୍ଶିତ ହୋଇଛି । ବୈଷୟିକ ଭାବନା ମାନବ ମନକୁ କଳୁଷିତ କରେ, ସଂସାର ପ୍ରତି ମୋହ ସୃଷ୍ଟି କରେ, ଯା'ର ପରିଣାମ ସ୍ୱରୂପ ମାନବ ଧ୍ୱଂସମୁଖକୁ ଗତି କରିଥାଏ । ସ୍ଥିତପ୍ରଜ୍ଞ ଋଷି ଏହି ବିଷୟ ବାସନାର ଊର୍ଦ୍ଧ୍ୱରେ ରହି ଅବିନାଶୀ ପରମାତ୍ମାଙ୍କ ଅନ୍ୱେଷଣରେ ବ୍ରତୀ ହୋଇଥିବାରୁ ତାର ଆତ୍ମା ପରମାତ୍ମାଙ୍କ ସହିତ ମିଳିତ ହୋଇ ମୁକ୍ତିଲାଭ କରିଥାଏ । ଐଶ୍ୱର୍ଯ୍ୟ ଓ ଭୋଗଠାରୁ ଦୂରରେ ରହି ତ୍ୟାଗମୟ ଜୀବନଯାପନରେ ମାନବ ଯେଉଁ ସିଦ୍ଧିଲାଭ କରେ ତାହା କ୍ଷୟହୀନ ଓ ଚିର ନୂତନ । ସଂଜ୍ଞାନୁଯାୟୀ ଆଲୋଚନା ନକରି ଭାବ ଦୃଷ୍ଟିରୁ ବିଚାର କଲେ, ଫକୀରମୋହନଙ୍କ କେତେକ କବିତାରେ କ୍ଲାସିକ୍ ଲକ୍ଷଣ ଯେ ବିଦ୍ୟମାନ, କହିବା ଅନାବଶ୍ୟକ ।

## ରୋମାଣ୍ଟିକ

ଫକୀରମୋହନ ବାର୍ଦ୍ଧକ୍ୟ ବୟସରେ ସାହିତ୍ୟ ସୃଷ୍ଟି କ୍ଷେତ୍ରରେ ଲେଖନୀ ଚାଳନା କରିଥିଲେ ମଧ୍ୟ, ତାଙ୍କ କବିତାଗୁଡ଼ିକରେ ରୋମାଣ୍ଟିକ ଭାବାବେଗର ଅଭାବ ନାହିଁ । ସାଧାରଣତଃ ରୋମାଣ୍ଟିକ କବିତାଗୁଡ଼ିକରେ ତୀକ୍ଷ୍ଣ ଚେତନଶୀଳତା ଓ କଳ୍ପନାର ଆଧିକ୍ୟତା ଦେଖାଯାଇଥାଏ ।[୧୬] ଫକୀରମୋହନଙ୍କର ଅନେକଗୁଡ଼ିଏ କବିତା ରହିଛି, ଯେଉଁଥିରେ ଏହି ଭାବାବେଗର ପରିପ୍ରକାଶ ଘଟିଛି । ରୋମାଣ୍ଟିକ କବି ଅନେକ ପରିମାଣରେ ବିଷାଦବାଦୀ । ସମାଜର ଅନୀତି, ରକ୍ଷଣଶୀଳତା ତାକୁ ବିଷାଦବାଦୀ କରିବାକୁ ବାଧ୍ୟ କରିଥାଏ । ଅନେକ ସମୟରେ ସଂସାରପ୍ରତି ବିରାଗଭାବ ଓ ପ୍ରିୟବସ୍ତୁର ଅଭାବ କବିଙ୍କୁ ରୋମାଣ୍ଟିକ ବିଷାଦବାଦରେ ପରିଣତ କରେ । ଫକୀରମୋହନଙ୍କ 'କାହିଁଛନ୍ତି ବନ୍ଧୁମୋର କିଏ ଦେବ କହି' 'ନିଶୀଥ ସଙ୍ଗୀତ' 'ଜୀବନ ନଦୀ', 'ପୃଥିବୀ ତ ନୁହେଁ ସୁଖର ସ୍ଥାନ', 'ଜଗତ ନୁହେଁ ପୂର୍ଣ୍ଣ ସୁଖର ସ୍ଥାନ', 'ପୁନର୍ମିଳନ', 'ଦୀପ ନିର୍ବାଣ', 'ହଜିଲା ଧନ' ପ୍ରଭୃତି କବିତାଗୁଡ଼ିକରେ ବିଷାଦବାଦୀ ଚିନ୍ତାଧାରା ପ୍ରତିଫଳିତ ହୋଇଛି । ଦ୍ୱିତୀୟା ପତ୍ନୀ କୃଷ୍ଣାକୁମାରୀଙ୍କ ବିୟୋଗ ଓ ବାର୍ଦ୍ଧକ୍ୟର ରୁଗ୍ଣତା କବିଙ୍କୁ

ବିଷାଦବାଦୀ କରି ତୋଳିଥିବା ପରି ମନେ ହୋଇଥାଏ । ଜଗତର ସମସ୍ତ ସୁଖ ସୌଭାଗ୍ୟ ପତ୍ନୀଙ୍କ ବିଚ୍ଛେଦ ପରେ ତାଙ୍କ ନିକଟରୁ ଅନ୍ତର୍ହିତ ହୋଇଯାଇଛି । ତେଣୁ ସେ ଜଗତରୁ କୌଣସି ସୁଖ ଆସ୍ୱାଦ କରିବାକୁ ସମର୍ଥ ହୋଇପାରି ନାହାନ୍ତି ।[୧୭] ଜୀବନର ସମସ୍ତ ଆଶା ଭରସା ହରାଇ ସେ ଏକାକୀ ନିଃସଙ୍ଗ ହୋଇପଡ଼ିଛନ୍ତି । ଜୀବନର ଶେଷ ନିଃଶ୍ୱାସ ପର୍ଯ୍ୟନ୍ତ କେବଳ ଦୁଃଖର ସଙ୍ଗୀତ ଗାନ କରିବା ବ୍ୟତୀତ ତାଙ୍କର ଅନ୍ୟ କୌଣସି ଉପାୟ ନାହିଁ ବୋଲି ସେ ଉପଲବ୍ଧି କରିଛନ୍ତି ।[୧୮] କାରଣ ସେହି ସ୍ମୃତିଟିକୁ ପାଶୋରିବାକୁ ଶତଚେଷ୍ଟା କଲେ ମଧ ପାଶୋରି ହେଉନାହିଁ । ଦେହ ଭିନ୍ନ ଥିଲେ ମଧ ଆତ୍ମା ଥିଲା ଏକ । ତେଣୁ ଜଣକର ବିଚ୍ଛେଦରେ କବି ବିଶେଷ ଭାବରେ ବିଷାଦବାଦୀ ହୋଇ ପଡ଼ିଛନ୍ତି ।[୧୯]

ଫକୀରମୋହନ ନିଜର ଦୁଃଖାନୁଭୂତିକୁ ବିଭିନ୍ନ ପ୍ରତୀକ ମାଧ୍ୟମରେ ପ୍ରକାଶ କରି ନିଜର ସୂକ୍ଷ୍ମଦୃଷ୍ଟିକୋଣର ପରିଚୟ ପ୍ରଦାନ କରିଛନ୍ତି । ବୋଧହୁଏ ବ୍ୟକ୍ତିଗତ ଦୁଃଖାନୁଭୂତିକୁ ବିଭିନ୍ନ ପ୍ରତୀକ ମାଧ୍ୟମରେ ପ୍ରକାଶ କରିବାରେ ଓଡ଼ିଆ କାବ୍ୟ କବିତା କ୍ଷେତ୍ରରେ ଫକୀରମୋହନ ପ୍ରଥମ କଳାକାର ।[୨୦] ଚିକୁଆଚକୋଇ କଥା, କପୋତ ସଙ୍ଗୀତ, ଯୁଗ୍ମ କୁସୁମ, କକ୍ଷଭ୍ରଷ୍ଟ ତାରକା, ମୋ କ୍ଷୁଦ୍ର ତାରା, ସାହାଡ଼ା ଗଛର କ୍ରନ୍ଦନ ଆଦି କବିତାରେ ପ୍ରତୀକ ମାଧ୍ୟମରେ ନିଜର ମନୋଭାବ ପ୍ରକାଶ କରିଛନ୍ତି ।

ରୋମାଣ୍ଟିକ ଚେତନାର ଅନ୍ୟତମ ବୈଶିଷ୍ଟ୍ୟ ପ୍ରକୃତିପ୍ରୀତି । ପ୍ରକୃତିର ବିଭିନ୍ନ ଉପାଦାନ ଓ ପ୍ରକୃତି ମଧ୍ୟରେ ଜନ୍ମ ନେଇଥିବା ଜୀବଜଗତ ପ୍ରତି ରୋମାଣ୍ଟିକ କବିମାନଙ୍କର ଅସାଧାରଣ ମୋହ ଥିଲା । କଳ୍ପନା ସହିତ ବାସ୍ତବର ସମ୍ମିଶ୍ରଣ ଥିଲା ତାର ଲକ୍ଷ୍ୟ । ସେଇଥିପାଇଁ ବିଶିଷ୍ଟ ରୋମାଣ୍ଟିକ କବିମାନେ ମଧ ଥିଲେ ବାସ୍ତବବାଦୀ; ଯଦିଓ ସାଧାରଣ ଜୀବନଠାରୁ ଦୂରରେ ରହି ଅଧିକ କିଛି କହିବା ନିମିତ୍ତ ସେମାନଙ୍କର ପ୍ରବୃତ୍ତି ଥିଲା ସର୍ବାଧିକ ।[୨୧] ଫକୀରମୋହନ ପ୍ରକୃତି ତଥା ମାନବ ସମାଜରୁ ଅନେକ ତୁଚ୍ଛାତିତୁଚ୍ଛ ଚରିତ୍ର ତଥା ଘଟଣା ଗ୍ରହଣପୂର୍ବକ ସୁନ୍ଦର ସୁନ୍ଦର କବିତାମାନ ରଚନା କରିଅଛନ୍ତି । 'ପାତୁଆପାତୋଇ : ଅରଣ୍ୟବାସୀ', 'ଉତ୍କଳ କୃଷକ', 'ହିନ୍ଦୁ ବିଧବା', 'ବାର ବିଳାସିନୀ', 'ବେଙ୍ଗଭାଇ', 'କୋଇଲି ନାନୀ', 'ଗୋଲାପ ସୁନ୍ଦରୀ', 'ଗଙ୍ଗଶିମଳୀ' ପ୍ରଭୃତି କବିତାଗୁଡ଼ିକ ଏହି ଦୃଷ୍ଟିରୁ ଉଲ୍ଲେଖଯୋଗ୍ୟ । ପ୍ରକୃତିର ସାମାନ୍ୟତମ ବିଷୟପ୍ରତି ମଧ କବିଙ୍କର ସର୍ବାଧିକ ଦୁର୍ବଳତା ପରିଦୃଷ୍ଟ ହୋଇଥାଏ । ଇଂରାଜୀ କବି ୱାର୍ଡ଼ସୱାର୍ଥ ଯେପରି ପ୍ରକୃତିର ବିଭିନ୍ନ ଉପାଦାନକୁ ଉପଜୀବ୍ୟ କରି କବିତା ରଚନା କରିଥିଲେ । ଫକୀରମୋହନଙ୍କର ସେହିପରି ପ୍ରକୃତିର ବିଭିନ୍ନ ଉପାଦାନ ପ୍ରତି ଆନ୍ତରିକତା

ଦେଖିବାକୁ ମିଳିଥାଏ । ଏହି ଦୃଷ୍ଟିରୁ ୱାର୍ଡ଼୍‌ସ୍‌ୱାର୍ଥଙ୍କ କେତୋଟି କବିତା ସହିତ ଫକୀରମୋହନଙ୍କର କେତୋଟି କବିତାର ସାଧାରଣ ସାମଞ୍ଜସ୍ୟ ପରିଲକ୍ଷିତ ହୋଇଥାଏ । ୱାର୍ଡ଼୍‌ସ୍ ୱାର୍ଥଙ୍କ Poor Susan, The Oak and The Brook, The Thorn, The nightngale ସହିତ ଫକୀରମୋହନଙ୍କର ଉତ୍କଳ କୃଷକ, ଅରଣ୍ୟବାସୀ, ପାତୁଆ ପାତୋଇ, ବେଙ୍ଗ ଭାଇ, କୋଇଲି ନାନୀ ପ୍ରଭୃତିର ସାଧାରଣ ସାମଞ୍ଜସ୍ୟ ପରିଲକ୍ଷିତ । ଭାବର ସାମଞ୍ଜସ୍ୟ ପରିଲକ୍ଷିତ ହେବା ଅପରାଧ ନୁହେଁ । କାରଣ ଅନେକ ସମୟରେ ବିଭିନ୍ନ କବିଙ୍କ ଚିନ୍ତାଧାରାରେ ଏକ ପ୍ରକାର ଭାବ ପ୍ରତିଫଳିତ ହୋଇଥାଏ । ଭାବର ସାମଞ୍ଜସ୍ୟ ନୁହେଁ, ଭାବ ପ୍ରକାଶର ଚମତ୍କାରିତାହିଁ କବିଙ୍କୁ ଶ୍ରେଷ୍ଠ ଆସନ ଦେଇଥାଏ । ଫକୀରମୋହନଙ୍କ 'ହୃଦୟ ସଙ୍ଗୀତ' କବିତା ସହିତ ସେଲୀଙ୍କ To a Skylark କିମ୍ବା ଫକୀରମୋହନଙ୍କ ମୃତପୁତ୍ର ମନୋମୋହନ ସହିତ ୱାର୍ଡ଼୍‌ସୱାର୍ଥଙ୍କ 'Ode on intimation of immortality' କବିତାର ଭାବ ସାମଞ୍ଜସ୍ୟ ଥିଲେ ମଧ୍ୟ ପ୍ରକାଶଭଙ୍ଗୀ ଦୃଷ୍ଟିରୁ ସେଲୀ ଓ ୱାର୍ଡ଼୍‌ସୱାର୍ଥଙ୍କ କବିତା ଦୁଇଟିକୁ ଶ୍ରେଷ୍ଠ କବିତା ଆଖ୍ୟା ପ୍ରଦାନ କରାଯାଇପାରେ ।

ସେହିପରି ୱାର୍ଡସ୍‌ୱାର୍ଥଙ୍କ The Cuckoo କବିତାର –

And I can listen to thee yet
can life upon the plain
Listen I till do beget
That golden time again.

ଭାବ ହେଉଛି ଏକ ନୂତନ ଯୁଗର ପରିକଳ୍ପନା । ଏହି ଭାବ ଅତ୍ୟନ୍ତ ବଳିଷ୍ଠ ।

ପ୍ରେମଚେତନା ରୋମାଣ୍ଟିକ କବିମାନଙ୍କର ଏକ ବିଶିଷ୍ଟ ବୈଶିଷ୍ଟ୍ୟ । ଦେହ ମଧ୍ୟ ଦେଇ ଦେହାତୀତର ସନ୍ଧାନ କରିବାରେ ରୋମାଣ୍ଟିକ କବିମାନଙ୍କର ଚରମ ବ୍ୟାକୁଳତା ପ୍ରକାଶ ପାଇଥାଏ । ଫକୀରମୋହନଙ୍କ ପ୍ରେମ କବିତାଗୁଡ଼ିକ ଏହି ଶ୍ରେଣୀର । ଦେହର ମିଳନ ଅପେକ୍ଷା ମନର ମିଳନ ହିଁ ତାଙ୍କ କବିତାର ବିଶିଷ୍ଟ ବିଭବ । ଦୈହିକ ସମ୍ଭୋଗ ଲାଳସାଠାରୁ ଊର୍ଦ୍ଧ୍ୱରେ ରହି ଏକ ସଚ୍ଚା ପ୍ରେମିକର ଅନ୍ତରବାସନା ତାଙ୍କ କବିତାଗୁଡ଼ିକୁ କାଳଜୟୀ କରିପାରିଛି । ପୁନର୍ମିଳନ, ଚାତକ ପକ୍ଷୀ, ହସି ହସି ଗଲା ମତେ କନ୍ଦାଇ କନ୍ଦାଇ, ପାସୋରିବା, ମୋ କ୍ଷୁଦ୍ରତାରା, ମେଲାଣି ପ୍ରଭୃତି କବିତାଗୁଡ଼ିକରେ ପ୍ରେମର ଏକ ନିର୍ମଳ ଚିତ୍ର ପ୍ରକାଶିତ । ରକ୍ତମାଂସର ଦେହ ଅପେକ୍ଷା ଅବିନାଶୀ ଆତ୍ମାର ମିଳନହିଁ ସର୍ବଶ୍ରେଷ୍ଠ ସଂପଦ ବୋଲି ସେ ଅନୁଭବ କରିଥିଲେ । ରୋମାଣ୍ଟିକ କବିମାନଙ୍କର ସୁଦୂର ପ୍ରତି ଅତ୍ୟଧିକ ଆକର୍ଷଣ ପରି କବି ଫକୀରମୋହନ ମଧ୍ୟ ଆଶାବାଦୀ ପରିବ୍ୟାପ୍ତ

ଗଗନରେ ଦୁଇଟି ଉଜ୍ଜ୍ୱଳ ନକ୍ଷତ୍ରରୂପେ ବିରାଜମାନ କରିବାକୁ । ହୃଦୟ ବନ୍ଧନ ଅଚ୍ଛେଦ୍ୟ ହୋଇଥିବାରୁ କାଳାତୀତ କାଳଯାଏ, ତାର ବିଚ୍ଛେଦ ନାହିଁ ବୋଲି ସେ ପ୍ରକାଶ କରିଛନ୍ତି ।[୨୨] ଆତ୍ମାର ଆକର୍ଷଣକୁ ଆତ୍ମା କେବେ ଫାଙ୍କି ଦେଇନପାରେ । ତେଣୁ ସେହି ଆତ୍ମାର ଆକର୍ଷଣ ଯୋଗୁଁ ସେ ପୁନର୍ବାର ସେହି ଅଦେହୀ ଆତ୍ମା ସହିତ ମିଳିତ ହେବାର ଆଶାପୋଷଣ କରିଛନ୍ତି ।[୨୩] ଏହି ଦୃଷ୍ଟିରୁ ବିଚାର କଲେ ଫକୀରମୋହନଙ୍କ ପ୍ରେମ କବିତାଗୁଡ଼ିକ ଓଡ଼ିଆ ସାହିତ୍ୟରେ ଏକ ଏକ ସାର୍ଥକ ପ୍ରେମଗୀତି ।

ରୋମାଣ୍ଟିକ କବିମାନେ କେବଳ ପ୍ରେମ, ପ୍ରଣୟ ବା କଳ୍ପନାର ଉପାସକ ନଥିଲେ । ପରନ୍ତୁ ସେମାନଙ୍କ କବିତାରେ ଜାତୀୟତାର ସ୍ୱର ଶୁଣାଯାଇଥାଏ । ଜାତୀୟ ଜୀବନ ସ୍ରୋତ ସହିତ ନିଜକୁ ମିଶାଇ ଦେଇ ଅନେକ ରୋମାଣ୍ଟିକ କବି ଜାତୀୟବାଦୀ କବିର ଆଖ୍ୟା ପାଇଛନ୍ତି । ଫକୀରମୋହନଙ୍କ ଅନେକ କବିତାରେ ଜାତୀୟତାର ସ୍ୱର ଶୁଣାଯାଇଥାଏ । ଉତ୍କଳର ବରପୁତ୍ରମାନଙ୍କ ଗୁଣାବଳୀ ବର୍ଣ୍ଣନା ସହିତ ହୀନମତି ଉତ୍କଳୀୟଙ୍କୁ ସେ କଠୋର ବ୍ୟଙ୍ଗୋକ୍ତି କରିଛନ୍ତି । ଓଡ଼ିଆ ଭାଷା ଓ ଦେଶର ଉନ୍ନତି ନିମିତ୍ତ ସେ ଅନେକ ଜାତୀୟବାଦୀ କବିତା ରଚନା କରି ଉତ୍କଳୀୟମାନଙ୍କୁ ପ୍ରେରଣା ଓ ଜାତୀୟତାର ବାଣୀ ଶୁଣାଇଛନ୍ତି । ଲାଗ ଲାଗ, ଉତ୍କଳଭୂମି, ଜନ୍ମଭୂମି, ମୋ କ୍ଷୁଦ୍ରଶକ୍ତି, କେଉଁ ଜାତି ବର୍ବର, ଜନନୀ ଉତ୍କଳଭାଷା, ଉତ୍କଳ ଯୁବକ ପ୍ରଭୃତି କବିତାରେ ଏହି ସ୍ୱର ଶୁଣାଯାଇଥାଏ । ଜାତି ଓ ଭାଷାର ଦୁର୍ଦ୍ଦିନରେ ସେ ସେନାପତିର ଭୂମିକା ଗ୍ରହଣ କରି ଦେଶ ଓ ଭାଷାର ମର୍ଯ୍ୟାଦା ରକ୍ଷା କରିବାକୁ ଅଗ୍ରସର ହୋଇଥିଲେ । ନିଜ ଭାଷା ପ୍ରତି ଉତ୍କଳୀୟମାନଙ୍କର ବୈମାତୃକ ଭାବ ଲକ୍ଷ୍ୟ କରି 'ମୁଁ ହାଟବାହୁଡ଼ା' କବିତାରେ ଓ ହୀନମତି ଉତ୍କଳୀୟଙ୍କୁ 'ଉତ୍କଳ ଭ୍ରମଣଂ'ରେ ସମାଲୋଚନା କରିଛନ୍ତି । ଅନ୍ୟ ଦେଶର ପ୍ରଗତି ଲକ୍ଷ୍ୟ କରି ସେହି ଅନୁଯାୟୀ ନିଜ ଦେଶ ଓ ଭାଷାର ଉନ୍ନତି ନିମିତ୍ତ ଉତ୍କଳୀୟମାନଙ୍କୁ ବାରମ୍ବାର ଉତ୍ସାହବାଣୀ ଶୁଣାଇଛନ୍ତି । ଖଣ୍ଡବିଖଣ୍ଡିତ ଉତ୍କଳର ଦୁର୍ଦ୍ଦଶା ସଂପର୍କରେ ସେ ପ୍ରଥମେ ଉତ୍କଳୀୟମାନଙ୍କୁ ଅବଗତ କରାଇ ତାର ଏକତ୍ରୀକରଣ ପାଇଁ ପରାମର୍ଶ ଦେଇଛନ୍ତି । ଏହିପରି ଭାବରେ ଆଲୋଚନା କଲେ, ଫକୀରମୋହନଙ୍କ କବିତାରେ ରୋମାଣ୍ଟିକ ଭାବାବେଗର ଯେ ଅଭାବ ନାହିଁ, ତାହା ସ୍ପଷ୍ଟଭାବେ ପ୍ରତିଭାତ ହୋଇଥାଏ ।

## ରାଧାନାଥ ଯୁଗରେ ଫକୀରମୋହନଙ୍କ ବୈଶିଷ୍ଟ୍ୟ

ସମାଲୋଚକଗଣ ଆଧୁନିକ ଯୁଗକୁ ରାଧାନାଥ ଯୁଗ ନାମରେ ନାମିତ କରିଥାନ୍ତି । ଏପରି ନାମକରଣ ପଛରେ ସେମାନେ ରାଧାନାଥଙ୍କ କେତେକ ବୈଶିଷ୍ଟ୍ୟ ଉପରେ ଆଲୋକପାତ କରିଥାନ୍ତି । ରାଧାନାଥଙ୍କ ପୂର୍ବରୁ ଓଡ଼ିଆ ସାହିତ୍ୟରେ ଦୀର୍ଘ ଦୁଇଶତ ବର୍ଷ

(୧୬୫୦-୧୮୫୦) ପର୍ଯ୍ୟନ୍ତ ରୀତିଯୁଗର ପ୍ରଭାବ ବଳବତ୍ତର ରହିଥିଲା । ଏହି ସମୟରେ କବି ସମ୍ରାଟ ଉପେନ୍ଦ୍ରଭଞ୍ଜ ଶ୍ରେଷ୍ଠ ରୀତି କବି ଭାବରେ ଖ୍ୟାତିଲାଭ କରିଥିଲେ ଓ ତାଙ୍କର ପ୍ରଚଣ୍ଡ ରଶ୍ମିରେ ଅନ୍ୟାନ୍ୟ କବି ନ୍ୟୂନ ହୋଇ ପଡ଼ିଥିଲେ । ଦୀର୍ଘ ଦୁଇଶତବର୍ଷର ବଳିଷ୍ଠ ପରଂପରା ଉପରେ ପ୍ରଚଣ୍ଡ ଧକ୍କା ଦେଇ ପ୍ରଥମେ ରାଧାନାଥ ଉତ୍କଳୀୟମାନଙ୍କୁ ଅନ୍ୟ ଏକ ସ୍ୱାଦର ସାହିତ୍ୟ ପରିବେଷଣ କଲେ । ଅନୁକରଣ ଓ ଅନୁସରଣ ମଧ୍ୟ ଦେଇ ତାଙ୍କ କାବ୍ୟକୃତିଗୁଡ଼ିକ ରଚିତ ହୋଇଥିଲେ ମଧ୍ୟ, ସେଥିରେ ଯେ ମୌଳିକତା ଥିଲା, ଅସ୍ୱୀକାର କରାଯାଇ ନପାରେ । ମିଳନାନ୍ତକ କାବ୍ୟକୁଞ୍ଜରେ ସେ ପ୍ରଥମେ ଶୁଣାଇଲେ ବିରହର ବଂଶୀ । ରୀତିଯୁଗୀୟ ଓଡ଼ିଆ ସାହିତ୍ୟରେ କରୁଣ ରସର ଅଭାବ ନଥିଲେ ହେଁ କୌଣସି କାବ୍ୟର ପରିସମାପ୍ତି କରୁଣ ରସାଶ୍ରିତ ନଥିଲା । ଚରିତ୍ର ଚିତ୍ରଣ ମଧ୍ୟ ଥିଲା ଏକ ଟାଇପ୍‌ର । କାବ୍ୟର ବିଷୟବସ୍ତୁରେ କୌଣସି ଚମତ୍କାରିତ ବା ନୂତନତା ନଥିଲା । ସାଧାରଣ ଜନ ଜୀବନଠାରୁ ଏ କାବ୍ୟ ଥିଲା ଅନେକ ଦୂରବର୍ତ୍ତୀ । କିନ୍ତୁ ରାଧାନାଥ ପାଶ୍ଚାତ୍ୟ ସାହିତ୍ୟ ସଂସ୍ପର୍ଶରେ ଆସି କିଛିଟା ନୂତନ ଦୃଷ୍ଟିଭଙ୍ଗୀର ପରିଚୟ ଦେଲେ । ପ୍ରକୃତିକୁ ନୂଆ ରୂପରେ ଦେଖିବା, ଭାଷା ପ୍ରୟୋଗରେ ମିତବ୍ୟୟିତା, ଇତିହାସ ଓ କିମ୍ବଦନ୍ତୀରୁ ତଥ୍ୟ ସଂଗ୍ରହ କରି କାବ୍ୟରେ ପ୍ରୟୋଗ କରିବା କ୍ଷେତ୍ରରେ ରାଧାନାଥ ପ୍ରଥମ ସାର୍ଥକ ଶିଳ୍ପୀ । ଐତିହାସିକ ତଥ୍ୟ ଦୃଷ୍ଟିରୁ ତାଙ୍କର କାବ୍ୟକବିତା ପ୍ରମାଦପୂର୍ଣ୍ଣ ହୋଇପାରେ, କିନ୍ତୁ କଳାଗତ ମୂଲ୍ୟ ଦୃଷ୍ଟିରୁ ତାର ଏକ ସ୍ୱତନ୍ତ୍ର ଭୂମିକା ରହିଛି । ଉପଧାମିଳନ ଓ ଛନ୍ଦ ପ୍ରୟୋଗରେ ରାଧାନାଥଙ୍କ ବୈଶିଷ୍ଟ୍ୟ ସ୍ୱୀକାର୍ଯ୍ୟ । ପ୍ରଥମ ଅମିତ୍ରାକ୍ଷର ଛନ୍ଦର ପ୍ରୟୋଗ କର୍ତ୍ତା ନ ହେଲେ ମଧ୍ୟ ପ୍ରଥମ ସାର୍ଥକ ଅମିତ୍ରାକ୍ଷର ଛନ୍ଦର ପ୍ରୟୋଗ କର୍ତ୍ତା ଭାବରେ ସେ ପ୍ରଶଂସାର୍ହ ।

ରାଧାନାଥ ଅନେକ ବୈଶିଷ୍ଟ୍ୟର ଅଧିକାରୀ ହୋଇଥିଲେ ମଧ୍ୟ ଫକୀରମୋହନ ଏହି ସମୟର ଏକ ଅସାଧାରଣ ପ୍ରତିଭା । ରାଧାନାଥ ପାଶ୍ଚାତ୍ୟ ସାହିତ୍ୟ ଅନୁସରଣରେ ଯେଉଁ ନୂତନତାର ଭିତ୍ତିପ୍ରସ୍ତର ସ୍ଥାପନ କରିଥିଲେ, ସେହି ଭିତ୍ତି ପ୍ରସ୍ତର ଉପରେ ଫକୀରମୋହନ ଠିଆ କରାଇଥିଲେ ଓଡ଼ିଆ ସାହିତ୍ୟର ବିରାଟ ପ୍ରାସାଦ । ଗୀତ କବିତା କ୍ଷେତ୍ରରେ ରାଧାନାଥ ଯେଉଁ ମୌଳିକତାର ଅଧିକାରୀ ନଂଥିଲେ, ଫକୀରମୋହନ ଥିଲେ ତାର ସାର୍ଥକ ସ୍ରଷ୍ଟା । ସମାଜର ବିଭିନ୍ନ ବିଷୟବସ୍ତୁକୁ ନେଇ ଫକୀରମୋହନ ଯେଉଁ କାବ୍ୟ ସୌଧ ନିର୍ମାଣ କରିଛନ୍ତି ରାଧାନାଥ ଯୁଗରେ ତାର ତୁଳନା ନାହିଁ । ରାଧାନାଥଙ୍କ ବିଜାତୀୟ ପ୍ରେମ ଚିତ୍ରଣର ପ୍ରତିବାଦରେ ପ୍ରାଚ୍ୟ ସଂସ୍କୃତି ଅନୁସରଣରେ ଫକୀରମୋହନ ନିର୍ମଳ ପ୍ରେମର ମହତ୍ତ୍ୱ ପ୍ରତିପାଦନ କରିଛନ୍ତି । ସେ ପ୍ରେମକୁ ଦେଇଛନ୍ତି ସାମାଜିକ ସ୍ୱୀକୃତି ।

ସମାଜର ଅବହେଳିତ ଅପାଂକ୍ତେୟ ଚରିତ୍ରକୁ ନେଇ ପ୍ରଥମେ କବିତା ରଚନା କରିବାର ସାହସ ପ୍ରଦର୍ଶନ କରିଛନ୍ତି ଫକୀରମୋହନ । ପରଂପରାକୁ ଅନ୍ଧାନୁସରଣ କରୁଥିବା ତତ୍‌କାଳୀନ ସମାଜର ଶ୍ରେଷ୍ଠ ବ୍ୟକ୍ତିମାନଙ୍କୁ ସେ ସମାଲୋଚନା କରିବାକୁ ଛାଡ଼ିନାହାନ୍ତି । ଏହା ବ୍ୟତୀତ ଉନବିଂଶ ଶତାବ୍ଦୀରେ ଯେଉଁ ସାମାଜିକ ଆନ୍ଦୋଳନ ଦେଖା ଦେଇଥିଲା, ସେ ଥିଲେ ତାର ଦୃଢ଼ ସମର୍ଥକ । ବିଧବା ବିବାହ, ପାଶ୍ଚାତ୍ୟ ଶିକ୍ଷାର ଅନ୍ଧାନୁସରଣ ବିରୋଧରେ ସେ ପ୍ରତ୍ୟକ୍ଷ ଭାବରେ ସ୍ୱର ଉତ୍ତୋଳନ କରିଥିଲେ ।

ବ୍ୟଙ୍ଗ ସାହିତ୍ୟର ସ୍ରଷ୍ଟାଭାବରେ ଫକୀରମୋହନ ରାଧାନାଥଙ୍କ ଆଦର୍ଶ । ତାଙ୍କର 'ଉତ୍କଳ ଭ୍ରମଣଂ' ଓ 'ମୁଁ ହାଟ ବାହୁଡ଼ା' ବ୍ୟଙ୍ଗ ସାହିତ୍ୟର ଚମତ୍କାର ନିଦର୍ଶନ । ଏହା ବ୍ୟତୀତ ଉତ୍କଳର ବିଶିଷ୍ଟ ବ୍ୟକ୍ତିମାନଙ୍କ ଚରିତ୍ରକୁ ନେଇ ଏକ ଚରିତ କାବ୍ୟ ରଚନା କରିବା କ୍ଷେତ୍ରରେ ସେ ହେଉଛନ୍ତି ଏହି ଯୁଗର ପ୍ରଥମ ଓ ଶ୍ରେଷ୍ଠ ସ୍ରଷ୍ଟା । ମାନବେତର ତଥା ମାନବ ଚରିତ୍ର ଅଧ୍ୟୟନ କ୍ଷେତ୍ରରେ ଫକୀରମୋହନ ରାଧାନାଥ ଯୁଗର ଏକ ବିସ୍ମୟ ।

ସାହିତ୍ୟ ଯଦି ସମାଜ ଜୀବନର ଏକ ପ୍ରତିଫଳନ ହୁଏ– ଏ କ୍ଷେତ୍ରରେ ଫକୀରମୋହନ ସମସ୍ତ ଗୌରବର ଅଧିକାରୀ । ଗଦ୍ୟ ସାହିତ୍ୟ ରଚନା କ୍ଷେତ୍ରରେ ସେ କେବଳ ରାଧାନାଥ ଯୁଗରେ କାହିଁକି, ଏବେ ମଧ୍ୟ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ଅନତିକ୍ରମଣୀୟ । କଳସା ଚଉତିଶା, ହାସ୍ୟକଲ୍ଲୋଳ ଓ ଚତୁର ବିନୋଦ ଇତ୍ୟାଦିରେ ହାସ୍ୟରସର ପ୍ରୟୋଗ ଦେଖା ଦେଇଥିଲେ ମଧ୍ୟ ତାହା ନିର୍ମଳ ହାସ୍ୟରସ ପଦବାଚ୍ୟ ନୁହେଁ । ହାସ୍ୟରସକୁ ସମାଜ ସଂସ୍କାରର ଏକ ମାଧ୍ୟମ ଭାବରେ ଫକୀରମୋହନ ପ୍ରଥମ ସ୍ୱୀକୃତି ପ୍ରଦାନ କରିଛନ୍ତି । ସମାଜରେ ଘଟୁଥିବା ଏପରି କୌଣସି ଘଟଣା ନାହିଁ, ଯାହା ଫକୀରମୋହନଙ୍କ ଆଖିରେ ଧରା ନ ପଡ଼ିଛି । କଳାପାଇଁ କଳା ସୃଷ୍ଟି ନୁହେଁ- ଜୀବନ ପାଇଁ କଳା ସୃଷ୍ଟି ଥିଲା ତାଙ୍କର ଆଦର୍ଶ । ତେଣୁ ପଦମାଧୁର୍ଯ୍ୟ ଉପରେ ଗୁରୁତ୍ୱ ନ ଦେଇ, ଜୀବନକୁ ଠିକ୍ ଭାବରେ ଦେଖି ଦେଖାଇବାର ଉଦ୍ଦେଶ୍ୟ ନିହିତ ଥିବାରୁ ଅନେକ ସମୟରେ ତାଙ୍କ କବିତାଗୁଡ଼ିକ ଶ୍ରୁତିକଟୁ ହୋଇଥାଏ । ତଥାପି ତାଙ୍କର ପ୍ରତ୍ୟେକ କବିତାର ଯେ ଏକ ସାମାଜିକ ମୂଲ୍ୟ ରହିଛି ଏହା ଭୁଲିଗଲେ ଚଳିବ ନାହିଁ । ଗଦ୍ୟସାହିତ୍ୟ, ବ୍ୟଙ୍ଗ ସାହିତ୍ୟ, ଗୀତିକବିତା, ଜୀବନଚରିତ, ଅନୁବାଦ, ପାଠ୍ୟପୁସ୍ତକ ରଚୟିତା ପ୍ରତ୍ୟେକ କ୍ଷେତ୍ରରେ ଫକୀରମୋହନ ନିଜର ବୈଶିଷ୍ଟ୍ୟ ପ୍ରତିପାଦନ କରିଛନ୍ତି ।

## ଯୁଗସ୍ରଷ୍ଟା କହିବାର ତାତ୍ପର୍ଯ୍ୟ

ସାଧାରଣତଃ ରାଧାନାଥଙ୍କୁ ଆଧୁନିକ ଯୁଗର ସ୍ରଷ୍ଟା ସମ୍ମାନରେ ସମ୍ମାନିତ କରାଯାଇଥାଏ । କାରଣ ସେ ପ୍ରଥମେ ଛନ୍ଦ ସଂଯୋଜନା, ବିଷୟବସ୍ତୁ, ପ୍ରକୃତି ଚିତ୍ରଣ

ପ୍ରଭୃତି ଅନେକ କ୍ଷେତ୍ରରେ ନୂତନତାର ବାର୍ତ୍ତାବହ । କିନ୍ତୁ ଟିକେ ସୂକ୍ଷ୍ମ ଦୃଷ୍ଟିକୋଣ ନେଇ ବିଚାର କଲେ, ରାଧାନାଥଙ୍କ ଅପେକ୍ଷା ଫକୀରମୋହନ ଯେ, ଯୁଗସ୍ରଷ୍ଟା ଆସନ ପାଇବାର ହକ୍‌ଦାର ଏକଥା ସ୍ପଷ୍ଟ ହୋଇଯାଇଥାଏ । ଐତିହାସିକମାନଙ୍କ ମତବାଦର ବିରୋଧ କରି ନୁହେଁ, ସାହିତ୍ୟ କ୍ଷେତ୍ରରେ ଯାହା ସତ୍ୟ ତାହାହିଁ ପ୍ରତିପାଦନ କରିବା ଉକ୍ତ ଆଲୋଚନାର ଲକ୍ଷ୍ୟ । ଅନେକ ସମୟରେ ଭାବପ୍ରବଣତାର ବଶବର୍ତ୍ତୀ ହୋଇ ସମାଲୋଚକ କେତେକ ମତପ୍ରଦାନ କରିଥାନ୍ତି, ଯାହା ପରବର୍ତ୍ତୀ ସମୟରେ ବିନା ପରୀକ୍ଷା ନିରୀକ୍ଷାରେ ସାର୍ବଜନୀନ ସତ୍ୟଭାବରେ ଗୃହୀତ ହୋଇଯାଇଥାଏ । ଏହି ଭ୍ରାନ୍ତି ସାହିତ୍ୟର କିମ୍ବା ସାହିତ୍ୟ ସ୍ରଷ୍ଟାଙ୍କର ପ୍ରକୃତ ମୂଲ୍ୟାୟନ କ୍ଷେତ୍ରରେ ବାଧା ସୃଷ୍ଟି କରିଥାଏ । କୌଣସି ଗୋଟିଏ ସ୍ରଷ୍ଟାଙ୍କୁ ଯୁଗସ୍ରଷ୍ଟା ଆଖ୍ୟା ଦେବାପୂର୍ବରୁ ତା'ର ଉପଯୁକ୍ତ ମୂଲ୍ୟାୟନ ବିଧେୟ । ଯୁଗର ପ୍ରବୃତ୍ତି, ମୌଳିକତା ଓ ନୂତନତାକୁ ନେଇ ମୁଖ୍ୟତଃ ସ୍ରଷ୍ଟାଙ୍କ ସୃଷ୍ଟିକୁ ଆଲୋଚନା କରାଯାଇଥାଏ । ଏକଥା ସତ୍ୟ ଯେ, ପୃଥିବୀର କୌଣସି କବି ସଂପୂର୍ଣ୍ଣ ରୂପେ ମୌଳିକ ସ୍ରଷ୍ଟା ନୁହନ୍ତି । ପ୍ରତ୍ୟକ୍ଷରେ ହେଉ ବା ପରୋକ୍ଷରେ ହେଉ, ଭାବ ଦୃଷ୍ଟିରୁ ହେଉ ବା ଭାଷାଦୃଷ୍ଟିରୁ ହେଉ ପ୍ରତ୍ୟେକ ସାହିତ୍ୟ ସ୍ରଷ୍ଟା କିଛି ପରିମାଣରେ ଋଣୀ । ଏହି ଦୃଷ୍ଟିରୁ ରାଧାନାଥଙ୍କୁ ଯୁଗସ୍ରଷ୍ଟା କହିବା କେତେଦୂର ଯୁକ୍ତିଯୁକ୍ତ ତାହା ସମାଲୋଚକମାନେ ହିଁ ବିଚାର କରିବେ ।

ଓଡ଼ିଆ ସାହିତ୍ୟରେ ଆଧୁନିକ ଯୁଗର ସୂତ୍ରପାତ ପୂର୍ବରୁ ଦୀର୍ଘ ଦୁଇଶତ ବର୍ଷ ଧରି ରୀତିଯୁଗ ସାହିତ୍ୟର ପ୍ରଭାବ ଓଡ଼ିଶାର ଜନମାନସକୁ ଆନ୍ଦୋଳିତ କରି ଆସିଥିଲା । ଏକ ନୂତନ କାବ୍ୟଶୈଳୀ ବା କାବ୍ୟଧାରାର ପ୍ରଚଳନ, ପୂର୍ବବର୍ତ୍ତୀ ସାହିତ୍ୟର ଅନୁସରଣ ନ କରି ସଂପୂର୍ଣ୍ଣ ଏକ ନୂତନ ସାହିତ୍ୟ ସୃଷ୍ଟି- ଜଣେ ସ୍ରଷ୍ଟାଙ୍କୁ ଯୁଗସ୍ରଷ୍ଟାର ଆସନ ଦେଇଥାଏ । ଏହି ଦୃଷ୍ଟିକୋଣରୁ ବିଚାର କଲେ, ରାଧାନାଥ ଜଣେ ଯୁଗସ୍ରଷ୍ଟା କି ? ରୀତିଯୁଗର ଶ୍ରେଷ୍ଠକବି କବିସମ୍ରାଟ ଉପେନ୍ଦ୍ରଭଞ୍ଜ । ରାଧାନାଥ ରୀତିଯୁଗୀୟ ପ୍ରଭାବରୁ ସଂପୂର୍ଣ୍ଣ ମୁକ୍ତ ନୁହନ୍ତି । ବରଂ ରୀତି ଯୁଗର ଶେଷ ରଶ୍ମି ହେଉଛନ୍ତି କବିବର ରାଧାନାଥ ରାୟ । ଉପେନ୍ଦ୍ର ଭଞ୍ଜଙ୍କୁ ରୀତିଯୁଗର ମଧ୍ୟାହ୍ନ ମାର୍ତ୍ତଣ୍ଡ ରୂପେ ପରିକଳ୍ପନା କରାଗଲେ, ରାଧାନାଥ ନିଶ୍ଚିତରୂପେ ଅସ୍ତଗାମୀ ରବି, ରୀତିଯୁଗୀୟ ଶେଷରଶ୍ମିର ଆଲୋକରେ ଆଲୋକିତ କବି ରାଧାନାଥ । ରାଧାନାଥ ଏକ ନୂତନ ପରଂପରା ସୃଷ୍ଟି କରିନାହାନ୍ତି । ବରଂ ସେହି ପରଂପରା ଯେତେବେଳେ ଅସ୍ତମିତ ହୋଇ ଆସୁଥିଲା, ରାଧାନାଥ ତାକୁ ଆଉ ଟିକେ ଜଳାଇ ଦେଇଛନ୍ତି । ଅନ୍ୟ ଅର୍ଥରେ କହିଲେ ରାଧାନାଥଙ୍କଠାରୁ ହିଁ ଓଡ଼ିଆ ସାହିତ୍ୟରେ ରୀତିଯୁଗର ପରଂପରା ଲୋପ ପାଇଛି । ରାଧାନାଥ ଉପେନ୍ଦ୍ରଭଞ୍ଜଙ୍କ ଦ୍ୱାରା ଗଭୀର ଭାବରେ ପ୍ରଭାବିତ । ନିଜେ ରାଧାନାଥ ସ୍ୱୀକାର କରିଛନ୍ତି– "ଭଞ୍ଜକବିଙ୍କୁ ମ୍

ମୋହର ଏକମାତ୍ର ଶିକ୍ଷା ଗୁରୁ ଜ୍ଞାନ କରି ଭକ୍ତି କରିଆସିଅଛି। ମୁଁ ଯେ କେବଳ ବାହ୍ୟତଃ ତାହାଙ୍କ ପ୍ରତି ଭକ୍ତି ଦେଖାଇଅଛି, ତାହା ନୁହେଁ। କାର୍ଯ୍ୟତଃ ଭକ୍ତି ଦେଖାଇବାରେ ଅନେକ ନିଦର୍ଶନ ମୋହର ନିଜ ପ୍ରକାଶିତ ପଦ୍ୟରୁ ସଂକଳିତ ହୋଇପାରେ। ମୋହଠାରୁ ଭଞ୍ଜଙ୍କର ଅଧିକ ଅନୁଗାମୀ ପଦ୍ୟ ଲେଖକ ଅଳ୍ପ ବାହାରିବେ।[୨୪] ତେଣୁ ରୀତିଯୁଗର ଶେଷ କବି ଭାବରେ ରାଧାନାଥଙ୍କୁ ଗ୍ରହଣ କରାଯିବାରେ କୌଣସି ଅସୁବିଧା ନାହିଁ।

ରୀତିଯୁଗର କାବ୍ୟର ନାୟକ ନାୟିକାମାନଙ୍କ ପରି ରାଧାନାଥଙ୍କ କାବ୍ୟର ନାୟକ ନାୟିକା ଉଚ୍ଚବଂଶଜ। ସେମାନେ ଶାପଭ୍ରଷ୍ଟ ହୋଇ ମର୍ତ୍ତ୍ୟରେ ଜନ୍ମଗ୍ରହଣ କରିବାପରି ରାଧାନାଥଙ୍କ ନାୟକ ନାୟିକାମାନେ ମଧ୍ୟ ଶାପଭ୍ରଷ୍ଟ ହୋଇ ମର୍ତ୍ତ୍ୟରେ ଜନ୍ମ ନେଇଛନ୍ତି। ନାୟକ ଓ ନାୟିକାର ରୂପ ବର୍ଣ୍ଣନାରେ ରାଧାନାଥ ରୀତିଯୁଗୀୟ କବିମାନଙ୍କୁ ଅନୁସରଣ କରିଛନ୍ତି। ଭାଷା ପ୍ରୟୋଗରେ ରାଧାନାଥଙ୍କ ସ୍ୱାତନ୍ତ୍ୟ ଥିଲେ ମଧ୍ୟ ରୀତିଯୁଗୀୟ ତତ୍‌ସମ ଶବ୍ଦାବଳୀର ପ୍ରୟୋଗକୁ ସଂପୂର୍ଣ୍ଣ ପରିତ୍ୟାଗ କରିପାରି ନାହାନ୍ତି। ପରିସମାପ୍ତିରେ ମଧ୍ୟ ରାଧାନାଥ ସଂପୂର୍ଣ୍ଣ ମୌଳିକ ନୁହନ୍ତି। ଲାବଣ୍ୟବତୀର ବାଞ୍ଛାବତୀ କନ୍ୟାର ପରିଣତି ପରି ରାଧାନାଥଙ୍କ କାବ୍ୟର ନାୟିକାମାନଙ୍କର ପରିଣତି।

ଜଣେ ଯୁଗସ୍ରଷ୍ଟାର ଏପରି ଏକ ଗୌରବ ରହିବା ଉଚିତ, ଯାହା ସାହିତ୍ୟ କ୍ଷେତ୍ରରେ ସଂପୂର୍ଣ୍ଣ ଏକ ନୂତନ ପରଂପରା ସୃଷ୍ଟି କରିପାରିବ। ରାଧାନାଥ ସେପରି କୌଣସି ନୂତନ ପରଂପରା ସୃଷ୍ଟି କରିପାରିନାହାନ୍ତି, ଯାହା ତାଙ୍କ ପରବର୍ତ୍ତୀ କବିମାନଙ୍କର ଏକ ବିଶିଷ୍ଟ ଆଦର୍ଶ ହୋଇ ରହିବା କଥା। ରାଧାନାଥ ନିଜ ପରଂପରାର ବିଲୟ ନିଜେ ସ୍ୱଚକ୍ଷୁରେ ଦେଖିଛନ୍ତି। ସେ ଯେଉଁ କାବ୍ୟ ପରଂପରା ସୃଷ୍ଟି କରିଥିଲେ, ତାର ଉତ୍ତରଦାୟାଦ ପ୍ରାୟ କେହି ନଥିଲେ, ଯାହା ତାଙ୍କୁ ଯୁଗସ୍ରଷ୍ଟା ଭାବରେ ଅଭିହିତ କରିପାରିବ।

କିନ୍ତୁ ଫକୀରମୋହନ ଏ କ୍ଷେତ୍ରରେ ନୂତନ ପରଂପରା ସୃଷ୍ଟି କରିପାରିଛନ୍ତି, ଯାହା ତାଙ୍କର ତିରୋଧାନ ପରେ ମଧ୍ୟ ଅନେକ ବର୍ଷପର୍ଯ୍ୟନ୍ତ ଓଡ଼ିଆ ସାହିତ୍ୟରେ ଏକ ଆଦର୍ଶ ଭାବରେ ମୁଣ୍ଡଟେକି ରହିପାରିଥିଲା। ଏ କ୍ଷେତ୍ରରେ ଫକୀରମୋହନଙ୍କର ଅନ୍ୟ ଏକ ବୈଶିଷ୍ଟ୍ୟ ହେଲା, ସେ ପୂର୍ବବର୍ତ୍ତୀ କାବ୍ୟକାରମାନଙ୍କୁ ଅନୁସରଣ କରିନାହାନ୍ତି କିମ୍ବା ସେମାନଙ୍କ ଦ୍ୱାରା ପ୍ରଭାବିତ ହୋଇନାହାନ୍ତି। ଫକୀରମୋହନ ଯେଉଁ ପରଂପରା ସୃଷ୍ଟି କରିଗଲେ, ତାଙ୍କ ପରେ ଓଡ଼ିଶାର ଅନେକ କବି ତାଙ୍କଦ୍ୱାରା ପ୍ରଭାବିତ ହୋଇପାରିଥିଲେ। ଏଣୁ ରାଧାନାଥଙ୍କ ଅପେକ୍ଷା ଫକୀରମୋହନ ଯଥେଷ୍ଟ ମୌଳିକତାର ଅଧିକାରୀ ଓ ସେହି ସୂତ୍ରରେ ସେ ଯୁଗସ୍ରଷ୍ଟା ଆସନ ପାଇବାକୁ ହକ୍‌ଦାର। ସମାଲୋଚକ ସୁରେନ୍ଦ୍ର ମହାନ୍ତି ଯଥାର୍ଥରେ କୁହନ୍ତି– "ଫକୀରମୋହନ ଥିଲେ, ଓଡ଼ିଆ କବିତା ବା

ପଦ୍ୟ ସାହିତ୍ୟରେ ଏକ ନୂତନ ଧାରାର ପ୍ରବର୍ତ୍ତକ ଓ ସେହି ସୂତ୍ରରେ ଜଣେ ଯୁଗସ୍ରଷ୍ଟା । ପୁଣି ରାଧାନାଥ ଯୁଗ କାବ୍ୟ ପରଂପରାର ପ୍ରମୂର୍ତ୍ତ ପ୍ରତିବାଦ । ନନ୍ଦକିଶୋର, ଗୋବିନ୍ଦ ରଥଙ୍କଠାରୁ ଆରମ୍ଭକରି ପଦ୍ମଚରଣ ଓ ସତ୍ୟବାଦୀ ଗୋଷ୍ଠୀର କବି ଗୋଦାବରୀଶଙ୍କ ପର୍ଯ୍ୟନ୍ତ ବହୁ କବି ଫକୀରମୋହନଙ୍କ ଶୈଳୀଦ୍ୱାରା ପ୍ରଭାବିତ ହୋଇଛନ୍ତି– ଅସ୍ୱୀକାର କରିହେବ ନାହିଁ ।"(୨୫)

ଗୀତିକବିତା ରଚନା କ୍ଷେତ୍ରରେ ଫକୀରମୋହନ ଓଡ଼ିଆ ସାହିତ୍ୟରେ ନୂତନ ପରଂପରାର ପ୍ରବର୍ତ୍ତକ । କର୍ମମୟ ଜୀବନର ବିଚିତ୍ର ଅନୁଭୂତିକୁ ସମ୍ବଳକରି ସେ ଯେଉଁ କବିତା ରଚନା କରିଥିଲେ, ପରବର୍ତ୍ତୀ ସମୟରେ ଓଡ଼ିଶାର ଅନେକ କବି ତାକୁ ଆଦର୍ଶ ଭାବରେ ଗ୍ରହଣ କରିନେଇ କବିତା ରଚନା କରିଛନ୍ତି । ଫକୀରମୋହନଙ୍କ ଉତ୍କଳଭୂମି, କୋଇଲି ନାନୀ, ଚାଷୀର ଆନନ୍ଦ, ବୁଢ଼ାହରିଣ କଥା, ବାଲ୍ୟବିଧବା ଆଦି କବିତାଦ୍ୱାରା ପ୍ରଭାବିତ ହୋଇ ନନ୍ଦକିଶୋର ଜନ୍ମଭୂମି (ଶର୍ମିଷ୍ଠା), ପିକ, ଉତ୍କଳକୃଷକ, ହରିଣ ଭାଇ, କୁଜିକାଉ, ବାଲ୍ୟବିଧବା ଆଦି କବିତା ରଚନା କରିଛନ୍ତି । ଏପରିକି ସତ୍ୟବାଦୀ ଯୁଗର ବିଶିଷ୍ଟ କବି ଗୋଦାବରୀଶ ମିଶ୍ରଙ୍କ ସାୟାହ୍ନ ଭାବନା ଓ ଅନ୍ୟ କେତେକ କବିତାରେ ଫକୀରମୋହନଙ୍କ ପ୍ରଭାବ ସୁସ୍ପଷ୍ଟ ।

ଫକୀରମୋହନ ଯେଉଁ ବ୍ୟଙ୍ଗ କାବ୍ୟର ପରଂପରା ସୃଷ୍ଟି କରିଥିଲେ, ତଦ୍ୱାରା ଓଡ଼ିଶାର ଅନେକ କବି ପ୍ରଭାବିତ ହୋଇଥିଲେ ବୋଲି ମନେ ହୋଇଥାଏ । ଏପରିକି ରାଧାନାଥ 'ଦରବାର' ବ୍ୟଙ୍ଗ କାବ୍ୟ ରଚନା କରିବା ସମୟରେ ଫକୀର ମୋହନଙ୍କୁ ନିଜର ଆଦର୍ଶ ଭାବରେ ଗ୍ରହଣ କରିଥିବା ଅସମ୍ଭବ ନୁହେଁ । 'ମୁଁ ହାଟ ବାହୁଡ଼ା' କବିତା ଅବଲମ୍ବନରେ ଗୋବିନ୍ଦ ରଥ 'ଫ୍ୟୁଚର ସାହେବ' କବିତା ରଚନା କରିଛନ୍ତି । ତାଙ୍କର ଜାତୀୟବାଦୀ କବିତା ଓ କୃଷକ ଜୀବନ ଉପରେ ଆଧାରିତ କବିତା ଅବଲମ୍ବନରେ କବି ଗଙ୍ଗାଧର କୃଷକ କବିତା ଓ କେତେକ ଜାତୀୟବାଦୀ କବିତା ରଚନା କରିଛନ୍ତି ।

ଭାଷାଦୃଷ୍ଟିରୁ ବିଚାରାଲୋଚନା କଲେ, ଫକୀରମୋହନ ଯେ ପୂର୍ବବର୍ତ୍ତୀ କବିଙ୍କଦ୍ୱାରା ଆଦୌ ପ୍ରଭାବିତ ନୁହନ୍ତି, ଏହା ସୁସ୍ପଷ୍ଟ । ଗାଉଁଲୀ ଭାଷାକୁ ପ୍ରଥମ ସାହିତ୍ୟିକ ମର୍ଯ୍ୟାଦା ଦେବାରେ ଫକୀରମୋହନଙ୍କ ଅବଦାନ ସ୍ୱୀକାର୍ଯ୍ୟ । ତତ୍‌ସମ ଶବ୍ଦ ପରିବର୍ତ୍ତେ ଦେଶଜ ଶବ୍ଦ ପ୍ରୟୋଗ କରି ଓଡ଼ିଆ ସାହିତ୍ୟରେ ସେ ଅନ୍ୟ ଏକ ପରଂପରା ସୃଷ୍ଟି କରିବାକୁ କ୍ଷମ ହୋଇପାରିଛନ୍ତି । ମଧ୍ୟଯୁଗୀୟ କାବ୍ୟ ପରଂପରା ତ୍ୟାଗପୂର୍ବକ, ସମାଜ ଜୀବନକୁ ଅନୁଶୀଳନ କରିବା କ୍ଷେତ୍ରରେ ଫକୀରମୋହନ ପ୍ରଥମ ଓଡ଼ିଆ କବି ।

ସମାଲୋଚକଙ୍କ ଭାଷାରେ "ରୂପ ଓ ରସଧର୍ମୀ ମଧ୍ୟଯୁଗୀୟ କାବ୍ୟ ପରଂପରା ପରିହାର କରି ଫକୀରମୋହନଙ୍କ କବିତା ସର୍ବପ୍ରଥମେ ସମାଜରେ ସବୁ ଶୋଷଣ, ଅତ୍ୟାଚାର ଓ ଅବିଚାର ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିଥିଲା । ଫକୀରମୋହନଙ୍କ ଉପନ୍ୟାସ ଓ କ୍ଷୁଦ୍ରଗଳ୍ପ ପରି କବିତା ମଧ୍ୟ ଥିଲା ଜୀବନଧର୍ମୀ ।"[୨୬] ଫକୀରମୋହନ ଓଡ଼ିଆ ସାହିତ୍ୟରେ ଅନେକ ନୂତନ ପରଂପରାର ଆବିଷ୍କାରକ । ସେଥିପାଇଁ ଫକୀରମୋହନଙ୍କୁ ଯୁଗସ୍ରଷ୍ଟା ଆସନ ପ୍ରଦାନ କରିବା ଯଥୋଚିତ ହେବ ।

## ଉପସଂହାର

ଫକୀରମୋହନଙ୍କ ଅନନ୍ୟ ସାଧାରଣ ପ୍ରତିଭା ବହୁମୁଖୀ । ଉଭୟ କବିତାର ଆତ୍ମିକ ଓ ଆଙ୍ଗିକ କ୍ଷେତ୍ରରେ ସେ ଯେଉଁ ପରିବର୍ତ୍ତନ ସାଧନ କରିଛନ୍ତି, ତାହା ବାସ୍ତବିକ ଲକ୍ଷଣୀୟ । କବିତାର ଉପାଦାନ ସର୍ବତ୍ର ବିରାଜମାନ– ଏହି ବାସ୍ତବ କଥାକୁ ସେ ତାଙ୍କର କବିତା ମାଧ୍ୟମରେ ପ୍ରମାଣିତ କରିଯାଇଛନ୍ତି । କବିତା ରଚନାପାଇଁ ଉପାଦାନ ଅନୁସନ୍ଧାନ କରିବା ଅନାବଶ୍ୟକ । କାରଣ ଆମ ଚତୁର୍ଦ୍ଦିଗରେ କବିତାର ଉପାଦାନ ସୁଲଭ । ସାଧାରଣ ବିଷୟବସ୍ତୁକୁ ନେଇ ଅସାଧାରଣ କବିତା ରଚନା କରିବାରେ ଫକୀରମୋହନଙ୍କର ବାହାଦୂରୀ ନିହିତ । ଶୋକ କବିତା, ରୂପକ କବିତା, ଗାଥା କବିତା, ଚତୁର୍ଦ୍ଦଶପଦୀ କବିତା- ପ୍ରତ୍ୟେକ କ୍ଷେତ୍ରରେ ତାଙ୍କର ସ୍ୱାତନ୍ତ୍ର୍ୟ ବିରାଜମାନ । ରାଧାନାଥ ପରଂପରା ଅନୁସରଣ କରି ସାମାନ୍ୟ ନୂତନତା ଅନୁସରଣ କରୁଥିବା ସମୟରେ, ଫକୀରମୋହନ ପରଂପରା ଠାରୁ ଦୂରରେ ରହି ଏକ ସ୍ୱତନ୍ତ୍ର ନୂତନ ସାହିତ୍ୟ ରଚନାରେ ବ୍ରତୀ ଥିଲେ । ଏହି ନୂତନତା ପରବର୍ତ୍ତୀ ସମୟରେ ଫକୀରମୋହନଙ୍କୁ ଏକ ବିଶିଷ୍ଟ ସାହିତ୍ୟସ୍ରଷ୍ଟା ଭାବରେ ସମ୍ମାନିତ କରିପାରିଛି । ଭାଷା, ଭାବ- ପ୍ରତ୍ୟେକ ଦୃଷ୍ଟିରୁ ଫକୀରମୋହନ ସ୍ୱତନ୍ତ୍ରତାର ଅଧିକାରୀ । ସମାଜକୁ ଟିକିନିଖି କରି ଦେଖିବାର ଇଚ୍ଛା ତାଙ୍କୁ ଏକ ମହାନ ସ୍ରଷ୍ଟା ଭାବରେ ଗଢ଼ି ତୋଳିଛି । ବାସ୍ତବତାର ରୂପକାର ଫକୀରମୋହନ ଓଡ଼ିଆ ସାହିତ୍ୟରେ ଯେ ଏକ ଯୁଗସ୍ରଷ୍ଟା, ଏକଥା ସ୍ୱୀକାର କରାଯାଇପାରେ ।



# ସହାୟକ ସୂଚୀ

୧. Literature has always been a most precise reflection of the society which produced to it. × × ×
Literature and Reality - By Howard Fast. Page-1. People's Publishing House Ltd. New Delhi-1955.

୨. The Lyrics at its best represents the highest flight of poetry. A good lyric should be short, simple in expression and it should express some personal emotion.
A History of English Literature. Vol-I. W.R. Goodman. P-12. Doaba House, Book Sellers and Publishers Delhi. 2nd Edition.

୩. They tell a story and are usually rather long. The poet suggests the setting characters and events and gives them meaning. Epics and Ballads are among the foremost kinds of narrative poetry.
A History of English Literature. Vol-I. By W.R. Goodman, Page-12.

୪. ଝଙ୍କାର-ଫେବୃଆରୀ ୧୯୭୮ ।
ଓଡ଼ିଆ ଲୋକଗାଥାରେ ଉପମା ଓ ରୂପକ - ଡଃ ଶ୍ୟାମସୁନ୍ଦର ମହାପାତ୍ର, ପୃ. ୯୦୫ ।

୫. The ballad is another kind of tale in verse. Its subjects are the universal themes of war and love often the supernatural element is present. In style it is often simple, almost primitive.
A History of English Literature - Vol. I.
By W.R. Goodman. Page-22.

୬. ଓଡ଼ିଆ ସାହିତ୍ୟର ଇତିହାସ - ସୂର୍ଯ୍ୟ ନାରାୟଣ ଦାସ । ପୃ.-୨୯ । ୧ମ ଭାଗ । ଗ୍ରନ୍ଥମନ୍ଦିର-୧୯୬୮ ।

୭. ନେପୋଲିୟନ ବୋନାପାର୍ଟ (ଆବ୍‌ଟ) ଅନୁବାଦ - ଚୌଧୁରୀ ନୀଳକଣ୍ଠ ଦାସ । ୨ୟ ଭାଗ ୧୨୮୪-୯୮ । ଉତ୍କଳ ବିଶ୍ୱବିଦ୍ୟାଳୟ-୧୯୬୪ ।

୮. ରବୀନ୍ଦ୍ର ରଚନାବଳୀ - ୭ମ ଖଣ୍ଡ । ପୃ.-୨୮ । ବିଶ୍ୱଭାରତୀ, ବଙ୍କିମଚାଟର୍ଜୀ ଷ୍ଟ୍ରୀଟ, କଲିକତା ।

୯. History of English Literature-Vol. I W.R. Goodman, Page-21.

୧୦. ସାହିତ୍ୟ ଦୃଷ୍ଟି- ଡଃ ଭାବଗ୍ରାହୀ ମିଶ୍ର। ୧ମ ପ୍ର.-୧୯୭୦। ପୃ.-୧୭। ଫ୍ରେଣ୍ଡସ୍ ପବ୍ଲିଶର୍ସ୍।

୧୧. On Poetry and Poets - T.S. Eliot-1957. Page-37 Faber and Faber London.

୧୨. ସାହିତ୍ୟ ଦୃଷ୍ଟି - ଡଃ ଭାବଗ୍ରାହୀ ମିଶ୍ର। ୧ମ ପ୍ର.-୧୯୭୦। ପୃ.-୨୧।

୧୩. ଏଜନ୍-ପୃ-୨୬।

୧୪. ଜୀବନ ମରଣେ ତୁମ୍ଭେ ଶାନ୍ତିର ସଦନ
ସାଧନାର ଧନ ପ୍ରଭୋ! ତୁମ୍ଭେ ମୋ ଶରଣ
× × ×
ମୋହର ପ୍ରାର୍ଥନା ନାହିଁ - ବିନାଶ, ମଙ୍ଗଳ
ପ୍ରାର୍ଥନା କରୁଛି ତୁମ୍ଭ କରୁଣା କେବଳ
ଆହେ ମହାପ୍ରଭୋ! ଧାରି ତବ ଶ୍ରୀଚରଣ
ତନୁ, ମନ, ପ୍ରାଣ ସର୍ବ କଲି ସମର୍ପଣ ॥ (ହରିସର୍ବସ୍ୱ)

ଫ.ମୋ. ଗ୍ରନ୍ଥାବଳୀ। ୧ମ ଭାଗ। ପୃ-୩୨୬।

୧୫. The social application of the term which Aulus is adapting has to do with one's liability to pay taxes, a classic is a writer, so to speak, in the surtax class. Aulus added that classic would need to be of some antiquity-naturally they have to come before you if you are to use them as models.

The classic - Frank kermode- Page-15.

Faber and Faber. 3 Queen Square, London-1975.

୧୬. Romanticism Generally speaking is the expression in terms of art of sharpened sensibility and heightened imaginative feeling.

The Teach yourself History of English Literature. (The Romantic Revival) - Page-9. Ed. by Peter Westland-Vol.IV The English Universities Press Ltd. London-1950.

୧୭. କିପାଇଁ ସୁଖ ଆଶା ଜନ୍ମଇ ମନେ ?
ତୃପ୍ତ ତ ହେଲା ନାହିଁ କେବେ ଜୀବନେ ।
× × ×
ଯାହାକୁ କରିଥିଲି ଜୀବନ ଆଶ
ଛାଡ଼ି ଯିବାରୁ ମୋତେ କରି ନିରାଶ
ଏତେଦିନେ ମୋହର ଜନ୍ମିଲା ଜ୍ଞାନ
ଜଗତ ନୁହେଁ ପୂର୍ଣ୍ଣ ସୁଖର ସ୍ଥାନ । (ଜଗତ ନୁହେଁ ପୂର୍ଣ୍ଣ ସୁଖର ସ୍ଥାନ)
ଫ. ମୋ. ଗ୍ରନ୍ଥାବଳୀ । ୧ମ ଭାଗ । ପୃ.-୨୫୬ ।

୧୮. କି ଧନ ସେ ଥିଲା ଯାଇଛି ହଜି
ଦିବାନିଶି ହୁଏଁ ଯା ନାମ ଭଜି
× × ×
କି ଧନ ପାଇଲେ ତାକୁ ଭୁଲିବି
ଖୋଜି ନ ପାଇଲି ଗୋଟା ପୃଥିବୀ
ଯେତେଦିନ ଥିବ ପିଣ୍ଡରେ ପ୍ରାଣ
ଧରିଥିବି ଦୁଃଖ ସଙ୍ଗୀତ ତାନ
(ହଜିଲା ଧନ)
ଫ. ମୋ. ଗ୍ରନ୍ଥାବଳୀ । ୧ମ ଭାଗ । ପୃ. ୩୫୧ ।

୧୯. ପାସୋରିବା ପାଇଁ ଯେତେ କଲେହେଁ ଯତନ
ଦିବାନିଶି ମନେପଡ଼େ ସେ ହାସ୍ୟ ବଦନ
ଏକ ଆତ୍ମା ଭିନ୍ନ ଦେହ ଥିଲୁଁ ଦୁଇଜଣ
ଛିନ୍ନ ହୋଇ ନଥିଲାତ ପ୍ରୀତିର ବନ୍ଧନ ।
ଭିନ୍ନ ହୁଏ ଯାହା ଯାଉଥାଏ ଭାସି ଭାସି
ଛାଡ଼ି କି ପାରିବ ଯାହା ଯାଇଅଛ ମିଶି । (ପାସୋରିବା)
ଫ.ମୋ. ଗ୍ରନ୍ଥାବଳୀ । ୧ମ ଭାଗ । ପୃ.-୨୫୮ ।

୨୦. କଳ୍ପନାର ଅଭିଷେକ - ଡଃ ପ୍ରତିଭା ଶତପଥୀ । ପୃ.-୧୧୩
ଓଡ଼ିଶା ବୁକ୍‌ଷ୍ଟୋର, ବିନୋଦ ବିହାରୀ, କଟକ-୧୯୮୨ ।

୨୧. The great Romantists were × × also realists, but among the lesser spirits Romanticism always generates a certain tendency to exaggeration and aloofness from the condition of ordinary life.

The Teach yourself History of English Literature. Ed by- Peter Westland. Vol-IV, Page-II. The English Universities Press Ltd. London-1950.

୨୨. ଅନିତ୍ୟ ଭଙ୍ଗୁର ଦେହ ଅଟେ ଦୁହିଁଙ୍କର
ମାତ୍ର ଦୁହିଁଙ୍କର ଆତ୍ମା, ଅକ୍ଷୟ ଅମର
ଅନିତ୍ୟ ପାର୍ଥିବ ମାୟା କରିଛ ମୋଚନ
ଶିଥିଳ ହେବାର ନୁହେଁ ଆତ୍ମାର ବନ୍ଧନ
× × ×
କଳ୍ପନା ଅତୀତ କାଳ ଗଗନ ପ୍ରାଙ୍ଗଣେ
ଉଜ୍ଜ୍ୱଳ ନକ୍ଷତ୍ର ରୂପେ ଥିବୁ ଦୁଇଜଣେ
× × ×
ଅନନ୍ତ ଅନନ୍ତ କାଳ ଯାଇଅଛି ବହି
କାଳାଂତୀତ କାଳଯାଏଁ ଥିବୁ ପୁଣି ରହି
ଆତ୍ମାରେ ଜଡ଼ିତ ଆତ୍ମା ମନେ ଲଗ୍ନ ମନ
ହୃଦୟେ ହୃଦୟ ମେଳ ଦୁଶ୍ଛେଦ୍ୟ ବନ୍ଧନ । (ମେଲାଣି)

ଫ.ମୋ. ଗ୍ରନ୍ଥାବଳୀ - ୧ମ ଭାଗ । ପୃ. -୩୩୨ ।

୨୩. ଯେ ରୂପରେ ଯେ ସ୍ଥାନରେ ଥାନ୍ତୁ ସେ ଯେସନେ
ଭେଟାଭେଟି ହେବ ଆତ୍ମା ଆତ୍ମା ଆକର୍ଷଣେ । (ପୁନର୍ମିଳନ)

ଫ.ମୋ. ଗ୍ରନ୍ଥାବଳୀ । ୧ମ ଭାଗ । ପୃ.-୩୫୦ ।

୨୪. ଓଡ଼ିଆ ଓ ନବସମ୍ବାଦ - ୫।୨।୧୯୮୪ ।

୨୫. ଓଡ଼ିଆ ସାହିତ୍ୟର କ୍ରମ ବିକାଶ - ସୁରେନ୍ଦ୍ର ମହାନ୍ତି । ପୃ.-୨୮୭-୮୮ ।
୧ମ ପ୍ରକାଶ-୧୯୭୮ । ଅଗ୍ରଦୂତ, କଟକ-୨ ।

୨୬. ଏଜନ-ପୃ-୨୮୯ ।

# ଉପସଂହାର

ଓଡ଼ିଆ ସାହିତ୍ୟରେ ବ୍ୟାସକବି ଫକୀରମୋହନ ଗଦ୍ୟ ସାହିତ୍ୟର ସ୍ରଷ୍ଟା ଭାବରେ ଯେତିକି ପରିଚିତ କବିତା କ୍ଷେତ୍ରରେ ସେପରି ନୁହଁନ୍ତି । କାରଣ ଏପର୍ଯ୍ୟନ୍ତ ତାଙ୍କର କାବ୍ୟ ଓ କବିତା ଗୁଡ଼ିକର ଉପଯୁକ୍ତ ମୂଲ୍ୟାଙ୍କନ କରାଯାଇପାରିନାହିଁ । ଯାହାବି ଆଲୋଚନା ହୋଇଛି, ତାଙ୍କ କବି ପ୍ରତିଭା ତୁଳନାରେ ସାମାନ୍ୟ ମାତ୍ର । ମୋର ଏହି ପୁସ୍ତକଟି ବିଶେଷ ଭାବରେ ଫକୀରମୋହନଙ୍କର କବି ପ୍ରତିଭାର ମୂଲ୍ୟାଙ୍କନ ପାଇଁ ଉଦ୍ଦିଷ୍ଟ ।

କେଉଁ ପରିବେଶ ଓ ପରିସ୍ଥିତିରୁ ସାହିତ୍ୟିକ ଫକୀରମୋହନଙ୍କର ଜନ୍ମ ବିଶେଷ ଭାବରେ ପ୍ରାଥମିକ ସ୍ତରରେ ତାର ଆଲୋଚନା କରାଯାଇଛି । ନ'ଅଙ୍କ ଦୁର୍ଭିକ୍ଷ ଓ ଭାଷା ସୁରକ୍ଷା ଆନ୍ଦୋଳନ ଏ ଜାତିର ଆର୍ଥିକ ମେରୁଦଣ୍ଡ ଭାଙ୍ଗି ଦେଇଥିଲେ ମଧ୍ୟ ଏକ ନୂତନ ଜାତୀୟତା ବୋଧଯେ ଏ ଦେଶର ଜନସାଧାରଣଙ୍କ ମନରେ ଉଦ୍ରେକ କରିଛି କହିବା ବାହୁଲ୍ୟମାତ୍ର । ଏକ ପାର୍ଶ୍ୱରେ ଏହି ପ୍ରାକୃତିକ ବିପର୍ଯ୍ୟୟ ଓ ବଙ୍ଗାଳୀମାନଙ୍କ ଚକ୍ରାନ୍ତ ଓଡ଼ିଶାବାସୀଙ୍କ ପାଇଁ ଅଭିଶାପ ହୋଇଥିବା ବେଳେ, ଅପର ପକ୍ଷରେ ଏହାଆଶୀର୍ବାଦ ଭାବରେ କାମ କରିଛି । ଏହି ପରିସ୍ଥିତି ଜନ୍ମଦେଇଛି ଫକୀରମୋହନଙ୍କୁ ପାଠ୍ୟପୁସ୍ତକ ପ୍ରଣୟନ ପାଇଁ, ଭାଷା ଓ ସାହିତ୍ୟର ସୁରକ୍ଷା ପାଇଁ, ଛାପାକଳ ପ୍ରତିଷ୍ଠା ପାଇଁ ।

ଫକୀରମୋହନ ଓଡ଼ିଆ ସାହିତ୍ୟରେ ଗଦ୍ୟ କ୍ଷେତ୍ରରେ ଯେପରି ନୂତନ ଶୈଳୀ ଓ ବିଷୟର ଆବିଷ୍କାରକ, କବିତା କ୍ଷେତ୍ରରେ ମଧ୍ୟ ଅନେକ ନୂତନତାର ପ୍ରଚାରକ । ଚତୁର୍ଦ୍ଦଶ ପଦୀ କବିତା, ଗାଥା କବିତା, ଗୀତିକବିତା ପ୍ରଭୃତି ଅନେକ କ୍ଷେତ୍ରରେ ସେ ନୂତନତାର ଦିଗ୍‌ଦର୍ଶକ । ସେ ଥିଲେ ଜୀବନବାଦୀ କବି । ସାହିତ୍ୟ ଯେ ଜୀବନ ପାଇଁ ଉଦ୍ଦିଷ୍ଟ,ଏହା ସେ ଭଲଭାବରେ ଉପଲବ୍ଧି କରିଥିଲେ । ତେଣୁ ମଧ୍ୟଯୁଗୀୟ କଳ୍ପନା ପ୍ରବଣତା ଠାରୁ ଦୂରରେ ରହି ସେ ସୃଷ୍ଟି କରିଯାଇଛନ୍ତି ବାସ୍ତବବାଦୀ ସାହିତ୍ୟ । ଗଦ୍ୟ ସାହିତ୍ୟ କ୍ଷେତ୍ରରେ ଯେପରି ତାଙ୍କର ଲେଖାର ସୀମା ସହରଠାରୁ ଗାଁର ପୋଖରୀତୁଠ ପର୍ଯ୍ୟନ୍ତ ଲମ୍ବିଯାଇଛି, କବିତା କ୍ଷେତ୍ରରେ ମଧ୍ୟ ସେହିପରି ତାଙ୍କ ଲେଖା ଇତିହାସ,

କିମ୍ବଦନ୍ତୀଠାରୁ ଆରମ୍ଭ କରି ଗାଁର ମୂରୁଖ ଚଷାର ଦୀନହୀନ ଅବସ୍ଥା ପର୍ଯ୍ୟନ୍ତ ପରିବ୍ୟାପ୍ତ । ସଂସାରରେ ଏପରି କୌଣସି କଥା ନାହିଁ, ଯାହା ତାଙ୍କ କବିତାରେ ରୂପ ନପାଇଛି ।

କ୍ଲାସିକ୍ କବିତାର ପ୍ରାଣ ହୁଏ ଯଦି ଏକ ଚିରନ୍ତନ ଆବେଦନର ପରିପ୍ରକାଶ, ତେବେ ଫକୀରମୋହନଙ୍କର ଏପରି କେତେ ଗୁଡ଼ିଏ କବିତା ଅଛି, ଯାହା କ୍ଲାସିକ୍ କବିତା ଅନ୍ତର୍ଭୁକ୍ତ ହୋଇପାରିବ । ବିରହୀ ହଳଦୀବସନ୍ତ, କପୋତ ସଙ୍ଗୀତ ପ୍ରଭୃତି କବିତାଗୁଡ଼ିକରେ ଏହି ଆବେଦନ ଚିର ଉଜ୍ଜ୍ୱଳ । କବି ମାତ୍ରେହିଁ ରୋମାଣ୍ଟିକ, ରୋମାଣ୍ଟିକ ନହେଲେ କବି ହେବା ସମ୍ଭବ ନୁହେଁ । କିଛିଟା କଳ୍ପନା ଅତିରଞ୍ଜନ କବିତାରେ ନ ରହିଲେ, କବିତା ହୋଇଥାଏ ଶୁଷ୍କ, ନୀରସ । ତେଣୁ କବିତା କିଛି ପରିମାଣରେ ଆନନ୍ଦ ଦେବା ଉଚିତ । ନଚେତ୍ କବିତା ପାଠକର ସଂଖ୍ୟା ନିହାତି ସୀମିତ ହୋଇପଡ଼ିବ । ଫକୀରମୋହନ କବିତା ରଚନା କରିବା ସମୟରେ କିଛି ପରିମାଣରେ କଳ୍ପନା ଓ ଅତିରଞ୍ଜନର ଆଶ୍ରୟ ନେଇଛନ୍ତି । ସେଇଥିପାଇଁ ତାଙ୍କ କବିତାଗୁଡ଼ିକ ଅନେକ ପରିମାଣରେ ପାଠକଙ୍କ ହୃଦୟ ଜୟ କରିବାକୁ ସମର୍ଥ ହୋଇପାରିଛି ।

କବିତା ରଚନା କରିବା ଏକ ସ୍ୱର୍ଗୀୟ ଆଶୀର୍ବାଦ ବୋଲି ଫକୀରମୋହନ ଗ୍ରହଣ କରିପାରିନାହାଁନ୍ତି । କବି ଭାବ ସମସ୍ତଙ୍କର ଥାଏ । ମାତ୍ର କେତେଜଣ ତାକୁ ପରିପ୍ରକାଶ କରିପାରନ୍ତି ଓ ଅନ୍ୟ କେତେଜଣ ତାକୁ ପରିପ୍ରକାଶ କରିପାରି ନଥାନ୍ତି । କାରଣ ପ୍ରକୃତିର ବିଭିନ୍ନ ସୁଷମା, ରୂପ ବୈଭବ, ସମାଜ ଜୀବନର ଚାଲିଚଳନ, କାର୍ଯ୍ୟ କଳାପ ପ୍ରତ୍ୟେକ ବ୍ୟକ୍ତିର ମନରେ କିଛି ନା କିଛି ପ୍ରତିକ୍ରିୟା ସୃଷ୍ଟି କରିଥାଏ । ଏହି ପ୍ରତିକ୍ରିୟା ଯେତେବେଳେ ଏକ ନିର୍ଦ୍ଦିଷ୍ଟ ରୂପ ନେଇ କଳାତ୍ମକ ଭାବରେ ପ୍ରକାଶ ଲାଭ କରେ, ସେତେବେଳେ ତାହା ହୁଏ କବିତା । ହୁଏତ ସମସ୍ତ ବ୍ୟକ୍ତି ଏହି ପ୍ରକାଶ କରିବାର ଗୁଣର ଅଧିକାରୀ ହୋଇନଥାନ୍ତି । ସେଇଥିପାଇଁ ସମସ୍ତେ କବି ଭାବରେ ପରିଚିତ ଲାଭ କରିପାରନ୍ତି ନାହିଁ । କିନ୍ତୁ ଏହି ଭାବର ଅଧିକାରୀ ପ୍ରତ୍ୟେକ ମାନବ; ସେଥିପାଇଁ ଫକୀରମୋହନ ଜଗତର ସମସ୍ତ ବ୍ୟକ୍ତି କବି ବୋଲି ଘୋଷଣା କରିଥିଲେ ।

ଫକୀରମୋହନଙ୍କ ପ୍ରତ୍ୟେକ କବିତା ମୌଳିକ କବିତା ନୁହେଁ । ସେ ଅନେକ ସମୟରେ ବଙ୍ଗୀୟ କବି ରବୀନ୍ଦ୍ରନାଥ ଠାକୁର, ମଧୁସୂଦନ ଦତ୍ତ ଓ ନବୀନଚନ୍ଦ୍ରଙ୍କ ଦ୍ୱାରା ପ୍ରଭାବିତ ହୋଇଛନ୍ତି । ପ୍ରସଙ୍ଗକ୍ରମେ ସେ କେଉଁ କେଉଁ କବିତା ଉପରୋକ୍ତ କବିମାନଙ୍କ ଦ୍ୱାରା ପ୍ରଭାବିତ ହୋଇ ରଚନା କରିଛନ୍ତି, ତାହା ଦେଖାଇ ଦିଆ ହୋଇଛି । ସେହିପରି ବୌଦ୍ଧାବତାର କାବ୍ୟ ରଚନା ସମୟରେ ସେ ନବୀନଚନ୍ଦ୍ରଙ୍କ ଦ୍ୱାରା ଗଭୀର ଭାବରେ ପ୍ରଭାବିତ ହୋଇଛନ୍ତି । ଏପରିକି ନବୀନଚନ୍ଦ୍ରଙ୍କ 'ଅମିତାଭ' କାବ୍ୟର ଅନେକ ପଦ

ସହିତ 'ବୌଦ୍ଧାବତାର କାବ୍ୟର ଏକାଧିକ ପଦ ଅବିକଳ ମିଳିଯାଉଛି। ଉକ୍ତ କାବ୍ୟର ମୁଖବନ୍ଧରେ ଫକୀରମୋହନ ନାମୋଲ୍ଲେଖ କରିନଥିଲେ ମଧ୍ୟ, ସେ ଯେଉଁ ପତ୍ରିକା ଓ ବଙ୍ଗଳା ପୁସ୍ତକ ଅଧ୍ୟୟନ କରି କାବ୍ୟଟି ରଚନା କରିଛନ୍ତି, ସେହି ପୁସ୍ତକ ନିଶ୍ଚିତ ଭାବରେ ନବୀନଚନ୍ଦ୍ର ସେନଙ୍କ 'ଅମିତାଭ'। 'ଅମିତାଭ' କାବ୍ୟଟି ପୁସ୍ତକାକାରରେ ପ୍ରକାଶ ଲାଭ କରିବା ପୂର୍ବରୁ ଏହାର କେତେକ ପରିଚ୍ଛେଦ 'ଜନ୍ମଭୂମି' ନାମକ ଏକ ପତ୍ରିକାରେ ପ୍ରକାଶ ଲାଭ କରିଥିଲା। ଫକୀରମୋହନ ଯେଉଁ ପତ୍ରିକା ବିଷୟ ଉଲ୍ଲେଖ କରିଛନ୍ତି ଏଇ ପତ୍ରିକାଟି ହେଉଛି ସେହି ପତ୍ରିକା।

ଫକୀରମୋହନଙ୍କ କବିତା ସଂସାର ଆଲୋଚନା କଲାବେଳେ ଆଉ କେତୋଟି ନୂଆ କଥା ଦେଖାଯାଇଥାଏ। ଊନବିଂଶ ଶତାବ୍ଦୀରେ ଓଡ଼ିଶାର ଏକ ନିଛକ ଛବି ଆମେ ତାଙ୍କ ବିଭିନ୍ନ କବିତାଗୁଡ଼ିକରୁ ପାଇଥାଉ। ଚିରସ୍ଥାୟୀ ବନ୍ଦୋବସ୍ତ ଦ୍ୱାରା ଜମି ଉପରେ ମାଲିକାନା ସ୍ୱତ୍ୱର ଆରୋପ ଦ୍ୱାରା ଓଡ଼ିଶାର ଗରୀବ କୃଷକ ସମାଜ ଅନେକ ପରିମାଣରେ କ୍ଷତିଗ୍ରସ୍ତ ହୋଇଥିଲା। ପୂର୍ବରୁ ଜମି ବିକ୍ରୟ ବ୍ୟବସ୍ଥା ପ୍ରାୟ ନଥିଲା। କିନ୍ତୁ ମାଲିକାନା ସ୍ୱତ୍ୱଦ୍ୱାରା, ସାମାନ୍ୟ କୌଣସି ଅସୁବିଧା ପାଇଁ ମଧ୍ୟ କୃଷକମାନେ ଜମି ବିକ୍ରୟ କରିବାକୁ କୁଣ୍ଠାବୋଧ କରୁନଥିଲେ, ଯଦ୍ଦ୍ୱାରା ଗରୀବ ଅଧିକ ଗରୀବ ହେବାକୁ ଲାଗିଲେ ଓ ବଡ଼ଲୋକ ଧନୀ ହେବାକୁ ଲାଗିଲେ। ବିଶେଷ ଭାବରେ ବଙ୍ଗାଳୀ ଜମିଦାର ତଥା ଶିକ୍ଷିତ ବଙ୍ଗାଳୀ କର୍ମଚାରୀ ଏହା ଦ୍ୱାରା ଲାଭବାନ ହୋଇଥିଲେ।

ଊନବିଂଶ ଶତାବ୍ଦୀରେ ସମଗ୍ର ପୃଥିବୀରେ ଯେତେବେଳେ ଜାତୀୟ ଚେତନାର ବିକାଶ ଘଟିଥିଲା, ସ୍ୱାଧୀନତା ଲାଭ କରିବାକୁ ଯେତେବେଳେ ସମଗ୍ର ପୃଥିବୀ ବ୍ୟାକୁଳ ହୋଇଉଠି ଯୁଦ୍ଧ କ୍ଷେତ୍ରକୁ ଶିଶୁଠାରୁ ଆରମ୍ଭ କରି ବୃଦ୍ଧ ପର୍ଯ୍ୟନ୍ତ ଛୁଟି ଯାଉଥିଲେ, ସେତେବେଳେ ଭାରତ ଇଂରେଜ ଶାସନ ଅଧୀନରେ ରହି ସ୍ୱାଧୀନତାର ସ୍ୱପ୍ନ ପର୍ଯ୍ୟନ୍ତ ଦେଖୁନଥିଲା। ଫକୀରମୋହନ କେତେଗୁଡ଼ିଏ ଜାତୀୟ ଚେତନା ମୂଳକ କବିତା ରଚନା କରି ଭାରତର ଐତିହ୍ୟ ଓ ପରମ୍ପରା ପ୍ରତି ଏ ଜାତିର ଜନସମାଜକୁ ସଚେତନ କରାଇ ଦେଇଛନ୍ତି। ସୁପ୍ତଜାତିକୁ ଜାଗ୍ରତ କରିବାକୁ ହେଲେ ଜାତୀୟତାମୂଳକ କବିତାର ଯେ ପ୍ରୟୋଜନ ରହିଛି, ଏହା ସେ ଠିକ୍ ମର୍ମେ ମର୍ମେ ଅନୁଭବ କରିଥିଲେ। ସେଥିପାଇଁ 'ରଷ ଜାପାନ' ପ୍ରଭୃତି କବିତା ଗୁଡ଼ିକରେ ସେ ଦେଶର ଆବାଳ ବୃଦ୍ଧବନିତାଙ୍କର ଜାତିପ୍ରୀତିର ଉଦାହରଣ ଦେଇଛନ୍ତି।

ଇତିହାସ ଓ କିମ୍ବଦନ୍ତୀରୁ ଉପାଦାନ ସଂଗ୍ରହ କରି ଫକୀରମୋହନ କେତେକ କବିତା ରଚନା କରିଛନ୍ତି। ସୁସ୍ଥ ସମାଜ ଗଠନ ପାଇଁ ଯେଉଁ ଐତିହାସିକ ଉପାଦାନଗୁଡ଼ିକର

ଆବଶ୍ୟକତା ରହିଛି, ସେ କେବଳ ମାତ୍ର ସେତିକି ହିଁ ଗ୍ରହଣ କରିଛନ୍ତି । ତେଣୁ ଇତିହାସରେ ଯେଉଁ ନାରୀମାନଙ୍କ ବିଶେଷ ଅବଦାନ ରହିଛି, ସେମାନଙ୍କ କାର୍ଯ୍ୟକଳାପ ଓ ଜୀବନ ଉପରେ ଫକୀରମୋହନ କେତେକ କବିତା ରଚନା କରିଛନ୍ତି । ପୁରୁଷ ପ୍ରଧାନ ସମାଜରେ ନାରୀମାନଙ୍କୁ ଏକସ୍ୱତନ୍ତ୍ର ଆସନ ଦେବାହିଁ ଥିଲା ତାଙ୍କର ଉଦ୍ଦେଶ୍ୟ । ନାରୀଙ୍କୁ ଅବମାନନା କଲେ ପୁରୁଷ ସମାଜ ଯେ ସମୂଳେ ଧ୍ୱଂସ ହୋଇଯାଇପାରେ ଏହିକଥା ସ୍ପଷ୍ଟ ଭାବେ ପ୍ରକାଶ କରିଛନ୍ତି, ସତୀ ଲୁକ୍ରେସିୟା ଆଦି କବିତାରେ ।

ପଶୁପକ୍ଷୀ ଓ ଇତର ଜାତୀୟ ପ୍ରାଣୀଙ୍କ ଜୀବନଙ୍କୁ ନେଇ କବିତା ରଚନା କରିବା କ୍ଷେତ୍ରରେ ଫକୀରମୋହନ ହେଉଛନ୍ତି ଓଡ଼ିଆ ସାହିତ୍ୟରେ ପ୍ରଥମ ବ୍ୟକ୍ତି । ନିହାତି କ୍ଷୁଦ୍ରପଦାର୍ଥ ଏପରିକି ବୃକ୍ଷଲତାଙ୍କ ଉପରେ ମଧ୍ୟ ସେ କବିତା ରଚନା କରିବାକୁ ଛାଡ଼ିନାହାଁନ୍ତି । ପ୍ରକୃତିର ବିଭିନ୍ନ ଉପାଦାନ ତଥା ମାଟିଗୋଡ଼ି ପର୍ଯ୍ୟନ୍ତ ତାଙ୍କ କବିତାରେ ସ୍ଥାନ ପାଇଛି । ଆମର ନିତିଦିନିଆ ଘଟଣା, ଯାହା ସାଧାରଣ ଆଖିରେ କୌଣସି ପ୍ରତିକ୍ରିୟା ସୃଷ୍ଟି କରିନପାରେ, ତାକୁ ନେଇ ଫକୀରମୋହନ ସୁନ୍ଦର ସୁନ୍ଦର କବିତା ରଚନା କରିଛନ୍ତି । ପୂର୍ବରୁ ଫକୀରମୋହନଙ୍କର ଏହି ଦିଗଟି ପ୍ରତି ଆଦୌ ଆଲୋଚନା ହୋଇନାହିଁ । ତାଙ୍କର ପ୍ରତ୍ୟେକ କବିତା ଅନ୍ତରାଳରେ ଏକ ନିର୍ଦ୍ଦିଷ୍ଟ ଉଦ୍ଦେଶ୍ୟ ନିହିତ । ସମାଜ ଜୀବନକୁ କୀଟଦୃଷ୍ଟ କରିପାରେ ଏପରି କୌଣସି କବିତା ଆମେ ତାଙ୍କ ଶତାଧିକ କବିତା ମଧ୍ୟରୁ ପାଇପାରିବା ନାହିଁ ।

ମଧ୍ୟଯୁଗଠାରୁ ଆଧୁନିକ ଯୁଗ ପର୍ଯ୍ୟନ୍ତ 'ପ୍ରେମ'କୁ ଉପଜୀବ୍ୟ କରି ଅନେକ କବିତା ରଚନା କରାଯାଇଛି । କିନ୍ତୁ ଫକୀରମୋହନଙ୍କର ପ୍ରେମ କବିତା ଏକ ଭିନ୍ନ ସ୍ୱାଦର । ସେ ପ୍ରେମର ନବରୂପକାର । ପ୍ରେମ କେବଳ ଦେହସହିତ ଦେହର ମିଳନରେ ନୁହେଁ, ଅଦେହୀ ସହିତ ଆତ୍ମାର ମିଳନରେ ହିଁ ପ୍ରକୃତ ପ୍ରେମ ପ୍ରତିଷ୍ଠିତ । ସେ ଏକାଧିକ ପ୍ରେମ କବିତା ରଚନା କରିଥିଲେ ମଧ୍ୟ କୌଣସି ଗୋଟିଏ କବିତାରେ ଶୃଙ୍ଗାର ବାସନା ନାହିଁ । ଏପରିକି ପଶୁପକ୍ଷୀ ଓ ବୃକ୍ଷଲତାଙ୍କୁ ନେଇ ସେ ପ୍ରେମ କବିତା ରଚନା କରିବାକୁ ଛାଡ଼ିନାହାନ୍ତି । କିନ୍ତୁ ପ୍ରତ୍ୟେକ କବିତାରେ ଆଦର୍ଶ ପ୍ରେମ ହିଁ ପ୍ରତିଷ୍ଠିତ । ଆତ୍ମାର ପ୍ରକୃତ ମିଳନ ହିଁ ପ୍ରେମ, ପ୍ରେମ ଦେହାତୀତ । ବିରହୀ ହଳଦୀବସନ୍ତ, ସାହାଡ଼ା ଗଛର କ୍ରନ୍ଦନ ଇତ୍ୟାଦି କବିତାରେ ଏହି ଭାବ ପ୍ରକଟିତ ।

ଊନବିଂଶ ଶତାବ୍ଦୀରେ ଭାରତରେ ଯେଉଁ ବ୍ରାହ୍ମ ଆନ୍ଦୋଳନ ଦେଖାଦେଇଥିଲା, ତଦ୍ଦ୍ୱାରା ପ୍ରଭାବିତ ହୋଇ ଫକୀରମୋହନ କେତେକ କବିତା ରଚନା କରିଛନ୍ତି । ସମାଜରେ ପ୍ରଚଳିତ କୁସଂସ୍କାର ବିରୋଧରେ ପ୍ରଥମେ ବ୍ରାହ୍ମମାନେ ହିଁ ସ୍ୱର ଉତ୍ତୋଳନ

କରିଥିଲେ । ଓଡ଼ିଶାରେ ଫକୀରମୋହନ ପ୍ରଥମେ କବିତା ମାଧ୍ୟମରେ ସମାଜ ସଂସ୍କାର କରିବାକୁ ପ୍ରୟାସ କରିଥିଲେ । ସମାଜରେ ପ୍ରଚଳିତ ବିଧବା ବିବାହ ସପକ୍ଷରେ ସେ ସ୍ୱର ଉତ୍ତୋଳନ କରିଥିଲେ । ବାଲ୍ୟ ବିଧବା, ଚନ୍ଦ୍ରପ୍ରଭାର ନିର୍ଜଳା ଏକାଦଶୀ ପ୍ରଭୃତି କବିତାରେ ସେ ପ୍ରଥମ କରି ବ୍ରାହ୍ମଣମାନଙ୍କ ବିରୋଧରେ ସ୍ୱର ଉତ୍ତୋଳନକରିବା ସଙ୍ଗେ ସଙ୍ଗେ ବିଧବା ବିବାହକୁ ସମର୍ଥନ କରିଥିଲେ ।

ଶିଶୁ କବିତା ରଚନା କ୍ଷେତ୍ରରେ ମଧ୍ୟ ଫକୀରମୋହନଙ୍କ ଅବଦାନକୁ ଅସ୍ୱୀକାର କରାଯାଇନପାରେ । ସେ ଶିଶୁ କବିତା ମାଧ୍ୟମରେ ଶିଶୁମାନଙ୍କୁ ସୁମାର୍ଗରେ ପରିଚାଳିତ କରିବାକୁ ନିର୍ଦ୍ଦେଶ ଦେଇଛନ୍ତି । ପଲ୍ଲୀର ବିଭିନ୍ନ ଉପାଦାନକୁ ନେଇ ପଲ୍ଲୀ କବିତା ରଚନା କରିବା କ୍ଷେତ୍ରରେ ସେ ନନ୍ଦକିଶୋରଙ୍କ ଅଗ୍ରଜ । ଇଂରାଜୀ ଶିକ୍ଷାର ବଶବର୍ତ୍ତୀ ହୋଇ ତତ୍‌କାଳୀନ ଶିକ୍ଷିତ ଯୁବଗୋଷ୍ଠୀଙ୍କ ପାଶ୍ଚାତ୍ୟ ଶିକ୍ଷାର ଅନ୍ଧାନୁସରଣକୁ ବ୍ୟଙ୍ଗ କରି ସେ 'ମୁ ହାଟ ବାହୁଡ଼ା' ପ୍ରଭୃତି କବିତା ରଚନା କରିଛନ୍ତି ।

ଫକୀରମୋହନ ଚତୁର୍ଦ୍ଦଶ ପଦୀ କବିତା ତଥା ଗାଥା କବିତାର ଜଣେ ସଫଳ ସ୍ରଷ୍ଟା । ଓଡ଼ିଆ ସାହିତ୍ୟରେ ବିୟୋଗାନ୍ତକ କାବ୍ୟର ଧାରା ଫକୀରମୋହନଙ୍କ ପୂର୍ବରୁ ପ୍ରଚଳିତ ଥିଲେ ମଧ୍ୟ ଶୋକ କବିତା ରଚନା କରି ସାହିତ୍ୟର ଏହି ବିଭାଗଟିକୁ ବଳିଷ୍ଠ କରିଛନ୍ତି । ଏହାଛଡ଼ା ସମାଜରେ ରଣନୀତି, ସମବାୟ ସମିତି ପ୍ରଭୃତିର ନିୟମାବଳୀକୁ ସେ କବିତାକାରରେ ପ୍ରକାଶ କରିଛନ୍ତି ।

ଫକୀରମୋହନ କେତେକ ଜୀବନଦର୍ଶନ ମୂଳକ କବିତା ମଧ୍ୟ ରଚନା କରିଛନ୍ତି । ଏହି କବିତାଗୁଡ଼ିକରେ ବିଶେଷ ଭାବରେ ମାନବ ଜୀବନର କ୍ରିୟାକଳାପ ଓ ପରିଣାମ ସମ୍ପର୍କରେ ଆଲୋଚନା କରାଯାଇଛି । ଜୀବନକୁ ସେ ଏକ ନିର୍ବିକାର ଦୃଷ୍ଟି ଭଙ୍ଗୀ ନେଇ ଦେଖିଛନ୍ତି ଓ ସୁମାର୍ଗର ସନ୍ଧାନ ଦେଇଛନ୍ତି । ଫକୀରମୋହନ ନାସ୍ତିକ ନଥିଲେ । କିନ୍ତୁ ଧର୍ମ ନାମରେ ଧର୍ମାନ୍ଧତାକୁ ସେ ତୀବ୍ର ବିରୋଧ କରୁଥିଲେ । ସେ ଅନେକ ଆଧ୍ୟାତ୍ମିକ ମୂଳକ କବିତା ରଚନା କରିଛନ୍ତି । ଯେଉଁଥିରେ ଈଶ୍ୱରଙ୍କ ପ୍ରତି ଦୃଢ଼ ବିଶ୍ୱାସ ଓ ବାର୍ଦ୍ଧକ୍ୟଜନିତ ନିଃସଙ୍ଗତା ଭାବ ଫୁଟିଉଠିଛି ।

ଗଦ୍ୟ ସାହିତ୍ୟ ଅପେକ୍ଷା ପଦ୍ୟ ସାହିତ୍ୟରେ ଫକୀରମୋହନଙ୍କ ବ୍ୟକ୍ତିଗତ ଜୀବନର ଚିତ୍ର ଅଧିକ ପ୍ରତିଫଳିତ । ସେ ଯେଉଁ କଥା ତାଙ୍କର କ୍ରାନ୍ତିକାରୀ ଗଦ୍ୟ ସାହିତ୍ୟରେ କହିପାରି ନାହାନ୍ତି, ଅନେକ ରୂପକ ଓ ପ୍ରତୀକ ମାଧ୍ୟମରେ ତାକୁ ସେ ପଦ୍ୟ ସାହିତ୍ୟରେ ପରିସ୍ଫୁଟ କରିଛନ୍ତି । ଏଣୁ ଫକୀରମୋହନଙ୍କ ସମଗ୍ର ଜୀବନର ଅନୁଭୂତି, ଆଶାଆକାଂକ୍ଷା ତାଙ୍କର କବିତାଗୁଡ଼ିକରେ ସୁନ୍ଦର ଭାବରେ ପ୍ରକାଶ ଲାଭ କରିଛି ।

'ଉତ୍କଳ ଭ୍ରମଣଂ' କାବ୍ୟ ଫକୀରମୋହନଙ୍କ ଏକ ଅଭିନବ ଭ୍ରମଣ ବୃତ୍ତାନ୍ତ କାବ୍ୟ । ସେ ପ୍ରଥମ ଥର ପାଇଁ ଓଡ଼ିଶାର ଗୁଣୀ ଓ ବରପୁତ୍ର ମାନଙ୍କର ଜୀବନକୁ ନେଇ ଏକ କାବ୍ୟ ରଚନା କରିବାର ପ୍ରୟାସ କରିଛନ୍ତି । ବୋଧହୁଏ ବର୍ତ୍ତମାନ ପର୍ଯ୍ୟନ୍ତ ଅନ୍ୟ କୌଣସି କବି ଏତେ ଲୋକଙ୍କ ଜୀବନୀକୁ ନେଇ କୌଣସି କାବ୍ୟ ଓଡ଼ିଆ ସାହିତ୍ୟରେ ରଚନା କରିନାହାନ୍ତି । ଊନବିଂଶ ଶତାବ୍ଦୀର ଶିକ୍ଷା, ସାମାଜିକ ଇତିହାସ ପ୍ରଭୃତି ଆମେ ଯଦି ଅନୁସନ୍ଧାନ କରିବାକୁ ଯିବା, ତେବେ ଏକମାତ୍ର ଉତ୍କଳ ଭ୍ରମଣଂ କାବ୍ୟହିଁ ଏ କ୍ଷେତ୍ରରେ ଆମକୁ ସାହାଯ୍ୟ କରିପାରିବ ।

ଫକୀରମୋହନଙ୍କ କାବ୍ୟ ସଂସାର ବୈଚିତ୍ର୍ୟମୟ । ଅନୁବାଦଠାରୁ ଆରମ୍ଭ କରି ମୌଳିକ କାବ୍ୟ ସୃଷ୍ଟି ପର୍ଯ୍ୟନ୍ତ ପ୍ରତ୍ୟେକ କ୍ଷେତ୍ରରେ ସେ ଅନନ୍ୟ ସାଧାରଣ ପ୍ରତିଭାର ଅଧିକାରୀ । ହୁଏତ ତାଙ୍କ ଗଦ୍ୟ ସାହିତ୍ୟ ତୁଳନାରେ ପଦ୍ୟ ସାହିତ୍ୟ କିଛି ପରିମାଣରେ ନ୍ୟୂନ ହୋଇପାରେ । ତଥାପି ଏହାର ଏକ ସାମାଜିକ ମୂଲ୍ୟ ରହିଛି । ଏଣୁ ଫକୀରମୋହନଙ୍କ କବି ପ୍ରତିଭାର ମୂଲ୍ୟାୟନ ଯେ ଏକାନ୍ତ ଆବଶ୍ୟକ କହିବା ଅନାବଶ୍ୟକ ।



# ପୁସ୍ତକ ସୂଚୀ

## ଇଂରାଜୀ

1. A background to the study of English literature. By B. Prasad. Macmillan publication-1973.
2. A History of English literature - By W.R. Goodman Vol-I. 2nd revised Edition. Doaba House. Book Sellers and Publishers, 1688, Naisarak, Delhi.
3. A History of Orissa - By W.W. Hunter. Andrew Sterling. John Beams & N. K. Sahoo. Vol.-I. Bharatiya Publishing House. Jawahar Nagar, Delhi-1980.
4. A literary History of India - By R.W. Frazer, 3rd Edition, 1915. London.
5. A New Study of English Poetry. By Henry Newbolt. constable and co. London-1919.
6. An introduction to the study of Literature. By William Henry Hudson. 8th Edition - 1978 Kalyani Publishers, New Delhi.
7. A preface to Eighteenth Century Poetry - By James Sutherland, 4th Edition 1975.
8. Aristotle Theory of Poetry and Fine Arts Translated with Critical Notes. General Introduction. Biographical Notes. By S.H. Butcher, Gunter Ralts and Henry Thomas Reprinted. 1981. Kalyani Publishers Ludhiana.
9. A share History of English Literature by Emile Legouis. Translated by V. F. Boyson & J. Coulson, Reprinted 1976. Oxford Press, great Britain.
10. Aspects of Indian Poetics. By Dr. V. Raghvan May 1969. Ministry of Information & Broadcaasting Govt. of India.
11. Assamese literature. By Hem Barua.
National Book Trust - 1965.

12. Bengl Distrit Gazetters. Balasore. 1907.
13. Bengli Literature - By J. C. Ghosh.
14. Contemporary studies - Charles Baudouin, George Allen & Unwin. London-1924.
15. Critical Approaches to Literature - By David Daiches Grean and Co. Ltd. 9th Edition 1967.
16. Critical Idioms - Romanticism - L.R. Furst Methuen & Co. Ltd.-1971.
17. Encyclopaedia of America - Vol. 19.
18. Encyclopaedia of Britanica - Vol. 15.
19. English Romantic Poets - E664 - M.H. Abrams 3rd Edition - 1968. Oxford University Press.
20. Foundation of British Orissa. B.C. Ray Ed. 1960. New Students Store, Cuttack.
21. History of English Literature-Vol. II. (1798-1966) By W.R. Goodman 2nd Revised Edition Doaba House, Book Sellers and Publishers 1688 Naisarak, Delhi.
22. History of Indian Literature - M. Winternitz Vol.-II, Part-I. Translated by Subhadra Jhamolilal, Banarasi Das Bunaloud Road - Jawahar Nagar, Delhi-7. 1963.
23. History of Orissa - Dr. N. K. Sahoo, Dr. P. K. Mishra, D.R. J. K. Sahoo, 1st Edition-1979. Nalanda Publication,Cuttack 2.
24. History of Orissa - By R. D. Banarjee, Vol-II, Publication 1980. Bharatiya Publishing House Jawahar Nagar, Delhi.
25. History of Orissa-Vol.-II (Upto 1960 AD) Dr. Harekrushna Mahatab, 1st Edition-1960. Prajatantra Prachar Samitee, Cuttack.
26. Introduction to the Study of English Literature - By K. R. Srinivasa Iyengar & Premananda Kumar Sterling Publishers Pvt. Ltd. New Delhi.-1984.
27. Land Revenue administration in Orissa During the nineteenth Century. By Krushna Chandra Jena, 1st Edition-1968. S. Chand and Company, Madras.
28. Literary Criticism. A short History William K. Wimsatt. JR & cleanth Brooks, Oxford and IBH Publishing Co. 66. Janpath New Delhi-1957.

29. Literary Criticism - A reading. Ed By-B. Das and J. Mohanty, Oxford University Press 1985.

30. Literature and Reality - By Howard Fast 1955, People's Publishing House Ltd. New Delhi.

31. Lyrical ballads - Wordsworth - Ed. 64-Derk Roper, London & Glasgoud - 1973.

32. Mahayana Buddhisism - By Dr. nalinaksha Dutta, 2nd Edition-1976, Firmaker Pvt. Ltd. Calcutta.

33. New Bearings in English Poetry - F.R. Leavis, Reprinted-1979, Pelican Books.

34. On the Samkrit and Pracrit language. Asiatic Researcher Vol. VI. 1801.

35. Orissa - A sterling - 2nd Edition Bharatiya Publishing house, Delhi.

36. Orissa. W.W. Hunter. Vol-II. London 1872.

37. Orissa under the British Crown. By Dr. J.K. Samal, ED-1977, S. Chand & Company Ltd. New Delhi.

38. Oriya Nationalism - Nivedita Mohanty. 1st Pub.-1982. Monohar Punthi Pustak.

39. Principles of literary Criticsm - By I.A. Richards, 15th Edition - 1959. Routhledge and Kegan Paul Ltd. Broadway home 68-74 Carter Lane.

40. Primitive Culture - By I.B. Tyler - London 1873.

41. Quintesence of Literary Essays - By W. R. Goodman, 2nd Edition-1963. Doaba House Book Sellers & Publishers.

42. Report of the Orissa Famine Commission (1866) Vol. I Part I.

43. Rise and Fulfilment of British rule in India– Garatte & Thompson - 1st Edition Central Book Depot. Allahabad.

44. Romantic Agony - Mario Praz, Oxford University Press-1954.

45. Selection from Educational Records - J.A. Richey - Part-II, 1840-59 Resolution of the Govt. of India. Dtd. - 10th Oct. 1844.

46. Side light on History and Culture of Orissa Ed. by M.N. Das. 1st Edition - Vidyapuri, Balubazar, Cuttack.

47. The Adventure of Criticism - K.R. Srinivasa Iyengar, Asian publishing hosue, Bombay 1985.
48. The Ascendaney of the British Raj in Orissa - By. K.C. Jena, 1st Publication-1982, Punthi Pustak, Calcutta.
49. The Cambridge Hisotry of India - Vol.-I, Ed. by E.J. Rapson S. Chand and Company. 1955.
50. The Classic - Frank Kermode - 1975, Faber and Faber, 3 Queen Square, London.
51. The Evolution of Oriya Language and Script. Dr. K. B. Tripathy, 1st Edition - Utkal Univeristy.
52. The Famine and some aspects of the British Economy Policy in Orissa - 1866-1905. By Gora Chand Patnaik, 1st Edition-1980. Vidyapuri Balubazar, Cuttack.
53. The future of Poetry - Sri Aurobindo Aurobindo Ashram Pondicheri, 1st Edition.
54. The Making of literature. R.A. Scott. James, Reprinted-1970. Seeker & Warburg, London.
55. •The Light of Asia - Sri Edwin Arnold. 3rd Edition 1980, The Theosophical Publishing house Adyor, Madras.
56. The Modern Writer and his world - G.S. Fraser, 3rd Editon-1967. Pelican Books.
57. The principles of Aesthetic - Dewitt. H. Parker, Reprinted-1976, London.
58. The Teach yourself, History of English Literature. The Romantic Revival Edition by Peterwest land - Vol. IV. The English Universities Press Ltd. London-1950.
59. The use of Poetry and use of Criticism. By T.S. Elliot Cambridge mass-1933.

## ଓଡ଼ିଆ

୧. ଅଳଙ୍କାର ଶାସ୍ତ୍ର ପରିଚିତି - ଡଃ ଭାବଗ୍ରାହୀ ମିଶ୍ର ଓ ଶାନ୍ତିଲତା ମିଶ୍ର, ୨ୟ ପ୍ରକାଶ-୧୯୭୧, ଫ୍ରେଣ୍ଡସ୍ ପବ୍ଲିଶର୍ସ, ବିନୋଦ ବିହାରୀ, କଟକ

୨. ୧୮୬୬ ଉତ୍କଳ ଦୀପିକା - ସଂ. ଡଃ ବଂଶୀଧର ମହାନ୍ତି, ୧ମ ସଂ. ୧୯୭୮ - ଫ୍ରେଣ୍ଡସ୍ ପବ୍ଲିଶର୍ସ, କଟକ ।

୩. ଆଧୁନିକ ଓଡ଼ିଆ କବିତାରେ ପଲ୍ଲୀ ଚେତନା ଓ କବି ବିଦ୍ୟୁତ୍ ପ୍ରଭା - ଶ୍ରୀମତୀ ପ୍ରେମଲତା ଦେବୀ (୧୯୮୪ ମସିହା ପିଏଚ୍.ଡ଼ି. ପାଇଁ ପ୍ରସ୍ତୁତ ସନ୍ଦର୍ଭ ଓ ଉତ୍କଳ ବିଶ୍ୱବିଦ୍ୟାଳୟ ପାଠାଗାରରେ ସଂରକ୍ଷିତ ।)

୪. ଆଧୁନିକ ଓଡ଼ିଆ କାବ୍ୟଧାରା (ଆଦିଯୁଗ) ଡଃ ନରେନ୍ଦ୍ର ନାଥ ମିଶ୍ର, ୧ମ ପ୍ରକାଶ-୧୯୬୪ । ବିଶ୍ୱଭାରତୀ ଶାନ୍ତି ନିକେତନ ।

୫. ଆଧୁନିକ ଓଡ଼ିଆ ଗଦ୍ୟ ସାହିତ୍ୟ - ଡଃ ଶ୍ରୀନିବାସ ମିଶ୍ର । ୧ମ ପ୍ରକାଶ-୧୯୭୮ । ବିଦ୍ୟାପୁରୀ, କଟକ ।

୬. ଆଧୁନିକ ଓଡ଼ିଆସାହିତ୍ୟ - ବୈଷ୍ଣବ ଚରଣ ବଳ ।
ପ୍ରକାଶକ ସୋମନାଥ ତ୍ରିପାଠୀ, ୧୯୬୫ ।

୭. ଆଧୁନିକ ଓଡ଼ିଆ ସାହିତ୍ୟର ଭୂମି ଓ ଭୂମିକା - ସଂ.-ଡଃ କୁଞ୍ଜବିହାରୀ ଦାଶ, ୧ମ ପ୍ର.-୧୯୬୨ । ଓଡ଼ିଆ ସାହିତ୍ୟ ଏକାଡ଼େମୀ ।

୮. ଆଧୁନିକ ଓଡ଼ିଆ ସାହିତ୍ୟର ମୂଲ୍ୟାୟନ - ଡଃ ବାସୁଦେବ ସାହୁ, ୧ମ ପ୍ର-୧୯୭୫ । ପ୍ରକାଶକ ରାମଚନ୍ଦ୍ର ସାହୁ, ରଙ୍ଗଣୀପାଟଣା ।

୯. ଆତ୍ମଜୀବନଚରିତ - ଫକୀରମୋହନ ସେନାପତି, ୬ଷ୍ଠ ମୁଦ୍ରଣ-୧୯୬୧, କଟକ ଷ୍ଟୁଡ଼େଣ୍ଟସ୍ ଷ୍ଟୋର୍ ।

୧୦. ଆଧୁନିକ କବିତାର ଦିଗଦର୍ଶନ - ସଂ. ଅପୂର୍ବ ରଞ୍ଜନ ରାୟ, ୧ମ ସଂ-୧୯୭୨ । ଫ୍ରେଣ୍ଡସ୍ ପବ୍ଲିଶର୍ସ, କଟକ ।

୧୧. ଆଧୁନିକ କାବ୍ୟ ଜିଜ୍ଞାସା : ଚିତ୍ରକଳ୍ପ - ଦାଶରଥି ଦାସ, ୧ମ ପ୍ର-୧୯୭୭ । ଅଗ୍ରଦୂତ ପ୍ରକାଶନୀ, ବାଙ୍କାବଜାର, କଟକ ।

୧୨. ଆଧୁନିକତା ଓ ଆଧୁନିକ ସାହିତ୍ୟ - ଡଃ ନରେନ୍ଦ୍ର ନାଥ ମିଶ୍ର, ୧ମ ସଂ.-୧୯୭୬ । ଫ୍ରେଣ୍ଡସ୍ ପବ୍ଲିଶର୍ସ, କଟକ ।

୧୩. ଆଧୁନିକତାର କ, ଖ ଓ ଅନ୍ୟାନ୍ୟ - ଅଧ୍ୟାପକ ଚିନ୍ତାମଣି ବେହେରା, ୧ମ ପ୍ରକାଶ, ଫ୍ରେଣ୍ଡସ୍ ପବ୍ଲିଶର୍ସ ବିନୋଦ ବିହାରୀ, କଟକ ।

୧୪. ଆଧୁନିକ ସାହିତ୍ୟ ସନ୍ଦର୍ଶନ - ଦେବେନ୍ଦ୍ର ମହାନ୍ତି ।
ତୃୟ ପ୍ରକାଶ - ୧୯୭୩ । ଫ୍ରେଣ୍ଡସ୍ ପବ୍ଲିଶର୍ସ, କଟକ ।

୧୫. ଉତ୍କଳ ଗୌରବ ମଧୁସୂଦନ ଦାସ - ନବକିଶୋର ଦାସ
୧ମ ସଂ.-୧୯୫୦ । ଉତ୍କଳ ବିଶ୍ୱବିଦ୍ୟାଳୟ ।

୧୬. ଓଡ଼ିଆ ଗାଥା କାବ୍ୟ - ରବୀନ୍ଦ୍ର କୁମାର ପ୍ରହରାଜ । ପିଏଚ୍.ଡ଼ି. ସନ୍ଦର୍ଭ, ଉତ୍କଳ ବିଶ୍ୱବିଦ୍ୟାଳୟ ପାଠାଗାରରେ ସଂରକ୍ଷିତ ।

୧୭. ଓଡ଼ିଆ ଉପନ୍ୟାସ - ଡଃ କୃଷ୍ଣଚରଣ ବେହେରା, ୨ୟ ସଂ.୧୯୮୧, ଫ୍ରେଣ୍ଡସ୍ ପବ୍ଲିଶର୍ସ, କଟକ ।

୧୮. ଓଡ଼ିଆ ଗୀତି କାବ୍ୟ - ଡଃ ଜାନକୀ ବଲ୍ଲଭ ମହାନ୍ତି ।
୨ୟ ମୁଦ୍ରଣ - ୧୯୭୬ । ଗ୍ରନ୍ଥମନ୍ଦିର, କଟକ ।

୧୯. ଓଡ଼ିଆ ପଲ୍ଲୀ ସାହିତ୍ୟ - ଡଃ ନଟବର ସାମନ୍ତରାୟ ।
ପ୍ରକାଶକ - ଗନ୍ଧର୍ବ ଶତପଥୀ, ବଡ଼ଦାଣ୍ଡ ସାହି, ଭୁବନେଶ୍ୱର-୧୯୭୦ ।

୨୦. ଓଡ଼ିଆ ସାହିତ୍ୟ ଓ ସମାଲୋଚନାର ବିକାଶଧାରା - ବୈରାଗୀ ଚରଣ ଜେନା । ୧ମ ପ୍ର-୧୯୭୬ । ବିଜୟ ବୁକ୍‌ଷ୍ଟୋର୍, ବ୍ରହ୍ମପୁର-୧ ।

୨୧. ଓଡ଼ିଆ ସାହିତ୍ୟର କ୍ରମବିକାଶ - ଶ୍ରୀ ସୁରେନ୍ଦ୍ର ମହାନ୍ତି । ୧ମ ପ୍ର.-୧୯୭୮ । ଅଗ୍ରଦୂତ ପ୍ରକାଶନୀ, ବାଙ୍କାବଜାର, କଟକ ।

୨୨. ଓଡ଼ିଆ ସାହିତ୍ୟର ଇତିହାସ - ଡଃ ମାୟାଧର ମାନସିଂ, ୧ମ ସଂ. ୧୯୭୮ । ୧ମ ସଂ. ଗ୍ରନ୍ଥମନ୍ଦିର, କଟକ ।

୨୩. ଓଡ଼ିଆ ସାହିତ୍ୟର ଇତିହାସ - ଅଧ୍ୟାପକ ପଠାଣି ପଟ୍ଟନାୟକ । ୧ମ 'ସଂ-୧୯୭୮ । ନାଳନ୍ଦା, ବିନୋଦବିହାରୀ କଟକ ।

୨୪. ଓଡ଼ିଆ ସାହିତ୍ୟର ଇତିହାସ ୧ମ ଭାଗ - ପଣ୍ଡିତ ସୂର୍ଯ୍ୟ ନାରାୟଣ ଦାସ । ଗ୍ରନ୍ଥମନ୍ଦିର-୧୯୬୮ ।

୨୫. ଓଡ଼ିଆ ସାହିତ୍ୟର ଇତିହାସ - (୧୮୦୩-୧୯୨୦) ଡଃ ନଟବର ସାମନ୍ତରାୟ । ୨ୟ ସଂ.-୧୯୮୩ । ପ୍ରକାଶକ : ଡଃ ନଟବର ସାମନ୍ତରାୟ, ସାମନ୍ତରାପୁର, ଭୁବନେଶ୍ୱର ।

୨୬. ଓଡ଼ିଆ ସାହିତ୍ୟର ସଂକ୍ଷିପ୍ତ ପରିଚୟ - ବୃନ୍ଦାବନ ଚନ୍ଦ୍ର ଆଚାର୍ଯ୍ୟ, ୧ମ ସଂ.- ୧୯୭୫ । ଗ୍ରନ୍ଥମନ୍ଦିର, ବିନୋଦ ବିହାରୀ, କଟକ ।

୨୭. ଓଡ଼ିଆ ସାହିତ୍ୟର ସାଂସ୍କୃତିକ ବିକାଶଧାରା - ଚିତ୍ତରଞ୍ଜନ ଦାସ, ୧ମ ସଂ- ୧୯୮୧ । ଓଡ଼ିଶା ରାଜ୍ୟ ପାଠ୍ୟପୁସ୍ତକ ପ୍ରକାଶନ ଓ ପ୍ରଣୟନ ସଂସ୍ଥା, ଭୁବନେଶ୍ୱର ।

୨୮. ଓଡ଼ିଆ ସାହିତ୍ୟରେ ପାଶ୍ଚାତ୍ୟ ପ୍ରଭାବ - ଅଧ୍ୟାପକ ଉମାଚରଣ ପୂଜାରୀ । ଗୀତା ପ୍ରକାଶନୀ, ୧୯୭୧ ।

୨୯. ଓଡ଼ିଆ ସାହିତ୍ୟ ପରିକ୍ରମା - ଡଃ ଜାନକୀ ବଲ୍ଲଭ ମହାନ୍ତି, ଗ୍ରନ୍ଥମନ୍ଦିର, କଟକ- ୧୯୭୬ ।

୩୦. ଓଡ଼ିଶାର ଗାଉଁଲୀ ଗୀତ - ଡଃ ମାୟାଧର ମାନସିଂ । ୧ମ ପ୍ର-୧୯୫୧ । ଗ୍ରନ୍ଥମନ୍ଦିର, କଟକ ।

୩୧. କବି ଗୋଦାବରୀଶ - ଚିନ୍ତାମଣି ଦାସ । ନୂତନ ସଂ-୧୯୭୨ । ପ୍ରକାଶକ - ଜଗନ୍ନାଥ ରଥ, ବିନୋଦ ବିହାରୀ, କଟକ ।

୩୨. କବିତା ଯୁଗେ ଯୁଗେ - ଡଃ ନିତ୍ୟାନନ୍ଦ ଶତପଥୀ, ୧ମ ସଂ.-୧୯୭୪ ଗ୍ରନ୍ଥମନ୍ଦିର, ବିନୋଦ ବିହାରୀ,କଟକ ।

୩୩. କବିତାର ଅବବୋଧରେ - ବିନୋଦ ବିହାରୀ ପଲାଇ । ୧ମ ପ୍ର-୧୯୭୭ । ଫ୍ରେଣ୍ଡସ୍ ପବ୍ଲିଶର୍ସ, ବିନୋଦବିହାରୀ, କଟକ ।

୩୪. କଳ୍ପନାର ଅଭିଷେକ - ଡଃ ପ୍ରତିଭା ଶତପଥୀ । ୧ମ ପ୍ର-୧୯୮୨, ଓଡ଼ିଶାବୁକ୍‌ଷ୍ଟୋର, ବିନୋଦ ବିହାରୀ, କଟକ ।

୩୫. କାନ୍ତ କବି ସୃଷ୍ଟି ସମୀକ୍ଷା - ସଂ. ଅପୂର୍ବ ରଞ୍ଜନ ରାୟ । ୧ମ ପ୍ର-୧୯୭୭, ଲାର୍କ ବୁକ୍‌ସ ।

୩୬. କାବ୍ୟ ଓ କଳାକାର - ଅଧ୍ୟାପକ ଚିନ୍ତାମଣି ବେହେରା, ୧ମ ପ୍ରକାଶ । ଆଲୋକ ସାହିତ୍ୟ ପ୍ରତିଷ୍ଠାନ ।

୩୭. କାବ୍ୟତତ୍ତ୍ୱ - ଅନୁବାଦ ଓ ଟୀକା - ଅଧ୍ୟାପକ ଯତୀନ୍ଦ୍ର ମୋହନ ମହାନ୍ତି । ୧ମ ସଂ.-୧୯୭୬ । ଓଡ଼ିଶା ରାଜ୍ୟ ପାଠ୍ୟପୁସ୍ତକ ପ୍ରଣୟନ ଓ ପ୍ରକାଶନ ସଂସ୍ଥା ଭୁବନେଶ୍ୱର ।

୩୮. କାବ୍ୟ ସଂବାଦ - ଅଧ୍ୟାପକ ଦାଶରଥି ଦାସ। ୧ମ ପ୍ର-୧୯୭୩, ଫ୍ରେଣ୍ଡସ୍ ପବ୍ଲିଶର୍ସ, ବିନୋଦ ବିହାରୀ, କଟକ।

୩୯. ଦେଶ, କାଳ, ପାତ୍ର ଓ ମନୀଷୀ ଫକୀର ମୋହନ - ଡଃ ଜେ.ଭି. ବୋଲଟନ୍, ଓଡ଼ିଆ ସାହିତ୍ୟ, ଏକାଡ଼େମୀ-୧୯୭୬।

୪୦. ନବ ଯୁଗର କବି ଓ କାବ୍ୟଧାରା - ଡଃ ଜାନକୀ ବଲ୍ଲଭ ମହାନ୍ତି। ୧ମ ସଂ- ୧୯୭୭। ଗ୍ରନ୍ଥମନ୍ଦିର, କଟକ।

୪୧. ନେପୋଲିୟନ ବୋନାପାର୍ଟ-(ଆବଟ) ଅନୁବାଦ, ଚୌଧୁରୀ ନୀଳକଣ୍ଠ ଦାସ। ୨ୟ ଭାଗ (୧୨୮୪-୯୮) ଉତ୍କଳ ବିଶ୍ୱବିଦ୍ୟାଳୟ-୧୯୬୪।

୪୨. ଫକୀରମୋହନ ଗ୍ରନ୍ଥାବଳୀ - ୧ମ ଖଣ୍ଡ, ୨ୟ ସଂ.-୧୯୬୩। କଟକ ଷ୍ଟୁଡ଼େଣ୍ଟସ୍ ଷ୍ଟୋର, ବାଲୁବଜାର, କଟକ।

୪୩. ଫକୀରମୋହନ ଗ୍ରନ୍ଥାବଳୀ - ୨ୟ ଭାଗ। ୨ୟ ସଂସ୍କରଣ କଟକ ଷ୍ଟୁଡ଼େଣ୍ଟସ୍ ଷ୍ଟୋର, ବାଲୁବଜାର କଟକ।

୪୪. ଫକୀର ମୋହନଙ୍କ କୃତିରେ ପ୍ରତିଫଳିତ ସମକାଳୀନ ସମାଜ ଚିତ୍ର ଏକ ଅଧ୍ୟୟନ - ଅସିତ କବି (ପିଏଚ୍.ଡ଼ି. ସନ୍ଦର୍ଭ, ଉତ୍କଳ ବିଶ୍ୱବିଦ୍ୟାଳୟ ପାଠାଗାରରେ ସଂରକ୍ଷିତ)

୪୫. ଫକୀରମୋହନଙ୍କ ସାହିତ୍ୟରେ ନୀତିବୋଧ - ଅନନ୍ତ କୁମାର ପରିଡ଼ା (ପିଏଚ୍.ଡ଼ି. ସନ୍ଦର୍ଭ, ଉତ୍କଳ ବିଶ୍ୱବିଦ୍ୟାଳୟ ପାଠାଗାରରେ ସଂରକ୍ଷିତ)

୪୬. ଫକୀରମୋହନ ସମୀକ୍ଷା - ସୁରେନ୍ଦ୍ର ମହାନ୍ତି। ନିଉ ଷ୍ଟୁଡ଼େଣ୍ଟସ୍ ଷ୍ଟୋର, କଟକ ୧୯୭୨।

୪୭. ବ୍ୟାସ କବି ଫକୀରମୋହନ - ଡଃ ନଟବର ସାମନ୍ତରାୟ। ୨ୟ ସଂ. ୧୯୭୨। ପ୍ରକାଶକ : ପ୍ରତାପରୁଦ୍ର ଦେବ, ଲାବଣ୍ୟଭବନ, ଭୁବନେଶ୍ୱର-୨।

୪୮. ମୋ ଦୃଷ୍ଟିରେ ସାଂପ୍ରତିକ ସାହିତ୍ୟ - ସଂ. ଅଧ୍ୟାପକ ପରୀକ୍ଷିତ ନନ୍ଦ। ୧ମ ପ୍ର.- ୧୯୭୩। ଜ୍ଞାନ ମନ୍ଦିର, କଟକ।

୪୯. ଯୁଗଜ୍ୟୋତି ରାଧାନାଥ - ଦେବେନ୍ଦ୍ର ମହାନ୍ତି। ୨ୟ ପ୍ର.-୧୯୮୦। ଫ୍ରେଣ୍ଡସ୍ ପବ୍ଲିଶର୍ସ, ବିନୋଦ ବିହାରୀ କଟକ।

୫୦. ଯୁଗସ୍ରଷ୍ଟା ଫକୀରମୋହନ - ସର୍ବେଶ୍ୱର ଦାସ। ୫ମ ସଂ. ୧୯୭୨। ଗ୍ରନ୍ଥମନ୍ଦିର, କଟକ।

୫୧. ରଧାନାଥ ପରିଚିତି - ପ୍ରକାଶକ ରାଧାନାଥ ପାଠାଗାର, ସୋର। ୧ମ ପ୍ରକାଶ-୧୯୬୦।

୫୨. ସବୁଜରୁ ସାଂପ୍ରତିକ - ଡଃ ନିତ୍ୟାନନ୍ଦ ଶତପଥୀ, ୨ୟ ସଂ-୧୯୮୫। ଗ୍ରନ୍ଥମନ୍ଦିର, ବିନୋଦ ବିହାରୀ, କଟକ।

୫୩. ସମାଜ ଓ ସାହିତ୍ୟ - ପଠାଣି ପଟ୍ଟନାୟକ। ୧ମ ପ୍ର-୧୯୭୫, ଜନଶକ୍ତି ପୁସ୍ତକାଳୟ, ବାଙ୍କାବଜାର, କଟକ।

୫୪. ସମାଲୋଚନା– ଡଃ କୁଞ୍ଜ ବିହାରୀ ଦାଶ। ଏପ୍ରିଲ୍-୧୯୬୨। ବିଶ୍ୱଭାରତୀ, ଶାନ୍ତି ନିକେତନ।

୫୫. ସମାଲୋଚନାର ଦିଗ ଦିଗନ୍ତ – ଡଃ ଖଗେଶ୍ୱର ମହାପାତ୍ର। ୧ମ ପ୍ର – ୧୯୭୨, ଫ୍ରେଣ୍ଡସ ପବ୍ଲିଶର୍ସ, ବିନୋଦ ବିହାରୀ, କଟକ।

୫୬. ସମ୍ବାଦ ପତ୍ରରୁ ଓଡ଼ିଶାର କଥା - ସଂ. ସୁଧାକର ପଟ୍ଟନାୟକ, ୧ମ ଖଣ୍ଡ (୧୫୫୬-୧୮୮୧) ୧ମ ପ୍ର-ଗ୍ରନ୍ଥମନ୍ଦିର, କଟକ।

୫୭. ସମ୍ବାଦ ପତ୍ରେ ଉନବିଂଶ ଶତାବ୍ଦୀର ଓଡ଼ିଶା - ଡଃ ଗୋପାଳ ଚନ୍ଦ୍ର ମିଶ୍ର। ୧ମ ପ୍ର-୧୯୭୨। ଜେ. ମହାପାତ୍ର ଏଣ୍ଡକୋ ଛାତ୍ରସାଥୀ, ଅଫିସ୍, କଟକ-୨।

୫୮. ସାହିତ୍ୟ-ସଂପାଦନା କୋଶଳ ସାହିତ୍ୟ ସମାଜ, ସମ୍ବଲପୁର, ୧ମ ପ୍ରକାଶ-୧୯୭୨।

୫୯. ସାହିତ୍ୟ ତତ୍ତ୍ୱ : ପ୍ରାଚ୍ୟ ଓ ପାଶ୍ଚାତ୍ୟ - ଅଧ୍ୟାପିକା ଜ୍ୟୋସ୍ନାମୟୀ ପ୍ରଧାନ ୧ମ ପ୍ର-୧୯୮୦। ଫ୍ରେଣ୍ଡସ୍ ପବ୍ଲିଶର୍ସ, ବିନୋଦ ବିହାରୀ, କଟକ।

୬୦. ସାହିତ୍ୟ ଦୃଷ୍ଟି - ଡଃ ଭାବଗ୍ରାହୀ ମିଶ୍ର। ୧ମ ପ୍ରକାଶ-୧୯୭୦ ଫ୍ରେଣ୍ଡସ୍ ପବ୍ଲିଶର୍ସ, ବିନୋଦ ବିହାରୀ, କଟକ।

୬୧. ସାହିତ୍ୟ, ସଂହତି ଓ ସଂସ୍କୃତି - ଅଧ୍ୟାପକ ପଠାଣି ପଟ୍ଟନାୟକ, ୧ମ ପ୍ର-୧୯୭୨। ଫ୍ରେଣ୍ଡସ୍ ପବ୍ଲିଶର୍ସ।

୬୨. ସାହିତ୍ୟ ବିଚାର - ଅଧ୍ୟାପକ ଦୀନବନ୍ଧୁ ରଥ। ୧ମ ପ୍ର-୧୯୭୦ ଫ୍ରେଣ୍ଡସ୍ ପବ୍ଲିଶର୍ସ।

୬୩. ସାହିତ୍ୟର ରୂପରେଖ - ନୀଳାଦ୍ରିଭୂଷଣ ହରିଚନ୍ଦନ। ୧ମ ସଂ-୧୯୭୬। ବିଦ୍ୟାପୁରୀ, କଟକ।

୬୪. ସାହିତ୍ୟର ସୂଚୀପତ୍ର - ବିଭୂତି ପଟ୍ଟନାୟକ - ୩ୟ ସଂ. ୧୯୮୨ ନାଲନ୍ଦା ବିନୋଦ ବିହାରୀ, କଟକ-୨।

୬୫. ସାହିତ୍ୟର ସ୍ୱରୂପ - ବୀରକିଶୋର ଦାସ - ନୂତନ ମୁଦ୍ରଣ-୧୯୭୮। ସାଥୀ ମହଲ, କଟକ।

୬୬. ସାହିତ୍ୟର ସଂଜ୍ଞା - ଶ୍ରୀ ଗଦାଧର ମିଶ୍ର। ୧ମ ପ୍ର.-୧୯୮୧, ଫ୍ରେଣ୍ଡସ୍ ପବ୍ଲିଶର୍ସ, ବିନୋଦ ବିହାରୀ, କଟକ।

୬୭. ସାହିତ୍ୟିକ ବୀକ୍ଷା ଓ ନିରୀକ୍ଷା - ଅଧ୍ୟାପକ କ୍ଷେତ୍ରବାସୀ ନାୟକ, .୧ମ ପ୍ର-୧୯୭୦। ଫ୍ରେଣ୍ଡସ୍ ପବ୍ଲିଶର୍ସ୍।

୬୮. ସୃଷ୍ଟି ଓ ସମୀକ୍ଷା - ଜାନକୀ ବଲ୍ଲଭ ମହାନ୍ତି। ୧ମ ସଂ.-୧୯୬୪ ଦାସ ବ୍ରଦର୍ସ୍, ବ୍ରହ୍ମପୁର।

୬୯. ସାଂପ୍ରତିକ ସାହିତ୍ୟ - ବିଭୂତି ପଟ୍ଟନାୟକ, ୨ୟ ମୁଦ୍ରଣ - ୧୯୮୦ ଫ୍ରେଣ୍ଡସ୍ ପବ୍ଲିଶର୍ସ୍, ବିନୋଦ ବିହାରୀ,କଟକ।



## ହିନ୍ଦୀ


୧. ଆଧୁନିକ କବିତା - ୩ୟ ଖଣ୍ଡ, ପ୍ରଧାନ ସଂପାଦକ - ଡଃ ଓମ ପ୍ରକାଶ ଶର୍ମା । ୧ମ ପ୍ରକାଶ - ୧୯୭୨ । ସାହିତ୍ୟ ସମାରୋହ, ୩୩ ଫିରୋଜ ଶାହ ରୋଡ୍, ନୂଆଦିଲ୍ଲୀ ।

୨. ଆଧୁନିକ କାବ୍ୟ ମେଁ ନବୀନ୍ ଜୀବନ ମୂଲ୍ୟ - ଡଃ ହୁକୁମ ଚନ୍ଦ ରାଜପାଳ । ୧ମ ସଂ.-୧୯୭୦ । ଭାରତୀୟ ସଂସ୍କୃତି ଭବନ ।

୩. ଆଲୋଚନା : ଇତିହାସ ତଥା ସିଦ୍ଧାନ୍ତ - ଏସ୍.ପି. କ୍ଷତ୍ରୀ । ୨ୟ ପ୍ରକାଶ - ୧୯୬୪ । ରାଜକମଳ ପ୍ରକାଶ ।

୪. ନୟୀ କବିତାକେ ପ୍ରତିମାନ - ଲକ୍ଷ୍ମୀକାନ୍ତ ବର୍ମା । ୧ମ ସଂସ୍କରଣ ରାଜକମଳ ପ୍ରକାଶନ ।

୫. ରଚନା ଔର ଆଲୋଚନା - ଦେବୀ ଶଙ୍କର୍ ଅବସ୍ଥୀ । ୧ମ ପ୍ର-୧୯୭୯, The Macmillian Company of India Ltd. New Delhi.

୬. ସାହିତ୍ୟରୂପ - ପ୍ରମୋଦ ବର୍ମା । ୧ମ ସଂ-୧୯୭୧ ରଚନା ପ୍ରକାଶନ, ୪୫, ଏ ଖୁଲବାଦ, ଏହ୍ଲାବାଦ-୧ ।

୭. ହିନ୍ଦୀ କବିତା ମେ ରାଷ୍ଟ୍ରୀୟ ଭାବନା - ଡଃ ବିଦ୍ୟାନାଥ ଗୁପ୍ତ । ୧ମ ପ୍ରକାଶ, ପ୍ରାଇମା ପବ୍ଲିକେଶନ, କଲିକତା ।

୮. ହିନ୍ଦୀ ଭାଷା ଔର ସାହିତ୍ୟ କୋ ଆର୍ଯ୍ୟ ସମାଜ କୀ ଦାନ - ଡଃ ଲକ୍ଷ୍ମୀନାରାୟଣ ଗୁପ୍ତ, ୧ମ ପ୍ରକାଶ ।

The Macmillan Company of India Ltd. New Delhi.

୯. ହିନ୍ଦୀ ସାହିତ୍ୟ କା ଇତିହାସ - ସଂ.- ଡଃ ନଗେନ୍ଦ୍ର । ନେସନାଲ ପବ୍ଲିଶିଂ ହାଉସ୍ ଦରିୟାଗଞ୍ଜ, ନୂଆଦିଲ୍ଲୀ-୧୯୮୦ ।

# ବଙ୍ଗଳା


୧. ଆଧୁନିକ ବାଂଲା କାବ୍ୟ – ଶ୍ରୀ ତାରାପଦ ମୁଖୋପାଧ୍ୟାୟ (୧ମ ପର୍ବ) ୪ର୍ଥ ସଂସ୍କରଣ – ମିତ୍ର ଓ ଘୋଷ। ୧୦ ଶ୍ୟାମାଚରଣ ଦେ ଷ୍ଟ୍ରୀଟ୍, କଲିକତା-୧୨।

୨. ଆଧୁନିକ ବାଂଲା ଗୀତି କବିତା – ଜୀବେନ୍ଦ୍ର ସିଂହରାୟ। ପ୍ରାଇମା ପବ୍ଲିକେଶନ, ୧୦। ଶ୍ୟାମାଚରଣ ଦେ ଷ୍ଟ୍ରୀଟ୍ କଲିକତା, ୧୯୬୫।

୩. କାଳାନ୍ତର – ରବୀନ୍ଦ୍ରନାଥ ଠାକୁର, ପରିବର୍ଦ୍ଧିତ ସଂସ୍କରଣ, ବିଶ୍ୱଭାରତୀ ଶାନ୍ତି ନିକେତନ।

୪. ଗୀତିକବି ଶ୍ରୀ ମଧୁସୂଦନ – ଶ୍ରୀ ଆଶୁତୋଷ ଭଟ୍ଟାଚାର୍ଯ୍ୟ। ନୂତନ ସଂ.-୧୯୭୪। ଦେ'ଜ ପବ୍ଲିଶିଂ ୩୧/୩ ବି. ମହାତ୍ମାଗାନ୍ଧୀ ରୋଡ୍, କଲିକତା-୯।

୫. ନବୀନ ଚନ୍ଦ୍ର ରଚନାବଳୀ, ୩ୟ ଖଣ୍ଡ। ୧ମ ପ୍ର.-୧୩୮୩ ସାଲ ଦତ୍ତ ଚୌଧୁରୀ ଆଣ୍ଡ ସନ୍ସ, କଲେଜ ଷ୍ଟ୍ରୀଟ ମାର୍କେଟ, କଲିକତା।

୬. ନବୀନ ଚନ୍ଦ୍ର ରଚନାବଳୀ, ୪ର୍ଥ ଖଣ୍ଡ। ୧ମ ପ୍ର-୧୩୮୩ ସାଲ ଦତ୍ତ ଚୌଧୁରୀ ଆଣ୍ଡ ସନ୍ସ, କଲେଜ ଷ୍ଟ୍ରୀଟ୍ ମାର୍କେଟ୍, କଲିକତା।

୭. ବାଂଲା ଇତିହାସ – ଶ୍ରୀ ପ୍ରଭାସ ଚନ୍ଦ୍ରସେନ୍। ୧ମ ପ୍ର-ବୈଶାଖ ୧୩୦୨ ସାଲ। କଥାଶିଳ୍ପ ପ୍ରକାଶ; ଶ୍ୟାମାଚରଣ ଷ୍ଟ୍ରୀଟ୍, କଲିକତା-୧୨।

୮. ବାଂଲା ଗାଥାକାବ୍ୟ – ଡଃ ବହ୍ନିକୁମାରୀ ଭଟ୍ଟାଚାର୍ଯ୍ୟ। ୧ମ ସଂ-୧୯୬୨। ମଡ଼ର୍ଣ୍ଣ ବୁକ୍ ଏଜେନ୍ସୀ ପ୍ରାଇଭେଟ୍ ଲିମିଟେଡ଼୍ ୧୦। ବଙ୍କିମ ଚନ୍ଦ୍ର ଚାଟାର୍ଜୀ ଷ୍ଟ୍ରୀଟ୍, କଲିକତା-୧୨।

୯. ବୁଦ୍ଧ ପ୍ରସଙ୍ଗ – ମହେଶ ଚନ୍ଦ୍ର ଘୋଷ – ୧୩୬୩ ସାଲ। ବିଶ୍ୱବିଦ୍ୟା ସଂଗ୍ରହ ସଂଖ୍ୟା ୧୧୯। ବିଶ୍ୱଭାରତୀ, ଦ୍ୱାରକାନାଥ ଠାକୁର ଲେନ୍ କଲିକତା।

୧୦. ବୁଦ୍ଧ ଓ ବୌଦ୍ଧଧର୍ମ – ଡଃ ଅନୁକୂଳ ଚନ୍ଦ୍ର ବନ୍ଦୋପାଧ୍ୟାୟ। ୧ମ ସଂ.-୧୯୬୬। ପ୍ରକାଶକ କେ. ଏଲ୍. ମୁଖୋପାଧ୍ୟାୟ। ୬/୨ ଏ ବାଞ୍ଛାରାମ ଅକ୍ରୁରଲେନ୍ କଲିକତା-୧୨।

୧୧. ରବୀନ୍ଦ୍ର ରଚନାବଳୀ – ୭ମ ଖଣ୍ଡ, ବିଶ୍ୱଭାରତୀ। ବଙ୍କିମ ଚାଟାର୍ଜୀ ଷ୍ଟ୍ରୀଟ୍, କଲିକତା।

୧୨. ଲୋକ ସାହିତ୍ୟ – ରବୀନ୍ଦ୍ରନାଥ ଠାକୁର, ନୂତନ ସଂସ୍କରଣ ବିଶ୍ୱଭାରତୀ, ଶାନ୍ତି ନିକେତନ।

୧୩. ସମାଲୋଚକରେ ସମସ୍ୟା – ବଙ୍ଗୀୟ ସାହିତ୍ୟ ପରିଷଦ, ୧ମ ସଂ-୧୯୬୬।

୧୪. ସମ୍ବାଦପତ୍ରେ ସେ କାଲେର କଥା – ବଙ୍ଗୀୟ ସାହିତ୍ୟ ପରିଷଦ। ୧ମ ସଂସ୍କରଣ।

## ସଂସ୍କୃତ

୧. ରଗ୍‌ବେଦ - ପ୍ରକାଶକ ଧର୍ମଗ୍ରନ୍ଥ ଷ୍ଟୋର, କଟକ ।

୨. ରଗ ବେଦ ସୌରଭ - ପ୍ରିୟବ୍ରତ ଦାସ, ୧ମ ପ୍ରକାଶ-୧୯୭୨, ବୈଦିକ ଅନୁସନ୍ଧାନ ପ୍ରତିଷ୍ଠାନ, ଭୁବନେଶ୍ୱର ।

୩. ଧ୍ୱନ୍ୟାଲୋକ - ଆନନ୍ଦ ବର୍ଦ୍ଧନ, ଅନୁବାଦ - ପଣ୍ଡିତ କୁଳମଣି ମିଶ୍ର ଶର୍ମା । ୨ୟ ମୁଦ୍ରଣ - ୧୯୮୧ । ବାସନ୍ତୀ ଦୁର୍ଗା ପ୍ରିଣ୍ଟର୍ସ୍ ଖଟବିନ ସାହି, କଟକ ।

୪. ରଘୁବଂଶ -କାଳିଦାସ । ଅନୁବାଦକ - ଧନେଶ୍ୱର ମହାପାତ୍ର । ୧ମ ସଂ.-୧୯୬୬ । କଟକ, ଟ୍ରେଡ଼ିଂ କମ୍ପାନୀ, ବାଲୁବଜାର, କଟକ ।

୫. ସାହିତ୍ୟ ଦର୍ପଣ, ଅନୁବାଦକ - ପଣ୍ଡିତ ନାରାୟଣ ମହାପାତ୍ର, ବିଶ୍ୱନାଥ କବିରାଜ, ୧ମ ସଂ-୧୯୭୫ । ଓଡ଼ିଶା ସାହିତ୍ୟ ଏକାଡ଼େମୀ ।

## ପତ୍ରପତ୍ରିକା

1. Bengal Review Proc. December-1865.
2. B.R.A. volume Nov. Dec. 1837, No. 2955.
   Records 7, Commissioner to sudder Board of Revenew December, 1837.
3. Bengal Rev. Proc. April-1866. No. 107.
4. Bengal Rev. Proc. Sept. 1867 No. -523.
5. Board of Revenue Archieves, Cuttack, Vol-26.
6. English Man - April 1866.
7. Friend of India - 14 April, 1866.
8. General Report on Public Instruction in the lower Provinces of the Bengal Presidency, 1869-70.
9. G.R.P.I. - 1873-74.
10. G.R.P.I. - 1864-65.
11. G.R.P.I. - 1857-58.
12. Hindu Patriot - 19 February 1866.
13. Hindu Patriot - 5 March 1866.
14. J.A. S.B. - 1870. Part-II.
15. Report of the council of Education - 1848-49.
16. Ibid -1842-43.
17. Report on Vernacular Education in Bengal and Bihar in Admin. 1st Report, Section-III.
18. S.B.R. Vol. 76, Letter Dtd.-3.2.1841.
19. T.E.R. Commr. to see B.R.L.P. No. 249, 30 Oct. 1865. Bengal Rev. Proc. Nov.-1866.

## ହିନ୍ଦୀ

୧. କଳ୍ପନା-ଜୁଲାଇ ୧୯୬୭.
୨. ଜ୍ଞାନୋଦୟ - ଜାନୁଆରୀ ୧୯୬୭.

## ଓଡ଼ିଆ


୧. ଉତ୍କଳ ଦୀପିକା - ଜାନୁଆରୀ ୯, ୧୮୬୯ ।
୨. ଏଜନ୍ - ୪ର୍ଥ ଭାଗ ସଂଖ୍ୟା ୧୧, ୧୩.୩.୧୮୬୯
୩. ଏଜନ୍ - ୨୦ଶ ଭାଗ; ୨ୟ ସଂଖ୍ୟା - ଜ୍ୟେଷ୍ଠ ୧୩୨୩ ସାଲ
୪. ଏଜନ୍ - ୩ୟ ଭାଗ, ୧.୨.୧୮୬୮, ସଂଖ୍ୟା-୫
୫. ଏଜନ୍ - ୫ମ ଭାଗ, ୨୬।୨।୧୮୭୦, ସଂଖ୍ୟା ୯
୬. ଉତ୍କଳ ପୁତ୍ର - ୧/୭ ସଂଖ୍ୟା, ୧୬।୭।୭୩.
୭. ଓଡ଼ିଆ ଓ ନବ ସମ୍ବାଦ - ୫।୨।୧୯୮୪.
୮. ଆସନ୍ତା କାଲି -ଶାରଦୀୟ ବିଶେଷାଙ୍କ
୯. ଇସ୍ତାହାର - ୩ ଓ ୪ ସଂଖ୍ୟା -ଅକ୍ଟୋବର ୧୯୭୮.
୧୦. ଝଙ୍କାର, ଜାନୁଆରୀ ୧୯୭୯
୧୧. ଏଜନ୍ - ଏପ୍ରିଲ୍ ୧୯୮୪
୧୨. ଏଜନ୍ - ୨୧ ଶ ବର୍ଷ - ବିଷୁବ ସଂଖ୍ୟା ।
୧୩. ଏଜନ୍ - ନଭେମ୍ବର ୧୯୭୮ ।
୧୪. ଏଜନ୍ - ମାର୍ଚ୍ଚ ୧୯୮୬ ।
୧୫. ଏଜନ୍ - ଫେବୃଆରୀ ୧୯୭୮
୧୬. ଡଗର - ୧୬ଶ ଭାଗ ୧ମ ସଂଖ୍ୟା
୧୭. ନବ ସମ୍ବାଦ - ୨।୬।୧୮୮୭
୧୮. ନବ ସମ୍ବାଦ - ୬।୨।୧୮୮୭
୧୯. ମୁକୁର, ୭ମ ଭାଗ - ୧ମ ସଂଖ୍ୟା, ବୈଶାଖ, ୧୩୧୯, ଅପ୍ରେଲ୍- ୧୯୧୨ ।
୨୦. ସମାଜ - ତା ୨୧।୯।୮୬
୨୧. ସମ୍ବାଦ - ୧୯ ଡିସେମ୍ବର, ୧୯୮୭
୨୨. ସହକାର - ୨୭/୫ ସଂଖ୍ୟା
୨୩. ଏଜନ୍ - ୧୨ଶ ବର୍ଷ । ୧ମ ସଂଖ୍ୟା, ୧୯୮୭ ।



ଡକ୍ଟର କୃଷ୍ଣଚନ୍ଦ୍ର ପ୍ରଧାନ (୧୯୫୯)ଙ୍କ ଜନ୍ମ କେନ୍ଦ୍ରାପଡ଼ା ଜିଲ୍ଲାର ପଟାମୁଣ୍ଡାଇ ଥାନା ଅନ୍ତର୍ଗତ କଖାରୁଣୀ ଗ୍ରାମରେ । ପିତା ସ୍ୱର୍ଗତ ହୃଦାନନ୍ଦ  ପ୍ରଧାନ ଓ ମାତା ସ୍ୱର୍ଗତ ବାଲୁରୀ ଦେବୀ । ବିଗତ ଦୁଇ ଦଶନ୍ଧି ଧରି ଓଡ଼ିଆ ସମାଲୋଚନା ସାହିତ୍ୟରେ ସେ ଏକ ପରିଚିତ ସ୍ୱର । ଐତିହାସିକ, ସଂରଚନାତ୍ମକ ଓ ତୁଳନାତ୍ମକ ସାହିତ୍ୟ ସମାଲୋଚନା କ୍ଷେତ୍ରରେ ତାଙ୍କର ମୌଳିକ ଦୃଷ୍ଟିଭଙ୍ଗୀ ବେଶ୍ ସ୍ପଷ୍ଟ । ଲୋକସାହିତ୍ୟଠାରୁ ସାଂପ୍ରତିକସାହିତ୍ୟ ପର୍ଯ୍ୟନ୍ତ ପ୍ରତ୍ୟେକ କ୍ଷେତ୍ରରେ ରହିଛି ତାଙ୍କର ଗଭୀର ଅଭିନିବେଶ । ଅଧ୍ୟୟନର ବ୍ୟାପକତା, ସୂକ୍ଷ୍ମ ପର୍ଯ୍ୟବେକ୍ଷଣ, ମୌଳିକ ବିଚାରଧାରା , ତୁଳନାତ୍ମକ ଦୃଷ୍ଟିଭଙ୍ଗୀ ଓଡ଼ିଆ ସମାଲୋଚନା ସାହିତ୍ୟରେ ତାଙ୍କୁ ଦେଇଛି ଏକ ସ୍ୱତନ୍ତ୍ର ପରିଚିତି । ସର୍ଜନାତ୍ମକ ସାହିତ୍ୟ ସମାଲୋଚନା କ୍ଷେତ୍ରରେ ମଧ୍ୟ ତାଙ୍କର ବିଶେଷତ୍ୱ ପ୍ରତିପାଦିତ ।

ଗୋପବନ୍ଧୁ ବିଜ୍ଞାନ ମହାବିଦ୍ୟାଳୟ, ଆଠଗଡ଼; ଶୈଳେନ୍ଦ୍ରନାରାୟଣ ମହାବିଦ୍ୟାଳୟ, ରାଜକନିକାରେ ଅଧ୍ୟାପନା ପରେ, ଡକ୍ଟର ପ୍ରଧାନ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗରେ ପ୍ରାଧ୍ୟାପକ ରୂପେ କାର୍ଯ୍ୟ କରି  ସଂପ୍ରତି ସମ୍ବଲପୁର ବିଶ୍ୱବିଦ୍ୟାଳୟରେ ଓଡ଼ିଆ ବିଭାଗରେ ମୁଖ୍ୟ ଓ ପ୍ରଫେସର ଭାବରେ ଅଧ୍ୟାପନା କରୁଛନ୍ତି । ଏଯାବତ୍ ତାଙ୍କର ୪୫ଟିରୁ ଅଧିକ ଗ୍ରନ୍ଥ ଓ ଶତାଧିକ ଇଂରାଜୀ ଓ ଓଡ଼ିଆ ପ୍ରବନ୍ଧ ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶିତ ।

– ପ୍ରକାଶକ

ISBN 81-8118-232-4





ସତ୍ୟନାରାୟଣ ବୁକ୍ ଷ୍ଟୋର୍